# ଆଧୁନିକ ଓଡ଼ିଆ କବିତାରେ

# ପ୍ରଗତିବାଦୀ ଚେତନା

ଡକ୍ଟର ବିଜୟଲକ୍ଷ୍ମୀ ଦାଶ



# ଆଧୁନିକ ଓଡ଼ିଆ କବିତାରେ
# ପ୍ରଗତିବାଦୀ ଚେତନା

ଡଃ ବିଜୟଲକ୍ଷ୍ମୀ ଦାଶ
ଅଧ୍ୟାପିକା, ଓଡ଼ିଆ ବିଭାଗ, ରେଭେନ୍ସା ବିଶ୍ୱବିଦ୍ୟାଳୟ



ଚିତ୍ରୋତ୍ପଳା ପବ୍ଲିକେଶନ୍ସ
ବଟେଶ୍ୱର, ସାଲେପୁର, କଟକ-୭୫୪୨୦୨

# ଆଧୁନିକ ଓଡ଼ିଆ କବିତାରେ ପ୍ରଗତିବାଦୀ ଚେତନା
(ନିବନ୍ଧ)

ଲେଖିକା:
**ଡଃ ବିଜୟଲକ୍ଷ୍ମୀ ଦାଶ**
ଅଧ୍ୟାପିକା, ଓଡ଼ିଆ ବିଭାଗ,
ରେଭେନ୍‌ସା ବିଶ୍ୱବିଦ୍ୟାଳୟ
କଟକ-୨

ପ୍ରକାଶିକା :
**ଅନସୂୟା ଦାଶ**
**ଚିତ୍ରୋତ୍ପଳା ପବ୍ଲିକେଶନସ୍**
ବଟେଶ୍ୱର, ସାଲେପୁର,
କଟକ-୭୫୪୨୦୨

ପ୍ରଥମ ସଂସ୍କରଣ :
**୨ ଅକ୍ଟୋବର -୨୦୧୧**

ଅକ୍ଷର ସଜ୍ଜା :
**ଶବ୍ଦଲିପି, କଲ୍ୟାଣୀନଗର, କଟକ-୧୩**

ଛାପା: **ସାଇ ମୁଦ୍ରଣ ଅଫ୍‌ସେଟ୍**
ସାଲେପୁର, କଟକ

ମୂଲ୍ୟ: ଟ. ୨୦୦/-
(ଦୁଇଶହ ଟଙ୍କା ମାତ୍ର)

# ADHUNIKA ODIA KABITARE PRAGATIBADI CHATANA
(Essay)

Writer:
**Dr. Bijaylaxmi Dash**
Asst Professor Oriya
Ravenshaw University
Cuttack-2

Publisher :
**Anasuya Dash**
**Chitrotpala Publications**
Bateswar, Salipur,
Cuttack-754202
Mobile: 9437214018
First Edition:
**2nd October 2011**

DTP :
**Sabdalipi,**
Kalyani Nagar, Cuttack-13

Printed at:
**Sai Offset**, Salipur

Price: **Rs.200/-**
(Rupees Two Hundred only)

ISBN : 81-86556-65-6

# ସୂଚୀପତ୍ର

## ପ୍ରଥମ ଅଧ୍ୟାୟ

# ପ୍ରଗତିବାଦୀ ଚେତନାର ଉଦ୍‌ଭବ ଓ ବିକାଶ

### ପ୍ରଗତିବାଦର ସଂଜ୍ଞା ଓ ସ୍ୱରୂପ

ସାହିତ୍ୟ ସମାଜର ବହୁବିଧ ଘଟଣାବଳୀର ସମାହାର । ଏହାର ଅୟମାରମ୍ଭ କ୍ରାନ୍ତିର କିନାରରୁ ଆଉ ପରିସମାପ୍ତି ଶାନ୍ତିର ଅନୁସନ୍ଧାନରେ । ସତେଯେପରି ସ୍ରଷ୍ଟାପୁରୁଷ ନିଜକୁ ଏହି ନିୟମ ମଧ୍ୟରେ ବାନ୍ଧି ଦେଇଛି । ଖୋଜି ବୁଲୁଛି ଚେନାଏ ମାଟିର ଠିକଣା । ଯେଉଁଠାରେ ଅନ୍ୟାୟ, ଅତ୍ୟାଚାର, ଶୋଷଣ ବିରୋଧରେ ଅନବରତ ସଂଗ୍ରାମ ଚାଲିଥିବ ଏବଂ ପ୍ରତିମୁହୂର୍ତ୍ତରେ ମଣିଷ ସ୍ୱପ୍ନ ଦେଖୁଥିବ ଏକ ନୂତନ ପୃଥିବୀର । ସେଇ ନୂତନ ପୃଥିବୀର ଆକାଶରେ ଚିକ୍‌ମିକ୍ କରୁଥିବ ଅସୁମାରୀ ଆଶାର କଅଁଳ କୁଆଁତାରାଟିଏ । ପ୍ରତିମୁହୂର୍ତ୍ତରେ ପ୍ରତୀକ୍ଷାରତ ଥିବ ଏକ ଭିନ୍ନ ରଂଗର ସକାଳ ପାଇଁ । ଯେଉଁ ସକାଳ ଆଗାମୀ କାଲିର ସୁନେଲି ଭବିଷ୍ୟର ବାର୍ତ୍ତାନେଇ ଆସିଥିବ । ତେଣୁ ସାହିତ୍ୟ ସୃଷ୍ଟିର ଆଦ୍ୟରୁ ଅଦ୍ୟାବଧି ପ୍ରତ୍ୟେକ ସୃଜନକର୍ମ ମନୁଷ୍ୟ ସମାଜର ଜୀବନକୁ ନେଇ ଆଗେଇ ଚାଲିଛି । ପୁରାଣ ଶାସ୍ତ୍ର ମଧ୍ୟ ଏଥିରୁ ବାଦ୍ ପଡ଼ିନାହିଁ । ଏହାର ପ୍ରତିବିମ୍ବ 'ଗୀତା'ରୁ ମଧ୍ୟ ଅବଲୋକନ କରାଯାଇପାରେ । ଗୀତାରେ ଭଗବାନ ଶ୍ରୀକୃଷ୍ଣଙ୍କର ଅର୍ଜ୍ଜୁନଙ୍କ ଉଦ୍ଦେଶ୍ୟରେ ନିମ୍ନୋକ୍ତ ଉକ୍ତିଟିରୁ ଏହା ସୂଚିତ ହୁଏ ।

"ଯଦା ଯଦା ହି ଧର୍ମସ୍ୟ ଗ୍ଲାନିର୍ଭବତି ଭାରତ
ଅଭ୍ୟୁତ୍‌ଥାନ୍‌ମଧର୍ମସ୍ୟ ତଦାତ୍ମାନଂ ସୃଜାମ୍ୟହମ୍
ପରିତ୍ରାଣାୟ ସାଧୂନାଂ ବିନାଶାୟ ଚ ଦୁଷ୍କୃତାମ୍
ଧର୍ମ ସଂସ୍ଥାପନାର୍ଥାୟ ସମ୍ଭବାମି ଯୁଗେ ଯୁଗେ ।" (୧)

ଭଗବତ୍ ଗୀତାର ଉପରୋକ୍ତ ବାଣୀ ଯୁଗେ ଯୁଗେ ଧର୍ମ ସ୍ଥାପନାର ବାର୍ତ୍ତା ପ୍ରଚାର କରେ । ସାଧୁ ମାନଙ୍କର ସୁରକ୍ଷା ଓ ସମାଜରେ ଅବ୍ୟବସ୍ଥା ପାଇଁ ଯେଉଁମାନେ ଦାୟୀ ସେମାନଙ୍କର ବିନାଶ ପାଇଁ ଯୁଗେ ଯୁଗେ ଈଶ୍ୱର ମଧ୍ୟ ଧରାପୃଷ୍ଠରେ ଅବତରଣ

କରନ୍ତି । ଉପରୋକ୍ତ ଶ୍ଳୋକଟିକୁ ଯଦି ଆମେ ଆଧୁନିକ ଦୃଷ୍ଟିଭଂଗୀରେ ବ୍ୟାଖ୍ୟା କରିବା ତା ହେଲେ ଏଠାରେ ଧର୍ମ ହେଉଛି – 'ମାନବଧର୍ମ' । ଯେତେବେଳେ ସମାଜରେ ମାନବ ଧର୍ମ ଭୂଲୁଣ୍ଠିତ ହୁଏ ସେତେବେଳେ ଏହାର ପୁନଃ ସଂସ୍ଥାପନ ପାଇଁ ଆରମ୍ଭ ହୁଏ ବିପ୍ଳବ । ଏହାକୁ ଆହୁରି ସରଳ ଭାଷାରେ ଉଦାହରଣ ମାଧ୍ୟମରେ ବୁଝାଇ ଦିଆଯାଇପାରେ । ସାମାନ୍ୟ ପିମ୍ପୁଡ଼ିଟିକୁ ଆଘାତ ଲାଗିଲେ ସେ ଏହାର ପ୍ରତିରୋଧ କରିବାକୁ ଯାଇ କାମୁଡ଼ି ଦିଏ । ସାମାନ୍ୟ ପିମ୍ପୁଡ଼ିଟିଏ ହୋଇ ଯଦି ଅନ୍ୟାୟ ଆଘାତ ବିରୋଧରେ ପ୍ରତିବାଦ କରିବାକୁ ଯାଇ କାମୁଡ଼ି ପାରୁଛି ତା ହେଲେ ମଣିଷ ନିଜର ସୁରକ୍ଷା ପାଇଁ ବିପ୍ଳବ ବା ପ୍ରତିବାଦ କରିବା ଉଚିତ । ତେଣୁ ସୃଷ୍ଟିର ଆରମ୍ଭରୁ ପ୍ରତ୍ୟେକ ପ୍ରାଣୀ ପାଖରେ ବିପ୍ଳବର ନିର୍ଯ୍ୟାସ ପରିଲକ୍ଷିତ ହୋଇଥାଏ ।

କିନ୍ତୁ ସ୍ଥାନ-କାଳ-ପାତ୍ର ଭେଦରେ ଏହାର ବହୁବିଧ ରୂପ ଦେଖିବାକୁ ମିଳେ । ଓଡ଼ିଆ ସାହିତ୍ୟର ଇତିହାସକୁ ପର୍ଯ୍ୟାଲୋଚନା କଲେ ଏହା ଲକ୍ଷ୍ୟ କରାଯାଇପାରିବ । ଆଦିକବି ସାରଳା ଦାସ, ବଳରାମ ଦାସ, ଜଗନ୍ନାଥ ଦାସ ପ୍ରମୁଖ ତଥାକଥିତ ସାମାଜିକ ପରଂପରାରୁ କିଛି ପାଦ ଆଗେଇ ଯାଇ ସମାଜକୁ ନୂତନ ଆଲୋକ ଦେଖାଇବାକୁ ସମର୍ଥ ହୋଇପାରିଥିଲେ । ରୀତିଯୁଗୀୟ କାବ୍ୟକାରଗଣ ଶୈଳୀ କ୍ଷେତ୍ରରେ ନୂତନତା ପ୍ରଦର୍ଶନ ସାଙ୍ଗକୁ ସାମନ୍ତ ସଭ୍ୟତାକୁ ପ୍ରାଧାନ୍ୟ ଦେଇଥିଲେ । ଆଧୁନିକତାର ଭିତ୍ତିଭୂମି ଉପରେ ରଚିତ ରାଧାନାଥ ଯୁଗୀୟ ସାହିତ୍ୟ ସାମସମୟିକ ସାମାଜିକ ଚିତ୍ରକୁ ନେଇ ରଚିତ ହେବା ସହିତ ସମାଜରେ ପରିଲକ୍ଷିତ ହେଉଥିବା ତ୍ରୁଟି ବିଚ୍ୟୁତିକୁ ସାହିତ୍ୟରେ ଦର୍ଶାଇ ପାରିଥିଲା । ସତ୍ୟବାଦୀ ଯୁଗର ଜାତୀୟତା ସାଙ୍ଗକୁ ସବୁଜ ଯୁଗର ରୋମାଣ୍ଟିକ୍ ଚିନ୍ତାଦର୍ଶ ପର୍ଯ୍ୟନ୍ତ ପ୍ରାୟ ପ୍ରତ୍ୟେକ ସମୟ ଖଣ୍ଡର ସାହିତ୍ୟରେ କିଛି କିଛି ନୂତନତା ପରିଲକ୍ଷିତ ହୋଇଥାଏ । ପ୍ରଗତିର ଅର୍ଥ ଯଦି ନୂତନତାର ଆନୟନ ହୁଏ; ତା' ହେଲେ ଓଡ଼ିଆ ସାହିତ୍ୟର ଆଦିକାଳରୁ ଏ ସଂପର୍କରେ ପ୍ରକୃଷ୍ଟ ନିଦର୍ଶନ ମିଳିଥାଏ । କିନ୍ତୁ ମାର୍କସବାଦର ସୁଦୃଢ଼ତତ୍ତ୍ୱଦର୍ଶନ ଉପରେ ଆଧାରିତ ଅର୍ଥରେ ଯେତେବେଳେ ପ୍ରଗତିବାଦକୁ ବିବେଚନା କରାଯାଏ ସେତେବେଳେ ତା'ର ସଂଜ୍ଞା ବଦଳିଯାଏ, ସ୍ୱରୂପରେ ପରିବର୍ତ୍ତନ ପରିଲକ୍ଷିତ ହୁଏ । ଆଲୋଚନା ଦୃଷ୍ଟିରୁ ଏଠାରେ ମାର୍କସୀୟ ଦୃଷ୍ଟିଭଂଗୀ ଭିତ୍ତିରେ ପ୍ରଗତିବାଦର ସଂଜ୍ଞା, ସ୍ୱରୂପ ନିରୂପଣ କରାଯାଇପାରେ ।

ସରଳ ଭାଷାରେ ବୁଝାଇ କହିଲେ ସମାଜରୁ ଶୋଷକ ଗୋଷ୍ଠୀର ଅନ୍ୟାୟ, ଅତ୍ୟାଚାର ବିରୋଧରେ ଦୃଢ଼ ପ୍ରତିବାଦ ସହିତ ଏହାର ମୂଳୋତ୍ପାଟନ ପାଇଁ ଶତ ପ୍ରତିଶତ ପ୍ରଚେଷ୍ଟା ସାଙ୍ଗକୁ ଏକ ସୁସ୍ଥ ସୁନ୍ଦର ସମାଜ ଗଠନର ପରିକଳ୍ପନା ମଧ୍ୟରୁ ସୃଷ୍ଟି ଲଭେ 'ପ୍ରଗତିବାଦ' । ଏହି ଚିନ୍ତାଧାରାକୁ ମୁଖ୍ୟତଃ ଯେଉଁ ସାହିତ୍ୟ ରୂପ ଦେଇଥାଏ

ତାହା ପ୍ରଗତିବାଦୀ ସାହିତ୍ୟ । ସମଗ୍ର ବିଶ୍ୱ ସାହିତ୍ୟରେ ଏହି ଚିନ୍ତାଧାରା ଏକ ସ୍ୱତନ୍ତ୍ର ଯୁଗର ଅୟମାରମ୍ଭ କରାଇ ପାରିଛି । ତନ୍ମଧ୍ୟରୁ ଓଡ଼ିଆ ସାହିତ୍ୟ ମଧ୍ୟ ବାଦ୍ ପଡ଼ିନାହିଁ । ଓଡ଼ିଆ ସାହିତ୍ୟରେ ମଧ୍ୟ ପ୍ରଗତିବାଦୀ ଚିନ୍ତାଧାରାର ଆନୟନ ଘଟିଛି । ଏହାର ଅଭ୍ୟୁତ୍‌ଥାନ ସଂପର୍କରେ ମତବ୍ୟକ୍ତ କରିବାକୁ ଯାଇ ଆଲୋଚକ 'ବିଷ୍ଣୁପଦ ଦାଶ' କହନ୍ତି –

"ବିଧିବଦ୍ଧ ଭାବରେ ଏହାର ବିକାଶ ପାଇଁ ଯେଉଁ ସମୟରେ ଗୋଷ୍ଠୀଗତ ଉଦ୍ୟମ ହୋଇଛି, ତାହାରି ଆବେଦନକୁ ଭିତ୍ତିକରି ଏହି ଭାବଧାରା ବା 'ଇଜମ୍' ଗୋଟିଏ ଯୁଗ ସାହିତ୍ୟ ସୃଷ୍ଟି କରିପାରିଛି । ଓଡ଼ିଆ ସାହିତ୍ୟରେ, ଭାରତୀୟ ସାହିତ୍ୟରେ ତଥା ବିଶ୍ୱ ସାହିତ୍ୟରେ ଏହିପରି ବିଧିବଦ୍ଧ ଉଦ୍ୟମ ଫଳରେ ଏହି ଭାବଧାରା ଏକ ସାହିତ୍ୟ ଯୁଗ ପ୍ରତିଷ୍ଠା କରିପାରିଛି ।"(୨)

'ପ୍ରଗତିବାଦର ଅନ୍ୟନାମ - ମାର୍କସବାଦ, ସାମ୍ୟବାଦ ବା ସମାଜବାଦୀ ଚିନ୍ତାଧାରା । ଏହା ଜନନାୟକ କାର୍ଲ ମାର୍କସଙ୍କ ଚିନ୍ତାଧାରାକୁ ନେଇ ପର୍ଯ୍ୟବେସିତ ହୋଇଥିବାରୁ ଏହାର ଅନ୍ୟନାମ ମାର୍କସ୍‌ବାଦ । ଏହି ସାହିତ୍ୟ ତତ୍ତ୍ୱ ସମାଜରେ ଦୃଷ୍ଟିଗୋଚର ହେଉଥିବା ଦୁଇଟି ଗୋଷ୍ଠୀ ଧନୀ-ଦରିଦ୍ର, ଜମିଦାର-କୃଷକ, ପୁଂଜିପତି-ଶ୍ରମିକ ଏମାନଙ୍କ ମଧ୍ୟରେ ଥିବା ପାର୍ଥକ୍ୟକୁ ନିରୂପିତ କରେ । ଏହି ଦୁଇ ପ୍ରକାରର ପରସ୍ପର ବିରୋଧୀ ଗୋଷ୍ଠୀମାନଙ୍କ ମଧ୍ୟରେ ସବୁ ସମୟରେ ସଂଘର୍ଷ ଲାଗିରହେ । ଧନୀ, ଜମିଦାର, ପୁଂଜିପତି ସର୍ବଦା ଦରିଦ୍ର କୃଷକ ଓ ଶ୍ରମିକ ମାନଙ୍କୁ ଶୋଷଣ କରେ । ଏମାନଙ୍କୁ ଶୋଷକ ଗୋଷ୍ଠୀ ନାମରେ ପ୍ରଗତିବାଦୀ (ମାର୍କସବାଦୀ) ସାହିତ୍ୟ ରୂପ ଦିଏ । ଏହି ଶୋଷକ ଗୋଷ୍ଠୀ ସବୁ ସମୟରେ ସମାଜରେ ବ୍ୟଭିଚାର ସୃଷ୍ଟି କରେ । ନିଜର ଶକ୍ତି ଓ ସାମର୍ଥ୍ୟର ପରାକାଷ୍ଠା ଦେଖାଇ ସ୍ୱାର୍ଥ ସାଧନ ପାଇଁ ଯେକୌଣସି ଉପାୟ ମଧ୍ୟ ଅବଲମ୍ବନ କରିବାକୁ ପଶ୍ଚାତ୍‌ପଦ ହୁଏ ନାହିଁ । ଠିକ୍ ସେମିତି ଅପର ଗୋଷ୍ଠୀଟି ଶୋଷକ ଗୋଷ୍ଠୀର କବ୍‌ଜାରେ ଅତି ସହଜରେ ଧରାଦିଏ । ଶୋଷକ ଗୋଷ୍ଠୀଟି ପ୍ରତି ମୁହୂର୍ତ୍ତରେ ତାକୁ ଶୋଷଣ କରିଚାଲେ । ଯେ ପର୍ଯ୍ୟନ୍ତ ଶୋଷିତଟି ନିଜର ଉପଯୁକ୍ତ ମର୍ଯ୍ୟାଦା, ଅଧିକାର ହାସଲ୍ କରି ନ ପାରିଛି ସେ ପର୍ଯ୍ୟନ୍ତ ସେ ବିଦ୍ରୋହ କରିଚାଲେ । ଏ ସଂପର୍କରେ 'ମାଓ - ସେ - ତୁଂଗ୍' କହନ୍ତି –

"Make - trouble, fall, make trouble again, fail again, till their doom."

Fight, fail, fight again, fail again fight again - till their victory." (3)

ଉପରୋକ୍ତ ବିଶ୍ଳେଷଣରୁ ପ୍ରତୀୟମାନ ହୁଏ ଯେ, ସମାଜରୁ ଧନତାନ୍ତ୍ରିକ ଆଧିପତ୍ୟର ବିଲୋପ ନ ଘଟିବା ଯାଏ, 'ପ୍ରଗତିବାଦ'ର ପ୍ରତିଷ୍ଠା ହୋଇପାରିବ ନାହିଁ । ତେଣୁ

'ପ୍ରଗତିବାଦ' ଏପରି ଏକ ସମାଜର ପରିକଳ୍ପନା କରେ, ଯେଉଁଠାରେ ଶ୍ରେଣୀ, ସଂକୀର୍ଣ୍ଣ ବାଧା ବନ୍ଧନ ନଥିବ, ନଥିବ ମଧ୍ୟ ମଣିଷ ଦ୍ୱାରା ମଣିଷର ଶୋଷଣ। ସାରା ଦୁନିଆ କହିଲେ ଗୋଟିଏ ସମାଜକୁ ବୁଝାଉଥିବ ।

ପ୍ରଗତିବାଦର ଏହି ସ୍ୱରୂପକୁ ଆମେ ବିଭିନ୍ନ ସାହିତ୍ୟିକଙ୍କ (ଯେଉଁମାନେ କି ଏହାକୁ ଆଧାର କରି ସାହିତ୍ୟ ରଚନା କରିଛନ୍ତି) ଦୃଷ୍ଟିରେ ଆଲୋଚନା କରିବା । ସମାଜରେ ପ୍ରଗତିବାଦର ଆନୟନ ପାଇଁ ଆମର ସାହିତ୍ୟିକ ମାନେ କେତେବେଳେ କୃଷକ ଶ୍ରେଣୀର ଉନ୍ନତି ପାଇଁ ଯଥାସମ୍ଭବ ପ୍ରଚେଷ୍ଟା କରିଛନ୍ତି ତ କେତେବେଳେ ଶ୍ରମିକ ମାନଙ୍କର ନ୍ୟାର୍ଯ୍ୟ ଅଧିକାର ପାଇଁ ସଂଗ୍ରାମ କରିଛନ୍ତି । ସେଥିପାଇଁ ନିଜେ ମଧ୍ୟ ବିପ୍ଳବୀ ପାର୍ଟିମାନ ଗଠନ କରି କୃଷକ, ଶ୍ରମିକ ଗୋଷ୍ଠୀଙ୍କୁ ସଚେତନ କରାଇବାର ଗୁରୁ ଦାୟିତ୍ୱ ବହନ କରିଛନ୍ତି । ବଂଗଳାର ବିପ୍ଳବୀ କବି ଚାରୁ ମଜୁମ୍‌ଦାର ମଧ୍ୟ ଏପରି ପାର୍ଟି ଗଠନ କରି ଜନଗଣଙ୍କୁ ସଚେତନ କରାଇଛନ୍ତି । ତାଂକ ଭାଷାରେ:-

"ଜନ ଗନତାନ୍ତ୍ରିକ ବିପ୍ଳବର ପଥ ହଲ୍, କୃଷକ ଓ ଶ୍ରମିକ ଶ୍ରେନୀର୍ ନେତୃତ୍ୱେ କୃଷି ବିପ୍ଳବେର ପଥେ ଗ୍ରାମାଞ୍ଚଲେ ବିପ୍ଳବୀ ସଂଗ୍ରାମେର୍ ଏଲାକା ଗଡ଼େ ତୋଲା ଏବଂ ସେଇ ବିପ୍ଳବୀ ସଂଗ୍ରାମେର୍ ଏଲାକାକେ ପ୍ରସାରିତ କରେ ଶହରକେ ଘିରେ ଫେଲା । XXX । ଏଇ ହଲ୍ ଭାରତ୍ ବର୍ଷେର୍ ମୁକ୍ତିର ଏକ ମାତ୍ର ସଠିକ୍ ମାର୍କସବାଦୀ ଲେନିନ୍ ବାଦୀ 'ପଥ' ।" (୪)

କବି ମଜୁମ୍‌ଦାର୍ କୃଷକ, ଶ୍ରମିକ ଗୋଷ୍ଠୀର ଉନ୍ନତି ପାଇଁ ପୃଥିବୀର କୋଣେ ଅନୁକୋଣେ ସଂଗ୍ରାମର ବାର୍ତ୍ତାକୁ ପ୍ରଚାର କରିଛନ୍ତି । କୃଷକ ସଂଗଠନ ଗଢ଼ି ସେମାନଙ୍କର ସମସ୍ୟାକୁ ଲୋକଲୋଚନକୁ ଆଣିବା ସହିତ ଭାରତ ବର୍ଷକୁ ଉନ୍ନତିର ମାର୍ଗରେ ପରିଚାଳିତ କରିବା ପାଇଁ ପ୍ରତିଶ୍ରୁତିବଦ୍ଧ ହୋଇଛନ୍ତି ।

ଓଡ଼ିଆ ସାହିତ୍ୟରେ ସ୍ରଷ୍ଟା ମାନଙ୍କ ଲେଖନୀରେ ମଧ୍ୟ ପ୍ରଗତିବାଦର ଏହି ବୈଶିଷ୍ଟ୍ୟକୁ ଖୋଜିଲେ ପାଇପାରିବା । ଶୋଷକ ଗୋଷ୍ଠୀ କେବଳ ଯେ ଧନର ପ୍ରାଚୁର୍ଯ୍ୟ ବଢ଼ାଇବା ପାଇଁ ଶୋଷଣ କରେ ତାହା ନୁହେଁ ବରଂ ନିଜ ହାତମୁଠାରେ କଳା, ସାହିତ୍ୟ, ସଂସ୍କୃତି, ଧର୍ମ, ଈଶ୍ୱର ବିଶ୍ୱାସକୁ ଧରି ରଖିଥାଏ । ସେମାନେ କହନ୍ତି ଅତୀତରେ ଯାହା କିଛି ରହି ଆସିଛି ସେସବୁ ଈଶ୍ୱର ସ୍ଥିରୀକୃତ । ତାହା ଚିରକାଳ ଏପରି ରହିଥିବ । ଅନ୍ୟ ଭାଷାରେ କହିଲେ ଚଳନ୍ତି ବ୍ୟବସ୍ଥାରେ କୌଣସି ପରିବର୍ତ୍ତନ କରାଯିବ ନାହିଁ । ଯେଉଁମାନେ ଏ କ୍ଷେତ୍ରରେ ଅସୁବିଧା ଭୋଗ କରନ୍ତି, ନୂତନତାର ଆଗମନ ପାଇଁ ପ୍ରଚେଷ୍ଟା କରନ୍ତି ସେମାନେ ଶୋଷକ ଶ୍ରେଣୀର ସ୍ତାବକ ପାଳଟିଥିବା ବ୍ୟବସ୍ଥା ବିରୋଧରେ

ପ୍ରତିକ୍ରିୟା ପ୍ରକାଶ କରନ୍ତି । ଏମାନଙ୍କୁ ପ୍ରେରଣା ଯୋଗାଇ ଦେବାକୁ ପାଇ ସଂଗ୍ରାମୀ ପ୍ରାଣନାଥ ପଟ୍ଟନାୟକ ମତବ୍ୟକ୍ତ କରନ୍ତି :-

"କଳା ସାହିତ୍ୟ ପ୍ରଭୃତି ସମାଜର ସଂସ୍କୃତିର ଆଧାର ଗୁଡ଼ିକ କୌଣସି ଗୋଟିଏ ଜାତିର ତୁଳନାତ୍ମକ ପ୍ରାଣ ସ୍ପନ୍ଦନର ନିଦର୍ଶନ । ଏହା ଜରିଆରେ ସମାଜର ଅତୀତ ଜୀବନ ବହୁ ପରିମାଣରେ ପ୍ରତିବିମ୍ବିତ ହୁଏ । ବର୍ତ୍ତମାନ ଜୀବନ ପ୍ରତିଭାତ ହୁଏ, ଏବଂ ଭବିଷ୍ୟତ ଜୀବନ ସ୍ପନ୍ଦିତ ହୁଏ । କିନ୍ତୁ ଏହି ସଂସ୍କୃତିର ଆଧାର ଗୁଡ଼ିକ ସ୍ୱାଧୀନ ଓ ଆତ୍ମ ପରିଚାଳିତ ନୁହଁନ୍ତି । ଏଗୁଡ଼ିକ କୌଣସି ନା କୌଣସି ରାଜନୈତିକ ଓ ଅର୍ଥନୈତିକ ପରିସ୍ଥିତିର ଆଦର୍ଶଗତ ପ୍ରତିବିମ୍ବ ଏବଂ ପ୍ରତିଷ୍ଠିତ ଶାସକ ଶ୍ରେଣୀର ପ୍ରଧାନ ବାହକ । ସମାଜର ତତ୍‌କାଳୀନ ଶାସକ ଶ୍ରେଣୀର ଆଦର୍ଶ କାର୍ଯ୍ୟକ୍ରମ ଓ ଲକ୍ଷ୍ୟକୁ କାର୍ଯ୍ୟକାରୀ କରିବା ଦିଗରେ ଏମାନେ ସହାୟକ ।"(୫)

ସମାଜର ପ୍ରତିବିମ୍ବ ସାହିତ୍ୟ ମାଧ୍ୟମରେ ପ୍ରକାଶିତ ହୁଏ । ମନୁଷ୍ୟକୁ ନେଇ ଗଢ଼ି ଉଠିଥିବା ସମାଜର ପ୍ରତ୍ୟେକ ସମୟ ଖଣ୍ଡର ପ୍ରତିଛବି ଏଥିରେ ପ୍ରତିଫଳିତ ହୋଇଥାଏ । ସାମାଜିକ, ଅର୍ଥନୈତିକ ସମସ୍ୟାଠାରୁ ଆରମ୍ଭ କରି ରାଜନୈତିକ ସମସ୍ୟା ଏଥିରେ ସ୍ଥାନ ପାଇଥାଏ । ଯେଉଁ ସାହିତ୍ୟ ଜନସାଧାରଣଙ୍କ ସମସ୍ୟାକୁ ରୂପ ଦିଏ ସେଥିରେ ପରୋକ୍ଷଭାବେ ମାନବଜାତି ପ୍ରତି ସମ୍ବେଦନ ନିହିତ ଥାଏ । ଏହି ମାନବବାଦୀ ଚିନ୍ତାଧାରା ପ୍ରଗତିବାଦର ଅନ୍ୟ ଏକ ପାର୍ଶ୍ୱ କହିଲେ ଅତ୍ୟୁକ୍ତି ହେବ ନାହିଁ । ଆଲୋଚକ ଶ୍ରୀଯୁକ୍ତ ଆଶିଷ୍ ମହାପାତ୍ରଙ୍କ ମତରେ –

"ସମାଜବାଦୀ ବା ସାମ୍ୟବାଦୀ ସାହିତ୍ୟ ଏକ ମହାନ୍ ବିଶ୍ୱ ଦୃଷ୍ଟିକୋଣରୁ ଆନୀତ । ଏହି ଦୃଷ୍ଟିକୋଣରେ ସମତା, ଭାତୃତ୍ୱ, ଶାନ୍ତି ଓ ସାମାଜିକ ନ୍ୟାୟର ଦେବଶଙ୍ଖ ନିନାଦିତ । ଦଳିତ, [illegible] ନିପୀଡ଼ିତ ଶ୍ରେଣୀର ଅଧିକାର, ସ୍ୱାଧୀନତା ଓ ନ୍ୟାୟ ପାଇଁ ଏକ ବିରାଟ ଅଂଗୀକାର ପ୍ରକାଶିତ ହୋଇଥାଏ ସମାଜବାଦୀ ସାହିତ୍ୟରେ ।"(୬)

'ସାମ୍ୟବାଦ' ବା 'ପ୍ରଗତିବାଦ' ସମଗ୍ର ମାନବ ଜାତିକୁ ଏକାକାର କରିଦେବାର ବାର୍ତ୍ତା ପ୍ରଚାର କରେ । ଧନୀ-ଦରିଦ୍ର ମଧ୍ୟରେ ତାରତମ୍ୟର ପ୍ରାଚୀର ଭାଙ୍ଗି ଦେବା ପାଇଁ 'ସମାନ୍-ଆୟ' ଉପରେ ଗୁରୁତ୍ୱାରୋପ କରେ । ରାଜା ଯେତିକି ଆୟ କରିବ ପ୍ରଜା ମଧ୍ୟ ସେତିକି ଆୟ କରିବ । ରାଜା ପ୍ରଜା ମଧ୍ୟରେ କୌଣସି ପାତର ଅନ୍ତର ରହିବ ନାହିଁ । କବି 'ରଘୁନାଥ ଦାସ'ଙ୍କ ମତରେ –

"ସାମ୍ୟବାଦ ମଣିଷ ମାରିବା ପାଇଁ ନୁହେଁ, ମଣିଷକୁ ବଞ୍ଚେଇବା ଲାଗି ବ୍ୟବସ୍ଥା । ରାଜାଠାରୁ ରାଜ୍ୟ ଛଡ଼ାଇ ନେଇଗଲେ ଜମିଦାରର ଜମିତକ ଚାଷୀକୁ ଦେଇ

ଦେଲେ, କଳକାରଖାନାକୁ ସରକାରୀ କରିଦେଲେ, ରାଜା ଆଉ ରାଜା ହୋଇନଥିବ, ଜମିଦାର ଓ ପୁଞ୍ଜିପତି ବୋଲି ଆଉ ଦଳେ ଲୋକ ନଥିବେ ।"(୭)

ପ୍ରଗତିବାଦର ଏହି ସ୍ୱରୂପକୁ ଦୃଷ୍ଟି ସମ୍ମୁଖରେ ରଖି ସାହିତ୍ୟିକ ମାନେ ଏହାର ସଂଜ୍ଞା ନିରୂପଣ କରିଛନ୍ତି । କବି ବ୍ରଜନାଥ ରଥଙ୍କ ଭାଷାରେ –

"ପ୍ରଗତିଶୀଳତା କହିଲେ ମୁଁ ବୁଝେ ଜୀବନର ଚଳମାନତା, ଯାହା ସମସ୍ତ ବାଧା-ବିଘ୍ନ, ଶୋଷଣ-କଷଣ, ଦୁଃଖ-ଯନ୍ତ୍ରଣା, ନୈରାଶ୍ୟ ଓ ହତୋତ୍ସାହକୁ ଅତିକ୍ରମ କରି ମଣିଷକୁ ବଞ୍ଚିବାର ପ୍ରେରଣା ଦିଏ । ଆଗେଇବାର ଉତ୍ସାହ ଦିଏ ଏବଂ ସକଳ, ଅନ୍ୟାୟ ଓ ଅବିଚାରକୁ ମୁକାବିଲା କରିବାର ସାହସ ଦିଏ । ସମାଜ ବ୍ୟବସ୍ଥାରେ ଯାହା ସୁସ୍ଥ ଜୀବନଧାରାର ପ୍ରତିକୂଳ, ଯାହା ସ୍ଥାଣୁତ୍ୱର ପରିଚାୟକ, ଯାହା ଅନ୍ୟାୟ ବିରୋଧରେ ଲଢ଼ିବାର ଦୃଢ଼ ମାନସିକତା ସୃଷ୍ଟି କରେ ଏବଂ ଏକ ଉନ୍ନତ ଜୀବନବୋଧର ଇଂଗିତଦେଇ ସୁଖୀ-ସମୃଦ୍ଧ ସମାଜର ମାନଚିତ୍ର ଅଙ୍କନ କରେ । ଏକ ବୃହତ୍ତର ମାନବିକ ସମ୍ବେଦନା ଓ ବିପୁଳ ଆନ୍ତରିକତା ଏହାର ମୂଳ ଭିତ୍ତି ।(୮)

* କବି ରଘୁନାଥ ଦାସଙ୍କ ମତରେ –

"ଭାବର ପ୍ରଖରତା ଓ ଭାଷାର ତେଜସ୍ୱୀତା ବିପ୍ଳବୀ ସାହିତ୍ୟର ବହିରାବରଣ ହୋଇପାରେ କିନ୍ତୁ ବିପ୍ଳବୀ ସାହିତ୍ୟ କେବଳ ଧ୍ୱଂସ ତତ୍ତ୍ୱର ପ୍ରଚାର କରିନପାରେ । ଏହା ଧ୍ୱଂସ ପରେ ନୂତନଦିନର ସୃଷ୍ଟି ପାଇଁ ଆହ୍ୱାନ ଉପସ୍ଥାପିତ କରେ ।" (୯)

* ସାମସମୟିକ କବି ହୋସେନ୍ ରବି ଗାନ୍ଧୀଙ୍କ ମତରେ –

"ପ୍ରଗତିବାଦୀ ତତ୍ତ୍ୱ ମୋ ମତରେ କୌଣସି ଏକ ନିର୍ଦ୍ଦିଷ୍ଟ ରାଜନୈତିକ ଦର୍ଶନ ଦ୍ୱାରା ପ୍ରଭାବିତ ନୁହେଁ । ସଂକ୍ଷେପରେ ଏହାକୁ 'Pro-people' ବା ସାଧାରଣ ମଣିଷଙ୍କ ସପକ୍ଷରେ ରଚିତ ସାହିତ୍ୟ ବୋଲି କୁହାଯାଇ ପାରିବ । ଏଥିରେ ଅତୀତର ରାଜା-ରାଣୀଙ୍କ ପ୍ରେମଠାରୁ ଆରମ୍ଭ କରି ପୌରାଣିକ ଦେବାଦେବୀଙ୍କ ଉପାଖ୍ୟାନ ଯାଏଁ ବା ଶ୍ଳୀଳ ଅଶ୍ଳୀଳ ପ୍ରେମ ପରଂପରା ଠାରୁ ନିଜର ଏକାକୀପଣ ବା ମୃତ୍ୟୁ ଚିନ୍ତା ଭୟମିଶ୍ରିତ ଆକୁଳତାର ସ୍ଥାନ ନଥାଏ । ପ୍ରଗତିଶୀଳ ସାହିତ୍ୟ ସାଧାରଣ ମଣିଷର ବଞ୍ଚି ରହିବାର ସଂଘର୍ଷକୁ ଉପଜୀବ୍ୟ କରି ଗଢ଼ି ଉଠିଛି । ଜାତୀୟ ମୁକ୍ତି ସଂଗ୍ରାମ, ଧନବାଦୀ ସାମାଜିକ ଆକ୍ରମଣରେ ନିର୍ଦ୍ଧନ ମଣିଷଟି ଆତ୍ମରକ୍ଷା କରିବା ପାଇଁ, ବଞ୍ଚିବା ପାଇଁ କରୁଥିବା ଲଢ଼େଇକୁ ପ୍ରଗତିବାଦୀ ସାହିତ୍ୟ ମାର୍ମିକ ଭାବେ ଚିତ୍ରଣ କରେ ।" (୧୦)

ଉପରୋକ୍ତ ମତାମତକୁ ଅନୁଧ୍ୟାନ କରି ଆମେ ଏହି ନିର୍ଦ୍ଧାରଣରେ ଉପନୀତ ହେବା ଯେ ପ୍ରଗତିବାଦୀ ସାହିତ୍ୟ ମଧ୍ୟରେ ସମଗ୍ର ମାନବ ଜାତିର ସ୍ୱର ଅନୁରଣିତ । ସମାଜରେ ସାମ୍ୟ, ମୈତ୍ରୀ, ପ୍ରୀତିର ବାର୍ତ୍ତା ପ୍ରଚାର କରିବା ସହିତ ଶ୍ରେଣୀ ବିହୀନ

ସମାଜର ପରିକଳ୍ପନା କରେ । ଦଳିତ ବର୍ଗର ଏହା ଆତ୍ମଲିପି । ଅସହାୟ ଜନତାର କରୁଣତାରେ ଏହା ଜର୍ଜରିତ । ତେଣୁ ଏ ସାହିତ୍ୟ ଯୁଗ ଯନ୍ତ୍ରଣା ଲଭୁଥିବା ଅଗଣିତ ମୁକ୍ତିକାମୀ ଜନତାର । ଏହା ହତାଶା, ନୈରାଶ୍ୟ, ଅତ୍ୟାଚାର ମଧ୍ୟରୁ ସଂଜାତ । ପୁରାତନ ପ୍ରଥା, ପଦ୍ଧତିରେ ପୂର୍ଣ୍ଣଛେଦ ପକାଇ ନୂତନତାର ସ୍ୱାଗତ ସର୍ଜନାର ଅନ୍ୟନାମ 'ପ୍ରଗତିବାଦ' । ଜଣେ ଭୋଗ କରୁଥିବା ସୁଖ ସୁବିଧା, ଧନ ଐଶ୍ୱର୍ଯ୍ୟର ସୁଷମ ବଣ୍ଟନ ମଧ୍ୟ ଏହା ଦ୍ୱାରା ସଂଗଠିତ ହୋଇଥାଏ । ପ୍ରଗତିବାଦୀ ସାହିତ୍ୟ ସମାଜରେ ଶାନ୍ତିର ବାତାବରଣ ପାଇଁ ମନୁଷ୍ୟର ମନରେ ଜାଗରଣ ସୃଷ୍ଟି କରେ । ସମାଜରେ ଯଦି ପ୍ରତିକ୍ରିୟା ସୃଷ୍ଟିକାରୀ ଶକ୍ତି ନଥାନ୍ତା ତା' ହେଲେ ସମାଜ ଜୀବନ 'ପ୍ରଗତି'ର ପଥରେ ଆଗୁସାର ହୋଇପାରନ୍ତା ନାହିଁ ।

## ପ୍ରଗତିବାଦ ଓ ମାନବବାଦ ମଧ୍ୟରେ ପ୍ରଭେଦ

ସମାଜର ଉନ୍ନତି ବିଧାନ କରୁଥିବା ବହୁବିଧ ବିଭାଗ ମଧ୍ୟରୁ ସାହିତ୍ୟ ହେଉଛି ଅନ୍ୟତମ । ସାହିତ୍ୟ କେବଳ ମନୁଷ୍ୟକୁ କଳ୍ପନାର ଇନ୍ଦ୍ରଜାଲ ମଧ୍ୟରେ ବିଚରଣ କରିବାକୁ ଉତ୍ସାହିତ କରେନାହିଁ ବରଂ ଏହା ମନୁଷ୍ୟର ହୃଦୟରେ ଜମାଟ ବାନ୍ଧିଥିବା ଅନ୍ୟାୟ, ଅତ୍ୟାଚାର ପ୍ରତି ନିଜର ସହଜାତ ପ୍ରତିକ୍ରିୟା ବ୍ୟକ୍ତ କରେ । ସମାଜରେ ବିଭେଦ ସୃଷ୍ଟି କରୁଥିବା ଅଶାନ୍ତ ଗୋଷ୍ଠୀଙ୍କର ଅନ୍ୟାୟ ରୂପକ ଟାଂଗରା ଭୂଇଁକୁ ଫଟାଇ ସେଠାରେ ଶାନ୍ତିର ଝରଣା ସୃଷ୍ଟି କରିଥାଏ ।ଏହି ଚିନ୍ତାଧାରା ଯୁଗେ ଯୁଗେ ସ୍ରଷ୍ଟାକୁ ଉଚ୍ଚାଙ୍ଗ ସାହିତ୍ୟ ସୃଷ୍ଟି କରିବାକୁ ପ୍ରେରଣା ଯୋଗାଇଥାଏ । ଏହାର ମୂଳରେ ଥାଏ ମନୁଷ୍ୟ ସମାଜର କଥା । ସମାଜ ମନୁଷ୍ୟକୁ ନେଇ ଗଠିତ । ମନୁଷ୍ୟ ଯଦି ଏଠାରେ ଅତ୍ୟାଚାରିତ, ଲାଞ୍ଛିତ ତା'ର ଦୁଃଖ ଯନ୍ତ୍ରଣା ପ୍ରତି ସମବେଦନା ପ୍ରକାଶ କରିବା ସାହିତ୍ୟିକର ପ୍ରମୁଖ କର୍ତ୍ତବ୍ୟ । ମନୁଷ୍ୟ ସମାଜର ଉନ୍ନତି ନ ହେଲେ ପ୍ରଗତି ସାଧିତ ହେବା ଅସମ୍ଭବ । ତେଣୁ ମନୁଷ୍ୟକୁ ବାଦ୍ ଦେଇ ସ୍ରଷ୍ଟାର ସୃଷ୍ଟିର ପରିକଳ୍ପନା କରାଯାଇ ନପାରେ । ଆମେ ବିଭିନ୍ନ ଇଜ୍‌ମିକ୍ ଗ୍ରହଣ କରି, ପ୍ରତୀକ, ଚିତ୍ରକଳ୍ପକୁ ଆଶ୍ରୟ କରି ଏହି ସାର୍ବକାଳୀକ ଚିନ୍ତାଧାରାକୁ ଏଡ଼ାଇ ଦେଇପାରିବା ନାହିଁ । ଏ ପ୍ରସଙ୍ଗରେ ମନେପଡ଼େ କବି ଚଣ୍ଡୀଦାସଙ୍କର ସେଇ ଯୁଗାନ୍ତକାରୀ ଉକ୍ତିରୁ ପଦେ –

"ଶୋଚନାରେ ମାନୁଷ୍ ଭାଇ
ସବାର୍ ଉପରେ ମାନୁଷ୍ ସତ୍ୟ
ତାର ଉପରେ ନାହିଁ ।"

ସଂସାରରେ ମନୁଷ୍ୟ ଶ୍ରେଷ୍ଠଜୀବର ପଦବାଚ୍ୟ । ସାହିତ୍ୟ ମଣିଷ ପାଇଁ, ମଣିଷର କଥା କହିବା ତାର ଧର୍ମ । ଏହି ସାର୍ବଜନୀନ ବ୍ୟକ୍ତିକୈନ୍ଦ୍ରିକତା ଏହାର ଗୁଣ ଧର୍ମକୁ

ବିନଷ୍ଟ କରେ । ସ୍ରଷ୍ଟା ମଧ୍ୟ ଜଣେ ମଣିଷ । ତାଙ୍କ ଭିତରେ ମଧ୍ୟ ରହିଛି ଏକ ସମ୍ବେଦନଶୀଳ ଭାବଧାରା । ତେଣୁ ସେ ତା'ରି ସୃଷ୍ଟି ମଧ୍ୟରେ 'ମାନବ'କୁ ପ୍ରାଧାନ୍ୟ ଦେବାକୁ ଆଗଭର ହେବ ହିଁ ହେବ । ସ୍ରଷ୍ଟାର ଏହି ଚିନ୍ତାଦର୍ଶ ତାକୁ ମଧ୍ୟ ଏକପ୍ରକାରର ଆତ୍ମସନ୍ତୋଷ ପ୍ରଦାନ କରିଥାଏ । ଯାହାକୁ ଆମେ 'ମାନବବାଦ' ବୋଲି ଆଖ୍ୟାୟିତ କରିଥାଉ ।

ସୃଷ୍ଟିର ଅୟମାରମ୍ଭରୁ ସ୍ରଷ୍ଟାର ଲେଖନୀ ଏହାର ବନ୍ଦନାଗାନ କରିଆସିଛି । ଆଦିକବି ବାଲ୍ମୀକିଙ୍କର ଶ୍ଳୋକରୁ ଏହା ପ୍ରମାଣିତ ହୁଏ ।

ଶ୍ଳୋକରେ କୁହାଯାଇଛି –

"ମା' ନିଷାଦ ପ୍ରତିଷ୍ଠାଂତ୍ୱମଗମ୍ ଶାଶ୍ୱତୀ ସମା
ଯତ୍ କ୍ରୌଞ୍ଚ ମିଥୁନାଦ୍ ଦ୍ୱେକମ୍‌ବଧୀତ କାମ ମୋହିତମ୍ ।"

ଶରାହତ କ୍ରୌଞ୍ଚ ଦଂପତିଙ୍କର କରୁଣତାରୁ ସୃଷ୍ଟିର ଆଦି ଶ୍ଳୋକ ନିସୃତ ହୋଇଥିଲା । ଯେଉଁଥିରେ କବି ପ୍ରାଣର ସମ୍ବେଦନା କ୍ରୌଞ୍ଚ ଦଂପତିଙ୍କ ପ୍ରତି ବ୍ୟକ୍ତ ହୋଇଥିଲା । ତେଣୁ ସାହିତ୍ୟ କଳ୍ପନା, ଐଶ୍ୱର୍ଯ୍ୟ, ପ୍ରାଚୁର୍ଯ୍ୟର ବାର୍ତ୍ତା ବହନ କରେ ନାହିଁ । ଏହା କବିର ହୃଦୟରେ ମନୁଷ୍ୟ ପାଇଁ ଜାତ ହେଉଥିବା ସମ୍ବେଦନା ମାଧ୍ୟମରେ ସମାଜ ସହିତ ଏକ ଯୋଗସୂତ୍ର ସ୍ଥାପନ କରେ । ଡଃ ହରେକୃଷ୍ଣ ମହତାବ୍‌ଙ୍କ ଚିନ୍ତାଧାରାକୁ ଏଠାରେ ଉଲ୍ଲେଖ କରାଯାଇପାରେ ।

"କଳା ଓ ସାହିତ୍ୟ ମନୁଷ୍ୟ - ମନୁଷ୍ୟ ମଧ୍ୟରେ ଯେଉଁ ପରିମାଣରେ ଭାବ-ସଂଯୋଗ କରିପାରନ୍ତି, ସେହି ପରିମାଣରେ ସେମାନେ ଉନ୍ନତ ଓ ସମୃଦ୍ଧ ହୁଅନ୍ତି ।" (୧୧)

ତେଣୁ ସାହିତ୍ୟରେ ମାନବବାଦର ରୂପାୟନ ଯେତିକି ବଳିଷ୍ଠ ହୁଏ, ସାହିତ୍ୟ ସେତିକି ସାର୍ବଜନୀନ, ଶାଶ୍ୱତ, ଚିରନ୍ତନ ପାଲଟି ଯାଏ । ଏହି ମାନବବାଦର ବିବିଧରୂପକୁ ଆମେ ମନୁଷ୍ୟ ସୃଷ୍ଟିର ଇତିହାସ ମଧ୍ୟରେ ଅନୁଧ୍ୟାନ କରିପାରିବା । ଆଦିମାନବ ଅରଣ୍ୟରେ ବାସ କରୁଥିଲା । ଜଂଗଲର ଫଳମୂଳ, ବଣ୍ୟଜନ୍ତୁଙ୍କର କଞ୍ଚାମାଂସ ଥିଲା ତାର ଖାଦ୍ୟ । କ୍ରମେ ସମୟର ପରିବର୍ତ୍ତନ ଘଟିବା ସଂଗେସଂଗେ ମନୁଷ୍ୟର ଚିନ୍ତାଶକ୍ତିରେ ପରିବର୍ତ୍ତନ ଦେଖାଦେଲା । ଅଗ୍ନିର ବ୍ୟବହାର ସାଙ୍ଗକୁ କୃଷିର ବ୍ୟବହାର ଜାଣିଲା । ବ୍ୟକ୍ତିକୈନ୍ଦ୍ରିକ ଜୀବନଯାପନ ଶୈଳୀକୁ ବାଦ୍‌ଦେଇ ଗୋଷ୍ଠୀ କୈନ୍ଦ୍ରିକ ସମାଜଜୀବନକୁ ଆପଣେଇ ନେଲା । ସୋପାନ ପରେ ସୋପାନ ଅତିକ୍ରମ କରି ବିଜ୍ଞାନ ଯୁଗରେ ମଣିଷ ପଦାର୍ପଣ କଲା । ମାନବବାଦ ପ୍ରାଥମିକ ପର୍ଯ୍ୟାୟରେ କେବଳ ବିକାଶବାଦୀ ମାନବବାଦ (Evolutionary Humanism) ଭାବରେ ପରିଗଣିତ

ହେଲା । ବିଜ୍ଞାନ ଯୁଗର ମନୁଷ୍ୟର ଚିନ୍ତାଧାରାରେ ପରିବର୍ତ୍ତନ ଘଟିବାରୁ ଏହି ବିକାଶବାଦୀ / ବିବର୍ତ୍ତନବାଦୀ ମାନବବାଦର ମଧ୍ୟ ପରିବର୍ତ୍ତନ ଘଟିଲା ଏବଂ ଏହା ସମାଜବାଦୀ ବା ବୈପ୍ଳବିକ ମାନବବାଦରେ ରୂପାନ୍ତରିତ ହେଲା । ଧୀରେ ଧୀରେ ଏହି ଦୁଇଟି ବାଦ (ISM) ମଧ୍ୟରେ ଭାଗ୍ୟ, ଅସ୍ତିତ୍ୱ, ସଂଶୟର ଅନୁପ୍ରବେଶ ଘଟିଲା । କିନ୍ତୁ ଏଗୁଡ଼ିକ ମୁଖ୍ୟତଃ ମଣିଷର ବ୍ୟକ୍ତିତ୍ୱର ପ୍ରତିଫଳନ କରିବାକୁ ଉଦ୍ଦିଷ୍ଟ ଥିଲା । ଏହି ଯେଉଁ ସମାଜବାଦୀ / ବୈପ୍ଳବିକ ମାନବବାଦର ଉନ୍ମେଷ ଘଟିଲା, ଏହାର ନାମକରଣରୁ ପ୍ରତିପନ୍ନ ହୁଏ ଯେ ବିପ୍ଳବ ଏବଂ ମାନବବାଦର ନିର୍ଯ୍ୟାସ ଏକ ସୂତ୍ରରେ ବନ୍ଧା । ତଥାପି ମଧ୍ୟ ଉଭୟଙ୍କ ମଧ୍ୟରେ କିଛି ବୈସାଦୃଶ୍ୟ ପରିଲକ୍ଷିତ ହୁଏ । ଆଲୋଚନା ମାଧ୍ୟମରେ ଏହାର ସାଦୃଶ୍ୟ ଓ ବୈସାଦୃଶ୍ୟକୁ ନିରୂପିତ କରାଯାଇପାରେ ।

ସମାଜରେ ଅଦ୍ୟାବଧି ଦୁଇଟି ଗୋଷ୍ଠୀ ବିଦ୍ୟମାନ । ଗୋଟିଏ ସବଳ ଅପରଟି ଦୁର୍ବଳ । ଦୁର୍ବଳ ଉପରେ ସବଳ ସବୁସମୟରେ ଅତ୍ୟାଚାର କରିଚାଲେ । ଦୁର୍ବଳ ନିକଟରେ ମାନସିକ ଶକ୍ତି, ସାମର୍ଥ୍ୟ ନଥାଏ ସବଳର ଅତ୍ୟାଚାରକୁ ପ୍ରତିରୋଧ କରିବା ପାଇଁ । ସବଳ ପକ୍ଷରେ ରାଜା, ସାମନ୍ତ, ଜମିଦାରମାନେ ଥିଲାବେଳେ ଦୁର୍ବଳ ପକ୍ଷରେ ଖଟିଖିଆ ପ୍ରଜାମାନେ ରହିଥାଆନ୍ତି । ପ୍ରଜାମାନେ ମିହନ୍ତ କରି ଧନ ଉପାର୍ଜ୍ଜନ କରନ୍ତି । ରାଜା, ସାମନ୍ତ ମାନେ ମିହନ୍ତ ନକରି ପ୍ରଜାଏ ଅର୍ଜିଲା ଧନକୁ ଭୋଗ କରନ୍ତି । ଏଥିପାଇଁ ସେମାନେ ଭିନ୍ନ ଭିନ୍ନ ମାଧ୍ୟମକୁ ଆଶ୍ରା କରନ୍ତି । କେତେବେଳେ ଏହା ଖୋଲାଖୋଲି ଲୁଣ୍ଠନ କରାଯାଏ ତ' କେତେବେଳେ ଉପାର୍ଜ୍ଜିତ ଫସଲରୁ ଭାଗ ନିଆଯିବା ସହିତ ଅଧିକ କର ଅସୁଲ୍ କରିବା ମାଧ୍ୟମରେ । ଏହା ସେମାନଙ୍କପାଇଁ ଏକପ୍ରକାର ଆଇନ୍ ଥିଲା କହିଲେ ଚଳେ । ଏମାନେ ହେଲେ ସମାଜରେ ଶାସକ ଗୋଷ୍ଠୀ । ଯିଏ ମିହନ୍ତ କଲା, ତା'ର ପିଲାଙ୍କୁ ସେ ପାଠ ପଢ଼ାଇ ପାରିଲା ନାହିଁ । ଭଲ ଲୁଗା କି ଭଲ ଖାଦ୍ୟ ମୁଠେ ଦେଇପାରିଲା ନାହିଁ । ଭାଗ୍ୟକୁ ଆଦରି ପଡ଼ିରହିଲା । ସେମାନଙ୍କର ସରଳତାର ସୁଯୋଗ ନେଇ ଶାସକଗୋଷ୍ଠୀ ପରଜନ୍ମର ସୁଖଭୋଗର ମିଛଆଶ୍ୱାସନା ଦେଇଥାଏ । ସମୟେସମୟେ ଏମାନେ ବିଦ୍ରୋହ କରି ସେମାନଙ୍କୁ ଗାଦିଚ୍ୟୁତ କରାଇ ଦିଅନ୍ତି ।

ରାଜା, ସାମନ୍ତଗୋଷ୍ଠୀର ବିଲୟ ଘଟେ ସତ, କିନ୍ତୁ ସମାଜ ବ୍ୟବସ୍ଥାରେ କୌଣସି ପରିବର୍ତ୍ତନ ହୁଏ ନାହିଁ । ରାଜା, ସାମନ୍ତମାନଙ୍କର ସ୍ଥାନ ନିଏ ପୁଂଜିପତି ଗୋଷ୍ଠୀ । ଏହି ପ୍ରକାର ସମାଜବ୍ୟବସ୍ଥାରେ ମଧ୍ୟ ଅନୁରୂପ କଥା ପରିଲକ୍ଷିତ ହୁଏ । ଯୁଗ ଯୁଗ ଧରି ସମାଜରେ ଏହି ପ୍ରକାରର ଯେଉଁ ଅବ୍ୟବସ୍ଥା ପରିଲକ୍ଷିତ ହୁଏ ସେଥିରେ ମାନବିକ ମୂଲ୍ୟବୋଧ କ୍ଷୁଣ୍ଣ ହୁଏ । ସଚେତନଶୀଳ ସ୍ରଷ୍ଟାମାନେ ନିଜର ସୃଷ୍ଟି ମାଧ୍ୟମରେ ସଂଗ୍ରାମ

କରିବା ପାଇଁ ପ୍ରେରଣା ପ୍ରଦାନ କରନ୍ତି । ସେଥିପାଇଁ ବୈପ୍ଳବାତ୍ମକ ପନ୍ଥା ଅବଲମ୍ବନ କରିବାକୁ ମଧ୍ୟ ଏମାନେ ପଛଘୁଞ୍ଚା ଦିଅନ୍ତି ନାହିଁ । ଏହାକୁ ଆମେ 'ପ୍ରଗତିବାଦ'ର ଆଖ୍ୟା ପ୍ରଦାନ କରିଥାଉ । ସମାଲୋଚକ ଆଶିଷ୍ ମହାପାତ୍ରଙ୍କ ଭାଷାରେ –

"ସମାଜରେ ଐଶ୍ୱର୍ଯ୍ୟର ଗଜଦନ୍ତ ମୀନାର୍‌ରେ ଶୋଇରହି ପଦ୍ମମୃଣାଳ ଖାଉଥିବା ଶୋଷକ ମଣିଷଠାରୁ ନିଜର ଅର୍ଥନୈତିକ, ସାମାଜିକ ଓ ରାଜନୈତିକ ଅଧିକାର ଛଡ଼େଇ ଆଣିବା ପାଇଁ ଶ୍ରେଣୀ ସଂଗ୍ରାମର ଆବଶ୍ୟକତା ପଡ଼େ । ତେଣୁ ସାମାଜିକ, ଅର୍ଥନୈତିକ ଓ ରାଜନୈତିକ ଅଧିକାର ପାଇଁ ବିପ୍ଳବ ମାନ ସଂଗଠିତ ହୋଇଛି ଆବାହମାନ କାଳରୁ ।" (୧୨)

ଆଜିର ସମାଜ ଜୀବନରେ ମନୁଷ୍ୟକୁ ବଞ୍ଚିବା ପାଇଁ ଆଗକୁ ଯିବାପାଇଁ ସାହିତ୍ୟ ହିଁ କେବଳ ପ୍ରେରଣା ପ୍ରଦାନ କରେ । ପ୍ରଗତିର ପଥରେ ଯାହା ସବୁ ଅନ୍ତରାୟ ସୃଷ୍ଟି କରେ ସେ ସବୁର ବିଲୋପ କିପରି କରାଯାଇପାରିବ ସେ ସଂପର୍କରେ ପ୍ରଗତିବାଦ ସଚେତନ କରାଏ । ପାରଂପରିକ ଧର୍ମ, ଈଶ୍ୱର ବିଶ୍ୱାସ ଉପରେ ଆସ୍ଥା ସ୍ଥାପନ ନକରି ବୈପ୍ଳବାତ୍ମକ ପନ୍ଥା ଅବଲମ୍ବନ କରିବାକୁ ଶ୍ରେୟ ମଣିଥାଏ । ବୈପ୍ଳବାତ୍ମକ ପନ୍ଥା ଅବଲମ୍ବନ ହେଉଛି ଆଲୋଚନାର ପ୍ରଥମ ପର୍ଯ୍ୟାୟ । ଯାହା ମାଧ୍ୟମରେ ସାମ୍ୟ, ମୈତ୍ରୀ, ଶାନ୍ତିର ଆନୟନ କରାଯାଇପାରିବ । ଯେତେବେଳେ ସାହିତ୍ୟରେ ମନୁଷ୍ୟର ଯନ୍ତ୍ରଣା ଦୁଃଖ ପ୍ରତି ସମବେଦନା ପ୍ରକାଶ ପାଏ ସେତେବେଳେ ତାହା ବିପ୍ଳବର ବଜ୍ର ନିର୍ଘୋଷ ସ୍ୱର ଉଚ୍ଚାରଣ ନକରି ମାନବତାବାଦର ଏକ ଶାନ୍ତ, କୋମଳ ସ୍ୱର ଉଚ୍ଚାରଣ କରେ । ଏଥିରେ ଦରଦୀ ପ୍ରାଣର ଆକୁଳ କ୍ରନ୍ଦନ ରହିଥାଏ । ଭାଂଗିବାର ମନ୍ତ୍ର ନଥାଏ ବରଂ ଗଢ଼ିବାର ସୁନେଲୀ ସ୍ୱପ୍ନର ବାର୍ତ୍ତାକୁ ଏହା ବହନ କରିଥାଏ ।ପ୍ରାବନ୍ଧିକ ଚିତ୍ତରଂଜନ ଦାସଙ୍କ ମତରେ "ସଂଗ୍ରାମ ଓ ବିପ୍ଳବ କହିଲେ ସାଧାରଣତଃ ଭାଂଗିଦେବାକୁ ବୁଝାଇଥାଏ । କିନ୍ତୁ ଗଢ଼ିବାର ଆଗ୍ରହ ଉପରେ ଜୋର୍ ଦେଇ ଗାନ୍ଧୀ ପୃଥିବୀର ଇତିହାସରେ ଏକ ଅଦ୍‌ଭୂତ ବିପ୍ଳବ ସୃଷ୍ଟି କରି ପାରିଲେ ।" (୧୩) ଏଠାରେ ପ୍ରାବନ୍ଧିକ ଗାନ୍ଧିଜୀଙ୍କ ଅହିଂସା ମାର୍ଗ ଉପରେ ପ୍ରାଧାନ୍ୟ ଆରୋପ କରିଛନ୍ତି । ଯାହାକି ମାନବବାଦର ଅନ୍ୟତମ ସଫଳ ଉଦାହରଣ ।

ଉପରୋକ୍ତ ଆଲୋଚନାରୁ ପ୍ରତୀୟମାନ ହୁଏ ଯେ 'ମାନବବାଦ' ଯେଉଁ ସମାଜର ପରିକଳ୍ପନା କରେ ସେଥିରେ ହିଂସା ଦ୍ୱେଷର ସ୍ଥାନ ନଥାଏ । ସଭିଏଁ ସେଠାରେ ସୁଖରେ କାଳାତିପାତ କରୁଥାଆନ୍ତି । ଖାଦ୍ୟ ବସ୍ତ୍ର, ବାସଗୃହ କୌଣସିଥିରେ କାହାରି ଅଭାବ ରହେନାହିଁ । ଆଦର୍ଶ ଜୀବନବୋଧର ସ୍ତୁତି ଗାନ କରିବାକୁ ଯାଇ ମାନବବାଦ ଉଚ୍ଚାରଣ କରେ ସଫଳତାର ସେଇ ବୀଜମନ୍ତ୍ର –

"କବିତା ଗଢ଼େ ଏକ ବିରାଟ ସମାଜର
ସବୁରି ପାଇଁ ଯହିଁ ବସ୍ତିରେ ହେଲେ ଘର ।
ସକଳେ ଲଭିବାକୁ ମୁଠାଏ ଦୁଧଭାତ
ଯୋଗ୍ୟ ଯେତେ ଯହିଁ ବାଳକ ବାଳିକା ତ
ଦୁଇଟା ଲୁଗାଜାମା ସବୁରି ପାଇଁ ମିଳେ
ପଢ଼ିବା ପାଇଁ ବାଧା କାହାରି ନାହିଁ ତିଳେ
ବେକାର ରହିବାକୁ ନାହିଁଟି ଅଧିକାର
ସବୁରି ପାଇଁ କାମ ଯୋଗାଏ ସରକାର ।
କହିବା ପାଇଁ କଥା ସବୁରିଦାବି ଅଛି
ମୁଁ ସେଇ ସମାଜରକବିତା ବସେ ରଚି ।" (ଆଗାମୀ)

ମାନବବାଦର ମନ୍ତ୍ର ଉଚ୍ଚାରଣ କରୁଥିବା ଏହି କବିତାଟିରୁ- ସାଧାରଣ ଜନତାର ଉନ୍ନତି ନ ହେଲେ ଯେ ଜାତିର ଉନ୍ନତି ଅସମ୍ଭବ ତାହା ପ୍ରତିପନ୍ନ ହୁଏ । ତେଣୁ ପ୍ରତ୍ୟେକ ମଣିଷକୁ ସ୍ୱାବଲମ୍ବୀ ହେବାକୁ ପଡ଼ିବ, ସଚେତନ ହେବାକୁ ପଡ଼ିବ । ବୈପ୍ଳବାତ୍ମକ ପନ୍ଥା ଅବଲମ୍ବନ ନକରି ଶାନ୍ତି ପୂର୍ଣ୍ଣ ଉପାୟରେ ଦେଶ ଓ ଜାତିର ଉନ୍ନତି କରାଯାଇପାରିବ । ପ୍ରାବନ୍ଧିକ 'ଡଃ ବୈଷ୍ଣବ ଚରଣ ସାମଲ' ମାନବବାଦର ସରଳ ବ୍ୟାଖ୍ୟା କରିବାକୁ ଯାଇ ମତପ୍ରଦାନ କରନ୍ତି –

"ସାହିତ୍ୟ କହିବ ସେହି ଏକ ମଣିଷ ପରିବାରର କଥା, ହତ୍ୟା, ଲୁଣ୍ଠନ, ଧର୍ଷଣ ଓ ବର୍ବରତା ସାହିତ୍ୟର ପୁଂଜି ହେବ ନାହିଁ । ହେବ ମଣିଷ ପଣିଆ । ମଣିଷକୁ ମଣିଷର ଭଲ ପାଇବା ହୋଇଯିବ ସାହିତ୍ୟର ବାଣୀମନ୍ତ୍ର । ଧ୍ୱଂସ ନୁହେଁ, ସର୍ଜନର ସ୍ୱପ୍ନ ହେବ ସାହିତ୍ୟର ମୋହନ ବଂଶୀ । ମୃତ୍ୟୁ ନୁହେଁ, ଅମୃତ ହେବ ଉଦ୍ଦାମ ଆକାଂକ୍ଷା । ଏକ ଆଧାତ୍ମ ଉଦ୍ଦୀପିତ ଭାବଧାରା ସାହିତ୍ୟକୁ ରସାପ୍ଳୁତ କରିଦେବ ।" (୧୪)

ଉଭୟ ମତବାଦ ସଂପର୍କରେ ଅବଗତ ହେବା ପରେ ଆମେ ଏହି ନିର୍ଯ୍ୟାସରେ ଉପନୀତ ହେବା ଯେ 'ପ୍ରଗତିବାଦ' ଓ 'ମାନବବାଦ' ମଧ୍ୟରେ ପ୍ରଭେଦ ଏତିକି ଯେ ଉଭୟ ଭିନ୍ନ ମାର୍ଗରେ ସମସ୍ୟାର ସମାଧାନ କରିଥାଆନ୍ତି । ପ୍ରଗତିବାଦ ବିପ୍ଳବକୁ ମୁଖ୍ୟ ଆୟୁଧ ଭାବରେ ଗ୍ରହଣ କରୁଥିବା ବେଳେ, ମାନବବାଦ ଶାନ୍ତି, ମୈତ୍ରୀକୁ ମୁଖ୍ୟ ସ୍ଥାନ ପ୍ରଦାନ କରେ । ଠିକ୍ ସେମିତି ଉଭୟ ମତବାଦର ଅନ୍ତଃରୂପ ଗୋଟିଏ । ଉଭୟ ଚିନ୍ତାଦର୍ଶ ବାହାରକୁ ସମାନ୍ତରାଳ ସରଳରେଖା ପରି ପ୍ରତୀୟମାନ ହେଉଥିଲେ ମଧ୍ୟ ଆଭ୍ୟନ୍ତରୀଣ ଗୁଣାବଳୀକୁ ତର୍ଜମା କଲେ ଜଣାଯାଏ ଯେ ଉଭୟ ଗୋଟିଏ ବିନ୍ଦୁରେ ମିଳିତ ହୁଅନ୍ତି । ତାହା ହେଉଛି ମନୁଷ୍ୟ ସମାଜର ଉନ୍ନତି । ପ୍ରଗତିବାଦ ନିପୀଡ଼ିତ

ମନୁଷ୍ୟର ଶୋଷଣକୁ ମୁଖ୍ୟସ୍ଥାନ ପ୍ରଦାନ କରୁଥିଲାବେଳେ ମାନବବାଦ ମଧ୍ୟ ମନୁଷ୍ୟର ଦୁଃଖ, ଯନ୍ତ୍ରଣା ଓ ତତ୍‌ପ୍ରତି ଲେଖକୀୟ ସମ୍ବେଦନାର ପରିପ୍ରକାଶ ଘଟାଏ । ଏଠାରେ ଗୋଟିଏ ପ୍ରଶ୍ନ ମନକୁ ଆସେ ଯଦି ଉଭୟ ମତବାଦର ମୂଳରେ ମଣିଷ ସମାଜ, ତା ହେଲେ ଉଭୟଙ୍କ ମଧ୍ୟରେ ପାର୍ଥକ୍ୟ କାହିଁକି ? ପ୍ରଥମେ କରାଯାଇଥିବା ଆଲୋଚନାରୁ ପ୍ରତୀୟମାନ ହୁଏ ଯେ ସୃଷ୍ଟିର ଅୟମାରମ୍ଭ କାଳରୁ 'ମାନବ ବାଦ ଓ ପ୍ରଗତିବାଦ' ଏକ ସୂତ୍ରରେ ବନ୍ଧା । କିନ୍ତୁ ଧୀରେ ଧୀରେ ବହୁ ତତ୍ତ୍ୱ, ଦର୍ଶନ, ଚିନ୍ତାଚେତନାର ଅନୁପ୍ରବେଶ ଉଭୟଙ୍କୁ ଉଭୟଙ୍କର ଗତିପଥ ଦେଖାଇ ଦେଇଛି । ଏ ପ୍ରସଂଗରେ ଶ୍ରୀଯୁକ୍ତ ମନମୋହନ ମିଶ୍ରଙ୍କର ମତାମତଟି ଗ୍ରହଣ ଯୋଗ୍ୟ ।

"ମାର୍କସ୍‌ବାଦର ବିକାଶ ଓ ପ୍ରକାଶ ପୂର୍ବରୁ ମାନବବାଦ x x x x ଯାହାର ଉପଯୋଗୀ ଉଦାହରଣ ହେଉଛି ଏହି ପ୍ରାଚୀନ ଶ୍ଳୋକଟି "ସର୍ବେ ଭବନ୍ତୁ ସୁଖୀନଃ" । ଏହି ମାନବବାଦ, ପ୍ରଗତିବାଦ ଥିଲା, ମାତ୍ର ମାର୍କସ୍‌ବାଦ ନଥିଲା । ମାର୍କସ୍‌ବାଦର ବିକାଶ ଓ ପ୍ରକାଶ ପରେ ସବୁବାଦ ଯଥା ସାମ୍ୟବାଦ, ପ୍ରଗତିବାଦ ଓ ମାନବବାଦ ପ୍ରଭୃତି ବୈଜ୍ଞାନିକ ପଦ୍ଧତିରେ ପରୀକ୍ଷିତ ହେବାକୁ ଲାଗିଲା । (୧୫)

ସାହିତ୍ୟ ସୃଷ୍ଟିର ଅୟମାରମ୍ଭ କାଳରୁ ମାନବବାଦର ସତ୍ତା ଓ ସ୍ୱରୂପ ବିଦ୍ୟମାନ ଥିଲା । ସମାଜ ଜୀବନର ଉନ୍ନତି, ପ୍ରଗତିପାଇଁ ଯୁଗେ ଯୁଗେ ଏହା ସ୍ୱରଉତ୍ତୋଳନ କରୁଥିଲା । ସ୍ଥାନ-କାଳ-ପାତ୍ର ନିର୍ବିଶେଷରେ ଏହାର ରୂପରଂଗ ପରିବର୍ତ୍ତିତ ହୋଇ ଏକ ନିର୍ଦ୍ଦିଷ୍ଟ ବିଧିବଦ୍ଧ ରୂପ ପରିଗ୍ରହ କଲା । ବାହ୍ୟ ରୂପରେ ଭିନ୍ନତା ପରିଲକ୍ଷିତ ହେଉଥିଲେ ମଧ୍ୟ ଉଭୟ ଚିନ୍ତାଧାରାର କେନ୍ଦ୍ରସ୍ଥଳୀ ହେଉଛି ଗୋଟିଏ । ତାହା ହେଉଛି - "ଉନ୍ନତ ସମାଜ ଗଠନ" ଓ ମଣିଷର ସର୍ବାଙ୍ଗୀନ କଲ୍ୟାଣ । ତେଣୁ ପ୍ରଗତିବାଦ ଭିତରେ ମାନବତାବାଦ କ୍ଷୀରନୀର ପରି ତଲ୍ଲୀନ୍ । ଉଭୟ ମତବାଦର ଲକ୍ଷ୍ୟ ଯାବତୀୟ ଶୋଷଣ, ପୀଡ଼ନ ଓ ସ୍ୱେଚ୍ଛାଚାରିତାକୁ ପ୍ରତିହତକରି ଏକ ବିଶ୍ୱକଲ୍ୟାଣକାମୀ ମାନବ ସମାଜ ଗଠନ ।

## ମାର୍କସ୍‌ବାଦୀ ଚିନ୍ତାଧାରାର ଉନ୍ମେଷ ଓ ଉତ୍ତରଣ

ପୂର୍ବ ଆଲୋଚନାରେ ଅଭିହିତ ହେଲା ଯେ, ମାର୍କସ୍‌ବାଦୀ ଚିନ୍ତାଧାରାର ଅନୁପ୍ରବେଶ ହିଁ ପ୍ରଗତିବାଦ ମଧ୍ୟରୁ ମାନବବାଦକୁ ବାହାର କରି ଏକ ନୂତନ ରୂପ ପ୍ରଦାନ କଲା । ବର୍ତ୍ତମାନ ଏହି ମାର୍କସ୍‌ବାଦୀ ଚିନ୍ତାଧାରା କ'ଣ ? ଏହାର ଉନ୍ମେଷ କେବେ ଘଟିଥିଲା ଓ ଏହାର ଉତ୍ତରଣ ସଂପର୍କରେ ସବିଶେଷ ଆଲୋଚନାରୁ ଏଥି ସଂପର୍କିତ ତଥ୍ୟ ଉନ୍ମୋଚିତ ହୋଇପାରିବ। ପ୍ରଖ୍ୟାତ ଦାର୍ଶନିକ କାର୍ଲମାର୍କସ୍‌ଙ୍କ ତାତ୍ତ୍ୱିକ ଦର୍ଶନ 'ମାର୍କସ୍‌ବାଦ' ନାମରେ ପରିଚିତ । ମାର୍କସ୍‌ବାଦର ସୃଷ୍ଟି ପୂର୍ବରୁ ପୃଥିବୀରେ

ତିନୋଟି ରାଷ୍ଟ୍ରର ଜନସାଧାରଣ ତିନୋଟି ବିଷୟରେ ବେଶ୍ ପାରଦର୍ଶିତା ଅର୍ଜନ କରିଥିଲେ । ଜର୍ମାନ୍‌ମାନେ ଦର୍ଶନ କ୍ଷେତ୍ରରେ, ଇଂଲଣ୍ଡର ଅଧିବାସୀମାନେ ଅର୍ଥନୀତି କ୍ଷେତ୍ରରେ ଓ ଫରାସୀମାନେ ସମାଜବାଦୀ ବିପ୍ଳବ କ୍ଷେତ୍ରରେ ଯଥେଷ୍ଟ ଉଚ୍ଚରେ ପହଞ୍ଚି ପାରିଥିଲେ । ଏହି ତିନୋଟି ତାତ୍ତ୍ୱିକ ବିଚାରଧାରାକୁ ମାର୍କସ୍‌ବାଦ ଏକ ପରିପୂର୍ଣ୍ଣ ରୂପ ପ୍ରଦାନ କଲା । କାରଣ ଏହା ବୈଜ୍ଞାନିକ ସମ୍ମତ ଚିନ୍ତାଧାରା ଉପରେ ଆଧାରିତ ଥିଲା । ଏହି ମତବାଦର ସୃଷ୍ଟିକର୍ତ୍ତା ଓ ତାଙ୍କର ଜୀବନ ଦର୍ଶନରୁ ଏ ସଂପର୍କରେ ସବିଶେଷ ବିବରଣୀ ଆମେ ପାଇପାରିବା ।

ମହାନ୍ ଦାର୍ଶନିକ ମାର୍କସ୍ ୧୮୧୮ ମସିହାରେ ଜର୍ମାନ୍‌ର ଟ୍ରିୟର ସହରରେ ଜନ୍ମ ଗ୍ରହଣ କରିଥିଲେ । ବିଶ୍ୱବିଦ୍ୟାଳୟରେ ଅଧ୍ୟୟନ କରୁଥିବା ସମୟରେ ତାଙ୍କର ଦର୍ଶନ ଶାସ୍ତ୍ର ପ୍ରତି ଗଭୀର ଅନୁରାଗ ପରିଲକ୍ଷିତ ହୋଇଥିଲା । ତତ୍‌କାଳୀନ ସମୟରେ ଜର୍ମାନୀରେ ଯଥେଷ୍ଟ ପ୍ରଭାବ ବିସ୍ତାର କରିଥିବା ହେଗେଲ୍‌ଙ୍କ ଦାର୍ଶନିକ ମତବାଦ ମାର୍କସଙ୍କୁ କିଛି ପରିମାଣରେ ଆଲୋଡ଼ିତ କରିଥିଲା । ହେଗେଲ୍‌ଙ୍କ ଦର୍ଶନ ମୁଖ୍ୟତଃ ଭାବବାଦ ଉପରେ ପ୍ରାଧାନ୍ୟ ଆରୋପ କରିଥିଲା । ତାଙ୍କର ଯୁକ୍ତିଥିଲା – "ଆତ୍ମାର ବିକାଶ ହେଉଛି ଏକ ଗୁରୁତ୍ୱପୂର୍ଣ୍ଣ ପ୍ରସଙ୍ଗ । ଏହାର ବିକାଶରେ ପ୍ରକୃତିର ବିକାଶ ଘଟେ । ପ୍ରକୃତିର ବିକାଶରେ ସମାଜ ବିକଶିତ ହୁଏ । ସମାଜ ବିକାଶ ସମ୍ବନ୍ଧୀୟ ହେଗେଲୀୟ ମତବାଦକୁ ସେତେବେଳେ ମାର୍କସ୍ ନୀରବ ସମର୍ଥନ ଜଣାଉଥିଲେ । ମାର୍କସ୍‌ଙ୍କ ଜୀବନରେ ହେଗେଲ୍‌ଙ୍କ ଚିନ୍ତାଦର୍ଶର ବହୁଳ ପ୍ରଭାବ ପରିଲକ୍ଷିତ ହୁଏ । ହେଗେଲ୍‌ଙ୍କ ବସ୍ତୁବାଦୀ ବିପ୍ଳବାତ୍ମକ ସିଦ୍ଧାନ୍ତମାନ ମାର୍କସ୍‌ଙ୍କୁ ବହୁଭାବରେ ପ୍ରଭାବିତ କରିଥିଲା । ତେଣୁ କେବଳ ମନୁଷ୍ୟ ଜୀବନ କାହିଁକି ସମାଜ ଜୀବନରେ ଯେ ଦର୍ଶନର ଗୁରୁତ୍ୱପୂର୍ଣ୍ଣ ଭୂମିକା ରହିଛି, ଏ ସଂପର୍କରେ ମାର୍କସ୍ ଚିନ୍ତା କରିବାକୁ ଲାଗିଲେ । କାର୍ଲମାର୍କସ୍‌ଙ୍କ ଜୀବନୀରୁ ତାଙ୍କର ଚିନ୍ତାଦର୍ଶର ପୃଷ୍ଠଭୂମି ସଂପର୍କରେ ବହୁ ତଥ୍ୟ ପ୍ରତିପାଦିତ ହୋଇଥାଏ । ସେ ସଂପର୍କରେ କିଞ୍ଚିତ ଆଲୋଚନା ନିମ୍ନରେ ପ୍ରଦତ୍ତ ହେଲା ।

ମାର୍କସ୍ ୧୮୪୧ ମସିହାରେ 'ଜେନା' ବିଶ୍ୱବିଦ୍ୟାଳୟରୁ ଦର୍ଶନ ଶାସ୍ତ୍ରରେ ଡକ୍ଟରେଟ୍ ଉପାଧି ଲାଭ କଲେ। ତତ୍‌କାଳୀନ ସମୟରେ "ରାଇନିଶେ ଜାଇତୁଙ୍ଗ" ନାମକ ଏକ ବୈପ୍ଳବିକ ପତ୍ରିକା ପ୍ରକାଶିତ ହେଉଥିଲା । ମାର୍କସ୍ ଏହି ପତ୍ରିକାର ସଂପାଦନା ମଣ୍ଡଳୀରେ ଯୋଗ ଦେଲେ । ଯଦିଓ ଏହା ସ୍ୱଳ୍ପ ସମୟ ପାଇଁ ପ୍ରକାଶିତ ହେଉଥିଲା ଏହା ହିଁ ଥିଲା ମାର୍କସ୍‌ଙ୍କ ଦାର୍ଶନିକ ଚିନ୍ତାଚେତନାର ପ୍ରଥମ ଭିତ୍ତିଭୂମି । ୧୯୪୩ ମସିହାରେ ସରକାରଙ୍କ ତରଫରୁ ଏହାକୁ ବାଜ୍ୟାପ୍ତି କରାଗଲା । ଏହାପରେ

ମାର୍କସ୍ ଜର୍ମାନ୍ ପରିତ୍ୟାଗ କରି ଫ୍ରାନ୍ସ ଚାଲିଗଲେ । ଫ୍ରାନ୍ସରେ ବିଶିଷ୍ଟ ସମାଜବାଦୀ ଲେଖକ ଏଙ୍ଗେଲ୍ସଙ୍କର ନିବିଡ଼ ସଂସ୍ପର୍ଶରେ ଆସିବାର ସୁଯୋଗ ପାଇଲେ । ଏହା ମାର୍କସଙ୍କର ଜୀବନୀ ଯାହାକୁ ଇ. ଷ୍ଟୋପୋନୋଭା ରଚନା କରିଥିଲେ । ମାର୍କସ୍ - ଏଙ୍ଗେଲସ୍ଙ୍କ ନିବିଡ଼ ବନ୍ଧୁତ୍ୱ ସଂପର୍କରେ ତନ୍ମଧ୍ୟରୁ ପ୍ରତିପାଦିତ ହୁଏ । ମାର୍କସ୍, ଏଙ୍ଗେଲସ୍ଙ୍କ ନିବିଡ଼ ବନ୍ଧୁତ୍ୱ ସଂପର୍କରେ ଲେନିନ୍ ମତପ୍ରଦାନ କରିବାକୁ ଯାଇ କହିଥିଲେ–

"ଯେଉଁ ଦୁହିଁଙ୍କର ପାରସ୍ପରିକ ସମ୍ବନ୍ଧ ପ୍ରାଚୀନ କାଳରେ ମାନବିକ ବନ୍ଧୁତ୍ୱ ସଂପର୍କରେ ଲିଖିତ ବହୁ ମନୋଜ୍ଞ କାହାଣୀକୁ ମଧ୍ୟ ବଳି ଯାଇପାରେ ।"(୧୬)

ଉଭୟଙ୍କ ଚିନ୍ତାଦର୍ଶର ସମ୍ମିଳିତ ରୂପ ପ୍ରକାଶ ପାଇଲା- ଯେତେବେଳେ 'ହୋଲି ଫ୍ୟାମିଲି' ଓ 'କ୍ରିଟିକ ଅଫ୍ କ୍ରିଟିକାଲ୍ କ୍ରିଟିସିଜିମ୍' ପ୍ରକାଶ ପାଇଲା । ସେତେବେଳେ ଏ ଦୁଇଟି ରଚନା ସମାଜରେ ଏତେ ଆଲୋଡ଼ନ ସୃଷ୍ଟି କଲା ଯେ, ମାର୍କସ୍ଙ୍କୁ ବିପ୍ଳବୀ ଭାବରେ ଅଭିଯୁକ୍ତ କରାଯାଇ ବ୍ରସେଲ୍ସ୍କୁ ନିର୍ବାସିତ କରାଗଲା । ବ୍ରସେଲ୍ସ୍ ରହଣୀ କାଳରେ ମଧ୍ୟ ତାଙ୍କର 'ଦର୍ଶନ ଶାସ୍ତ୍ରର ଦାରିଦ୍ର୍ୟ' ନାମକ ଏକ ପୁସ୍ତକ ମଧ୍ୟ ପ୍ରକାଶ ପାଇଥିଲା । ଏହାପରେ ମାର୍କସ୍ ଓ ଏଙ୍ଗେଲ୍ସ୍ଙ୍କୁ ଜର୍ମାନୀର ଶ୍ରମିକ ସଂଗଠନର ନେତୃତ୍ୱ ନେବା ପାଇଁ ଆମନ୍ତ୍ରଣ କରାଗଲା । ଏହି ଶ୍ରମିକ ସଙ୍ଗଠନ ପରବର୍ତ୍ତୀ କାଳରେ 'କମ୍ୟୁନିଷ୍ଟ ଲିଗ୍' ନାମରେ ପରିଚିତ ହେଲା । ଲିଗ୍‌ର ଲଣ୍ଡନ ଅଧିବେଶନରେ ମାର୍କସ୍ ଏଙ୍ଗେଲ୍ସ୍ଙ୍କର ମତବାଦକୁ ଗ୍ରହଣ କରାଗଲା ।

ମାର୍କସ୍- ଏଙ୍ଗେଲସ୍ଙ୍କର ମତବାଦର ନିଦର୍ଶନ ସ୍ୱରୂପ ୧୮୪୮ ମସିହାରେ 'କମ୍ୟୁନିଷ୍ଟ ଇସ୍ତାହାର' ପ୍ରକାଶ ପାଇଲା । ଏହା ଶାସକ ଶ୍ରେଣୀ ବିରୋଧରେ ସର୍ବହରା ମାନଙ୍କୁ ଏକଜୁଟ୍ କରିବା ପାଇଁ ପ୍ରଥମ ପଦକ୍ଷେପ ଥିଲା । ମାର୍କସ୍ଙ୍କର ଏ ପ୍ରକାର ପଦକ୍ଷେପ ହେତୁ ତାଙ୍କୁ ପୁନର୍ବାର ଜେଲ୍ ଦଣ୍ଡ ଭୋଗିବାକୁ ପଡ଼ିଥିଲା । ନିର୍ବାସିତ ହୋଇ ବେଲ୍‌ଜିୟମ୍‌ରୁ ପ୍ୟାରିସ୍ ଗଲେ । ଶେଷରେ ଦୀର୍ଘ ୩୪ ବର୍ଷ କାଳ ଲଣ୍ଡନରେ ତାଙ୍କୁ ରହିବାକୁ ପଡ଼ିଲା । ଲଣ୍ଡନ ରହଣୀ କାଳରେ ମାର୍କସ୍ 'କ୍ୟାପିଟାଲ୍' ଗ୍ରନ୍ଥ ରଚନା କରନ୍ତି । ଏଥିରେ ପୁଂଜିବାଦୀ ଅର୍ଥନୀତି ବ୍ୟବସ୍ଥାକୁ ଗଭୀର ଭାବେ ଅନୁଧ୍ୟାନ କରି ସର୍ବହରା ମାନେ କିପରି ସମାଜରେ ଶୋଷିତ ହେଉଛନ୍ତି ଏବଂ ସେମାନଙ୍କ ଶୋଷଣର ବିଲୋପ ପାଇଁ ସିଦ୍ଧାନ୍ତମାନ ତିଆରି କଲେ ।

ମାର୍କସ୍ ଯେଉଁ ଦାର୍ଶନିକ ସିଦ୍ଧାନ୍ତମାନ ସୃଷ୍ଟି କରିଗଲେ, ତାହା ତାଙ୍କୁ ଯୁଗ ଯୁଗ ପାଇଁ ଅମର କରିରଖିବ । ସଂକ୍ଷେପରେ କହିଲେ ମାର୍କସୀୟ ତତ୍ତ୍ୱ-ଦର୍ଶନ, ରାଜନୀତି ଓ ଅର୍ଥନୀତିର ମିଳିତ ରୂପକୁ କୁହାଯାଏ । ଏହାର ସଂଜ୍ଞା ସଂପର୍କରେ 'Marxist

leninist philosophy' ରେ କୁହାଯାଇଛି "Marxism - Leninism is a fully integrated theory consisting of three component parts, philosophy, political economy and the theory of scientific communism." (୧୭)

ମାର୍କସ୍‌ବାଦର ମୂଳତତ୍ତ୍ୱ ଦର୍ଶନ, ରାଜନୈତିକ ଅର୍ଥନୀତି ଏବଂ ବୈଜ୍ଞାନିକ ସମାଜବାଦର ଏକ ମିଶ୍ରିତ ରୂପ । ଏହି ଚିନ୍ତାଧାରା କିପରି ଏଥିରେ ରୂପ ଲଭିଛି ସେ ସଂପର୍କରେ ବର୍ତ୍ତମାନ ଆଲୋଚନା କରିବା। ଏହି ତତ୍ତ୍ୱ ମଧ୍ୟରେ – ଉଦ୍‌ବୃତ୍ତ ମୂଲ୍ୟତତ୍ତ୍ୱ, ଶ୍ରେଣୀ ସଂଘର୍ଷ, ପୁଂଜିବାଦର ବିଲୋପ, ବୈପ୍ଳବାତ୍ମକ ପନ୍ଥାର ଅନୁସରଣ, ସର୍ବହରାର ଏକଛତ୍ରବାଦ, ରାଷ୍ଟ୍ରର ବିଲୋପ ସାଧନ ଇତ୍ୟାଦି ଅନ୍ତର୍ଭୁକ୍ତ । ମାର୍କସ୍‌ବାଦର ଏହି ମୌଳିକ ନୀତିଗୁଡ଼ିକ ଶୃଙ୍ଖଳାବଦ୍ଧ ଭାବେ ପରସ୍ପର ସହ ସଂପର୍କିତ । ନିମ୍ନରେ ସେଗୁଡ଼ିକୁ ଆଲୋଚନା କରାଗଲା ।

*** ଉଦ୍‌ବୃତ୍ତ ମୂଲ୍ୟ ତତ୍ତ୍ୱ :–**

କାର୍ଲମାର୍କସ୍ ସର୍ବଦା ଐତିହାସିକ ବସ୍ତୁବାଦ ଉପରେ ଗୁରୁତ୍ୱାରୋପ କରିଥିଲେ । ତାଙ୍କ ମତରେ ଶ୍ରମିକ ଶ୍ରମଦ୍ୱାରା ଯାହା ଉତ୍ପାଦନ କରେ, ତା'ର ଏକ ପ୍ରକାର ବଜାର ମୂଲ୍ୟ ସୃଷ୍ଟି ହୋଇଥାଏ । ତେଣୁ ଦ୍ରବ୍ୟର ସମସ୍ତ ମୂଲ୍ୟ ଶ୍ରମିକ ପାଇବା ପାଇଁ ହକ୍‌ଦାର । କିନ୍ତୁ ପୁଂଜିପତି ତାକୁ ଏଥିପାଇଁ ସ୍ୱଳ୍ପ ମୂଲ୍ୟ ପ୍ରଦାନ କରେ । ପ୍ରକୃତ ମୂଲ୍ୟ ମଧ୍ୟରୁ ଶ୍ରମିକର ପାରିଶ୍ରମିକ ମୂଲ୍ୟକୁ ବାଦ୍ ଦେଲେ ଯାହା ବଳକାରହେ ତାହା ହେଉଛି ଉଦ୍‌ବୃତ୍ତ ମୂଲ୍ୟ । ସାଧାରଣ ଭାଷାରେ ଆମେ ଏହାକୁ 'ଲାଭାଂଶ' ବୋଲି କହିଥାଉ । ଏହି ଲାଭାଂଶର ପୂର୍ଣ୍ଣ ଦାବୀଦାର୍ ଶ୍ରମିକ ହୋଇଥିଲେ ମଧ୍ୟ ତାହାକୁ ପୁଂଜିପତି ମାଲିକ ଅକ୍ତିଆର କରିନିଏ । ଯାହାର ଅନ୍ୟନାମ 'ଶୋଷଣ' ।

*** ଶ୍ରେଣୀ ସଂଘର୍ଷ :–**

ସମାଜ ସୃଷ୍ଟିର ଅୟମାରମ୍ଭ କାଳରୁ ଶ୍ରେଣୀ ସଂଘର୍ଷର ସ୍ୱରୂପ ବିଦ୍ୟମାନ ରହିଛି । କେତେବେଳେ ତାହା ଦୁର୍ବଳ ଉପରେ ସବଳର ଅତ୍ୟାଚାର ତ କେତେବେଳେ ନିର୍ଦ୍ଧନ ଉପରେ ବିତ୍ତଶାଳୀ ଧନୀଗୋଷ୍ଠୀର ଅତ୍ୟାଚାର । ଏହାର ସ୍ୱରୂପ ନିରୂପଣ କରିବାକୁ ଯାଇ ମାର୍କସ୍ ଓ ଏଙ୍ଗେଲସ୍ ମତପ୍ରଦାନ କରନ୍ତି :

"Free man and slave, partisan and plebian, Lord and Serf, guild master and journey man in a word, oppressor and oppressed stood in constant opposition to one another carried on an uninterrupted, now hidden, now open fight a fight, that each time ended either a revolutionary reconstitution of society at large or in the common ruin of the contending classes."(18)

ସ୍ୱାଧୀନ ନାଗରିକ ଓ କ୍ରୀତଦାସ, ସମ୍ଭ୍ରାନ୍ତ ଓ ଇତର ଜନ, ଭୂସ୍ୱାମୀ ଓ ଭୂଦାସ, ବଣିକ ସଂଘର ସଦସ୍ୟ ଓ ଦିନ ମଜୁରିଆ; ଗୋଟିଏ କଥାରେ କହିଲେ ଅତ୍ୟାଚାରୀ ଓ ଅତ୍ୟାଚାରିତ ପରସ୍ପର ବିରୋଧରେ ଛିଡ଼ା ହୋଇ ଆସିଛନ୍ତି । ଅବିରତ ସଂଗ୍ରାମରେ ଏମାନେ ଲିପ୍ତ । କେତେବେଳେ ପରୋକ୍ଷରେ ତ' କେତେବେଳେ ପ୍ରତ୍ୟକ୍ଷରେ ଅତ୍ୟାଚାରୀ ଗୋଷ୍ଠୀର ସମୂହ ବିନାଶରେ ସମାଜରେ ବୈପ୍ଳବିକ ପରିବର୍ତ୍ତନର ଆନୟନ କରାଯାଇପାରିବ । ସାମନ୍ତବାଦୀ ସମାଜ ପରେ ପୁଞ୍ଜିବାଦୀ ଗୋଷ୍ଠୀର ଆବିର୍ଭାବ ହେଲା । ସମାଜରେ ପୁଞ୍ଜିପତି ଓ ସର୍ବହରା ନାମକ ପରସ୍ପର ବିରୋଧୀ ଗୋଷ୍ଠୀର ସୃଷ୍ଟି ହେଲା । ଏହି ଦୁଇଟି ଗୋଷ୍ଠୀ ମଧ୍ୟରେ ସଂଘର୍ଷର ମୂଳ କାରଣ ହେଲା 'ଅର୍ଥ' । ଜଣେ ଚାହେଁ ଅର୍ଥ ସଞ୍ଚୟ କରିବା ପାଇଁ ଅପର ଜଣକ ଚାହେଁ ନିଜର ପରିଶ୍ରମ ମୁତାବକ ଅର୍ଥ ହାସଲ କରିବା ପାଇଁ । ତେଣୁ ଉଭୟ ମଧ୍ୟରେ ଚାଲିଥିବା ଏହି ସଂଘର୍ଷର ଅନ୍ୟନାମ 'ଶ୍ରେଣୀ ସଂଘର୍ଷ' । ଏହାର ସଂଜ୍ଞା ନିରୂପଣ କରିବାକୁ ଯାଇ କବି ରଘୁନାଥ ଦାସ ମତବ୍ୟକ୍ତ କରନ୍ତି –

"ସର୍ବହରା ଓ ବୁର୍ଜୁୟା ମଧ୍ୟରେ ସଂପର୍କ କେବଳ ପଇସାର ସଂପର୍କ । ବୁର୍ଜୁୟା ସର୍ବହରା ମିହନ୍ତର ମୂଲ କଷେ । ସର୍ବହରାର ମିହନ୍ତର ଭାଉ, ମାଛ ଓ ପରିବା'ର ଭାଉ ପରି ବଢ଼େ ଓ ଖସେ । ବେଶି ମୂଲିଆ ମିଳିଲେ ମୂଲ ଶସ୍ତା ହୋଇଯାଏ । ମୂଲିଆ ଅଭାବ ପଡ଼ିଲେ ସର୍ବହରା ବେଶୀ ମଜୁରୀ ଦାବୀ କରିବସେ । ଏହି ଭିଡ଼ା ଓଟରାକୁ କୁହାଯାଏ ଶ୍ରେଣୀ ସଂଘର୍ଷ । (୧୯)

ଏହି ଯେଉଁ ଶ୍ରେଣୀ ସଂଘର୍ଷର ସୂତ୍ରପାତ ହୁଏ ତା'ର ପରିସମାପ୍ତି ଘଟେ ଏକ ସାମ୍ୟବାଦୀ ଶ୍ରେଣୀ ବିହୀନ ସମାଜ ପ୍ରତିଷ୍ଠାରେ ।

### * ପୁଂଜିବାଦର ବିନାଶ –

କେବଳଯେ ଶ୍ରେଣୀସଂଘର୍ଷର ସୂତ୍ରପାତ ଘଟିଲେ ସମସ୍ୟାର ସମାଧାନ ହୋଇଯାଏ ତାହା ନୁହେଁ, ପୁଂଜିପତି ଗୋଷ୍ଠୀର ସମୂଳେ ବିନାଶ ଏକାନ୍ତ ଅନିବାର୍ଯ୍ୟ । ପୁଂଜିପତି ନିଜ ପାଇଁ ନିଜେ ବିନାଶ ପଥକୁ ଡାକି ଆଣେ । ତୀବ୍ର ପ୍ରତିଯୋଗିତା ହେତୁ ଏମାନଙ୍କ ସଂଖ୍ୟା ମଧ୍ୟ ଧୀରେ ଧୀରେ କମିଯାଏ । ଛୋଟ ଛୋଟ ପୁଂଜିପତି ମାନେ ବୃହତ ପୁଂଜିପତି ମାନଙ୍କ ଦ୍ୱାରା ଶୋଷିତ ହୁଅନ୍ତି । ଏହାଦ୍ୱାରା ଧୀରେ ଧୀରେ ଶୋଷିତ ସର୍ବହରା ମାନଙ୍କର ସଂଖ୍ୟା ବଢ଼େ । ଏହି ଅସନ୍ତୋଷ ଶେଷରେ ସେମାନଙ୍କୁ ଏକଜୁଟ୍ କରାଇ ବିପ୍ଳବର ବହ୍ନି ପ୍ରଜ୍ଜ୍ୱଳିତ କରାଏ ।

***ବିପ୍ଳବ –**

ଶ୍ରେଣୀ ସଂଘର୍ଷର ଚରମ ଅବସ୍ଥା ହେଉଛି 'ବିପ୍ଳବ' । ଯେତେବେଳେ ପୁଂଜିପତିର ଅତ୍ୟାଚାରରେ ଅତିଷ୍ଠ ହୋଇ ସର୍ବହରା ନିଜର ସର୍ବସ୍ୱ ହରାଇ ସାରିଥାଏ । ସେତେବେଳେ ସେ ବିପ୍ଳବକୁ ଗ୍ରହଣ କରିନିଏ । ପୁଂଜିପତି ମାନଙ୍କୁ ସୁରକ୍ଷା ଓ ପ୍ରୋତ୍ସାହନ ଯୋଗାଉଥିବା ରାଷ୍ଟ୍ର ବ୍ୟବସ୍ଥାର ବିଲୟ ପାଇଁ ସଂକଳ୍ପ ବଦ୍ଧହୁଏ ।

*** ରାଷ୍ଟ୍ରର ବିଲୟ–**

ମାର୍କସ୍ ସର୍ବହରାମାନଙ୍କୁ ବୈପ୍ଳବିକ ପଦକ୍ଷେପ ଗ୍ରହଣ କରିବାକୁ ପ୍ରେରଣା ପ୍ରଦାନ କରନ୍ତି । ଏହାଦ୍ୱାରା ରାଷ୍ଟ୍ରର ବିଲୟ ଘଟି ପାରିବ । କାରଣ ରାଷ୍ଟ୍ର ହେଉଛି ଶ୍ରେଣୀ ସଂଘର୍ଷର ମୁଖ୍ୟ କାରଣ । ଶ୍ରେଣୀ ବିହୀନ ସମାଜ ଗଠନ କ୍ଷେତ୍ରରେ ଏହାର ଉପସ୍ଥିତି ପ୍ରଧାନ ଅନ୍ତରାୟ ସୃଷ୍ଟି କରେ । ତେଣୁ ଏହାର ବିଲୟ ହିଁ ସର୍ବହରାର ଏକଛତ୍ରବାଦ ପ୍ରତିଷ୍ଠା କ୍ଷେତ୍ରରେ ପ୍ରମୁଖ ଭୂମିକା ଗ୍ରହଣ କରେ ।

**ସର୍ବହରାର ଏକଛତ୍ରବାଦ ଓ ଶ୍ରେଣୀ ବିହୀନ ସମାଜ –**

ପୁଂଜିବାଦର ବିନାଶ ଘଟାଇ ସର୍ବହରା ଯେତେବେଳେ ରାଷ୍ଟ୍ରର ଶାସନ କ୍ଷମତା ଦଖଲ କରେ ସେତେବେଳେ ସଂକୀର୍ଣ୍ଣତାର ବିଲୋପ ଘଟେ । ଏକ ଶ୍ରେଣୀ ବିହୀନ ସମାଜ ଗଠିତ ହୋଇଥାଏ । ଶାସକ- ଶାସିତ, ଶୋଷକ-ଶୋଷିତର ତାରତମ୍ୟ ସେଠାରେ ନଥାଏ । ପ୍ରତ୍ୟେକ ବ୍ୟକ୍ତି ନିଜର ସାମର୍ଥ୍ୟ ଅନୁସାରେ କାର୍ଯ୍ୟ କରିଥାଆନ୍ତି ଏବଂ ନିଜର ଆବଶ୍ୟକତା ଅନୁସାରେ ପ୍ରାପ୍ୟ ପାଇଥାଆନ୍ତି । ଏହା ହେଉଛି ମାର୍କସ୍‌ବାଦର ଅନ୍ତିମ ଲକ୍ଷ୍ୟ ।

ଏହିପରି ବିଭିନ୍ନ ତତ୍ତ୍ୱକୁ ନେଇ ମାର୍କସ୍‌ବାଦର ଉନ୍ମେଷ ଘଟିଥିଲା । ଇତିହାସର ଅର୍ଥନୈତିକ ବ୍ୟାଖ୍ୟା ଦ୍ୱାରା ଏହା ବ୍ୟକ୍ତିର ବାସ୍ତବ ସ୍ଥିତି ସଂପର୍କରେ ଯଥାଯଥ ଅନୁଧ୍ୟାନ କରିପାରିଥିଲା । ରାଷ୍ଟ୍ରତତ୍ତ୍ୱର ନୂତନ ସମୀକ୍ଷା କରି ବୈଜ୍ଞାନିକ ସମାଜବାଦର ଅବତାରଣା ସହିତ ବ୍ୟକ୍ତି, ସମାଜ ଓ ରାଷ୍ଟ୍ର ମଧ୍ୟରେ ସଂପର୍କର ସେତୁ ସ୍ଥାପନ କରାଇ ପାରିଲା । ଯୁକ୍ତି ସଂଗତ ଓ ବାସ୍ତବ ରୂପାୟନ ଦ୍ୱାରା ସମାଜରେ ବୈପ୍ଳବିକ ପରିବର୍ତ୍ତନର ସୂତ୍ରପାତ ହୋଇଥାଏ । ବ୍ୟକ୍ତିକୁ ଜାତି, ଧର୍ମ ଓ ରାଷ୍ଟ୍ରର ସଂକୀର୍ଣ୍ଣ ବନ୍ଧନୀ ମଧ୍ୟରୁ ମୁକ୍ତ କରି ଆନ୍ତର୍ଜାତିୟ ମାନବତାର ନୂତନ କୀର୍ତ୍ତିମାନ ସ୍ଥାପନ କରିଥିବା ଏହି ମାର୍କସ୍‌ବାଦୀ ଦର୍ଶନ ଧିରେ ଧିରେ ବହୁଳ ପ୍ରସିଦ୍ଧି ଲାଭ କଲା । ପରବର୍ତ୍ତୀ ପର୍ଯ୍ୟାୟରେ 'ଲେନିନ୍', 'ମାଓ-ସେ-ତୁଙ୍ଗ' ପ୍ରଭୃତି ନେତୃବୃନ୍ଦ ଏହାର ବିକାଶ ଦିଗରେ ଆବଶ୍ୟକ ପଦକ୍ଷେପ ମାନ ଗ୍ରହଣ କଲେ । ୧୯୧୭ ମସିହାରେ ଏହାର ସର୍ବପ୍ରଥମ ସଫଳ ପ୍ରୟୋଗ

ସୋଭିଏତ୍ ଋଷିଆରେ କରାଯାଇଥିଲା । ଯାହାର ନେତୃତ୍ୱ ନେଲେ ସ୍ୱୟଂ ଲେନିନ୍ । ଋଷ ଦେଶ ପ୍ରଥମେ ଅତ୍ୟାଚାରୀ ଜାର୍‌ମାନଙ୍କ ଦ୍ୱାରା ଶାସନାଧୀନ ଥିଲା । ସେମାନେ ସାଧାରଣ ଜନତାଙ୍କୁ ଶୋଷଣ କରି କ୍ଷମତାର ଅପବ୍ୟବହାର କରୁଥିଲେ । ତେଣୁ ଜାର୍ ସାମ୍ରାଜ୍ୟର ପତନ ପାଇଁ ଋଷ୍ ଦେଶର ସାଧାରଣ ନିରୀହ ଶ୍ରମଜୀବି ଜନତା ଲେନିନ୍‌ଙ୍କ ନେତୃତ୍ୱରେ 'ବଲ୍‌ସେଭିକ୍ ପାର୍ଟି' ଗଠନ କଲେ । ମାର୍କସ୍‌ଙ୍କର ତତ୍ତ୍ୱ ଆଦର୍ଶକୁ ପାଥେୟ ଭାବେ ଗ୍ରହଣ କରିଥିବା ଲେନିନ୍‌ଙ୍କର ପ୍ରଗାଢ଼ ଉଦ୍ୟମ ହିଁ ଅତ୍ୟାଚାରୀ ଶାସନରେ ପୂର୍ଣ୍ଣଚ୍ଛେଦ ଟାଣି ପାରିଥିଲା । ତତ୍‌କାଳୀନ ସମାଜର ଏ ପ୍ରକାର ସଂଘର୍ଷ ଗୋର୍କୀ, ମାୟୋକୋଭସ୍କି, ଭେରିସାୟେଭ୍, ୟେସନିନ୍ ପ୍ରମୁଖ ସାହିତ୍ୟିକମାନଙ୍କ ରଚନାବଳୀରେ ମଧ୍ୟ ପରିଦୃଷ୍ଟ ହେଲା ।

୧୯୪୯ ମସିହା ବେଳକୁ ମାର୍କସ୍‌ବାଦର ପ୍ରଭାବ ଚୀନ୍‌ରେ ମଧ୍ୟ ଅନୁଭୂତ ହେବାକୁ ଲାଗିଲା । ମାଓ-ସେ-ତୁଙ୍ଗ୍ ତାଙ୍କ ସୃଷ୍ଟିରେ ଏହାକୁ ରୂପ ଦେବାକୁ ଯାଇ କଳା ଓ ସାହିତ୍ୟର ପ୍ରମୁଖ ଲକ୍ଷ୍ୟ କ'ଣ ହେବା ଉଚିତ ଓ ଏହା ଦ୍ୱାରା ସମାଜରେ କିପରି ମଙ୍ଗଳ ବିଧାନ କରାଯାଇପାରିବ ସେ ସଂପର୍କରେ ଗୁରୁତ୍ୱାରୋପ କଲେ । ମାଓଙ୍କ ମତରେ ସାହିତ୍ୟ ଜନତାଙ୍କ ପାଇଁ, ଜନତାଙ୍କ ଉଦ୍ଦେଶ୍ୟରେ ରଚିତ ହେବା ଆବଶ୍ୟକ । ସାହିତ୍ୟ ସାମନ୍ତବାଦ, ପୁଂଜିବାଦର ସ୍ତବଗାନ ନ କରି ସାଧାରଣ ଜନତାର ଦୁଃଖକୁ ହୃଦୟଙ୍ଗମ କରି ଜନସମାଜ ନିକଟରେ ପହଞ୍ଚାଇବା ସାହିତ୍ୟିକର କର୍ତ୍ତବ୍ୟ ହେବା ଉଚିତ । ଏ ସଂପର୍କରେ ମାଓ ଯେଉଁ ଅଭିଭାଷଣ ପ୍ରଦାନ କରିଥିଲେ ସେଥିରୁ ତାହା ସୂଚିତ ହୋଇଥାଏ ।

"By marxism we mean not marxism catch words but living marxism which has practical bearings on the life and struggle for the people. When marxist catch words are transformed into marxism in real life there will be no more sectarionism."(20)

ସାହିତ୍ୟ କ୍ଷେତ୍ରରେ ବ୍ୟବହୃତ ହେଉଥିବା ଏହି ମାର୍କସ୍‌ବାଦୀ ତତ୍ତ୍ୱ କେବଳ ଭାଷାରେ ପ୍ରକାଶ ପାଇବା ଅନୁଚିତ୍ । ଏହା ହୃଦୟରେ ଅନୁଭୂତ ହେଉଥିବା ବାସ୍ତବ ପ୍ରତିଛବିକୁ ଉତ୍ତୋଳିତ କରିବା ଉଚିତ ଏବଂ ଏଥିରେ ଦଳଗତ ବିଦ୍ୱେଷ ଭାବ ନରହିବା ଉଚିତ୍ ।

ପ୍ରମୁଖ ପାଶ୍ଚାତ୍ୟ ରାଷ୍ଟ୍ରରେ ଯେତେବେଳେ ମାର୍କସ୍‌ବାଦର ପ୍ଲାବନ ସୃଷ୍ଟି ହେଲା ଇଂରାଜୀ ସାହିତ୍ୟ ମଧ୍ୟ ଏଥିରୁ ବାଦ୍ ଗଲା ନାହିଁ । ଶିଳ୍ପର ଦ୍ରୁତ ଅଭିବୃଦ୍ଧି, ସାମ୍ରାଜ୍ୟ ବିସ୍ତାର, ଇଂଲଣ୍ଡର ସାମାଜିକ ଜୀବନକୁ ଗଭୀର ଭାବରେ ପ୍ରଭାବିତ କଲା । ସେଠାରେ ମଧ୍ୟ ପୁଂଜିବାଦର ଅଭ୍ୟୁଦୟ ଘଟିଲା । ସାଧାରଣ ଜନତା ମଧ୍ୟ ଶୋଷିତ ହେବାକୁ

ଲାଗିଲେ । ଏହି ସାମାଜିକ ଶ୍ରେଣୀ ସଂଘର୍ଷର ଚିତ୍ର କଡ୍‌ୱେଲ୍, ରାଲଫ୍ ଫକସ୍, ଓ୍ୱାଲଟ୍‌ର ଡି-ଲା-ମୋରେ, ୟେଟ୍‌ସ୍ ପ୍ରମୁଖ ସ୍ରଷ୍ଟାଙ୍କ ରଚନାରେ ମଧ୍ୟ ପ୍ରକାଶ ପାଇଲା । ଏହି ତତ୍ତ୍ୱର ଯାଦୁକାରୀ ଶକ୍ତି ଏତେ ପ୍ରବଳ ଥିଲା ଯେ ବିଂଶ ଶତାବ୍ଦୀରେ ପୃଥିବୀର ପ୍ରାୟ ଏକତୃତୀୟାଂଶ ରାଷ୍ଟ୍ର ଏହାକୁ ଆପଣେଇ ନେଇଥିଲେ । ଧୀରେ ଧୀରେ ଏହା ଭାରତୀୟ ସାହିତ୍ୟ ମଧ୍ୟ ଦେଇ ଓଡ଼ିଆ ସାହିତ୍ୟ କ୍ଷେତ୍ରକୁ ମଧ୍ୟ ପ୍ରବେଶ କଲା । ସମଗ୍ର ବିଶ୍ୱ ସାହିତ୍ୟକୁ ଏକ ନୂତନ ଚମକ୍ ପ୍ରଦାନ କରିଥିବା ଏହି ସାହିତ୍ୟ ତତ୍ତ୍ୱ ସଂପର୍କରେ ସବିଶେଷ ଆଲୋଚନା ଏକାନ୍ତ ପ୍ରୟୋଜନ ।

## ଐତିହାସିକ ଦ୍ୱନ୍ଦ୍ୱାତ୍ମକ ବସ୍ତୁବାଦ, ଆର୍ଥନୀତିକ ଚେତନା, ରାଜନୀତିକରୂପ

ଦର୍ଶନ ହେଉଛି ଏକ ବିଶ୍ୱ ଦୃଷ୍ଟିକୋଣ । ଦ୍ୱନ୍ଦ୍ୱମୂଳକ ବସ୍ତୁବାଦୀ ଦର୍ଶନ ହେଉଛି ବିଜ୍ଞାନସମ୍ମତ ବିଶ୍ୱ ଦୃଷ୍ଟିକୋଣ । ଦର୍ଶନ କ୍ଷେତ୍ରରେ ଦୁଇଟି ଦିଗ ରହିଛି । ପ୍ରଥମେ ବସ୍ତୁ ନା ପ୍ରଥମେ ଚେତନା । ବସ୍ତୁ ମଧ୍ୟରୁ ଚେତନାର ସୃଷ୍ଟି ନା ଚେତନା ମଧ୍ୟରୁ ବସ୍ତୁର ସୃଷ୍ଟି । ଆଉ ଦ୍ୱିତୀୟଟି ହେଉଛି ମନୁଷ୍ୟର ମନ ପାରିପାର୍ଶ୍ୱିକ ଜଗତକୁ ଅନୁଧାବନ କରି ତା'ର ବିକାଶ ପାଇଁ ଚେଷ୍ଟା କରେ କି ନାହିଁ । ତା' ହେଲେ ବର୍ତ୍ତମାନ ପ୍ରଥମ ପ୍ରଶ୍ନଟି ସଂପର୍କରେ ଆଲୋଚନା କରିବା । ଦାର୍ଶନିକ ମାନେ ଏହି ସବୁ ପ୍ରଶ୍ନର ସରଳ ସମାଧାନ ପାଇଁ ବହୁମତ ପାର୍ଥକ୍ୟ ପରେ ସେମାନେ ଦୁଇ ପ୍ରକାର ଗୋଷ୍ଠୀ ତିଆରି କରିଛନ୍ତି । (କ) ଭାବବାଦୀ (ଖ) ବସ୍ତୁବାଦୀ । ବସ୍ତୁବାଦୀମାନଙ୍କ ମତରେ ବସ୍ତୁ (ପ୍ରକୃତି) ହେଉଛି ଆଗ, ଚେତନା ହେଉଛି ପର । ସେମାନଙ୍କ ମତରେ ପ୍ରକୃତି ଚିରନ୍ତନ । ସୃଷ୍ଟିର ଅୟମାରମ୍ଭରୁ ଏହାର ସତ୍ତା ବିଦ୍ୟମାନ । ପ୍ରକୃତିକୁ କେହି କେବେ ସୃଷ୍ଟି କରିନାହିଁ । 'ଚେତନା' ବା 'ଚିନ୍ତାଶକ୍ତି' ହେଉଛି 'ପର' ଏଇଥିପାଇଁ ଯେ, ପ୍ରଥମେ ପ୍ରକୃତିର ସୃଷ୍ଟି । ପ୍ରକୃତିର କୋଳରେ ମନୁଷ୍ୟର ସୃଷ୍ଟି । ମନୁଷ୍ୟର ସୃଷ୍ଟି ହେବା ପରେ ସମୟାନୁକ୍ରମେ ତା'ର ଚିନ୍ତା ଚେତନାର ବିକାଶ ଘଟିଲା ।

କିନ୍ତୁ ଯେଉଁମାନେ ବିଚାର କରନ୍ତି ଯେ 'ଚେତନା' ହେଉଛି ଆଗ, ମଣିଷ ତାର ଚିନ୍ତାଚେତନା ବଳରେ ପ୍ରକୃତିକୁ ସୃଷ୍ଟି କରିଛି ଓ ତାକୁ ନିଜ ନିୟନ୍ତ୍ରଣରେ ରଖିପାରିଛି ସେମାନେ ଭାବବାଦୀ ଚିନ୍ତାଧାରାର ଅନ୍ତର୍ଭୁକ୍ତ। ବିଶେଷ କରି ସେମାନେ ଆଧ୍ୟାତ୍ମିକ ଶକ୍ତି ଉପରେ ଗୁରୁତ୍ୱାରୋପ କରନ୍ତି । ଜଗତ୍ ସୃଷ୍ଟିର ମୂଳରେ ଯେ ଆଧ୍ୟାତ୍ମିକ ଶକ୍ତିର ପରାକାଷ୍ଠା ରହିଛି ଏହା ଉପରେ ପ୍ରାଧାନ୍ୟ ଦିଅନ୍ତି । ଉଭୟ ଦର୍ଶନ ମଧ୍ୟରେ ସଦାସର୍ବଦା ଏକପ୍ରକାର ମତ ପାର୍ଥକ୍ୟ ରହି ଆସିଛି । ଭାବବାଦୀ ମାନଙ୍କ ସଂପର୍କରେ ମତବ୍ୟକ୍ତ କରିବାକୁ ଯାଇ ଲେନିନ୍ କହନ୍ତି –

"ଏହା ଏକ ଭ୍ରାନ୍ତ ଆଉ ଏଡ଼େଇ ଯିବାର ଲଜ୍ଜାକର କୌଶଳ ।" (୨୧)

ଏହି ଭାବବାଦୀ ଚିନ୍ତାଧାରା ସଦାସର୍ବଦା ସମାଜର ଶୋଷକ ଗୋଷ୍ଠୀଙ୍କ ହତିଆର ରୂପେ ବ୍ୟବହୃତ ହୋଇଥାଏ । ତେଣୁ ଏହାର ବିରୋଧାଭାସ ଭାବେ ଆମେ ବସ୍ତୁବାଦକୁ ଗ୍ରହଣ କରିଥାଉ । କାହିଁକି ନା ବସ୍ତୁବାଦ ବୈଜ୍ଞାନିକ ଧାରଣା ଉପରେ ପର୍ଯ୍ୟବେସିତ । ଦ୍ୱନ୍ଦ୍ୱମୂଳକ ବସ୍ତୁବାଦ ସଂପର୍କରେ ଆଲୋଚନା କରିବାକୁ ଯାଇ ଡଃ ବିଜୟ କୁମାର ଶତପଥୀ ମତବ୍ୟକ୍ତ କରନ୍ତି ଯେ –

"ଦ୍ୱନ୍ଦ୍ୱମୂଳକ ବସ୍ତୁବାଦର ମୂଳ କଥାଟି ହେଲା ବସ୍ତୁଗତ ଅବସ୍ଥା । ଏହାର ପ୍ରକ୍ରିୟା ହେଉଛି ଦ୍ୱନ୍ଦ୍ୱ, ସଂଘର୍ଷ ବା ବିରୋଧ । ବସ୍ତୁ ମଧ୍ୟରେ ଦ୍ୱନ୍ଦ୍ୱ ଓ ବସ୍ତୁ ମଧ୍ୟରେ ବିରୋଧ ହେଉଛି ଦ୍ୱନ୍ଦ୍ୱାତ୍ମକ ବସ୍ତୁବାଦର ମୂଳ କଥା ।"(୨୨)

ପରିଶେଷରେ 'ଦ୍ୱନ୍ଦ୍ୱାତ୍ମକ ବସ୍ତୁବାଦ' କହିଲେ ବିଶ୍ୱର ବା, ବସ୍ତୁର ସୃଷ୍ଟି ପାଇଁ ଈଶ୍ୱରଙ୍କ ପ୍ରୟୋଜନ ନଥାଏ । ବିଶ୍ୱ ବ୍ରହ୍ମାଣ୍ଡର ବିକାଶ, ପ୍ରକୃତିର ବିକାଶ ଓ ମନୁଷ୍ୟର ଚେତନ ସ୍ତରର ବିକାଶ ଉପରେ ଏହା ନିର୍ଭର କରେ । ଏହି ପ୍ରକ୍ରିୟା ଦ୍ୱନ୍ଦ୍ୱମୂଳକ। ଦାର୍ଶନିକ ମାର୍କସ୍‌ଙ୍କ ମତରେ ମଣିଷର ମନ ବସ୍ତୁ (ପ୍ରକୃତି)ର ସ୍ରଷ୍ଟା ନୁହେଁ । ପ୍ରକୃତିର ବିକାଶ ଘଟିବା ସଙ୍ଗେ ସଙ୍ଗେ ମଣିଷର ଚିନ୍ତାଶକ୍ତିରେ ମଧ୍ୟ ବିକାଶ ପରିଲକ୍ଷିତ ହୁଏ । ଏହା ହିଁ ଦ୍ୱନ୍ଦ୍ୱାତ୍ମକ ବସ୍ତୁବାଦର ମୂଳ କଥା ।

ପାଶ୍ଚାତ୍ୟ ଜଗତରେ ପ୍ରଥମେ ଏକ ଧାରଣା ଥିଲା ଯେ ବସ୍ତୁ (ପ୍ରକୃତି) ଈଶ୍ୱରଙ୍କ ଦ୍ୱାରା ସୃଷ୍ଟି ହୋଇଛି । କିନ୍ତୁ ହେଗେଲ୍‌ଙ୍କ ଐତିହାସିକ ବସ୍ତୁବାଦ ଏହି ଧାରଣା ବିରୋଧରେ ପ୍ରଥମେ ମନ୍ତବ୍ୟ ପ୍ରକାଶ କଲେ ଓ ବୈଜ୍ଞାନିକ ମତବାଦକୁ ପ୍ରାଧାନ୍ୟ ଦେଲେ । ମାର୍କସ୍ ମଧ୍ୟ ହେଗେଲ୍‌ଙ୍କର ଏହି ମତବାଦକୁ ସମର୍ଥନ କରିବାକୁଯାଇ ପୂର୍ବରୁ ଯେଉଁ ଭ୍ରାନ୍ତ ଧାରଣା ରହିଥିଲା, ତାକୁ ଦୂର କରିବା ପାଇଁ ସମାଜ ବିଜ୍ଞାନକୁ ବସ୍ତୁବାଦୀ ଭିତ୍ତିରେ ଗଢ଼ି ତୋଳିଲେ ।

ସାମାଜିକ ସଂଗଠନ ଗୁଡ଼ିକ ଆଜି ଯାହା ଅଛି ଅତୀତରେ ତାହା ନଥିଲା । ସମାଜରେ ଅଦ୍ୟାବଧି ପରିଲକ୍ଷିତ ହେଉଥିବା ଅଭିବୃଦ୍ଧି ମନୁଷ୍ୟର ଅର୍ଥନୈତିକ ଅଭିବୃଦ୍ଧି ଦ୍ୱାରା ସମ୍ଭବ ହୋଇ ପାରିଛି । ତେଣୁ ଅର୍ଥନୈତିକ ମାନଦଣ୍ଡ ହିଁ ସାମାଜିକ ବ୍ୟବସ୍ଥାର ମୂଳ ମାନଦଣ୍ଡ । ଧୀରେ ଧୀରେ ସମାଜ ବ୍ୟବସ୍ଥାରେ ପରିବର୍ତ୍ତନ ଦେଖାଯିବାରୁ, ସମାଜ ମଧ୍ୟରେ ଦୁଇଟି ଗୋଷ୍ଠୀର ଆବିର୍ଭାବ ଘଟିଲା । ତାହା ହେଉଛି ଧନୀ-ନିର୍ଦ୍ଧନ, ଶୋଷକ-ଶୋଷିତ । ସମାଜର ଅର୍ଥନୀତି ରହିଲା ଧନୀ ଶୋଷକଗୋଷ୍ଠୀଙ୍କ କବ୍‌ଜାରେ । ଅର୍ଥନୈତିକ ମାନଦଣ୍ଡ ଉପରେ ଗଢ଼ି ଉଠିଥିବା ନୀତି ଆଇନ୍, ରାଜନୀତି, ଧର୍ମ, ସଂସ୍କୃତି ସବୁ କିଛି ରହିଲା ସେମାନଙ୍କ ହାତ ମୁଠାରେ । ତେଣୁ ଏ କ୍ଷେତ୍ରରେ ବିଚ୍ୟୁତି

ସମାଜର ମେରୁଦଣ୍ଡକୁ ଦୋହଲାଇ ଦେଲା । ଏହାକୁ ପରିବର୍ତ୍ତନ କରିବା ପାଇଁ ସାମାଜିକ କ୍ଷେତ୍ରରେ ବିପ୍ଳବ ସୃଷ୍ଟି କରିବା ଏକାନ୍ତ ଆବଶ୍ୟକ । ଶ୍ରେଣୀ ବିହୀନ ସାମ୍ୟବାଦୀ ସମାଜ ଗଠନ କରିବା ନିମନ୍ତେ ଏ ପ୍ରକାର ଅର୍ଥନୈତିକ ବ୍ୟବସ୍ଥାର ପୁନର୍ବିନ୍ୟାସ ଆବଶ୍ୟକ । ଅତୀତରେ ପ୍ରଚଳିତ ଐତିହାସିକ ବ୍ୟବସ୍ଥାରେ ପରିବର୍ତ୍ତନ କରାଯାଇପାରିବ । ଏହାକୁ ଐତିହାସିକ ବସ୍ତୁବାଦ ବା ଇତିହାସର ଅର୍ଥନୈତିକ ବ୍ୟାଖ୍ୟା କୁହାଯାଏ ।

ମାର୍କସ୍‌ବାଦୀ ଚିନ୍ତାଧାରା ଅନୁଯାୟୀ ଆମ ସମାଜ ଦୁଇ ଭାଗରେ ବିଭକ୍ତ । ଯଥା: ଶୋଷକ ଗୋଷ୍ଠୀ ଓ ଶୋଷିତ ଗୋଷ୍ଠୀ । ମାର୍କସ୍‌ବାଦ ଏଇ ଶୋଷିତ ବର୍ଗଙ୍କ ପ୍ରତି ସମବେଦନା ଜ୍ଞାପନ କରେ । ଭଦ୍ର ମୁଖାର ଆବରଣ ତଳେ ଶୋଷକ ଗୋଷ୍ଠୀ କରୁଥିବା ଅନ୍ୟାୟ, ଶୋଷଣର ପରିସମାପ୍ତି ଘଟାଇବା ପାଇଁ ବିପ୍ଳବର ବାର୍ତ୍ତା ପ୍ରଚାର କରେ ଏଇ ମାର୍କସ୍‌ବାଦୀ ସାହିତ୍ୟ । ସମାଜ ମଧ୍ୟରେ ଏକ ଶୋଷଣ ବିହୀନ ସାମ୍ୟବାଦୀ ସମାଜର ପରିକଳ୍ପନା କରେ । ସାହିତ୍ୟ ମାଧ୍ୟମରେ ହିଁ ଏସବୁ ସମ୍ଭବ ହୋଇଥାଏ । ମାର୍କସ୍‌ବାଦୀ ସାହିତ୍ୟ କେବଳ ଯେ ସାଧାରଣ ଶୋଷିତ ଜନତାଙ୍କୁ ସେମାନଂକର ଅର୍ଥନୈତିକ ଅଧିକାର ସଂପର୍କରେ ସଚେତନ କରାଇଥାଏ ତାହା ନୁହେଁ ବରଂ ଏହା ସହିତ ସେମାନଂକୁ ରାଜନୈତିକ କ୍ଷମତାରେ ଅଧିଷ୍ଠିତ କରାଇବା ଏହାର ଅନ୍ୟତମ ପ୍ରମୁଖ ଲକ୍ଷ୍ୟ ଅଟେ । ତେଣୁ ମାର୍କସ୍‌ବାଦୀ ସାହିତ୍ୟ ରାଜନୀତି ସହିତ ପ୍ରତ୍ୟକ୍ଷ ଭାବରେ ସଂଶ୍ଳିଷ୍ଟ ଅଟେ । ମାର୍କସ୍‌ବାଦୀ ସ୍ରଷ୍ଟାର ରାଜନୈତିକ ସଚେତନତା ତା'ର ବୈପ୍ଳବିକ ମୂଲ୍ୟବୋଧକୁ ଶାଣିତ କରିଥାଏ ।

## ଲେନିନ୍‌ଙ୍କର ଆବିର୍ଭାବ ଓ ବଲ୍‌ସେଭିକ୍ ଆନ୍ଦୋଳନ

ମାର୍କସ୍‌ବାଦୀ ତତ୍ତ୍ୱ ଦର୍ଶନର ବିକାଶ ଦିଗରେ ଲେନିନ୍ ଓ ମାଓ-ସେ-ତୁଙ୍ଗ ପ୍ରଗାଢ଼ ଉଦ୍ୟମ କରିଥିଲେ । ୧୯୧୭ ମସିହାରେ ଏହାର ସର୍ବପ୍ରଥମ ସଫଳ ପ୍ରୟୋଗ ସୋଭିଏତ୍ ଋଷରେ କରାଯାଇଥିଲା । ଏହା ପୂର୍ବରୁ ଫ୍ରାନ୍‌ସର ଶ୍ରମିକଗୋଷ୍ଠୀ ମଧ୍ୟ ନିଜର ଅଧିକାର ହାସଲ କରିବା ପାଇଁ ଆନ୍ଦୋଳନ ଆରମ୍ଭ କରିଥିଲେ । ୧୮୩୦ ମସିହାରେ ଫ୍ରାନ୍ସର ଏକତ୍ରିତ ଶ୍ରମିକଗୋଷ୍ଠୀ 'ବୋର୍‌ବେନ୍' ରାଜବଂଶକୁ ଗାଦିଚ୍ୟୁତ କରାଇପାରିଥିଲେ । ଏହାପରେ ୧୮୩୮ ଏବଂ ୧୮୪୪ ମସିହାରେ ଇଂଲଣ୍ଡ ଓ ଜର୍ମାନୀରେ ମଧ୍ୟ ଅନୁରୂପ ଶ୍ରମିକ ଧର୍ମଘଟ ଆରମ୍ଭ ହୋଇଥିଲା । ସର୍ବତ୍ର ପୁଂଜିବାଦ ବିରୋଧୀ ସ୍ୱର ତୀବ୍ରତର ହେବାକୁ ଲାଗିଲା । ଶେଷରେ ଊନବିଂଶ ଶତକର ପଞ୍ଚମ ଦଶକ ବେଳକୁ ସମଗ୍ର ୟୁରୋପ ସର୍ବହରା ଶ୍ରମିକଗୋଷ୍ଠୀଙ୍କର ବୈପ୍ଳବିକ ଆହ୍ୱାନରେ ଥରହର ହୋଇଉଠିଥିଲା । ବିଶେଷକରି ଫରାସୀ ରାଷ୍ଟ୍ର ବିପ୍ଳବ ୟୁରୋପର ସାମାଜିକ

ଜୀବନକୁ ବିଶେଷ ପ୍ରଭାବିତ କରିଥିଲା । ଫ୍ରାନ୍ସରେ ଲୁଇ ରାଜବଂଶର ପତନ ପାଇଁ ସବିଶେଷ ଭୂମିକା ଶ୍ରମିକମାନେ ହିଁ ନେଇଥିଲେ । ହଜାର ହଜାର ଶ୍ରମିକ ବିକ୍ଷୋଭ ପ୍ରଦର୍ଶନ କଲେ ଓ ଏହାକୁ ମଧ୍ୟ ଦୃଢ଼ ହସ୍ତରେ ଦମନ କରାଗଲା । ଫରାସୀ ଶ୍ରମିକମାନଙ୍କର ଏହି ଆନ୍ଦୋଳନ ଥିଲା – "ଶ୍ରମିକ ସର୍ବହରା ଗୋଷ୍ଠୀର ସର୍ବପ୍ରଥମ ଆନ୍ଦୋଳନାତ୍ମକ ପନ୍ଥା" ବୋଲି ଜନନାୟକ ଲେନିନ୍ ମତବ୍ୟକ୍ତ କରନ୍ତି । (୨୩)

ଫରାସୀ ବିପ୍ଳବ ହିଁ ଏକ ପ୍ରକାର ଭିତ୍ତିଭୂମି ପ୍ରସ୍ତୁତ କରିଥିଲା ଓ ଏହି ଆନ୍ଦୋଳନକୁ ଆଗୁସାର କରିବା ପାଇଁ ପ୍ରମୁଖ ଭୂମିକା ଗ୍ରହଣ କରିଥିଲା ଧୀରେଧୀରେ ଏହା ଇଟାଲୀ, ଭିଏନା, କ୍ରୋଏସିଆ, ବେଲ୍‌ଜିୟମ୍, ପୋଲାଣ୍ଡ, ଆୟରଲ୍ୟାଣ୍ଡର ଶ୍ରମିକ ଗୋଷ୍ଠୀଙ୍କୁ ପ୍ରଭାବିତ କଲା । ୧୮୬୪ ମସିହା ସେପ୍‌ଟେମ୍ବର ୨୮ରେ ଇଂଲଣ୍ଡରେ ଶ୍ରମିକମାନଙ୍କର ଏକ ସମାବେଶ ଅନୁଷ୍ଠିତ ହେଲା । ଯାହାର ନାମ ହେଲା " International working mens Association." । ଏହାର ନେତୃତ୍ୱରେ ବିଭିନ୍ନ ସ୍ଥାନରେ ସମ୍ମିଳନୀମାନ ଅନୁଷ୍ଠିତ ହେଲା । ଏହାପରେ ୧୮୭୧ ମସିହାରେ 'ପ୍ୟାରୀ କମ୍ୟୁନ୍' ପ୍ରତିଷ୍ଠା ଲାଭ କଲା । ଏହା ଥିଲା ଶ୍ରମିକଗୋଷ୍ଠୀର ପ୍ରଥମ ସରକାର । କିନ୍ତୁ ଏହା ବେଶୀ ଦିନ ତିଷ୍ଠି ରହି ପାରିଲା ନାହିଁ । ଅଚିରେ ବିଲୟ ଘଟିଲେ ମଧ୍ୟ ଏହାର ଉଗ୍ରବୈପ୍ଳବିକ ଚିନ୍ତାଦର୍ଶ ଯୁଗଯୁଗପାଇଁ ଆଦର୍ଶ ହୋଇରହିଗଲା । ଭିନ୍ନଭିନ୍ନ ରାଷ୍ଟ୍ରରେ 'ଜର୍ମାନ୍ ସମାଜବାଦୀ ଗଣତାନ୍ତ୍ରିକ ମଜଦୁର ପାର୍ଟି', 'ଦି ୱାର୍କସ୍ ପାର୍ଟି', ଇଂଲଣ୍ଡରେ 'ଟ୍ରେଡ୍ ୟୁନିଅନ୍', ଋଷ୍‌ରେ 'ଏ ମୋନିସ୍‌ପେସନ୍ ଅଫ୍ ଲେବର୍', ଗ୍ରୁପ୍ ଗଠିତ ହେଲା । ଏଥିରୁ ପ୍ରମାଣିତ ହୁଏ ଯେ ଊନବିଂଶ ଶତକର ସପ୍ତମ ଦଶକ ବେଳକୁ ଶ୍ରମିକ ଗୋଷ୍ଠୀର ସାଙ୍ଗଠନିକ ପୃଷ୍ଠଭୂମି ବଳିଷ୍ଠ ଓ ସୁଦୃଢ଼ ହୋଇପାରିଥିଲା ।

ଊନବିଂଶ ଶତାବ୍ଦୀରେ ଋଷ୍ ଦେଶରେ ମଧ୍ୟ ମାର୍କସ୍‌ବାଦର ପ୍ରଭାବ ଅନୁଭୂତ ହେବାକୁ ଲାଗିଲା । ଋଷ୍‌ରେ ଏହାର ନେତୃତ୍ୱ ନେଲେ ଭ୍ଲାଦିମିର୍-ଇଲିଚ-ଲେନିନ୍ । ଏହି ମହାନ୍ ଜନନାୟକ ୧୮୭୦ ମସିହାରେ ସିମବସ୍କି ସହରରେ ଜନ୍ମ ଗ୍ରହଣ କରିଥିଲେ । ପିତା ସ୍ଥାନୀୟ ବିଦ୍ୟାଳୟର ନିର୍ଦ୍ଦେଶକ ଓ ଭାଇ ଥିଲେ ତତ୍‌କାଳୀନ ସମାଜବାଦୀ ନେତା । ୧୮୮୭ ମସିହାରେ ଲେନିନ୍ ପ୍ରଥମେ ଛାତ୍ର ଆନ୍ଦୋଳନରେ ସାମିଲ୍ ହୋଇ ଗିରଫ ହୋଇଥିଲେ । ଏହି ସମୟରେ ଋଷିଆର ଜନସାଧାରଣଙ୍କଠାରେ ମାର୍କସ୍‌ବାଦୀ ଦୃଷ୍ଟିଭଂଗୀ ପ୍ରତି ବିଶେଷ ଆଗ୍ରହ ପରିଲକ୍ଷିତ ହେଉଥାଏ । ସ୍ଥାନେସ୍ଥାନେ ସଂଗଠନମାନ ଗଢ଼ି ଉଠୁଥାଏ । ଋଷ୍‌ର ପିଟସ୍‌ବର୍ଗ ଥିଲା ଏହି ଆନ୍ଦୋଳନକାରୀ ମାନଙ୍କର ସମାବେଶସ୍ଥଳୀ । ଲେନିନ୍ ପିଟସ୍‌ବର୍ଗଠାରେ ଆଇନ୍ ପରୀକ୍ଷା ଦେବା ପରେ

ଏଠାରେ ପ୍ରଥମେ ଏକ ଶ୍ରମିକ ସଂଗଠନର ନେତୃତ୍ୱ ନିଅନ୍ତି । ୧୮୯୫ ମସିହାରେ ତାଙ୍କରି ନେତୃତ୍ୱରେ ମୁକ୍ତି ସଂଗ୍ରାମ ଲିଗ୍ ପିଟସ୍‌ବର୍ଗଠାରେ ଅନୁଷ୍ଠିତ ହୁଏ । ଏହା ହିଁ ଥିଲା ଶ୍ରମିକଗୋଷ୍ଠୀର ପ୍ରଥମ ଆନ୍ଦୋଳନାତ୍ମକ ପଦକ୍ଷେପ । ଯେଉଁଥିପାଇଁ ଲେନିନ୍‌ଙ୍କ ସମେତ ସଂଗଠନର ବହୁ କର୍ମକର୍ତ୍ତାଙ୍କୁ ଗିରଫ୍ କରାଯାଇଥିଲା ଓ କାରାଦଣ୍ଡ ଭୋଗିବାକୁ ପଡ଼ିଥିଲା । ଏହି କାରାବାସ କାଳରେ ଲେନିନ୍ ୩୦ ଖଣ୍ଡରୁ ଉର୍ଦ୍ଧ୍ୱ ପୁସ୍ତକ ରଚନା କରିଥିଲେ ।

୧୮୯୮ ମସିହାରେ ସୋସିଆଲ୍ ଡେମୋକ୍ରାଟିକ୍ ଲେବର୍ ପାର୍ଟିର ପ୍ରଥମ ଅଧିବେଶନ ମିନସ୍‌ଠାରେ ଅନୁଷ୍ଠିତ ହୁଏ । ଏହାପରେ ୧୯୦୩ ମସିହାରେ ଏହି ପାର୍ଟି ତା'ର ଦ୍ୱିତୀୟ ଅଧିବେଶନର ଆୟୋଜନ କରେ । ଏହି ଅଧିବେଶନରେ ଯେଉଁମାନେ ପ୍ରତିନିଧିତ୍ୱ କରୁଥିଲେ, ସେମାନେ ମାର୍କସ୍‌ବାଦୀ ତତ୍ତ୍ୱକୁ ବିକୃତ ରୂପରେ ବ୍ୟାଖ୍ୟାକରୁଥିଲେ । ଲେନିନ୍ ଏହାକୁ ଖୋଲାଖୋଲି ବିରୋଧ କଲେ । ଫଳରେ ପାର୍ଟିର କେନ୍ଦ୍ରୀୟ ସଂସ୍ଥା ମାନଙ୍କରେ ଲେନିନ୍‌ଙ୍କୁ କିଛି ସମର୍ଥନ ମିଳିଲା । ଏହି ସମର୍ଥକମାନଙ୍କୁ ନେଇ ଲେନିନ୍ ବଲ୍‌ସେଭିକ୍ ପାର୍ଟି ଗଠନ କଲେ । ଲେନିନ୍‌ଙ୍କ ନେତୃତ୍ୱାଧୀନ ଏହି ପାର୍ଟି ଋଷ୍‌ରେ ମାର୍କସ୍‌ବାଦର ପ୍ରତିଷ୍ଠା ପାଇଁ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଥିଲା । ଏ ସଂପର୍କରେ ଆଲୋଚନା କରିବାକୁ ଯାଇ କବି ରବି ସିଂ କହନ୍ତି –

"ଏକଦା ଋଷ୍ ବିପ୍ଳବ ଆଗରୁ 'ମାର୍କସ୍‌ବାଦ' ଥିଲା 'ପୋଥିବାଇଗଣ' ବା 'ଆକାଶ କୁସୁମ' । ମଣିଷର ବାସଭୂମି ଏଇ ଶ୍ୟାମଳ ଗ୍ରହ ପୃଥିବୀପୃଷ୍ଠରେ ସବୁଠାରୁ ପଛୁଆ ଦେଶରେ ମହାନ୍ ଅକ୍ଟୋବର ସମାଜବାଦୀ ମହାବିପ୍ଳବ (୧୯୧୭) ଜରିଆରେ ମାର୍କସ୍‌ବାଦକୁ ଦେଇଥିଲେ ବାସ୍ତବ ରୂପ ।"(୨୪)

ଅତ୍ୟାଚାରୀ ଜାର୍‌ଶାସନର କବଳରୁ ଋଷିଆକୁ ମୁକ୍ତ କରିବା ପାଇଁ ପ୍ରଥମ ପଦକ୍ଷେପ ସ୍ୱରୂପ ୨୦ ଲକ୍ଷରୁ ଅଧିକ ଶ୍ରମିକ "ଗଣତାନ୍ତ୍ରିକ ପ୍ରଜାତନ୍ତ୍ର ଦୀର୍ଘଜୀବୀ ହେଉ" ଧ୍ୱନି ଦେଇ ଧର୍ମଘଟ ଆରମ୍ଭ କରିଥିଲେ । ୧୯୦୫ ରେ ଦାନା ବାନ୍ଧିଥିବା ଏହି ବିପ୍ଳବ ୧୯୧୭ ମସିହା ବେଳକୁ ଉଗ୍ରରୂପ ଧାରଣ କରି "ଅକ୍ଟୋବର ବିପ୍ଳବ" ନାମରେ ପରିଚିତ ହେଲା ।

ପରିଣାମ ସ୍ୱରୂପ ଶେଷରେ ଜଘନ୍ୟ ଜାର୍ ଶାସନର ପୂର୍ଣ୍ଣଚ୍ଛେଦ ପଡ଼ିଲା । ଏକଥା ନିର୍ବିବାଦରେ ସ୍ୱୀକାର କରାଯାଇପାରେଯେ' ଅକ୍ଟୋବର ବିପ୍ଳବ ହିଁ ମାର୍କସ୍‌ବାଦକୁ ଏକ ପରିପୂର୍ଣ୍ଣ ରୂପ ପ୍ରଦାନ କଲା । ଲେନିନ୍‌ଙ୍କ ନେତୃତ୍ୱାଧୀନ ଏହି ବିପ୍ଳବ ଦ୍ୱାରା ହିଁ ମାର୍କସ୍‌ବାଦୀ ତତ୍ତ୍ୱର ସମାଜ ଜୀବନରେ ବାସ୍ତବ ପ୍ରୟୋଗ କରାଯାଇ ପାରିଲା ।

## ରଷିଆରେ ମାର୍କସ୍‌ବାଦର ପ୍ରତିଷ୍ଠା ଓ ଅନ୍ୟାନ୍ୟ ଦେଶରେ ମାର୍କସ୍‌ବାଦ

ରଷ୍ ଦେଶରେ ଲେନିନ୍‌ଙ୍କ ନେତୃତ୍ୱରେ ମାର୍କସ୍‌ବାଦର ସୁଦୃଢ଼ ଭିତ୍ତିଭୂମି ପ୍ରତିଷ୍ଠା ହୋଇପାରିଥିଲା । ରଷିଆରେ ଶ୍ରମିକ ନେତୃତ୍ୱାଧୀନ ସରକାର ଗଠିତ ହେବା ସହିତ ଇତିହାସରେ ଏକ ନୂତନ ଅଧ୍ୟାୟର ଅୟମାରମ୍ଭ ହୋଇପାରିଥିଲା । ଏହା ସମ୍ଭବ ହୋଇପାରିଥିଲା କେବଳ 'ଅକ୍ଟୋବର ବିପ୍ଳବ' ଦ୍ୱାରା । ଏହି ବିପ୍ଳବ ସଂଗଠିତ ହେବା ପରେ ପରେ ଲେନିନ୍ କହିଥିଲେ –

"ଆମ ଦେଶରେ ବୁର୍ଜୁୟା ମାନଙ୍କ ବିରୋଧରେ ଆମେ ବିଜୟ ଅର୍ଜନ କରିଛୁ; କିନ୍ତୁ ସେମାନଙ୍କ ମୂଳ ଏ ପର୍ଯ୍ୟନ୍ତ ବି ଉତ୍ପାଟିତ ହୋଇନାହିଁ । ଏ ପର୍ଯ୍ୟନ୍ତ ବି ସେମାନେ ଧ୍ୱଂସ ହୋଇ ନାହାନ୍ତି । xxxx । ସେଥିପାଇଁ ଆମେ ବୁର୍ଜୁୟା ମାନଙ୍କ ବିରୋଧରେ ନୂତନ ଉଚ୍ଚତର ଏକ ଲଢ଼େଇର ସମ୍ମୁଖୀନ ହେଉଛୁ ଆଉ ଏଇ ଲଢ଼େଇ ହେଉଛି ବୁର୍ଜୁୟା ମାନଙ୍କୁ ଉତ୍‌ଖାତ କରିବାର ଅତି ସହଜ ଦାୟିତ୍ୱଠାରୁ ଏପରି ଏକ ପରିସ୍ଥିତି ନିର୍ମାଣର ବହୁତ ବେଶୀ ଜଟିଳ ଓ କଷ୍ଟସାଧ ଦାୟିତ୍ୱକୁ ଉତ୍ତରଣର ଲଢ଼ାଇ, ଯେଉଁ ପରିସ୍ଥିତିରେ ବୁର୍ଜୁୟା ମାନଙ୍କର ଅସ୍ତିତ୍ୱ ଜୀଆଁଇ ରଖି ବା ନୂତନ ବୁର୍ଜୁୟା ମାନଙ୍କର ଆବିର୍ଭାବ ବି ଅସମ୍ଭବ ହୋଇ ପଡ଼ିବ ।"(୨୫)

ରଷ୍‌ର ଏହି ମହାନ୍ ଅକ୍ଟୋବର ବିପ୍ଳବ ଏକ ସାଧାରଣ ବିପ୍ଳବ ନଥିଲା । ଏହା ବିଶ୍ୱର ଶ୍ରମଜୀବି ମହଲରେ ଏକ ନୂତନ ଉନ୍ମାଦନା ଖେଳାଇବାକୁ ସକ୍ଷମ ହୋଇ ପାରିଥିଲା । ଏହା କେବଳ ରଷ୍ ଦେଶ ମଧ୍ୟରେ ଆବଦ୍ଧ ହୋଇ ପାରିଲା ନାହିଁ । ବିଶ୍ୱର ଅନ୍ୟାନ୍ୟ ପୁଂଜିବାଦୀ ରାଷ୍ଟ୍ରରେ ମଧ୍ୟ ଏହାର ପ୍ରତିଧ୍ୱନି ଅନୁରଣିତ ହେବାକୁ ଲାଗିଲା । ଫଳରେ ସମଗ୍ର ବିଶ୍ୱ ସାହିତ୍ୟରେ ଏକ ନୂତନ ଚିନ୍ତାଦର୍ଶର ଅୟମାରମ୍ଭ ହେଲା । ଯାହାକୁ ଆମେ ମାର୍କସ୍‌ବାଦ ନାମରେ ଅଭିହିତ କଲେ । ଏହାର ବିଶ୍ୱପ୍ରସାରୀ ଦୃଷ୍ଟିଭଂଗୀ ସଂପର୍କରେ J.V. Stalin ମତପ୍ରଦାନ କରନ୍ତି – " x x x a revolution of an International world for it signifies a radical turn in the world history of mankind, aturn from socialist world." (୨୬) ଅର୍ଥାତ୍ ଯେଉଁ ମାର୍କସ୍‌ବାଦୀ ତତ୍ତ୍ୱକୁ ଲେନିନ୍ ସର୍ବୋଚ୍ଚ ପର୍ଯ୍ୟାୟରେ ଉପନୀତ କରାଇବାକୁ ସକ୍ଷମ ହୋଇ ପାରିଥିଲେ, ଏହାର ମାଧ୍ୟମ ଥିଲା ସାହିତ୍ୟ । ସାହିତ୍ୟ ମାଧ୍ୟମରେ ହିଁ ଏହି ଚିନ୍ତାଧାରା ପୃଥିବୀର କୋଣେ ଅନୁକୋଣେ ଅନୁଭୂତ ହେବାକୁ ଲାଗିଲା । ପ୍ରଥମେ ରଷ୍ ଦେଶର ସାହିତ୍ୟ କଥା ଆଲୋଚନା କରାଯାଇପାରେ ।

ଉନବିଂଶ ଶତକର ପ୍ରାରମ୍ଭିକ ପର୍ଯ୍ୟାୟରେ ଋଷୀୟ ସାହିତ୍ୟଗୁଡ଼ିକ ପ୍ରଥମ ବିଶ୍ୱଯୁଦ୍ଧ କାଳୀନ ଅବସ୍ଥାର ଚିତ୍ର ସାଂଗକୁ ଜାର୍ ଶାସକମାନଂକର ସ୍ତୁତିଗାନ ମଧ୍ୟରେ ସୀମାବଦ୍ଧ ଥିଲା । କିନ୍ତୁ ଉନବିଂଶ ଶତକର ଶେଷ ଓ ବିଂଶ ଶତକର ପ୍ରାରମ୍ଭରେ ଋଷ୍‌ରେ ସାମାଜିକ ଅର୍ଥନୈତିକ ଓ ରାଜନୈତିକ କ୍ଷେତ୍ରରେ ଯେଉଁ ଯୁଗାନ୍ତକାରୀ ପରିବର୍ତ୍ତନ ଘଟିଲା ତାହା ସାମସମୟିକ ସାହିତ୍ୟିକ ବାତାବରଣକୁ ମଧ୍ୟ ପ୍ରଭାବିତ କଲା । ଯାହାର ପ୍ରତିଫଳନ ମାକ୍‌ସିମ୍‌ଗର୍କୀ, ମାୟୋକୋଭସ୍କି, ୟେସେନିନ୍ ପ୍ରଭୃତି ସାହିତ୍ୟସ୍ରଷ୍ଟାମାନଙ୍କ ରଚନାରେ ଦୃଷ୍ଟିଗୋଚର ହୁଏ । ଗର୍କୀଙ୍କର 'ଦି ସଂଗ୍‌ଅଫ୍ ଫାଲ୍‌କର୍', 'ଦି ଷ୍ଟର୍ମ ପେଟ୍ରେଲ୍', 'ମଦର୍' ଇତ୍ୟାଦି କୃତିମାନଙ୍କରେ ବୈପ୍ଳବିକ ମୂଲ୍ୟବୋଧ ସହିତ ଜୀବନ ପ୍ରତି ପ୍ରଗାଢ଼ ନିଷ୍ଠା ଓ ଅନୁରାଗ ପରିଲକ୍ଷିତ ହୁଏ । ଏ ସଂପର୍କରେ ଡଃ ବିଜୟ ଶତପଥୀ କୁହନ୍ତି :-

"ସୋଭିଏଟ୍ ସାହିତ୍ୟ ଓ ଅକ୍ଟୋବର ବିପ୍ଳବ ସଂପର୍କରେ ଆଲୋଚନା କଲାବେଳେ ମାକ୍‌ସିମ୍ ଗର୍କୀଙ୍କର ନାମ ମନକୁ ଆସେ । ଗର୍କୀଙ୍କ ରଚନାରେ ଯେଉଁ ବୈପ୍ଳବିକ ମୂଲ୍ୟବୋଧ ରହିଥିଲା ତାହା ତାଂକୁ ଋଷିଆର ଜଣେ ବିଶିଷ୍ଟ ସମାଜବାଦୀ ବାସ୍ତବତାର ଚିନ୍ତକ ଭାବେ ପ୍ରତିପାଦନ କରିପାରିଛି ।"(୨୭)

ଠିକ୍ ସେହିପରି ମାୟୋକୋଭସ୍କିଙ୍କର ଏକ କବିତାରୁ ତାଙ୍କର ବୈପ୍ଳବିକ ଚିନ୍ତାଦର୍ଶ ପ୍ରତିଥିବା ଆଭିମୁଖ୍ୟ ସ୍ପଷ୍ଟ ବାରି ହୋଇପଡ଼େ ।

" I will tease your thought
day dreaming on a soft need bra in.
Just like a bloated lackey
bolling on a greasy couch."
(Cloud in Trousers - Ma,.kovasky).

ମାର୍କସୀୟ ଚିନ୍ତାଦର୍ଶକୁ ବିଶ୍ୱପ୍ରସାରୀ କରିବାରେ ଲେନିନ୍‌ଙ୍କର ଭୂମିକା ଯେପରି ଅବିସ୍ମରଣୀୟ ଠିକ୍ ସେପରି ଗର୍କୀ, ମାୟୋକୋଭସ୍କିଙ୍କର ଅବଦାନ ମଧ୍ୟ କୌଣସି ଗୁଣରେ କମ୍ ନୁହେଁ । ସମଗ୍ର ବିଶ୍ୱବାସୀଙ୍କୁ ଆଶ୍ଚର୍ଯ୍ୟ ଚକିତ କରି ଦେଇଥିବା 'ଅକ୍ଟୋବର ମହାବିପ୍ଳବ' ହିଁ ସାରାବିଶ୍ୱରେ ବିପ୍ଳବ ଜନଯୁଦ୍ଧର ଜନନୀ ଥିଲା । ଋଷୀୟ ଜନସାଧାରଣଙ୍କର ଏକନିଷ୍ଠ ଉଦ୍ୟମ ଦ୍ୱାରା ଯଦି ଅତ୍ୟାଚାରୀ ଜାର୍ ଶାହୀର ପତନ ଘଟି ପାରିଲା । ତା' ହେଲେ ସମଗ୍ର ବିଶ୍ୱର ଜନତା ମଧ୍ୟ ଏକଜୁଟ୍ ହୋଇ ବୈପ୍ଳବାତ୍ମକ ପନ୍ଥା ଅବଲମ୍ବନ କଲେ ସମାଜରୁ ଶୋଷଣର ବିନାଶ ଘଟାଯାଇ ପାରିବ । ଏହି ବିପ୍ଳବର ପ୍ରଭାବ ସଂପର୍କରେ ଷ୍ଟାଲିନ୍ ମତ ପ୍ରଦାନ କରନ୍ତି ଯେ: –

"ଏହି ବିପ୍ଳବ କ'ଣ ଗୋଟିଏ ମାତ୍ର ଦେଶରେ ସଂଘଟିତ ହୋଇପାରେ ନା

ବୃହଦାୟତନ ଶିଳ୍ପ ଦୁନିଆ ତମାମ୍ ବଜାର ସୃଷ୍ଟି କରି ଦୁନିଆର ନାନା ଦେଶଙ୍କୁ ବିଶେଷତଃ ଉନ୍ନତ ଦେଶ ଗୁଡ଼ିକୁ ଏତେ ଘନିଷ୍ଠ ବନ୍ଧନରେ ବାନ୍ଧିଛି ଯେ, ପ୍ରତିଟି ଦେଶ ନିର୍ଭର କରୁଛି ଅନ୍ୟ ଦେଶରେ କ'ଣ ଘଟୁଛି ତାରି ଉପରେ । ତା' ଛଡ଼ା ବୃହଦାୟତନ ଶିଳ୍ପ ଉନ୍ନତ ଦେଶ ଗୁଡ଼ିକର ସାମାଜିକ ବିକାଶକୁ ଏପରି ସମାନ କରିଦେଇଛି ଯେ, ବୁର୍ଜୁୟା ଓ ସର୍ବହରା ଶ୍ରେଣୀ ହିଁ ହୋଇ ଉଠିଛନ୍ତି ସମାଜର ନିର୍ଦ୍ଧାରକ ଦୁଇଶ୍ରେଣୀ ଏବଂ ସେମାନଙ୍କ ଭିତରେ ସଂଗ୍ରାମ ହିଁ ହୋଇ ଉଠିଛି ଆଜିକା ଦିନରେ ପ୍ରଧାନ ସଂଗ୍ରାମ । ଫଳତଃ କମ୍ୟୁନିଷ୍ଟ ବିପ୍ଳବ ଖାଲି ଏକ ଜାତୀୟ ବିପ୍ଳବ ହେବ ନାହିଁ । ଏକା ସାଙ୍ଗରେ ତାହା ସଂଘଟିତ ହେବ, ସବୁ ଉନ୍ନତ ଦେଶରେ, ଅର୍ଥାତ୍ ଅନ୍ତତଃ ପକ୍ଷେ ଇଂଲଣ୍ଡ, ଆମେରିକା, ଫ୍ରାନ୍ସ ଓ ଜର୍ମାନୀରେ ।(୨୮)

ଷ୍ଟାଲିନ୍‌ଙ୍କ ମତାମତରୁ ପ୍ରତୀୟମାନ ହୁଏ ଯେ, ମାର୍କସ୍‌ବାଦ ଧୀରେଧୀରେ ସମଗ୍ର ବିଶ୍ୱ ଜଗତକୁ ପ୍ରଭାବିତ କଲା । ଏହାକୁ ଆଧାର କରି ବହୁ ରାଷ୍ଟ୍ରର ସାହିତ୍ୟ ସମୀକ୍ଷକ ଗଣ ସମାଲୋଚନାର ନୂତନ ଦିଗନ୍ତ ଉଦ୍‌ଘାଟନ କରିବା ସଙ୍ଗେସଙ୍ଗେ ସାମ୍ୟବାଦୀ ତତ୍ତ୍ୱର ପ୍ରଚାର ଓ ପ୍ରସାର ଦିଗରେ ଯଥେଷ୍ଟ ଉଦ୍ୟମ କରିଥିଲେ । ଚୀନ୍‌ରେ ଏହି ତତ୍ତ୍ୱକୁ ପ୍ରଚାର କରିବାରେ ପ୍ରମୁଖ ଭୂମିକା ମାଓ-ସେ-ତୁଙ୍ଗ୍ ଗ୍ରହଣ କରିଥିଲେ । ସାହିତ୍ୟରେ ବୈପ୍ଳବିକ ଚିନ୍ତାଦର୍ଶର ପ୍ରୟୋଗ ମାଧ୍ୟମରେ ଚୀନ ବାସୀଙ୍କୁ ନିଜର ଅଧିକାର ସଂପର୍କରେ ସଚେତନ କରାଇବାର ଏକନିଷ୍ଠ ଅଧିକାରୀ ଥିଲେ 'ମାଓ' । ତାଙ୍କ ଦ୍ୱାରା ଆରମ୍ଭ କରାଯାଇଥିବା 'ନୟା ଗଣତାନ୍ତ୍ରିକ ବିପ୍ଳବ' ସାମ୍ୟବାଦୀ ବିପ୍ଳବ କ୍ଷେତ୍ରରେ ଏକ ମହାର୍ଘ ଅବଦାନ । ତାଙ୍କ ଦ୍ୱାରା ରଚିତ 'ଚୀନା ସମାଜର ଶ୍ରେଣୀ ବିଶ୍ଳେଷଣ', 'ବର୍ତ୍ତମାନର ପରିସ୍ଥିତି ଓ ଆମର କର୍ତ୍ତବ୍ୟ' ଇତ୍ୟାଦି ପୁସ୍ତକରେ ନିଜର ସାମ୍ୟବାଦୀ ଚିନ୍ତାଧାରା ସଂପର୍କିତ ମତାମତ ପୋଷଣ କରିଛନ୍ତି । 'ମାଓ' ଙ୍କ ସଂପର୍କରେ କବି ରବି ସିଂ ମତପ୍ରଦାନ କରନ୍ତି –

"ଏହା ହେଉଛି ମାର୍କସ୍‌ବାଦ – ଲେନିନ୍‌ବାଦର ଆଉ ଏକ ଅଗ୍ରଲମ୍ଫ । ଏ ଚିନ୍ତାଧାରା ହଠାତ୍, ଅକସ୍ମାତ୍ ଆକାଶରୁ ଗଳି ପଡ଼ି ନାହିଁ କି ଗଭୀର ଅରଣ୍ୟରୁ ରାତାରାତି 'ଗଜୁରି ଉଠି ନାହିଁ । ଚୀନ୍ ବିପ୍ଳବର ପ୍ରକ୍ରିୟା ଭିତରେ ଉଦ୍‌ଭୂତ ଓ ପରିବର୍ଦ୍ଧିତ ମାଓ ଚିନ୍ତାଧାରା ଚୀନ୍ କମ୍ୟୁନିଷ୍ଟ ପାର୍ଟିର ଯୌଥ ପ୍ରଜ୍ଞାର କେବଳ ଘନୀଭୂତ ଫଳଶ୍ରୁତି ନୁହେଁ, ଚୀନ୍‌ର ଜନସାଧାରଣଙ୍କ ମହାସଂଗ୍ରାମ ଲବ୍ଧ ବିଜୟ ସମୂହର ସାର ନିର୍ଯ୍ୟାସ । (୨୯)

ମାର୍କସ୍‌ବାଦ - ଲେନିନ୍‌ବାଦ - ମାଓ-ଚିନ୍ତାଧାରାର ନିର୍ଯ୍ୟାସ ଗୋଟିଏ ସୂତ୍ରରେ ଆବଦ୍ଧ । ପ୍ରତ୍ୟେକର ଲକ୍ଷ୍ୟ ଜନସାଧାରଣଙ୍କର ଉନ୍ନତି ଓ ସେଥିପାଇଁ ମହାସଂଗ୍ରାମ ।

'ମାଓ'ଙ୍କ ଚିନ୍ତାଧାରା ପ୍ରତି ସମ୍ମାନ ଜଣାଇ ଏହାକୁ ଆଗେଇ ନେବା ପାଇଁ ସାହାଯ୍ୟ କରିଥିଲେ 'ଚାଓ-ୟାଙ୍ଗ୍' । ଧୀରେ ଧୀରେ ମାର୍କସ୍‌ବାଦ ଇଂରାଜୀ ସାହିତ୍ୟକୁ ପ୍ରଭାବିତ କଲା । ଫରାସୀ ବିପ୍ଳବ ସଂଗଠିତ ହେବା ପରେ ଫ୍ରାନ୍ସରେ ନେପୋଲିୟନଙ୍କ ଅଧିନାୟକତ୍ୱରେ ୟୁରୋପରେ ନିଜର ପ୍ରାଧାନ୍ୟ ବିସ୍ତାର କରିପାରିଲା ଓ ଇଂରେଜମାନଙ୍କର ପ୍ରମୁଖ ପ୍ରତିଦ୍ୱନ୍ଦ୍ୱୀ ରୂପେ ଉଭା ହେଲା । ପରିଣାମ ସ୍ୱରୂପ ଇଂଲଣ୍ଡ ଓ ଫ୍ରାନ୍ସ ମଧ୍ୟରେ ଯୁଦ୍ଧ ଲାଗିଲା । ଯୁଦ୍ଧରେ ଇଂରେଜମାନେ ବିଜୟ ଲାଭ କଲେ । ବାଣିଜ୍ୟ ବ୍ୟବସାୟ ଉପରେ ସେମାନେ ନିଜର ଏକଚାଟିଆ ଅଧିକାର ସାବ୍ୟସ୍ତ କଲେ । ଭିକ୍ଟୋରିଆଙ୍କ ଶାସନକାଳରେ ଯେଉଁ ପୁଂଜିପତି ଗୋଷ୍ଠୀ ଥିଲେ ସେମାନେ ବାଣିଜ୍ୟରୁ ପ୍ରଚୁର ଅର୍ଥ ସଂଗ୍ରହ କଲେ । କିନ୍ତୁ ଶ୍ରମିକ ଓ ନିମ୍ନ ବର୍ଗର ଜନସାଧାରଣମାନେ ଏହାଦ୍ୱାରା କୌଣସି ଲାଭ ପାଇଲେ ନାହିଁ । ବିଜ୍ଞାନର ଦ୍ରୁତ ଅଗ୍ରଗତି ଫଳରେ ସମାଜରେ ସଂସ୍କାର ଆନୟନ ପାଇଁ ପ୍ରୟାସ କରାଗଲା । ଶିଳ୍ପର ପ୍ରସାର, ଧନଲିପ୍‌ସା ମନୋବୃତ୍ତି, ସାମ୍ରାଜ୍ୟବାଦୀ ଚିନ୍ତାଧାରା ସାମାଜିକ ଜୀବନକୁ କ୍ଷତାକ୍ତ କରିପକାଇଲା । ତେଣୁ ଇଂରାଜୀ ସାହିତ୍ୟିକମାନେ ମଧ୍ୟ ସାହିତ୍ୟ ମାଧ୍ୟମରେ ତଥାକଥିତ ବ୍ୟବସ୍ଥା ବିରୋଧରେ ବିପ୍ଳବ କରିବାର ପ୍ରୟାସ କଲେ ।

ମାର୍କସ୍‌ବାଦର ପ୍ରଭାବରେ ପୂର୍ବ ୟୁରୋପ, ଚୀନ୍, କୋରିୟା, ଭିଏତ୍‌ନାମ୍ ପ୍ରଭୃତି ଦେଶରେ ମଧ୍ୟ ସର୍ବହରା ନିମ୍ନବର୍ଗର ଜନତା ସଂଗ୍ରାମୀ ମନୋବୃତ୍ତିକୁ ପ୍ରାଧାନ୍ୟ ଦେଇଛନ୍ତି ଓ ନିଜର ଅଧିକାର ହାସଲ ସଂପର୍କରେ ସଚେତନ ହୋଇଛନ୍ତି । ଏହା ସମ୍ଭବ ହୋଇପାରିଛି ବିଶେଷକରି ସାହିତ୍ୟିକମାନଙ୍କର ସୃଜନଶୀଳ ସୃଷ୍ଟିମାଧ୍ୟମରେ । ମାର୍କସ୍‌ବାଦକୁ ଯଥାଯଥ ରୂପ ପ୍ରଦାନ କରିବା ସହିତ ତାହାକୁ ପ୍ରଚାରିତ ଏବଂ ପ୍ରସାରିତ କରିବାରେ ଏମାନଙ୍କର ଭୂମିକା ଉଲ୍ଲେଖନୀୟ ।

## ମାର୍କସ୍‌ବାଦୀ ସାହିତ୍ୟର ଆଭିମୁଖ୍ୟ

ଜର୍ମାନ୍‌ର ପ୍ରଖ୍ୟାତ ଦାର୍ଶନିକ କାର୍ଲମାର୍କସ୍‌ଙ୍କ ନାମାନୁସାରେ ମାର୍କସ୍‌ବାଦର ସୃଷ୍ଟି । ଆଧୁନିକ ସାମ୍ୟବାଦ ବା ବୈଜ୍ଞାନିକ ସମାଜବାଦ ମାର୍କସ୍‌ବାଦ ନାମରେ ପରିଚିତ । ଏହା ବୈପ୍ଳବିକ ସମାଜବାଦର ଏକ ପ୍ରମୁଖ ରୂପ । ସମାଜ ମଧ୍ୟରୁ ଶୋଷଣ, କଷଣର ବିଲୋପ ସାଧନ କରାଯାଇ ଏକ ଶୋଷଣ ବିହୀନ ସାମ୍ୟବାଦୀ ସମାଜ ଗଠନ ଉପରେ ଏହା ପର୍ଯ୍ୟବେସିତ ଥିଲା । ପ୍ରାଥମିକ ପର୍ଯ୍ୟାୟରେ ଏହା ଅର୍ଥନୀତି ଓ ରାଜନୀତି କ୍ଷେତ୍ରରେ ପରିବର୍ତ୍ତନ ପାଇଁ ଉଦ୍ଦିଷ୍ଟ ଥିଲା । କିନ୍ତୁ ସମୟକ୍ରମେ ଏହା ସାହିତ୍ୟ କ୍ଷେତ୍ରକୁ ମଧ୍ୟ ପ୍ରବେଶ କଲା । ମାର୍କସ୍‌ବାଦୀ ସାହିତ୍ୟର ସ୍ୱରୂପ ଓ ବୈଶିଷ୍ଟ୍ୟ ଆଲୋଚନାରୁ ପ୍ରତିପାଦିତ ହୁଏ ଯେ, ଏହା ସମାଜ କୈନ୍ଦ୍ରିକ ଚିନ୍ତାଧାରା ଉପରେ ଗୁରୁତ୍ୱାରୋପ

କରେ । ଏହାର ଏକ ପରିପୂର୍ଣ୍ଣ ରୂପ ଅନ୍ୟାନ୍ୟ ସାହିତ୍ୟ ତୁଳନାରେ ମାର୍କସ୍‌ବାଦୀ ସାହିତ୍ୟରେ ବିଶେଷକରି ବର୍ଣ୍ଣିତ ହୋଇଥାଏ । ଡଃ ବିଜୟ କୁମାର ଶତପଥୀଙ୍କ ମତରେ – "ମାର୍କସ୍‌ବାଦୀ ସାହିତ୍ୟ ଚେତନାରେ ସାହିତ୍ୟ ଓ ସମାଜର ଏହି ଅନ୍ୟୋନ୍ୟାଶ୍ରିତ ସମ୍ବନ୍ଧ ଯେପରି ବିଶଦ୍, ଗଭୀର ଓ ବୈଜ୍ଞାନିକ ଦୃଷ୍ଟି ସମ୍ପନ୍ନ ତାହା ଅନ୍ୟ କୌଣସି ସାହିତ୍ୟ ବିଚାରରେ ମିଳେ ନାହିଁ । ଅନ୍ୟ ସମୀକ୍ଷା ଓ ବିଚାରଧାରା ଗୁଡ଼ିକରେ ଏହି ଚର୍ଚ୍ଚା ଏକ ସାମାନ୍ୟ ତଥା କଥନ ରୂପେ ଦେଖିବାକୁ ମିଳେ ।(୩୦)

ସାମ୍ୟବାଦୀ ସାହିତ୍ୟ କଳ୍ପନା ବିଳାସିତାର ଜୟଗାନ ନକରି ସମାଜର ବହୁବିଧ ସମସ୍ୟାର ଚିତ୍ରଣ କରିବା ସଙ୍ଗେସଙ୍ଗେ ଏହାର ସରଳ ସମାଧାନ ଉପରେ ଗୁରୁତ୍ୱାରୋପ କରେ । ପୁଂଜିବାଦର ବିଲୋପ ସାଧନ ପାଇଁ ଏଥିରେ ସ୍ପଷ୍ଟ ସଂକେତ ନିହିତ ଥାଏ । ଶୋଷଣ, କଷଣ, ଅବହେଳା ଓ ଅତ୍ୟାଚାରରୁ ମୁକ୍ତିଦେଇ ମନୁଷ୍ୟ ସମାଜର ଉପକାର ଦିଗରେ ନିଜକୁ ନିୟୋଜିତ କରେ । ଏହି ସାହିତ୍ୟର ଆଭିମୁଖ୍ୟ ସଂପର୍କରେ ମତାମତ ପ୍ରଦାନ କଲାବେଳେ ଲେନିନ୍ ମଧ୍ୟ ପୁଂଜିପତିମାନଙ୍କର ଶୋଷଣ ଉପରେ ଗୁରୁତ୍ୱାରୋପ କରିଛନ୍ତି । ତାଙ୍କ ମତରେ –

"ଯେଉଁ ସମାଜ ଅର୍ଥ, ଶକ୍ତି ଉପରେ ଆଧାରିତ, ଯେଉଁଥିରେ ପରିଶ୍ରମୀ ଜନସମୁଦାୟ ଭୋକରେ ମରନ୍ତି ଏବଂ ପୁଂଜିପତିମାନେ ଆଳସ୍ୟରେ ସମୟ କଟାନ୍ତି, ସେଠାରେ ସ୍ୱତନ୍ତ୍ରତା ସମ୍ଭବପର ନୁହେଁ ।" (୩୧)

ଠିକ୍ ସେହିପରି ଗର୍କୀ ମଧ୍ୟ ମାର୍କସ୍‌ବାଦୀ ସାହିତ୍ୟର ଆଭିମୁଖ୍ୟ ସଂପର୍କରେ ମତବ୍ୟକ୍ତ କରନ୍ତି –

"Literatures task is to minnor and depict life and labour and to incarnate truth in images, characters types of man." (32)

ଗର୍କୀଙ୍କର ମତାମତ ମଧ୍ୟରେ ମାର୍କସ୍‌ବାଦୀ ସାହିତ୍ୟର ଆଭିମୁଖ୍ୟ ସଂପର୍କରେ ସୂଚନା ମିଳେ । ମାର୍କସ୍‌ବାଦୀ ସାହିତ୍ୟ ମୁଖ୍ୟତଃ ମାନବ ଜୀବନର ସର୍ବାଙ୍ଗୀନ ଉନ୍ନତି ବିଧାନ କାମନା କରେ । ଗର୍କୀ ଏହା ଉପରେ ପ୍ରାଧାନ୍ୟ ଆରୋପ କରିବାର କାରଣଟି ହେଉଛି, ଏହା ମାନବୀୟ ଓ ଆନ୍ତର୍ଜାତିୟ ଚେତନାରେ ଉଦ୍‌ବୁଦ୍ଧ । ଏହା ବ୍ୟକ୍ତିକୁ ଜାତି, ଧର୍ମ ରାଷ୍ଟ୍ରର ସଂକୀର୍ଣ୍ଣ ପରିଚୟରୁ ମୁକ୍ତ କରି ମାନବତାର ନୂତନ କୀର୍ତ୍ତିମାନ ସ୍ଥାପନ କରେ । ସମାଜରେ ବୈପ୍ଳବିକ ପରିବର୍ତ୍ତନର ଆନୟନ କରିବା ସହିତ ଅର୍ଥନୈତିକ ସମତା ଓ ସାମାଜିକ ନ୍ୟାୟ ଉପରେ ଗୁରୁତ୍ୱାରୋପ କରେ । ଏତଦ୍‌ବ୍ୟତୀତ ବ୍ୟକ୍ତି, ସମାଜ ଓ ରାଷ୍ଟ୍ର ମଧ୍ୟରେ ରହିଥିବା ଯୋଗସୂତ୍ରକୁ ଏହା ଆହୁରି ସୁଦୃଢ଼ ଓ ବଳିଷ୍ଠ କରିଥାଏ ।

ମାର୍କସ୍‌ବାଦୀ ସାହିତ୍ୟର ଅନ୍ୟତମ ଆଭିମୁଖ୍ୟ ହେଉଛି "ଜୀବନ ପାଇଁ କଳା"ର ଉପଯୋଗିତାକୁ ପ୍ରାଧାନ୍ୟ ପ୍ରଦାନ କରିବା । କଳା, ସାହିତ୍ୟର ସୃଷ୍ଟି ମନୁଷ୍ୟକୁ ନେଇ ହେବା ଉଚିତ୍ । ଏଥିରେ ମଧ୍ୟ ମନୁଷ୍ୟ ଜୀବନର ବାସ୍ତବ ଚିତ୍ର ଅଂକିତ ହେବା ଉଚିତ୍ । ସର୍ବଦା ବିଜୟର ଉଦ୍‌ଘୋଷଣା କରୁଥିବା ଏହି ମାର୍କସ୍‌ବାଦୀ ସାହିତ୍ୟକୁ ପରାଜୟର ଗ୍ଲାନି ସ୍ପର୍ଶ କରେ ନାହିଁ । ସର୍ବଦା ଶାଶ୍ୱତ ସତ୍ୟ, ନ୍ୟାୟ ଓ ନୈତିକତାର ପୃଷ୍ଠଭୂମି ଉପରେ ଏହା ପ୍ରତିଷ୍ଠିତ ହୋଇଥାଏ । ମଣିଷକୁ ନିଜର ନ୍ୟାର୍ଯ୍ୟ, ଅଧିକାର ସଂପର୍କରେ ସଚେତନ କରାଇବା ସହିତ ଆଗାମୀ କାଲିର ସ୍ୱର୍ଣ୍ଣାଭ ଭବିଷ୍ୟତର ବାର୍ତ୍ତା ପ୍ରଚାର କରିଥାଏ । ସର୍ବୋପରି ପାଠକର ମନପ୍ରାଣରେ ଏହା ଏକ ନୂତନ ଉନ୍ମାଦନା ଓ ନୂତନ ମୂଲ୍ୟବୋଧ ସଂଚାରିତ କରିବାକୁ ସକ୍ଷମ ହୋଇଥାଏ ।

---

୧- ଗୀତା - ୪ର୍ଥ, ଅଧ୍ୟାୟ, ୮ମ ଶ୍ଳୋକ
୨- 'ଉତ୍ତର ପ୍ରଗତି ସାହିତ୍ୟ' (୨)- ବିଷ୍ଣୁପଦ ଦାଶ - 'ଅନୁରୂପା' ୨ୟ ବର୍ଷ ୬ଷ୍ଠ ସଂଖ୍ୟା ଜୁଲାଇ - ଅଗଷ୍ଟ-ସେପ୍ଟେମ୍ବର - ୨୦୦୦ ପୃ - ୧୭ ।
୩- 'Mao - Tse- Tung' : selected works', vol - IV, Page - 428
୪- 'ବିପ୍ଳବୀ ପାର୍ଟି ଗଡ଼ାର କାଜ୍ ଅଭିଲମ୍ବେ ସୁରୁ କରତେ ହବେ' ଚାରୁ ମଜୁମ୍‌ଦାର, ଦେଶବ୍ରତୀ ପ୍ରତିକା - ୧୯୭୧, ଅକ୍ଟୋବର ୨୬ସଂଖ୍ୟା ।
୫- 'ଆସନ୍ତାକାଲିର ସାହିତ୍ୟ': ପ୍ରାଣନାଥ ପଟ୍ଟନାୟକ - ନବଯୁଗ ଗ୍ରନ୍ଥାଳୟ: ପୃ-୪ ।
୬- 'ସମାଜବାଦୀ ସାହିତ୍ୟର ନାନ୍ଦନିକ ମୂଲ୍ୟବୋଧ' - "ସାହିତ୍ୟର ଆତ୍ମା" - ପୃଷ୍ଠା - ୧୯, ଆଶିଷ ମହାପାତ୍ର
୭- 'ସାମ୍ୟବାଦ ବା ସୋସିଆଲିଜିମ୍' : ରଘୁନାଥ ଦାସ ରଚନା ସମଗ୍ର - ଚିତ୍ରୋତ୍ପଳା ପବ୍ଲିକେସନ୍‌ସ, ପୃ ୬୫୯ ।
୮- 'ଭେଟଭାରତୀ' : ସାକ୍ଷାତକାର ସଂକଳନ : କବି ହୃଶୀକେଶ ମଲ୍ଲିକ, ଚିତ୍ରୋତ୍ପଳା ପବ୍ଲିକେସନ୍‌ସ୍ ପୃ - ୮୮ ।
୯- 'ପୁନଶ୍ଚ' : ମୁଖବନ୍ଧ - କବି ରଘୁନାଥ ଦାସ ।
୧୦- 'କାବ୍ୟ ଆଳାପ' - ସଂପାଦନା - ଭିକାରୀ ଧଳ, ପୃ - ୧୩୭ ।
୧୧- 'ଝଙ୍କାର' - ସଂପାଦକୀୟ - ଡଃ ହରେକୃଷ୍ଣ ମହତାବ, ୨୧ ଶ ବର୍ଷ, ବିଷୁବ ସଂଖ୍ୟା ।
୧୨- 'ସମାଜବାଦୀ ସାହିତ୍ୟର ନାନ୍ଦନିକ ମୂଲ୍ୟବୋଧ' - ସାହିତ୍ୟର ଆତ୍ମା ଓ ଅନ୍ୟାନ୍ୟନିବଂଧ - ଆଶୀଷ୍ ମହାପାତ୍ର - ପୃ ୧୯ ।
୧୩- 'ବିପ୍ଳବ' ପ୍ରବଂଧ - ପ୍ରା. ଚିତ୍ତରଂଜନ ଦାସ ।
୧୪- 'ଏକ ବିଂଶ ଶତାବ୍ଦୀର ସାହିତ୍ୟ' ଡଃ ବୈଷ୍ଣବ ଚରଣ ସାମଲ. ଇସ୍ତାହାର - ୫୯/ ୬୦ ।

୧୫- 'ଶ୍ରୀଯୁକ୍ତ ମନମୋହନ ମିଶ୍ରଙ୍କ ସାକ୍ଷାତକାର' -ଓଡ଼ିଆ ସାହିତ୍ୟରେ ପ୍ରଗତି ଧାରା ଡଃ ବିଜୟ କୁମାର ଶତପଥୀ ପୃ - ୬୭୧ ।
୧୬- 'କାର୍ଲମାର୍କସ୍ ଜୀବନୀ' ଇ. ଷ୍ଟୋପାନୋଭା, ଅନୁବାଦ : ଆଶିଷ୍ ମହାପାତ୍ର ନବଯୁଗ ଗ୍ରନ୍ଥାଳୟ ୨ୟ ସଂସ୍କରଣ - ୧୯୮୩, ପୃଷ୍ଠା - ୩ ।
୧୭- 'The fundamentals of marxist leninist philosophy' progress publishers, Moscow - (1974) P - 1
୧୮- 'Manifesto of the communist party' : Progress publishers, Moscow - 1977.
୧୯- 'ରଘୁନାଥ ଦାସ ରଚନା ସମଗ୍ର' ଚିତ୍ରୋତ୍ପଳା ପବ୍ଲିକେସନ୍ସ, ପୃ ୬୪୯ ।
୨୦- 'Talks at the yenan forum on Art and literature', May, 1942: Mao - Tse - Tung Art and Literature. National Book agency pvt. Dec - 1967 p - 83.
୨୧- 'ଭି.ଆଇ.ଲେନିନ୍ ସଂକଳିତ ରଚନାବଳୀ' ୨୯ଶ ଖଣ୍ଡ, ପ୍ରଗତି ପ୍ରକାଶନ, ମସ୍କୋ ୧୯୬୫, ପୃ - ୫୦୫ ।
୨୨- 'ଓଡ଼ିଆ ସାହିତ୍ୟରେ ପ୍ରଗତିବାଦୀ ଧାରା' ବିଜୟ କୁମାର ଶତପଥୀ ଓଡ଼ିଶା ବୁକ୍‌ଷ୍ଟୋର, ପୃ - ୮ ।
୨୩- 'ଭି.ଆଇ.ଲେନିନ୍ ରଚନା ସଂକଳନ' ୨୯ ଶ ଖଣ୍ଡ ପୃ - ୩୦୯ ।
୨୪- 'ନିର୍ବାଚିତ ନିବନ୍ଧ' : କବି ରବି ସିଂ କାହଣୀ ପ୍ରକାଶନୀ ପୃ ୧୦୨ ।
୨୫- 'ଲେନିନ୍' ସଂକଳିତ ରଚନାବଳୀ ୨୯ ଶଖଣ୍ଡ- ପୃ ୨୪୪ ।
୨୬- 'J.V. Stalin : Problems of leninism' : Moscow Edition : 1947 Page - 98.
୨୭- 'ଓଡ଼ିଆ ସାହିତ୍ୟରେ ପ୍ରଗତିବାଦୀ ଧାରା' : ଡଃ ବିଜୟ କୁମାର ଶତପଥୀ, ଓଡ଼ିଶା ବୁକ୍‌ଷ୍ଟୋର, ପୃ - ୩୮ ।
୨୮- 'J.V. Stalin, On the opposition' : peking Edition : 1975 page - 280
୨୯- 'ରବି ସିଂ : ନିର୍ବାଚିତ ନିବନ୍ଧ' : କାହାଣୀ ପ୍ରକାଶନୀ, ପୃ - ୧୫୫ ।
୩୦- 'ଓଡ଼ିଆ ସାହିତ୍ୟରେ ପ୍ରଗତିବାଦୀ ଧାରା' - ଡଃ ବିଜୟ କୁମାର ଶତପଥୀ, ଓଡ଼ିଶା ବୁକ୍‌ଷ୍ଟୋର, ପୃ - ୬୯ ।
୩୧- 'Lenin on Art and Literature', A.V.Lunchansky- Oriental Publishing House, Benaras-1943, page - 174.
୩୨- Marxim Gorky Literature and life: Hutchin - son International Authors Limited : London : 1946 : page 145.



## ଦ୍ୱିତୀୟ ଅଧ୍ୟାୟ

# ଓଡ଼ିଆ ସାହିତ୍ୟରେ ପ୍ରଗତିବାଦୀ ଚେତନାର ଉନ୍ମେଷ ଓ ବିକାଶ

ଜର୍ମାନ୍‌ରେ ଜନ୍ମ ଲାଭ କରିଥିବା 'ମାର୍କସ୍‌ବାଦ' ଋଷ୍ ବିପ୍ଳବ ମାଧ୍ୟମରେ ବାସ୍ତବରୂପ ପରିଗ୍ରହ କଲା । ଗଭୀର ଭାବରେ ପ୍ରଭାବିତ କରିଥିବା ଋଷ୍ ବିପ୍ଳବର ଉଦ୍ଦାମତା କେବଳ ଯେ ଋଷୀୟ ସୀମା ମଧ୍ୟରେ ଆବଦ୍ଧ ହୋଇଥିଲା ତାହା ନୁହେଁ, ପୃଥିବୀର ବିଭିନ୍ନ ପ୍ରାନ୍ତରେ ସଂଗଠିତ ବିପ୍ଳବ ପାଇଁ ଏହା ଥିଲା ଅନୁପ୍ରେରଣାର ଉତ୍ସ । ସମଗ୍ର ବିଶ୍ୱ ଯେତେବେଳେ ବୈପ୍ଳବିକ ଚିନ୍ତା ଚେତନା ଦ୍ୱାରା ଆନ୍ଦୋଳିତ, ଭାରତବର୍ଷ ସେଥିରୁ ମୁକ୍ତି ପାଇବ ବା କିପରି ? ତତ୍‌କାଳୀନ ସମୟରେ ଭାରତରେ ଇଂରେଜମାନଙ୍କ ବିରୋଧରେ ଆନ୍ଦୋଳନ ତୀବ୍ର ରୂପ ଧାରଣ କରୁଥାଏ । ଗାନ୍ଧିଜୀଙ୍କର ଅହିଂସା ଆନ୍ଦୋଳନ ଭାରତୀୟମାନଙ୍କୁ ଜାତିପ୍ରେମରେ ପ୍ରୋତ୍ସାହିତ କରୁଥାଏ । ତତ୍‌ସହିତ ଅକ୍ଟୋବର ବିପ୍ଳବର ଐତିହାସିକ ବିଜୟ ପରେ ଭାରତୀୟ ଜନତା ଉପଲବ୍ଧି କଲେ ଯେ ଋଷ୍‌ର ଜନସାଧାରଣ ଯଦି ମାର୍କସ୍‌ବାଦୀ ପନ୍ଥା ଅବଲମ୍ବନକରି ନିଜର ଅଧିକାର ଓ ସ୍ୱାଧୀନତା ହାସଲ୍ କରିପାରିଲେ, ତା ହେଲେ ଭାରତୀୟମାନେ ମଧ୍ୟ ତାହାକୁ ପାଥେୟ କରି ଇଂରେଜମାନଙ୍କର ସାମ୍ରାଜ୍ୟବାଦୀ ନୀତିରେ ମଧ୍ୟ ପୂର୍ଣ୍ଣଚ୍ଛେଦ ଟାଣି ପାରିବେ । ଏ ପ୍ରକାର ଚିନ୍ତାଧାରା ଧୀରେଧୀରେ ଭାରତ ବର୍ଷର ପ୍ରତ୍ୟେକ ରାଷ୍ଟ୍ରକୁ ସଂଚାରିତ ହେଲା । ଏଥିପାଇଁ ପ୍ରାନ୍ତୀୟ ସାହିତ୍ୟିକମାନଙ୍କର ଭୂମିକା କୌଣସି ଗୁଣରେ କମ୍ ନୁହେଁ । ସାହିତ୍ୟିକ ମାନେ ସାହିତ୍ୟରେ ମାର୍କସ୍‌ବାଦୀ ଚିନ୍ତାଚେତନାକୁ ରୂପାୟିତ କଲେ ଓ କୋଣେ ଅନୁକୋଣେ ପ୍ରଚାରିତ କରାଇଲେ । ଭାରତବର୍ଷରେ ଏହା କିପରି ବ୍ୟାପ୍ତ ହେଲା ତାହା ଆଲୋଚ୍ୟ ଅଧ୍ୟାୟର ବିଷୟବସ୍ତୁ । ଭାରତ ବର୍ଷରେ ଜାତୀୟ ମୁକ୍ତି ଆନ୍ଦୋଳନର ଅୟମାରମ୍ଭ ଠାରୁ ଗାନ୍ଧୀବାଦ ଓ ପ୍ରଗତିବାଦୀ ଆଭିମୁଖ୍ୟ, ମାର୍କସ୍‌ବାଦର ପ୍ରଭାବରେ ସୃଷ୍ଟି ହୋଇଥିବା ସଂଗଠନ, ପ୍ରଗତିବାଦୀ ଲେଖକ ସଂଘର ସୃଷ୍ଟି ଓ

ତତ୍‌ପରେ ଓଡ଼ିଶାରେ ଏହାର ପ୍ରଭାବ କିପରି ପଡ଼ିଥିଲା ଏସବୁ ପର୍ଯ୍ୟାୟକ୍ରମେ ନିମ୍ନରେ ଆଲୋଚନା କରାଯାଇଛି ।

## ଭାରତବର୍ଷରେ ଜାତୀୟମୁକ୍ତି ଆନ୍ଦୋଳନ :-

ଊନବିଂଶ ଶତାବ୍ଦୀର ମଧ୍ୟଭାଗ ବେଳକୁ ଭାରତବର୍ଷରେ ଇଂରେଜ ସାମ୍ରାଜ୍ୟବାଦର ଅଭ୍ୟୁଦୟ ଘଟିସାରିଥାଏ । ଭାରତକୁ ଇଷ୍ଟଇଣ୍ଡିଆ କଂପାନୀ ନାମରେ ବାଣିଜ୍ୟ ବ୍ୟବସାୟ ଉଦ୍ଦେଶ୍ୟରେ ଆସିଥିବା ଚତୁର ଇଂରେଜ ଜାତି ସାମ୍ରାଜ୍ୟ ବିସ୍ତାରର କୁତ୍ସିତ ମନୋବୃତ୍ତିକୁ ଏଠାରେ ପ୍ରୟୋଗ କରିସାରିଥାଆନ୍ତି । ଆଉରଂଗ୍‌ଜେବ୍‌ଙ୍କ ପରେ ମୋଗଲ୍ ସାମ୍ରାଜ୍ୟର ପତନ, ତୃତୀୟ ପାନିପଥ ଯୁଦ୍ଧରେ ମରହଟ୍ଟାମାନଙ୍କର ପରାଜୟ ପରେ ଭାରତବର୍ଷରେ ଇଂରେଜ ମାନଙ୍କୁ ପ୍ରତିହତ କରିବା ପାଇଁ ସେପରି କୌଣସି ଶକ୍ତିଶାଳୀ ଶାସକ ନଥାନ୍ତି । ଏପରି ଏକ ସୁବର୍ଣ୍ଣ ସୁଯୋଗକୁ ହାତଛଡ଼ା ନ କରି ଭାରତବର୍ଷରୁ ଧନସଂପଦ ଲୁଣ୍ଠନ କରି, ଜନସାଧାରଣଙ୍କୁ ସେମାନଙ୍କର ପଦାନତ କରି ରଖିବାର ଜଘନ୍ୟ ଲାଳସାକୁ ସଫଳ କରିବା ପାଇଁ ଇଂରେଜମାନେ ଗୋଟିଚାଳନା ଆରମ୍ଭ କରିଥିଲେ । ଏହାର ଶିକାର ହେଲେ ସିରାଜଉଦ୍ଦୌଲା ଓ ଟିପୁ ସୁଲ୍‌ତାନ୍‌ଙ୍କ ପରି ଶାସକମାନେ । ଶେଷରେ ୧୮୫୭ ମସିହାରେ ସାଂପ୍ରଦାୟିକତାର ଅତୁଟ-ବନ୍ଧନରେ ବାନ୍ଧି ହୋଇ ପଡ଼ିଥିବା ଭାରତବର୍ଷର ଅଗଣିତ ହିନ୍ଦୁ-ମୁସଲମାନ ସୈନିକ ଏକତ୍ର ହୋଇ ଜାତୀୟ ମୁକ୍ତି ଆନ୍ଦୋଳନର ଭିତ୍ତି ପ୍ରସ୍ତର ସ୍ଥାପନ କଲେ । ବିଦେଶୀ ଇଂରେଜ ଶାସନର ଅବସାନ ସାଙ୍ଗକୁ ସାମ୍ରାଜ୍ୟବାଦର ବିଲୋପ ହେଲା ସେମାନଙ୍କର ମହାମନ୍ତ୍ର । ଏହି ଆନ୍ଦୋଳନର ପୁରୋଭାଗରେ ଝାନ୍‌ସୀର ରାଣୀ ଲକ୍ଷ୍ମୀବାଇ, ନାନା ସାହେବ, ତାନ୍ତିଆ ଟୋପେ, ଆଜିମୁଲ୍ଲା, ଅହମ୍ମଦ ଶାହା ପ୍ରମୁଖ ଥିଲେ । ଇତିହାସରୁ ପ୍ରତୀୟମାନ ହୁଏ ଯେ, ଏହା ହିଁ ଭାରତୀୟମାନଙ୍କ ଦ୍ୱାରା କରାଯାଇଥିବା ପ୍ରଥମ ଜାତୀୟ ଗଣ ଆନ୍ଦୋଳନ । ଏହାର ତୀବ୍ରତା ସଂପର୍କରେ ସମାଲୋଚକ ଡଃ ଆଶିଷ ମହାପାତ୍ର ମତବ୍ୟକ୍ତ କରନ୍ତି –

"ଇତିହାସର ଆଇନାରେ ଏବେ ବି ସ୍ୱର୍ଣ୍ଣାଭ ଦୀପ୍ତିରେ ଝଲସି ଉଠୁଛି ଏହି ମହାନ୍ ଗଣ ବିଦ୍ରୋହର ବିସ୍ଫୋରକ ଭାବ ମୂର୍ତ୍ତି । ଅଜସ୍ର ଆହୂତି, ଆତ୍ମବଳିଦାନର ଲୋମହର୍ଷକ ଅଧ୍ୟାୟ । ବହୁ ବୀରଗାଥାର ବିସ୍ତୃତ ପୃଷ୍ଠଭୂମି ଉପରେ, ଭାରତବର୍ଷର ଏହି ମହାବିଦ୍ରୋହ ଅତୀତର କେବଳ ଏକ ସମୁଜ୍ଜ୍ୱଳ ସ୍ୱାକ୍ଷର ନୁହେଁ - ଭବିଷ୍ୟତ ପାଇଁ ମଧ୍ୟ ଉଦ୍ଦୀପ୍ତ ଆହ୍ୱାନର ଇସ୍ତାହାର । (୧)

ସିପାହୀ ବିଦ୍ରୋହର ତୀବ୍ରତା ଭବିଷ୍ୟତରେ ଇଂରେଜ ଜାତି ବିରୋଧରେ ଏକତ୍ର ସଂଗ୍ରାମ କରିବାର ମନୋବୃତ୍ତିକୁ ଜାଗ୍ରତ କରାଇବାରେ ପ୍ରଥମ ପଦକ୍ଷେପ ଥିଲା ସତ, କିନ୍ତୁ ଏଥିରେ ଭାରତୀୟ ସିପାହୀମାନେ ଇଂରେଜ ମହାଶକ୍ତି ନିକଟରେ ପରାଜୟ

ବରଣ କରିଥିଲେ ଓ ଇଂରେଜ ଜାତିର ବଶତା ସ୍ୱୀକାର କଲେ । ୧୮୫୭ କ୍ରାନ୍ତିକାରୀ ବିପ୍ଳବର ପରିସମାପ୍ତି ଘଟିବା ପରେ ଇଂରେଜମାନେ ଭାରତୀୟ ସାମ୍ରାଜ୍ୟକୁ ପୂର୍ଣ୍ଣ ମାତ୍ରାରେ କବଳିତ କରିବାରେ ସଫଳ ହୋଇ ଚାଲିଥାଆନ୍ତି । ଏହାପରେ ୧୮୫୮ ମସିହାରେ ବଙ୍ଗରେ ପୁଂଜିବାଦର ବିକାଶର ପ୍ରଥମ ପଦକ୍ଷେପ ସ୍ୱରୂପ ଝୋଟକଳଟିଏ ଇଂରେଜମାନେ ପ୍ରତିଷ୍ଠା କଲେ । କଳକାରଖାନାର ବିକାଶ ଘଟିବା ସଙ୍ଗେ ସଙ୍ଗେ ଗମନାଗମନ ଓ ଯାତାୟାତର ମଧ୍ୟ ଉନ୍ନତି ଘଟିଲା । ଏହାଦ୍ୱାରା ଭାରତୀୟମାନେ ଜୀବିକା ଅର୍ଜନର ମାଧ୍ୟମ ଭାବେ ଗ୍ରହଣ କରିଥିବା କୁଟୀର ଶିଳ୍ପ ଗୁଡ଼ିକ କ୍ଷତିଗ୍ରସ୍ତ ହେଲା । ଭାରତୀୟମାନଙ୍କ ଦ୍ୱାରା ନିର୍ମିତ ବସ୍ତୁ ଗୁଡ଼ିକ ଭାରତରେ ବିକ୍ରୀ ହେଲା ନାହିଁ । ବରଂ ବିଦେଶୀ ବସ୍ତୁ ଓ କଳକାରଖାନାର ଦ୍ରୁତ ଅଭିବୃଦ୍ଧି ପୁଂଜିବାଦର ବିକାଶ ଘଟାଇଲା । କଳକାରଖାନାରେ ଯେଉଁମାନେ କାର୍ଯ୍ୟ କଲେ ସେମାନେ ହେଲେ ଶ୍ରମିକ ଗୋଷ୍ଠୀ । ଭାରତରେ ଯେଉଁ ପୁଂଜିପତି ମାନେ ରହିଲେ ସେମାନଙ୍କର ପ୍ରତିଦ୍ୱନ୍ଦ୍ୱିତା ହେଲା ବ୍ରିଟିଶ୍ ପୁଂଜିପତି ମାନଙ୍କ ସହିତ । ଭାରତୀୟମାନଙ୍କୁ ଦମନ କରିବା ପାଇଁ ଇଂରେଜ ସରକାର ଲୁଣ ଏବଂ ମଦ ବ୍ୟତୀତ ଅନ୍ୟ ସମସ୍ତ ଦ୍ରବ୍ୟ ଉପରୁ ଆମଦାନୀ ଟିକସ ଛାଡ଼ କଲେ । ଏହାଦ୍ୱାରା ଦେଶୀୟ ଉତ୍ପାଦନ ଘୋର ସମସ୍ୟାର ସମ୍ମୁଖୀନ ହେଲା । ଇଂରେଜମାନଙ୍କ ସହ ସମକକ୍ଷ ହେବା ପାଇଁ ସେମାନେ ଚେଷ୍ଟା କଲେ । ଏଥିପାଇଁ ଶ୍ରମିକମାନଙ୍କୁ ଅଧିକ ସମୟ କାମ କରିବାକୁ ପଡ଼ିଲା । ଶ୍ରମିକଟି ଯେତିକି ସମୟ କାର୍ଯ୍ୟ କରୁଛି, ପୁଂଜିପତି ତା'ର ଉପଯୁକ୍ତ ପାରିଶ୍ରମିକ ଦେଲା ନାହିଁ । ଫଳରେ ଦେଶରେ ଦାରିଦ୍ର୍ୟ, ଅଭାବ ଅନଟନ ଓ ଅଶାନ୍ତି ଦେଖାଦେଲା । ଏହାଥିଲା ଇଂରେଜ ପୁଂଜିପତିମାନଙ୍କୁ ସାମ୍ନା କରିବାର ପ୍ରଥମ ପଦକ୍ଷେପ ।

ଦ୍ୱିତୀୟରେ ଭାରତୀୟ ପୁଂଜିପତିମାନେ ଜାତିପ୍ରୀତିର ଦ୍ୱାହି ଦେଇ ସ୍ୱଦେଶୀ ଦ୍ରବ୍ୟର ବ୍ୟବହାର ଉପରେ ଗୁରୁତ୍ୱାରୋପ କଲେ ଓ ବିଦେଶୀ ଦ୍ରବ୍ୟ ବର୍ଜନ ପାଇଁ ଖୋଲାଖୋଲି ଆହ୍ୱାନ ଦେଲେ । ଏହି ଚିନ୍ତାଧାରାରୁ ହିଁ ଭାରତୀୟ ଜାତୀୟ କଂଗ୍ରେସର ଉନ୍ମେଷ ଘଟିଲା । ପ୍ରାଥମିକ ଅବସ୍ଥାରେ ଏହା ପୁଂଜିପତିମାନଙ୍କ ଦ୍ୱାରା ସୀମିତ ଥିଲା ସତ, କିନ୍ତୁ ଧୀରେଧୀରେ ଏହା ସର୍ବସାଧାରଣ ଅନୁଷ୍ଠାନରେ ପରିଣତ ହେଲା । ପ୍ରତ୍ୟେକ ଭାରତୀୟ ଜାତିପ୍ରୀତିର ମହାମନ୍ତ୍ରରେ ଦୀକ୍ଷିତ ହୋଇ ଇଂରେଜ ସରକାର ବିରୋଧରେ ସଂଗ୍ରାମ ପାଇଁ ଆଗେଇ ଆସିଲେ । ଇଂରେଜ ସରକାର ମଧ୍ୟ ଏହାର ପ୍ରତିହତ କରିବା ପାଇଁ ବହୁ ଦମନମୂଳକ ପଦକ୍ଷେପ ଗ୍ରହଣ କଲେ ।

ବିଂଶ ଶତାବ୍ଦୀ ବେଳକୁ ସମଗ୍ର ଭାରତବର୍ଷରେ ଜାତୀୟମୁକ୍ତି ଆନ୍ଦୋଳନର ବହ୍ନି ପ୍ରଜ୍ୱଳିତ ହୋଇ ସାରିଥାଏ । ସେହି ସମୟରେ ବଂଗ ପ୍ରଦେଶ ଥିଲା ମୁକ୍ତି ସଂଗ୍ରାମର

ପ୍ରଧାନ ପୀଠସ୍ଥଳୀ । ୧୯୦୫ ମସିହାରେ ବଙ୍ଗ ଭଙ୍ଗ ଆଇନ୍ ପ୍ରଣୀତ ହେଲା ଓ ଏହା ବିରୋଧରେ ସମଗ୍ର ଦେଶରେ ଆନ୍ଦୋଳନ ତୀବ୍ର ରୂପ ଧାରଣ କଲା । ସେହିବର୍ଷ ଋଷ୍ -ଜାପାନ ଯୁଦ୍ଧ ଆରମ୍ଭ ହୋଇ ସାରିଥାଏ । ଜାପାନ୍‌ର କଳକାରଖାନାଗୁଡ଼ିକ ଯୁଦ୍ଧସାମଗ୍ରୀ ଉତ୍ପାଦନରେ ବ୍ୟସ୍ତ ରହିବାରୁ ଜାପାନୀ ଜିନିଷ ଗୁଡ଼ିକର ବିକ୍ରୀ ହୋଇ ପାରିଲା ନାହିଁ । ଏହାର ସୁଯୋଗ ନେଇ ଭାରତୀୟ ପୁଂଜିପତିମାନେ ଭାରତୀୟ ଦ୍ରବ୍ୟ ଗୁଡ଼ିକୁ ଚାଇନା ବଜାରରେ ବିକ୍ରୀ କରିବାର ସୁଯୋଗ ପାଇଲେ । ଫଳରେ ଦେଶରେ କାରଖାନା ସଂଖ୍ୟା ବୃଦ୍ଧି ପାଇଲା । କାରଖାନା ବୃଦ୍ଧି ପାଇବାରୁ ଶ୍ରମିକମାନଙ୍କ ସଂଖ୍ୟା ମଧ୍ୟ ବୃଦ୍ଧି ପାଇଲା । ଶୋଷଣ ମଧ୍ୟ ସେହି ଅନୁପାତରେ ବଢ଼ି ଚାଲିଲା । ୧୮୮୪ ମସିହାରେ ବମ୍ବେଠାରେ ଶ୍ରମିକ ସଙ୍ଗଠନର ଏକ ବୈଠକ ନାରାୟଣ ମାଧବ ଲୋଖାଣ୍ଡେ'ଙ୍କର ଅଧ୍ୟକ୍ଷତାରେ ଅନୁଷ୍ଠିତ ହୋଇ ଶ୍ରମିକମାନଙ୍କର ସମସ୍ୟା ସମ୍ବଳିତ ଦାବିପତ୍ର କମିଶନର୍‌ଙ୍କ ନିକଟରେ ଉପସ୍ଥାପିତ କରାଯାଇଥିଲା । ଏହାପରେ ଭାରତବର୍ଷରେ ବହୁ ସ୍ଥାନରେ ଶ୍ରମିକ ଧର୍ମଘଟମାନ ଦେଖାଦେଲା ।

ଋଷ୍ ଜନସାଧାରଣଙ୍କର ପ୍ରଗାଢ଼ ଉଦ୍ୟମ ହେତୁ ୧୯୧୭ ମସିହାରେ ଜାର୍ ଶାସନର ବିଲୋପ ଘଟି ସାରିଥାଏ । ଏହା ମଧ୍ୟ ଭାରତୀୟମାନଙ୍କୁ ବେଶ୍ ଅନୁପ୍ରେରିତ କରୁଥାଏ ଓ ଇଂରେଜ ସରକାର ବିରୋଧରେ ଏକତ୍ର ସଂଗ୍ରାମ କରିବାର ବୈପ୍ଳବିକ ଉଦ୍ଦାମତା ମଧ୍ୟ ଯୋଗାଉଥାଏ । ତେଣୁ ଅନ୍ୟାୟ, ଅତ୍ୟାଚାର ବିରୋଧରେ ସଂଗ୍ରାମ କରିବାକୁଯାଇ ପ୍ରଥମେ ୧୯୧୮ ମସିହାରେ ବମ୍ବେର ସୂତାକଳ ଶ୍ରମିକମାନେ ବିପ୍ଳବ ଆରମ୍ଭ କଲେ । ୧୯୨୦ ମସିହାରେ ଲାଲା ଲଜପତ୍ ରାୟଙ୍କ ନେତୃତ୍ୱରେ ଅଖିଳ ଭାରତୀୟ ଟ୍ରେଡ୍ ୟୁନିଅନ୍ କଂଗ୍ରେସ୍‌ର ଉନ୍ମେଷ ଘଟିଲା । ଏହାର ମୁଖ୍ୟ ଉଦ୍ଦେଶ୍ୟ ଥିଲା ଶ୍ରମିକ ଶ୍ରେଣୀକୁ ସଚେତନ କରାଇବା ଓ ନିଜର ଅଧିକାର ସାବ୍ୟସ୍ତ କରିବା ପାଇଁ ବିପ୍ଳବକୁ ମାଧ୍ୟମ ଭାବେ ଗ୍ରହଣ କରିବା । ଏଥିରୁ ସ୍ପଷ୍ଟ ପ୍ରତିପାଦିତ ହୁଏ ଯେ ଏହାରି ମାଧ୍ୟମରେ ହିଁ ମାର୍କସ୍‌ବାଦୀ ଚିନ୍ତାଚେତନାର ପ୍ରଚାର ଏବଂ ପ୍ରସାର ଭାରତବର୍ଷରେ ଘଟିଲା ।

ଭାରତବର୍ଷର ବହୁ ସଂଗ୍ରାମୀ ଜନନାୟକ ଲେନିନ୍‌ଙ୍କ ସହ ସଂପର୍କ ରକ୍ଷା କଲେ । ସେମାନଙ୍କର ଗୋଟିଏ ଲକ୍ଷ୍ୟ ଥିଲା ଭାରତରୁ ଇଂରେଜ ଶାସନର ପରିସମାପ୍ତି । 'ଅବ୍‌ଦୁଲ୍ ଜବର ଖଇରି' ଓ ପ୍ରଫେସର୍ 'ଅବଦୁଲ୍ ସତାର୍ ଖଇରି' ନାମକ ଦୁଇ ଜଣ ଭାରତୀୟ ପ୍ରଥମେ ଲେନିନ୍‌ଙ୍କୁ ସାକ୍ଷାତ କରିଥିଲେ । ଏହାର ଠିକ୍ ଦୁଇଦିନ ପରେ All Russian central Executive commitee" କୁ ଏମାନେ ଆମନ୍ତ୍ରିତ ହୋଇଥିଲେ । ସେଠାରେ ଋଷ୍‌ବାସୀଙ୍କୁ ଉଦ୍‌ବୋଧନ ଦେବା ବେଳେ, ଋଷ୍ ବିପ୍ଳବ ଯେ

ଭାରତୀୟମାନଙ୍କୁ କି ପ୍ରକାର ପ୍ରେରଣା ପ୍ରଦାନ କରିଛି, ତାହା ସେମାନେ ବ୍ୟକ୍ତ କରିବାକୁ ଯାଇ କହିଥିଲେ – "Allow us to thank you for affording us the joy of speaking to you personally and of congratulations you on behalf of the Indian people. Allow us to convey greetings to the Russian Revolution on which has brought us new hope and showed us a new road in our struggle." (୨)

ଏହି ମନ୍ତବ୍ୟରୁ ପ୍ରତିପାଦିତ ହୁଏ ଯେ, ଋଷ୍ ବିପ୍ଳବରେ ଜନସାଧାରଣଙ୍କର ଏକନିଷ୍ଠ ଉଦ୍ୟମ ପାଇଁ ସେମାନେ ପ୍ରଶଂସାର ପାତ୍ର । ଏହାର ପ୍ରଭାବ କେବଳ ଭାରତ କାହିଁକି ସମଗ୍ର ପୃଥିବୀବାସୀଙ୍କୁ ମଧ୍ୟ ଚକିତ କରିଦେଇଛି । ୧୯୨୦ ମସିହାରେ ଭାରତର ଅନ୍ୟତମ ପ୍ରଖ୍ୟାତ ନେତା ମାନବେନ୍ଦ୍ର ନାଥରାୟ ମସ୍କୋଠାରେ ଅନୁଷ୍ଠିତ କମ୍ୟୁନିଷ୍ଟ ଇଣ୍ଟରନ୍ୟାସନାଲ୍ କଂଗ୍ରେସ୍‌ରେ ଯୋଗ ଦିଅନ୍ତି । ଲେନିନ୍ ଓ ମାଓ-ସେ-ତୁଙ୍ଗ୍‌ଙ୍କର ଅନ୍ୟତମ ଘନିଷ୍ଠ ସହକର୍ମୀ ଭାବରେ ବିଶ୍ୱରେ କମ୍ୟୁନିଷ୍ଟ ଆନ୍ଦୋଳନର ପ୍ରଚାର ଏବଂ ପ୍ରସାର ପାଇଁ ଆପ୍ରାଣ ଉଦ୍ୟମ କରନ୍ତି । ଏହାପରେ କମ୍ୟୁନିଷ୍ଟ ଇଣ୍ଟରନ୍ୟାସନାଲ୍‌ର ଯେଉଁ ଅଧିବେଶନ ଅନୁଷ୍ଠିତ ହେଲା ସେଥିରେ ବହୁ ଭାରତୀୟ ଯୋଗଦାନ କଲେ । ଭାରତବର୍ଷର କଲିକତାରେ ମୁଜାଫର୍ ଅହମ୍ମଦ ଓ ତାଙ୍କର କେତେକ ସହକର୍ମୀ ଗୋପନୀୟ ଭାବେ କମ୍ୟୁନିଷ୍ଟ ପାର୍ଟି ଗଠନ କଲେ । ବମ୍ବେରେ ଶ୍ରୀପାଦ୍ ଅମୃତ ଡାଙ୍ଗେ, ମାନ୍ଦ୍ରାଜ୍‌ରେ ସିଙ୍ଗାର୍ ୱେଲୁଚେଟିୟରଙ୍କ ନେତୃତ୍ୱରେ ଶ୍ରମିକ ସଂଗଠନମାନ ଗଢ଼ାଯାଇ କମ୍ୟୁନିଷ୍ଟ ପାର୍ଟି ଗଠନ ପାଇଁ ଉଦ୍ୟମ ଆରମ୍ଭ ହେଲା । ଅନେକ ବୁଦ୍ଧିଜୀବି ସଂଗ୍ରାମୀ ମାର୍କସ୍‌ବାଦୀ ଆଦର୍ଶ ଦ୍ୱାରା ଅନୁପ୍ରାଣିତ ହେଲେ । ସେତେବେଳକୁ ଜାତୀୟ କଂଗ୍ରେସ ଗଠିତ ହୋଇ ବିପୁଳ ଜନ ସମର୍ଥନ ଲାଭ କରୁଥାଏ । ଗାନ୍ଧିଜୀଙ୍କ ଅସହଯୋଗ ଆନ୍ଦୋଳନ ସହିତ ଖିଲାଫତ୍ ଆନ୍ଦୋଳନ ଓ ଜାତୀୟମୁକ୍ତି ଆନ୍ଦୋଳନକୁ ଆଗେଇ ନେବାରେ ପ୍ରମୁଖ ଭୂମିକା ଗ୍ରହଣ କରୁଥାଏ । ଏହି ଆନ୍ଦୋଳନ ଯେତେବେଳେ ସହରାଞ୍ଚଳରୁ ଗ୍ରାମାଞ୍ଚଳକୁ ବ୍ୟାପିଲା ସେତେବେଳେ । କୃଷକମାନେ ମଧ୍ୟ ନିଜର ଅଧିକାର ସଂପର୍କରେ ସଚେତନ ହେବାକୁ ଯାଇ ଜମିଦାରୀ ପ୍ରଥା ବିରୋଧରେ ଆନ୍ଦୋଳନ ଆରମ୍ଭ କଲେ । ଆନ୍ଦୋଳନ ଏତେ ତୀବ୍ର ରୂପ ଧାରଣ କଲା ଯେ, ଉତ୍ତ୍ୟକ୍ତ ଜନତା ଏକତ୍ର ହୋଇ ପୋଲିସ୍ ଫାଣ୍ଡି ପୋଡ଼ି ପକାଇଲେ । ଜନତାଙ୍କର ଏତାଦୃଶ ଆଚରଣରେ ଗାନ୍ଧିଜୀ ଖୁବ୍ ମର୍ମାହତ ହେଲେ । କାରଣ ଏହାଥିଲା ଗାନ୍ଧିଜୀଙ୍କ ପ୍ରଦର୍ଶିତ ଅହିଂସା ମାର୍ଗର ବିରୋଧି ! ପରିଣତି ଏପରି ହେଲା ଯେ କିଛି ଜନତା ଗାନ୍ଧୀଙ୍କୁ ସମର୍ଥନ ଜଣାଇଲେ । କିଛି ହିଂସାତ୍ମକ ପନ୍ଥା ଅବଲମ୍ବନ କରିବାକୁ ଶ୍ରେୟ ମଣିଲେ । ଜାତୀୟ କଂଗ୍ରେସ ଦୁଇ ଭାଗରେ ବିଭକ୍ତ ହେଲା (କ) ନରମ ପନ୍ଥୀ

(ଖ) ଚରମ ପନ୍ଥୀ ।

ଜାତୀୟ ମୁକ୍ତି ଆନ୍ଦୋଳନ ମଧ୍ୟରେ ମାର୍କସ୍‌ବାଦୀ ଚିନ୍ତା ଚେତନାର ଅନୁପ୍ରବେଶ ଘଟି ଏହାର ରୂପକୁ ଆହୁରି ତୀବ୍ର କରିଦେଲା । ୧୯୩୪ମସିହାରେ କଂଗ୍ରେସ୍ ସୋସିଆଲିଷ୍ଟ ପାର୍ଟି ଗଠନ, ୧୯୩୬ମସିହାରେ ଅଖିଳ ଭାରତୀୟ କିଶାନ୍ ସଭା, ଅଖିଳ ଭାରତୀୟ ଛାତ୍ର ଫେଡ଼େରେସନ୍, ପ୍ରଗତିଶୀଳ ଲେଖକ ସଂଘ ପ୍ରଭୃତି ଅନୁଷ୍ଠାନମାନ ଗଢ଼ି ଉଠିଲା । କାଳକ୍ରମେ ଚରମପନ୍ଥୀମାନେ ଏତେ ପ୍ରଭାବ ବିସ୍ତାର କଲେ ଯେ, ୧୯୩୬ ମସିହାରେ ସୁଭାଷ୍ ବୋଷ୍ ହେଲେ କଂଗ୍ରେସ୍‌ର ସଭାପତି । କିନ୍ତୁ ଗାନ୍ଧୀ, ପଟେଲ୍‌ଙ୍କ ସମର୍ଥନ ନ ପାଇବାରୁ ପରାସ୍ତ ହେଲେ । ପରବର୍ତ୍ତୀ ସମୟରେ ସୁଭାଷ୍ ଜର୍ମାନୀ ଯାଇ ଆଜାଦ୍ ହିନ୍ଦ୍ ଫୌଜ ଗଠନ କରି, ବ୍ରିଟିଶ୍ ସରକାର ବିରୋଧରେ ନିଜସ୍ୱ ସଂଗ୍ରାମ ଜାରି ରଖିଥିଲେ ସତ, କିନ୍ତୁ ଶେଷରେ ବ୍ରିଟିଶ୍ ସୈନ୍ୟଙ୍କଠାରୁ ପରାଜୟ ବରଣ କଲେ । ଜାତୀୟମୁକ୍ତି ସଂଗ୍ରାମକୁ ଏକ ନୂତନ ମୋଡ଼ ପ୍ରଦାନ କରିବା, ମୁକ୍ତି ଆନ୍ଦୋଳନରେ ବୈପ୍ଳବିକ ପନ୍ଥାକୁ ଜାଗ୍ରତ କରାଇବା କ୍ଷେତ୍ରରେ ତାଙ୍କର ଅବଦାନ ଉଲ୍ଲେଖଯୋଗ୍ୟ ।

୧୯୨୦ ମସିହାରେ ଭାରତରେ କମ୍ୟୁନିଷ୍ଟ ପାର୍ଟିର ଉତ୍‌ଥାନ ଘଟିଲା । ଏହାର ମୂଳ ଲକ୍ଷ୍ୟ ଥିଲା 'ସ୍ୱାଧୀନତା' । ଏହାର ନେତୃତ୍ୱରେ ବମ୍ବେଠାରେ ଲୁଗାକଳର ଶ୍ରମିକମାନେ ଧର୍ମଘଟ ଆରମ୍ଭ କରିଥିଲେ । କେବଳ ସେତିକି ନୁହେଁ ଏସିଆର ସର୍ବବୃହତ୍ ଟ୍ରେଡ୍ ୟୁନିଅନ୍ ମଧ୍ୟ ଏହା ନେତୃତ୍ୱରେ ଗଠନ କରାଯାଇଥିଲା । କମ୍ୟୁନିଷ୍ଟ ପାର୍ଟିର ଏପରି ଗଠନମୂଳକ କାର୍ଯ୍ୟପନ୍ଥାକୁ ଦେଖି ସରକାର ୧୯୩୪ ମସିହାରେ ଏହାକୁ ବେଆଇନ୍ ଘୋଷଣା କଲେ । ଯୁବ କମ୍ୟୁନିଷ୍ଟମାନଙ୍କୁ ଦମନ କରିବା ପାଇଁ ମିରଟ୍ ଷଡ଼ଯନ୍ତ୍ର ମାମଲା ଦାଏର୍ କରାଗଲା । ବହୁ ଶ୍ରମିକ ସଂଗଠନ ଓ ଛାତ୍ର ସଂଗଠନକୁ ବେଆଇନ୍ ଘୋଷଣା କରାଗଲା ।

୧୯୪୨ ମସିହାରେ ଜାତୀୟମୁକ୍ତି ସଂଗ୍ରାମର ଶେଷଅସ୍ତ୍ର ଭାବେ 'ଭାରତ ଛାଡ଼ ଆନ୍ଦୋଳନ'ର ଡାକରା ଦିଆଗଲା । ସମଗ୍ର ଦେଶରେ ବିପ୍ଳବର ବହ୍ନି ପ୍ରଜ୍ୱଳିତ ହେବାକୁ ଲାଗିଲା । ବ୍ରିଟିଶ୍ ଫୌଜକୁ ଜନସାଧାରଣ ଭ୍ରୂକ୍ଷେପ କଲେ ନାହିଁ । ସାରା ଦେଶରେ ଧର୍ମଘଟ ଓ ଆନ୍ଦୋଳନ ତୀବ୍ର ରୂପ ଧାରଣ କଲା । ଅଟ୍‌ଲୀ ବାଧ୍ୟ ହୋଇ ୧୯୪୭ ମସିହାରେ ଭାରତବର୍ଷକୁ ଇଂରେଜ ଶାସନରୁ ମୁକ୍ତ କରିବାର ପ୍ରତିଶ୍ରୁତି ଦେଲେ ଓ ଭାରତବର୍ଷ ୧୯୪୭ ମସିହା ଅଗଷ୍ଟ ୧୫ ତାରିଖରେ ସ୍ୱାଧୀନତା ପ୍ରାପ୍ତି ହେଲା ।

ସର୍ବଶେଷରେ ଏତିକି କୁହାଯାଇପାରେ ଯେ ଭାରତର ଜାତୀୟ ଆନ୍ଦୋଳନର ପ୍ରେରଣାର ଉତ୍ସ ଥିଲା ଋଷର ଅକ୍ଟୋବର ବିପ୍ଳବ । ଏହା ହିଁ ପ୍ରେରଣା ଯୋଗାଇଥିଲା ସଂଗ୍ରାମୀମାନଙ୍କୁ । ଯାହାର ସୁଫଳ ଭାରତବର୍ଷକୁ ପ୍ରାପ୍ତି ହୋଇଥିଲା ।

## ଗାନ୍ଧୀବାଦ ଓ ପ୍ରଗତିବାଦୀ ଆଭିମୁଖ୍ୟ

ଊନବିଂଶ ଶତାବ୍ଦୀ ଓ ବିଂଶ ଶତାବ୍ଦୀରେ ପୃଥିବୀର ପ୍ରେକ୍ଷାପଟ୍ଟରେ ଆବିର୍ଭାବ ଘଟିଥିଲା ଦୁଇଜଣ ଯୁଗାନ୍ତକାରୀ ମହାମନୀଷୀଙ୍କର । ଜଣେ ପାଶ୍ଚାତ୍ୟ ଭୂଖଣ୍ଡର ଅନ୍ୟ ଜଣକ ପ୍ରାଚ୍ୟ ଭୂଖଣ୍ଡର । ସେମାନେ ଆଉ କେହି ନୁହନ୍ତି ଆମ ମାନଙ୍କର ବେଶ୍ ପରିଚିତ କାର୍ଲମାର୍କସ୍ ଓ ମହାତ୍ମାଗାନ୍ଧୀ । ମାର୍କସ୍‌ଙ୍କର ଦର୍ଶନ ଥିଲା ସମାଜ ମଧ୍ୟରୁ ଶୋଷଣ, କଷଣ ଦୂରକରି ଏକ ଶୋଷଣ ବିହୀନ ସମାଜ ଗଠନ । ଅପରପକ୍ଷରେ ମହାତ୍ମାଗାନ୍ଧୀଙ୍କର ଦର୍ଶନମଧ୍ୟ ଥିଲା ଏକ ଶୋଷଣ ମୁକ୍ତ ସମାଜର ପରିକଳ୍ପନା । ଯେଉଁଠାରେ ସମସ୍ତେ ଭ୍ରାତୃଭାବ ପୋଷଣ କରୁଥିବେ, ମନୁଷ୍ୟର ହୃଦୟରେ ହିଂସା, ଦ୍ୱେଷ, ପରଶ୍ରୀକାତରତା ଭାବ ଲୋପପାଇ ଏକ ଅଭିନବ ରାଜ୍ୟର ପରିକଳ୍ପନା ହୋଇଥିବ ଯାହାର ନାମ 'ରାମରାଜ୍ୟ' ।

ଉଭୟ ମନୀଷୀଙ୍କର ଚିନ୍ତାଦର୍ଶର ତୁଳନାତ୍ମକ ବିଚାର କଲେ ଏକଥା ସ୍ପଷ୍ଟ ହୋଇଯାଏ ଯେ, ଉଭୟଙ୍କର ଚିନ୍ତାଦର୍ଶର ଅନ୍ତର୍ନିହିତ ମଂଜିଟି ଗୋଟିଏ । ତାହା ହେଉଛି "ଆଦର୍ଶ ରାଷ୍ଟ୍ରର ପରିକଳ୍ପନା" । କିନ୍ତୁ ନିଜସ୍ୱ ଚିନ୍ତାଦର୍ଶକୁ ସମାଜ ନିକଟରେ ଉପସ୍ଥାପିତ କରିବାର ମାଧ୍ୟମଟି ଅଲଗା । ସତେଯେପରି ଉଭୟଙ୍କ ଚିନ୍ତାଧାରାର ଗତିପଥ ଦୁଇଟି ସମାନ୍ତରାଳ ସରଳରେଖା । ଆକାଶ ପାତାଳ ଫରକ୍ । ବର୍ତ୍ତମାନ୍ ତା' ହେଲେ ଏହି ଦୁଇ ମନୀଷୀଙ୍କର ମତବାଦ ମଧ୍ୟରେ ଥିବା ସାମଞ୍ଜସ୍ୟ ଓ ବୈଷମ୍ୟର ତଥ୍ୟକୁ ଉଦ୍‌ଘାଟନ କରିବା । ପ୍ରଥମେ ମାର୍କସ୍‌ଙ୍କର ତତ୍ତ୍ୱ ଆଦର୍ଶକୁ ଆଲୋଚନାର ପରିସର ମଧ୍ୟକୁ ଅଣାଯାଉ ।

ଊନବିଂଶ ଶତାବ୍ଦୀ ଜନନାୟକ ମାର୍କସ୍‌ଙ୍କର କର୍ମମୟ ଜୀବନର ସମୟ । ଜର୍ମାନ୍‌ର ଟ୍ରିୟର୍ ସହରରେ ୧୮୧୮ ମସିହାରେ ମାର୍କ୍ସ ଜନ୍ମଗ୍ରହଣ କରିଥିଲେ । ବିଶ୍ୱବିଦ୍ୟାଳୟରେ ଅଧ୍ୟୟନ କରୁଥିବା ସମୟରେ ସେ ଇତିହାସ ଓ ଦର୍ଶନଶାସ୍ତ୍ର ପ୍ରତି ବିଶେଷ ଆଗ୍ରହ ପ୍ରଦର୍ଶନ କରୁଥିଲେ । ସେହି ସମୟରେ ଜର୍ମାନୀର ବର୍ଲିନ୍ ବିଶ୍ୱବିଦ୍ୟାଳୟର ଅଧ୍ୟାପକ ହେଗେଲ୍‌ଙ୍କ ମତବାଦ ବିଶେଷ ପ୍ରତିଷ୍ଠା ଲାଭ କରିଥାଏ । ହେଗେଲ୍ ଥିଲେ ଦ୍ୱନ୍ଦ୍ୱାତ୍ମକ ଚିନ୍ତାଧାରାର ପ୍ରବକ୍ତା । ହେଗେଲ୍ ଆତ୍ମାର ବିକାଶ ଘଟିଲେ ପ୍ରକୃତିର ବିକାଶ ଘଟେ ଏବଂ ତତ୍‌ସହିତ ସମାଜର ବିକାଶ ଉପରେ ଗୁରୁତ୍ୱାରୋପ କରିଥିଲେ । ଏହି ଚିନ୍ତାଧାରାର ପ୍ରତିଫଳନ ବସ୍ତୁଗତ ବିଶ୍ୱରେ ହିଁ ସମ୍ଭବପର

ହୋଇଥାଏ । ହେଗେଲ୍‌ଙ୍କର ଚିନ୍ତାଦର୍ଶ ଦ୍ୱାରା ଅନୁପ୍ରାଣିତ ହେବା ପରେ, ତାରି ମଧ୍ୟରୁ ବସ୍ତୁବାଦୀ ବୈପ୍ଳବାତ୍ମକ ସିଦ୍ଧାନ୍ତମାନ ମାର୍କସ୍‌ଙ୍କୁ ଗଭୀର ପ୍ରେରଣା ଯୋଗାଇଥିଲା ।

ମାର୍କସ୍‌ଙ୍କର ଦର୍ଶନ ଶାସ୍ତ୍ରରେ ଡକ୍ଟରେଟ୍ ଲାଭ (୧୮୪୧) ପରେ 'ରାଇ ନିଶ୍‌ଜାଇତୁଙ୍ଗ୍' ନାମକ ପତ୍ରିକାର ସଂପାଦକ ମଣ୍ଡଳୀରେ ଯୋଗଦାନ ତାଙ୍କର ଚିନ୍ତାଧାରାକୁ ପ୍ରତିଫଳିତ କରିବାରେ ବେଶ୍ ସହାୟକ ହୋଇଥିଲା । କିଛିକାଳ ଆତ୍ମପ୍ରକାଶ କରିବା ପରେ ସରକାର ପତ୍ରିକାଟିକୁ ବାଜ୍ୟାପ୍ତି କରିବାରୁ ପତ୍ରିକାଟି ବନ୍ଦହୋଇଗଲା । ଏହାପରେ ମାର୍କ୍ସ ଜର୍ମାନ୍ ଛାଡ଼ି ଫ୍ରାନ୍‌ସ ଚାଲିଯାଇଥିଲେ । ଫ୍ରାନ୍ସରେ ସେ ସମାଜବାଦୀ ଚିନ୍ତାଧାରାର ଲେଖକ ଏଙ୍ଗେଲ୍‌ସ୍‌ଙ୍କର ନିବିଡ଼ ସଂସ୍ପର୍ଶରେ ଆସିଲେ । ଏହାପରେ ଉଭୟ ଚିନ୍ତାନାୟକ 'କ୍ରିଟିକ୍ ଅଫ୍ କ୍ରିଟିକାଲ୍ କ୍ରିଟିସିଜିମ୍' ଓ 'ହୋଲି ଫ୍ୟାମିଲି' ରଚନା କରିଥିଲେ । ଉପରୋକ୍ତ ରଚନାବଳୀ ପ୍ରକାଶିତ ହେବା ପରେ ମାର୍କସ୍‌ଙ୍କୁ ବିପ୍ଳବୀ ଭାବରେ ଅଭିଯୁକ୍ତ କରାଯାଇ ବ୍ରିସେଲ୍‌ସ୍‌କୁ ନିର୍ବାସନ ଦଣ୍ଡ ଦିଆଗଲା । ସେଠାରେଥିବା ସମୟରେ ସେଠାକାର ଶ୍ରମିକ ମାନଙ୍କୁ ସେ ଯେଉଁ ଉଦ୍‌ବୋଧନ ଦେଇଥିଲେ, ସେଥିରେ ବହୁ ଗୁରୁତ୍ୱପୂର୍ଣ୍ଣ ଅର୍ଥନୈତିକ ତତ୍ତ୍ୱର ଅବତାରଣା କରାଯାଇଥିଲା । ଏହାପରେ ଲଣ୍ଡନଠାରେ ଅନୁଷ୍ଠିତ ହୋଇଥିବା ଶ୍ରମିକ ସଂଗଠନର ନେତୃତ୍ୱ ନେବାପାଇଁ ତାଂକୁ ଆମନ୍ତ୍ରଣ କରାଗଲା । ସେଠାରେ ମାର୍କସ୍-ଏଙ୍ଗେଲସ୍‌ଙ୍କର ମତବାଦକୁ ପ୍ରାଧାନ୍ୟ ଦିଆଗଲା ।

୧୮୪୮ ମସିହାରେ ମାର୍କସ୍-ଏଙ୍ଗେଲସ୍‌ଙ୍କର କାଳଜୟୀ ଚିନ୍ତାଧାରା 'କମ୍ୟୁନିଷ୍ଟ ଇସ୍ତାହାର'ରେ ପ୍ରକାଶ ପାଇଲା । ସେମାନଙ୍କର ସ୍ଲୋଗାନ୍ ଥିଲା "ଦୁନିଆର ମଜଦୁର୍ ଏକ ହୁଅ" । ଯେଉଁଥିରେ ସର୍ବହରା ଶ୍ରମିକ ଗୋଷ୍ଠୀକୁ ପୁଂଜିପତି ଗୋଷ୍ଠୀ ବିରୋଧରେ ସଂଗ୍ରାମ କରିବା ପାଇଁ ପ୍ରଥମ ପ୍ରେରଣା ରହିଥିଲା । ଏହି ମତବାଦ ଯେ କେବଳ ନୂତନ ଦାର୍ଶନିକ ଚିନ୍ତାଧାରାକୁ ଜନ୍ମ ଦେଇଥିଲା ତାହା ନୁହେଁ ଏଥିରେ ଇତିହାସର ନୂତନ ବ୍ୟାଖ୍ୟା ସାଂଗକୁ ଅର୍ଥନୀତିର ନୂତନ ବ୍ୟାଖ୍ୟା ମଧ୍ୟ କରାଗଲା । ଯାହା ଫଳରେ ସାମାଜିକ ଓ ରାଜନୈତିକ କ୍ଷେତ୍ରରେ ମଧ୍ୟ ପରିବର୍ତ୍ତନ ସଂଗଠିତ ହେଲା । ଏହା 'ମାର୍କ୍ସବାଦ' ନାମରେ ସୁବିଦିତ ହେଲା । ଏହାର ସଂଜ୍ଞା ନିରୂପଣ କରିବାକୁ ଯାଇ କୁହାଯାଇଛି – "Marxism - Lennism is a fully integrated theory consisting of three component parts, philosophy, economy and the theory of scientific communism." (3)

ଅତଏବ ମାର୍କସ୍‌ବାଦ ହେଉଛି ଦର୍ଶନ, ରାଜନୀତିକ, ଅର୍ଥନୀତି ଏବଂ ବୈଜ୍ଞାନିକ ସମାଜବାଦ ଉପରେ ପର୍ଯ୍ୟବେସିତ । ଏହା କଳା ଓ ସାହିତ୍ୟ କ୍ଷେତ୍ରରେ ମଧ୍ୟ ପରିବର୍ତ୍ତନ ଘଟାଇଥିଲା । ଏ ପ୍ରକାର ଯୁଗାନ୍ତକାରୀ ପରିବର୍ତ୍ତନ ଘଟାଇଥିବା ମାର୍କ୍‌ସ୍‌ବାଦୀ ତତ୍ତ୍ୱ

ସଂପର୍କରେ ସମ୍ୟକ୍ ଧାରଣା ପ୍ରଦାନ କରାଯିବା ପରେ 'ଗାନ୍ଧୀବାଦ' ସଂପର୍କରେ ମଧ୍ୟ ଆଲୋଚନା ନିମ୍ନରେ କରାଯିବ । ଏହାପରେ ଏହି ଦୁଇ ଚିନ୍ତାଧାରା ମଧ୍ୟରେ ପାର୍ଥକ୍ୟ ନିରୂପଣ କରାଯିବା ସହିତ ପରସ୍ପର ମଧ୍ୟରେ କେତେ ମାତ୍ରାରେ ସାମଞ୍ଜସ୍ୟ ରହୁଛି ତାହା ନିରୂପିତ ହେବ ।

* 'ମାର୍କସ୍‌ବାଦ' ସଂଘର୍ଷ ଓ ବାଦ ବିସମ୍ବାଦର ପୃଷ୍ଠଭୂମି ଉପରେ ଆଧାରିତ । ସମାଜରେ ସଂଗଠିତ ହେଉଥିବା ସଂଘର୍ଷର ମୂଳ ହେଉଛି 'ବସ୍ତୁ' ବା 'ସଂପତ୍ତି' । ଏହା ଅର୍ଥନୈତିକ ସଂଗଠନ ତିଆରି କରେ । ଏହାକୁ ଭିତ୍ତି କରି ରାଜନୈତିକ ସଂଗଠନ ତିଆରି ହୁଏ । ଏହା ମଣିଷର ବୌଦ୍ଧିକ ଜୀବନକୁ ନିୟନ୍ତ୍ରିତ କରେ । ଫଳରେ ସମାଜରେ ଦୁଇଟି ଗୋଷ୍ଠୀର ଆବିର୍ଭାବ ଘଟେ । ଏମାନଙ୍କ ମଧ୍ୟରେ ଅନବରତ ସଂଘର୍ଷ ଲାଗି ରହିଥିବାରୁ ବିପ୍ଳବର ସୂତ୍ରପାତ ଘଟେ । ମାର୍କସ୍‌ବାଦ ବୈଜ୍ଞାନିକ ପଦ୍ଧତିରେ ଇତିହାସକୁ ଅନୁଧ୍ୟାନ କରୁଥିବାରୁ ଏହା ଏକ ନୂତନ ମାର୍ଗ ଉନ୍ମୋଚନ କରେ ।

* ଦ୍ୱିତୀୟତଃ ମାର୍କସ୍‌ବାଦ ଶ୍ରେଣୀ ସଂଘର୍ଷ ଉପରେ ଗୁରୁତ୍ୱ ଆରୋପ କରିଥାଏ । ପ୍ରଥମେ ଦାସ - ମାଲିକ ମଧ୍ୟରେ ସଂଘର୍ଷ, ତତ୍‌ପରେ କୃଷକ- ଜମିଦାର ମଧ୍ୟରେ ସଂଘର୍ଷ ଏହାର ଗୋଟିଏ ଗୋଟିଏ ରୂପ । ଏହାପରେ ଦ୍ରୁତ ଶିଳ୍ପାୟନ ସୃଷ୍ଟି କରେ ଶ୍ରମିକ - ପୁଂଜିପତି ମଧ୍ୟରେ ସଂଘର୍ଷ ।

ଶ୍ରମିକ ଶ୍ରମ ବଳରେ ଉତ୍ପାଦନ କରେ କିନ୍ତୁ ଉତ୍ପାଦନ ଉପରେ ତାର କୌଣସି ଅଧିକାର ରହେ ନାହିଁ । ଏ ସଂପର୍କରେ "Manifesto of communist party" ପୁସ୍ତକରେ କୁହାଯାଇଛି –

"By proletariat the class of modern wage labourers who having no means of production of their own, are reduced to selling their labour power in oder to [illegible]" (4)

*ମାର୍କସ୍‌ବାଦ ଉତ୍ପାଦିତ ଦ୍ରବ୍ୟର ସମବଣ୍ଟନ ଉପରେ ଗୁରୁତ୍ୱ ଆରୋପ କରେ । ଯାହା କି ସାମ୍ୟବାଦୀ ସମାଜ ଗଠନ କ୍ଷେତ୍ରରେ ପ୍ରମୁଖ ଭୂମିକା ଗ୍ରହଣ କରେ । ପୁଂଜିପତି ଶ୍ରମିକର ଶ୍ରମକୁ ବିନିଯୋଗ କରି ଯେଉଁ ସାମଗ୍ରୀ ଉତ୍ପାଦନ କରେ ତା'ର ଲାଭାଂଶ ନିଜ ପାଖରେ ଗଚ୍ଛିତ ରଖେ । ଏହି ଲାଭାଂଶକୁ ଯଦି ଶ୍ରମିକ ଶ୍ରେଣୀ ମଧ୍ୟରେ ବଣ୍ଟାଯାଇ ପାରନ୍ତା ତାହାହେଲେ ସମାଜରେ ତାରତମ୍ୟ ରହନ୍ତା ନାହିଁ । ମାର୍କସ୍‌ବାଦ ଏହା ଉପରେ ପ୍ରାଧାନ୍ୟ ଦେଇଥାଏ ।

* ପୁଂଜିପତି ଗୋଷ୍ଠୀ ଶୋଷଣର ମାଧ୍ୟମ ଭାବେ ଧର୍ମ, ଭାଗ୍ୟ, ଭଗବାନଙ୍କର ଦୁହାଇ ଦେଇଥାଏ । ତେଣୁ ମାର୍କସ୍‌ବାଦ ଏସବୁର ବିଲୋପ ପାଇଁ ଆହ୍ୱାନ ଦେଇଥାଏ ।

* ମାର୍କସ୍‌ବାଦୀ ତତ୍ତ୍ୱ ଉତ୍ପାଦିତ ଦ୍ରବ୍ୟର ସୁଷମ ବଣ୍ଟନ ଉପରେ ଯେଉଁ ଗୁରୁତ୍ୱାରୋପ କରୁଥିଲା, ତାହା କଦାପି ସମ୍ଭବ ନୁହେଁ । ଏଥିପାଇଁ ସର୍ବହରା/ଶ୍ରମିକ ମାନେ ବିପ୍ଳବର ପନ୍ଥା ଅବଲମ୍ବନ କରିବେ । ଉତ୍ପାଦିତ ସଂପତ୍ତି ଉପରେ ପୁଂଜିପତିର ଥିବା ଏକଚାଟିଆ ଅଧିକାରକୁ ସଂପୂର୍ଣ୍ଣ ଲୋପ କରିବା ସହିତ ଶୋଷଣ ବିହୀନ ସାମ୍ୟବାଦୀ ସମାଜ ଗଠନ ଉପରେ ମାର୍କସ୍‌ବାଦୀ ତତ୍ତ୍ୱ ଗୁରୁତ୍ୱାରୋପ କରେ ।

* ସାମ୍ୟବାଦୀ ସମାଜ ଗଠନର ପରବର୍ତ୍ତୀ ଅବସ୍ଥା ଉପରେ ମଧ୍ୟ ମାର୍କସ୍‌ବାଦୀ ତତ୍ତ୍ୱ ଗୁରୁତ୍ୱ ଦେଇଥାଏ । ତାହା ହେଉଛି ସାମ୍ୟବାଦୀ ସମାଜ ଗଠିତ ହେବା ପରେ ସମାଜରେ କୌଣସି ଗୋଷ୍ଠୀ ରହିବ ନାହିଁ । ରାଷ୍ଟ୍ରର ଶାସନଭାର ଧନୀକମାନଙ୍କ ହାତରୁ ଛଡ଼ାଇ ଆଣି ସର୍ବହରାମାନଙ୍କ ହସ୍ତରେ ନ୍ୟସ୍ତ କରିବା ଉପରେ ଏହି ତତ୍ତ୍ୱ ଗୁରୁତ୍ୱାରୋପ କରେ । ଏହି ପ୍ରସଂଗରେ ଗୋର୍କୀଙ୍କର 'ମଦର' ଉପନ୍ୟାସରେ କିଛି ବର୍ଣ୍ଣନା ଦେଖିବାକୁ ମିଳିଥାଏ ।

ତାହା ହେଉଛି "ବ୍ୟକ୍ତିଗତ ମାଲିକାନା ଦୂର ହେଉ । ଉତ୍ପାଦନର ସମସ୍ତ ଉପାୟନ ଉପକରଣ ଲୋକଙ୍କ ହାତକୁ ଆସୁ । ଲୋକଙ୍କ ହାତକୁ କ୍ଷମତା ଆସୁ । ସମସ୍ତଙ୍କୁ ଶ୍ରମ କରିବାକୁ ହେବ ।" (୫)

ମାର୍କସ୍‌ବାଦୀ ତତ୍ତ୍ୱ ଏହି ସବୁ ପୃଷ୍ଠଭୂମି ଉପରେ ଆଧାରିତ ହୋଇଥିଲାବେଳେ, ଗାନ୍ଧୀବାଦୀ ତତ୍ତ୍ୱ ମଧ୍ୟ ସେପରି ବହୁବିଧ ପୃଷ୍ଠଭୂମି ଉପରେ ପର୍ଯ୍ୟବେସିତ ।

ସରଳ ଭାଷାରେ ବୁଝାଇ କହିଲେ, 'ଗାନ୍ଧୀବାଦ' ହେଉଛି ଯୁଗ ପୁରୁଷ ମହାତ୍ମାଗାନ୍ଧୀଙ୍କ ଦ୍ୱାରା ପ୍ରବର୍ତ୍ତିତ ଚିନ୍ତାଧାରା । ମହାମାନବ ମହାତ୍ମାଗାନ୍ଧୀ ସତ୍ୟ, ନ୍ୟାୟ, ଧର୍ମ ସର୍ବୋପରି ଅହିଂସା ମାର୍ଗକୁ ନିଜ ଜୀବନାଦର୍ଶରେ ପ୍ରମୁଖ ସ୍ଥାନ ପ୍ରଦାନ କରିଥିଲେ । ଏହା ମଣିଷକୁ ଆଦର୍ଶ ଭାବରେ ଜୀବନ ଧାରଣ କରିବା ନିମିତ୍ତ ଏକ ପଥ ବା ମାଧ୍ୟମ ଥିଲା । ଏହା ମଣିଷ ସମାଜକୁ ଆତ୍ମ ସଚେତନଶୀଳ, ମର୍ଯ୍ୟାଦା ସଂପର୍ଣ୍ଣ, ସ୍ୱାଭିମାନୀ, ସ୍ୱାବଲମ୍ବୀ କରାଇବା ପାଇଁ ପ୍ରେରଣା ପ୍ରଦାନ କରୁଥିଲା । ଗାନ୍ଧୀବାଦ ମୁଖ୍ୟତଃ, ଗୀତା, ବୌଦ୍ଧ ଧର୍ମଗ୍ରନ୍ଥ, ଜୈନଧର୍ମଗ୍ରନ୍ଥ ମାନଙ୍କରୁ ଆନୀତ ହୋଇଥିବା ଚିନ୍ତାଧାରା ।

* ପ୍ରଥମତଃ ଗାନ୍ଧୀ ଗ୍ରାମର ସର୍ବାଙ୍ଗୀନ ବିକାଶ ପାଇଁ ପ୍ରାଧାନ୍ୟ ଆରୋପ କରୁଥିଲେ । କାରଣ - ଭାରତବର୍ଷ ଏକ ଗ୍ରାମ ବହୁଳ ରାଷ୍ଟ୍ର । ଗାନ୍ଧିଜୀଙ୍କ ଦୃଷ୍ଟିରେ ଗ୍ରାମୀଣ ଜୀବନଧାରା ଏବଂ ସଂସ୍କୃତି ହେଉଛି ଆଦର୍ଶବାଦର ପରିଚାୟକ । ତେଣୁ ଗ୍ରାମୀଣ ଜନତାଙ୍କର ସର୍ବାଙ୍ଗୀନ ଉନ୍ନତି ପାଇଁ ଗାନ୍ଧୀବାଦ ଆହ୍ୱାନ ଦେଇଥାଏ । ଏଥିପାଇଁ କେତେଗୁଡ଼ିଏ ଉନ୍ନତି ମୂଳକ ପନ୍ଥା ଅବଲମ୍ବନ କରିବା ଉପରେ ଗାନ୍ଧୀବାଦ ଗୁରୁତ୍ୱ ଦେଇଥାଏ । ଗ୍ରାମୀଣ ଅର୍ଥନୀତିକୁ ସୁଦୃଢ଼ କରିବା ପାଇଁ ଗାନ୍ଧୀବାଦ କୁଟୀର

ଶିଳ୍ପର ପ୍ରଚାର ଓ ପ୍ରସାର, ସୂତା କାଟି ଲୁଗା ବୁଣା, ଖଦଡ଼ ପରିଧାନ, କପା ଚାଷ ଓ ଲବଣ ଉତ୍ପାଦନର ପୁନରୁଦ୍ଧାର ଉପରେ ଗୁରୁତ୍ୱ ଦିଏ ।

* ସାଧାରଣ ଭାରତୀୟ ଜନତା ଅଂଧବିଶ୍ୱାସରେ ବଂଧା । ତେଣୁ ସମାଜରୁ ଏହାର ଦୂରୀକରଣ ପାଇଁ ଗାନ୍ଧୀବାଦ ପ୍ରାଧାନ୍ୟ ଆରୋପ କରେ । ଗାନ୍ଧୀବାଦର ପ୍ରମୁଖ ବୈଷିଷ୍ଟ୍ୟ ହେଉଛି – 'ସମାଜ ବିପ୍ଳବ' । ତେଣୁ ଗାନ୍ଧୀ ହିନ୍ଦୁ ସମାଜରେ ଥିବା ନିମ୍ନବର୍ଗର ଜନତାଙ୍କୁ ସଂଘବଦ୍ଧ କରିବା ପାଇଁ ସେମାନଙ୍କୁ 'ହରିଜନ' ଆଖ୍ୟା ପ୍ରଦାନ କରିଥିଲେ ।

* ସମାଜ ଜୀବନକୁ ଉନ୍ନତିର ପଥରେ ପରିଚାଳିତ କରିବା ପାଇଁ ନାରୀ ମାନଙ୍କର ପ୍ରମୁଖ ଭୂମିକା ରହିଛି । ନାରୀମାନେ ଶିକ୍ଷା ଦୀକ୍ଷାରୁ ବଞ୍ଚିତ ହେଲେ ସମାଜର ଉନ୍ନତି ଅସମ୍ଭବ । ତେଣୁ ଗାନ୍ଧୀବାଦୀ ଦର୍ଶନ ନାରୀ ଶିକ୍ଷା ଉପରେ ପ୍ରାଧାନ୍ୟ ଦେଇଥାଏ ।

* ଗାନ୍ଧୀବାଦୀ ଦର୍ଶନ କଦାପି ହିଂସାତ୍ମକ ବିପ୍ଳବ ଉପରେ ଗୁରୁତ୍ୱାରୋପ କରେ ନାହିଁ । ହିଂସାତ୍ମକ ପ୍ରବୃତ୍ତି ମନୁଷ୍ୟର ହୃଦୟରୁ ମାନବିକତାର ବିନାଶ ଘଟାଇଥାଏ । ଅହିଂସା ଓ ପ୍ରେମ ବଳରେ ସବୁକିଛି ସମସ୍ୟାର ସମାଧାନ ଉପରେ ଗାନ୍ଧୀବାଦ ଗୁରୁତ୍ୱ ଦିଏ ।

* କୃଷକ ସମାଜର ଉନ୍ନତି ବିଧାନ ପାଇଁ, କୃଷକକୁ ତା'ର ଅଧିକାର ସଂପର୍କରେ ସଚେତନ କରାଇବା ପାଇଁ ମଧ୍ୟ ଗାନ୍ଧିଜୀଙ୍କ ଚିନ୍ତାଦର୍ଶ ପ୍ରାଧାନ୍ୟ ଦେଉଥିଲା ।

ଉପରୋକ୍ତ ସୂଚନାରୁ ପ୍ରଦତ୍ତ ହୁଏ ଯେ, ଗାନ୍ଧୀବାଦ ଓ ମାର୍କସ୍‌ବାଦ ଏସବୁ ବୈଶିଷ୍ଟ୍ୟକୁ ନେଇ ପର୍ଯ୍ୟବେସିତ । ବର୍ତ୍ତମାନ ଏହି ଦୁଇଟି ଦର୍ଶନ ମଧ୍ୟରେ ତଫାତ୍ ଓ ସାମଞ୍ଜସ୍ୟ କ'ଣ ରହୁଛି ସେ ସଂପର୍କରେ ଆଲୋଚନା କରିବା ।

କାର୍ଲମାର୍କ୍ସ ଓ ମହାତ୍ମା ଗାନ୍ଧୀ – ଜଣେ ପାଶ୍ଚାତ୍ୟ ଦେଶ ଜର୍ମାନୀର ନାଗରିକ ତ' ଅନ୍ୟ ଜଣେ ଭାରତ ବର୍ଷର । ମାର୍କ୍ସଙ୍କ ଦର୍ଶନରପୃଷ୍ଠପଟରେ ଥିଲା ପୁଂଜିପତିମାନଙ୍କ ଦ୍ୱାରା ଶୋଷିତ ଶ୍ରମିକ ଗଣଙ୍କର ଆର୍ତ୍ତି । ଗାନ୍ଧିଜୀଙ୍କ ଦର୍ଶନର ପ୍ରେକ୍ଷାପଟରେ ଥିଲା – ଦକ୍ଷିଣ ଆଫ୍ରିକାରେ ଥିବା ସମୟରେ କଳା-ଗୋରା ଭେଦଭାବ । ଶ୍ମଶ୍ରୁଳ, ଗମ୍ଭୀର ମୁଖ ମଣ୍ଡଳକୁ ଚାହିଁ ଦେଲେ ଲାଗେ ସତେଯେପରି ମାର୍କ୍ସ ସଂସାରର ଶ୍ରମିକ, କୃଷକ ପ୍ରଜାଗଣଙ୍କର ଦୁଃଖରେ ସଦା ବ୍ୟଥିତ । ଠିକ୍ ସେହିପରି ମହାତ୍ମାଙ୍କର ହସ ହସ ମୁଖମଣ୍ଡଳ ଯେମିତି ଅଗଣିତ ଭାରତବାସୀଙ୍କ ପାଇଁ ପ୍ରେରଣାର ଉତ୍ସଥିଲା କହିଲେ ଅତ୍ୟୁକ୍ତି ହେବ ନାହିଁ । ଜଣେ କେବଳ ପୁସ୍ତକ କୀଟ ସାଜି ନିଜର ମତବାଦକୁ ପର୍ଯ୍ୟବେସିତ କଲାବେଳେ ଅପର ଜଣକର ହୃଦୟ ତରଳି ଯାଉଥିଲା ଭାରତମାତାର

ଦୁଃଖ କଷ୍ଟକୁ ଦେଖି । ଉଭୟ ମନୀଷୀଙ୍କ ଚିନ୍ତାଧାରା ସଂପର୍କରେ ମତପ୍ରଦାନ କରିବାକୁ ଯାଇ ସମାଲୋଚକ 'ବିଜୟ ନାୟକ' କହନ୍ତି –

"ବ୍ରିଟିଶ୍ ମ୍ୟୁଜିୟମ୍‌ରେ ଅହୋରାତ୍ର ପୁସ୍ତକ ଭିତରେ ମଜ୍ଜି ରହୁଥିଲେ 'କାର୍ଲମାର୍କ୍ସ' । କିନ୍ତୁ ବିବିଧ ଭାରତ ଥିଲା ମହାତ୍ମା ଗାନ୍ଧୀଙ୍କ ପାଠାଗାର ଓ ପ୍ରୟୋଗଶାଳା । ସହର ତଳିର ଦୁଃଖରେ ମ୍ରିୟମାଣ ହୋଇ ପଡୁଥିଲେ ମାର୍କ୍ସ । ଗାନ୍ଧୀଙ୍କୁ ଭିଜେଇ ଦେଉଥିଲା ସୁଦୂର ପଲ୍ଲୀର ନୀରବ ଅଶ୍ରୁପାତ । ସେମିତି ଶ୍ରେଣୀ ବିଭାଜନ ମାର୍କସ୍‌ଙ୍କୁ ମର୍ମାହତ କରିଥିଲାବେଳେ ଘୃଣ୍ୟ ଜାତିପ୍ରଥା କ୍ଷତାକ୍ତ କରିଥିଲା ଗାନ୍ଧୀଙ୍କୁ ।" (୬)

ମାର୍କସ୍‌ଙ୍କ ଜୀବନରେ ସବୁଠାରୁ ବଡ଼ ଲକ୍ଷ୍ୟ ଥିଲା ଶୋଷିତ ଜନଗଣଙ୍କର ମୁକ୍ତି । ନିଜର ଏହି ଲକ୍ଷ୍ୟ ପଥରେ ପହଞ୍ଚିବା ପାଇଁ ସେ ଯେକୌଣସି ପନ୍ଥା ଅବଲମ୍ବନ କରିବା ପାଇଁ ଇଚ୍ଛୁକ ଥିଲେ । ତେଣୁ 'ବିପ୍ଳବ' ଥିଲା ତାଙ୍କର ଶ୍ରେଷ୍ଠ ପନ୍ଥା । ତାଙ୍କ ମତରେ ମନୁଷ୍ୟ ଯଦି ନିଜର ନ୍ୟାର୍ଯ୍ୟଦାବୀ ଜୋର୍ ଜବରଦସ୍ତହାସଲ୍ ନକରିବ ତା' ହେଲେ ସମସ୍ତେ ତାକୁ ଶୋଷଣ କରି ଚାଲିଥିବେ । କିନ୍ତୁ ଗାନ୍ଧୀ କହିଲେ ଶୋଷିତ ଜନଗଣଙ୍କର ମୁକ୍ତି ପାଇଁ ବିପ୍ଳବ ଏକମାତ୍ର ପନ୍ଥା ନୁହେଁ । ମନୁଷ୍ୟ ମନୁଷ୍ୟକୁ ସ୍ନେହ, ପ୍ରେମ ବଳରେ ବଦଳାଇ ଦେଇପାରିବ ।

ଶୋଷକ ଗୋଷ୍ଠୀ ଯେତେବେଳେ ଶୋଷଣର ମାୟାଜାଲ ନିକ୍ଷେପ କରେ ସେତେବେଳେ ଧର୍ମକୁ ମାଧ୍ୟମ ଭାବେ ଗ୍ରହଣ କରେ । ତେଣୁ ସମାଜରୁ ଧର୍ମ ପ୍ରତି ଥିବା ବିଶ୍ୱାସକୁ ଦୂର କରିବା ଉପରେ ମାର୍କସ୍‌ବାଦ ଗୁରୁତ୍ୱ ଦିଏ । କିନ୍ତୁ ଗାନ୍ଧୀବାଦ ଧର୍ମ ପ୍ରତି ଆସ୍ଥା ପ୍ରକଟ କରେ । କାହିଁକି ନା ଗାନ୍ଧିଜୀଙ୍କ ମତରେ ଏ ସଂସାର ଈଶ୍ୱରଙ୍କ ସୃଷ୍ଟି । ଈଶ୍ୱର ସବୁରି ଶରୀରରେ ବିରାଜିତ । ଧର୍ମ ଏବଂ ଈଶ୍ୱରଙ୍କୁ ବାଦ୍ ଦେଇ କୌଣସି କାର୍ଯ୍ୟ କରାଯାଇପାରେନା ।

ମାର୍କସ୍‌ବାଦ ସର୍ବହରାମାନଙ୍କ ଆନ୍ଦୋଳନ ଦ୍ୱାରା ପୁଂଜିପତି ଗୋଷ୍ଠୀକୁ କ୍ଷମତାଚ୍ୟୁତ କରାଏ । ହିଂସାତ୍ମକ ପନ୍ଥା ଅବଲମ୍ବନ କରି ବିପ୍ଳବ ମାଧ୍ୟମରେ ଯେଉଁ ଶାସନ ପ୍ରତିଷ୍ଠା ହୁଏ ତାହା ଦୀର୍ଘସ୍ଥାୟୀ ହୋଇ ନଥାଏ ବୋଲି ଗାନ୍ଧୀବାଦ ସାବ୍ୟସ୍ତ କରେ ।

ଏହିପରି ଉଭୟ ମତବାଦକୁ ପର୍ଯ୍ୟାଲୋଚନା କଲେ ଜଣାପଡ଼େ ଯେ ଦୁଇ ମନୀଷୀଙ୍କର ଚିନ୍ତାଧାରା ତଫାତ୍ । କିନ୍ତୁ ଯଦି ଉଭୟ ଚିନ୍ତାଧାରାର ଅନ୍ତର୍ନିହିତ ଦୃଷ୍ଟିକୋଣକୁ ତର୍ଜ୍ଜମା କରିବା ତା' ହେଲେ ଜାଣିପାରିବା ଯେ ଉଭୟଙ୍କର ଚିନ୍ତାଦର୍ଶ ଗୋଟିଏ କେନ୍ଦ୍ରବିନ୍ଦୁରେ ମିଳିତ ହୁଅନ୍ତି । ଦୁଇ ଜନନାୟକଙ୍କର କଳ୍ପନା ସମାଜର ଉନ୍ନତି ବିଧାନ ନିମନ୍ତେ ଉଦ୍ଦିଷ୍ଟ । ମାର୍କସ୍‌ଙ୍କର ସ୍ୱପ୍ନ ଥିଲା ସମାଜ ମଧ୍ୟରେ ଏକ ଶୋଷଣ ବିହୀନ ସମାଜ ଗଠନ । ଗାନ୍ଧିଜୀ ମଧ୍ୟ ସ୍ୱପ୍ନ ଦେଖୁଥିଲେ ଏକ ସୁସ୍ଥ, ସୁନ୍ଦର ସମାଜର

ପରିକଳ୍ପନା ଯାହାକୁ ଆମେ ରାମରାଜ୍ୟର ପରିକଳ୍ପନା ବୋଲି ଅଭିହିତ କରିଥାଉ । ଯେଉଁଠାରେ ବଡ଼ ସାନର ଭେଦଭାବ ନଥିବ । ସମସ୍ତେ ଭ୍ରାତୃଭାବ ପୋଷଣ କରି ସୁଖରେ କାଳାତିପାତ କରୁଥିବେ । ରାଜ୍ୟରେ ଅପରାଧ ନଥିବ କି ଅପରାଧୀ ନଥିବେ । ଯୁଦ୍ଧ ନଥିବ କି ହିଂସା ନଥିବ ।

ତେଣୁ ଆଲୋଚନାର ଉପସଂହାରରେ ଆମେ ଏହି ନିର୍ଯ୍ୟାସରେ ଉପନୀତ ହେଲେ ଯେ - ଉଭୟ ମତବାଦ ପରିପ୍ରକାଶର ମାଧ୍ୟମ ପରସ୍ପରଠାରୁ ତଫାତ୍ ହୋଇଥିଲେ ମଧ୍ୟ ଚିନ୍ତାଧାରାର କେନ୍ଦ୍ରସ୍ଥଳୀ ଗୋଟିଏ । ତାହା ହେଉଛି 'ଉନ୍ନତ ସମାଜ ଗଠନ' ।

## ମାର୍କସ୍‌ବାଦର ପ୍ରଭାବ ଓ ସଂଗଠନ

ଭାରତବର୍ଷର ଜାତୀୟମୁକ୍ତି ଆନ୍ଦୋଳନ ଉପରେ ମାର୍କସ୍‌ବାଦ ଓ ଅକ୍ଟୋବର ବିପ୍ଳବର ପ୍ରଭାବ ଯେ ପଡ଼ିଛି, ଏହାକୁ ଅସ୍ୱୀକାର କରାଯାଇନପାରେ । ଏହାର ପ୍ରଭାବରେ ବିଭିନ୍ନ ସଂଗଠନ ଗୁଡ଼ିକ ଗଢ଼ି ଉଠିଲା । ସେଗୁଡ଼ିକର ମୁଖ୍ୟ କାର୍ଯ୍ୟ ହେଲା 'ମାର୍କସ୍‌ବାଦକୁ' 'ଗଣାଭିମୁଖୀ' କରିବା । ୧୯୨୦ ମସିହାରେ ଗଠିତ ହୋଇଥିବା କମ୍ୟୁନିଷ୍ଟ ପାର୍ଟି ୧୯୨୫ ମସିହାରେ 'କମ୍ୟୁନିଷ୍ଟ ପାର୍ଟି ଅଫ୍ ଇଣ୍ଡିଆ' ନାମରେ ପରିଚିତ ହେଲା । ବଂଗ ପ୍ରଦେଶ, ବମ୍ବେ, ମାନ୍ଦ୍ରାଜ ପ୍ରଭୃତି ବିଭିନ୍ନ ସ୍ଥାନରେ ଏହାର ସଂଗଠନମାନ ଗଢ଼ିଉଠିବା ସଙ୍ଗେସଙ୍ଗେ ଚାଷୀ ଓ ଶ୍ରମିକମାନଙ୍କୁ ଏକଜୁଟ୍ କରି ଆନ୍ଦୋଳନମାନ ମଧ୍ୟ ଏହାରି ନେତୃତ୍ୱରେ ଆରମ୍ଭ ହେଲା । ୧୯୨୪ ରେ କାନ୍‌ପୁର କମ୍ୟୁନିଷ୍ଟ ଷଡ଼ଯନ୍ତ୍ର ମାମଲା ଓ ୧୯୨୮ରେ ମିରଟ୍ ଷଡ଼ଯନ୍ତ୍ର ମାମଲା ହେତୁ ୧୯୩୪ ମସିହାବେଳକୁ ସରକାର ଏହାକୁ ବେଆଇନ୍ ଘୋଷଣା କଲେ । କିନ୍ତୁ ଜନମାନସରୁ ଏହି କମ୍ୟୁନିଷ୍ଟ ଚିନ୍ତାଧାରାକୁ ବାଦ ଦିଆଯାଇ ପାରିଲା ନାହିଁ । ସରକାର ଯେତେ ଦମନମୂଳକ ପଦକ୍ଷେପ ଗ୍ରହଣ କଲେ ମଧ୍ୟ ଧୀରେଧୀରେ କମ୍ୟୁନିଷ୍ଟ ପାର୍ଟି ଶ୍ରମିକ ଓ କୃଷକମାନଙ୍କର ପୂର୍ଣ୍ଣ ନେତୃତ୍ୱ ମଧ୍ୟକୁ ଚାଲି ଆସିଥାଏ । ଯାହାର ପ୍ରମାଣ ମିଳେ ୧୯୩୪-୩୫ ମସିହାରେ ଜବାହରଲାଲ୍ ନେହେରୁଙ୍କ ନେତୃତ୍ୱରେ କଂଗ୍ରେସ୍‌ର କିଛି ପ୍ରଗତିକାମୀ ଯୁବକ କଂଗ୍ରେସ୍ ସୋସାଲିଷ୍ଟ ପାର୍ଟି ଗଢ଼ି ଭାରତରେ ଯେତେବେଳେ ପ୍ରଗତିବାଦ (ମାର୍କସବାଦ)ର ପ୍ରତିଷ୍ଠା ପାଇଁ ସଂଗ୍ରାମର ଆବାହନ କରନ୍ତି । ଯାହାର ପ୍ରଭାବରେ ୧୯୩୪ ମସିହାରେ ଓଡ଼ିଶାରେ "ଓଡ଼ିଶା କଂଗ୍ରେସ୍ ସାମ୍ୟବାଦୀ କର୍ମୀସଂଘ" ଗଠିତ ହୋଇଥିଲା । ଓଡ଼ିଶାରେ ସେତେବେଳେ ଗଡ଼ଜାତ ଅଞ୍ଚଳରେ ଦେଖା ଦେଉଥିବା ରାଜାମାନଙ୍କର ଅତ୍ୟାଚାର ବିରୋଧରେ ସଂଗ୍ରାମପାଇଁ ଏହି ଅନୁଷ୍ଠାନ ପ୍ରତିଜ୍ଞାବଦ୍ଧ ଥିଲା । ଏ ସଂପର୍କରେ ମତବ୍ୟକ୍ତ କରିବାକୁ ଯାଇ ଶ୍ରୀଯୁକ୍ତ ସୁରେନ୍ଦ୍ର ନାଥ ଦ୍ୱିବେଦୀ କହନ୍ତି –

"ଏହି ସଂଘର କର୍ମୀମାନଙ୍କର ଲକ୍ଷ୍ୟଥିଲା– ମଫସଲରେ ରହି ଦରିଦ୍ର କୃଷକ ସହିତ ସମ୍ବନ୍ଧ ସ୍ଥାପନ କରି, ଶ୍ରେଣୀ ଚୈତନ୍ୟ ଜାଗ୍ରତ କରିବା ଏବଂ ନିଜ ନିଜ ଦୃଷ୍ଟିକୋଣ ପରିସ୍ଫୁଟ କରାଇବାପାଇଁ ସାମ୍ୟବାଦ ସଂକ୍ରାନ୍ତ ସାହିତ୍ୟ ଅଧ୍ୟୟନ କରିବା ।" (୭)

ମାର୍କସ୍‌ବାଦକୁ ଗ୍ରାମାଞ୍ଚଳର କୋଣେ ଅନୁକୋଣେ ପ୍ରଚାର କରାଇବାରେ ଓ ଏହାର ପ୍ରଭାବରେ ମାର୍କସ୍‌ବାଦୀ ସାହିତ୍ୟ ତତ୍ତ୍ୱ ସଂପର୍କରେ ଜନସାଧାରଣଙ୍କୁ ପରିଚିତ କରାଇବାରେ ଏହି ସଂଗଠନ ଗୁଡ଼ିକ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଥିଲା । ଏହାର ପ୍ରଭାବରେ ସର୍ବଭାରତୀୟ ସ୍ତରରେ ପ୍ରଗତିବାଦୀ ଲେଖକ ସଂଘମାନ ଗଢ଼ି ଉଠିଲା ଓ ମାର୍କସ୍‌ବାଦୀ ଆଭିମୁଖ୍ୟକୁ ପ୍ରସାରିତ କରାଇବାରେ ପ୍ରମୁଖ ଭୂମିକା ବହନ କଲା ।

## ସର୍ବଭାରତୀୟ ସ୍ତରରେ ପ୍ରଗତିବାଦୀ ଲେଖକ ସଂଘ

ମାର୍କସ୍‌ବାଦର ପ୍ରଭାବରେ ଗଢ଼ି ଉଠିଥିବା ସଂଗଠନମାନ ସାରା ଭାରତବର୍ଷରେ ବୈପ୍ଳବିକ ଚିନ୍ତାଧାରାକୁ ପ୍ରସାରିତ କରାଇବାରେ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କଲେ । ଏ କ୍ଷେତ୍ରରେ ବଂଗଳା ଓ ହିନ୍ଦୀ ସାହିତ୍ୟିକମାନଙ୍କର ବିଶେଷ ଗୁରୁତ୍ୱପୂର୍ଣ୍ଣ ଭୂମିକା ରହିଥିଲା । ଅକ୍ଟୋବର ବିପ୍ଳବ ସଂଗଠିତ ହେବା ପୂର୍ବରୁ ଔପନ୍ୟାସିକ 'ବଙ୍କିମ୍‌ଚନ୍ଦ୍ର' 'ସାମ୍ୟ' ନାମକ ଏକ ପ୍ରବଂଧ ବଂଗଳା ଭାଷାରେ ରଚନା କରିଥିଲେ । ଯେଉଁଥିରେ ସାମାଜିକ ବୈଷମ୍ୟ ବିରୋଧରେ ପ୍ରତିବାଦର ସ୍ୱର ଅନୁରଣିତ ହୋଇଥିଲା ଓ ଏହା ହିଁ ଥିଲା ଭାରତରେ ପ୍ରଗତିବାଦୀ ଚିନ୍ତାଚେତନାର ଆଦ୍ୟ ଓଁ କାର । (୮)ଏହା sedition committee report ରୁ ପ୍ରତିପାଦିତ ହୁଏ ।

ପୂର୍ବ ଅଧ୍ୟାୟରେ ଆଲୋଚନା କରାଯାଇଛି ଯେ ବଂଗ ପ୍ରଦେଶ ହିଁ ଥିଲା ଜାତୀୟମୁକ୍ତି ଆନ୍ଦୋଳନର ପ୍ରଧାନ କେନ୍ଦ୍ରସ୍ଥଳୀ । ବଂଗ ପ୍ରଦେଶରେ ମଧ୍ୟ କଳକାରଖାନାର ଦ୍ରୁତ ବିକାଶ ଘଟିବାରୁ ପୁଂଜିବାଦର ବିକାଶ ମଧ୍ୟ ଘଟିଲା । ପୁଂଜିବାଦର ବିକାଶ ଶ୍ରମିକ ଗୋଷ୍ଠୀର ଅସନ୍ତୋଷକୁ ଆଗେଇ ନେବା ପାଇଁ ସକ୍ଷମ ହେଲା । ୧୮୭୨ ମସିହାରେ 'ଶଶୀପଦ ବାନାର୍ଜୀ' ନାମକ ଜନୈକ ବ୍ୟକ୍ତି ଶ୍ରମଜୀବୀ ସଂଘ ନାମକ ଏକ ସଂଗଠନ ଗଠନ କଲେ ଓ ଶ୍ରମିକ ଶ୍ରେଣୀର ଉତ୍‌ଥାନ ପାଇଁ ଉଦ୍ୟମ ଆରମ୍ଭ କଲେ । ତାଙ୍କ ବ୍ୟତୀତ ଏ କ୍ଷେତ୍ରରେ 'ରେଭରେଣ୍ଡ ଲାଲ୍ ବିହାରୀ ଦେ' ଓ ଅଧରଚନ୍ଦ୍ର ଦାସଙ୍କ ଉଦ୍ୟମ ମଧ୍ୟ ପ୍ରଶଂସନୀୟ । ଯିଏ କି ଶ୍ରମିକ ଶ୍ରେଣୀର ଉନ୍ନତି ଓ ଜମିଦାରୀ ପ୍ରଥା ବିରୋଧରେ ତୀବ୍ର ସଂଗ୍ରାମ ପାଇଁ ଆହ୍ୱାନ ଦେଇଥିଲେ । ଉନବିଂଶ ଶତାବ୍ଦୀର ଶେଷ ଆଡ଼କୁ କବିଗୁରୁ ରବୀନ୍ଦ୍ରନାଥ ଓ ବିବେକାନନ୍ଦ ମଧ୍ୟ ପ୍ରଗତିବାଦୀ ଚିନ୍ତାଚେତନା ସମ୍ବନ୍ଧରେ ନିଜର ମତାମତ ପୋଷଣ କରିଥିଲେ । ରବୀନ୍ଦ୍ରନାଥଙ୍କ ଦ୍ୱାରା ରଚିତ

ହୋଇଥିବା ପ୍ରବଂଧ ଗୁଡ଼ିକରୁ ଏହାର ପ୍ରମାଣ ମିଳେ । ଅକ୍ଟୋବର ବିପ୍ଳବ ସଂପର୍କରେ ସେ ଉଲ୍ଲେଖ କରିଥିଲେ–

"The slaves of today have recently disconnected the simple truth that without this co-operation their masters are totally powerless. They alone are esential. The tremendous wealth of earth is theirs. This discovery has led the toilens to make attempts to break their shackles and stand erect."(9)

ସର୍ବହରା ଶ୍ରମିକମାନେ ହେଉଛନ୍ତି ଶକ୍ତିଶାଳୀ । ପ୍ରକୃତରେ ସେମାନେ ପୃଥିବୀର ସକଳ ଧନସଂପଦର ହକ୍‌ଦାର୍ । କାରଣ ସେମାନେ ଲହୁଲୁହ ନିଗାଡ଼ି ଶିଳ୍ପ ପ୍ରାଚୁର୍ଯ୍ୟ ତିଆରି କରନ୍ତି । ରବୀନ୍ଦ୍ରଙ୍କର ଏହି ଅଭିବ୍ୟକ୍ତି ତତ୍‌କାଳୀନ ଜନମାନସରେ ବେଶ୍ ପ୍ରଭାବ ବିସ୍ତାର କରିଥିଲା । ବଂଗପ୍ରଦେଶର ଜନତାଙ୍କ ହୃଦୟରେ ଆଦର୍ଶବାଦର ବୀଜ ବପନ କରିବା ପାଇଁ ଲେନିନ୍‌ଙ୍କ ସଂପର୍କରେ ମଧ୍ୟ ପ୍ରବଂଧମାନ ପ୍ରକାଶିତ ହେଲା । ତନ୍ମଧ୍ୟରୁ 'ସୁରେନ୍ଦ୍ର ନାଥ ଠାକୁର'ଙ୍କର ଲେନିନ୍ ସଂପର୍କୀୟ ପ୍ରବଂଧ, ପ୍ରଫେସର ଅତୁଲ୍‌ସେନ୍‌ଙ୍କର 'ବିପ୍ଳବର ପଥେ' ଇତ୍ୟାଦି ପ୍ରଧାନ । ଏତଦ୍‌ବ୍ୟତୀତ ମାର୍କସ୍‌ବାଦୀ ଚିନ୍ତାଚେତନା ସମ୍ବଳିତ କବିତା ରଚନା କ୍ଷେତ୍ରରେ 'କାଜି ନଜରୁଲ୍ ଇସ୍‌ଲାମ୍' ଏକ ସ୍ୱତନ୍ତ୍ର ପରିଚୟ ସୃଷ୍ଟି କରିପାରିଥିଲେ । ତାଙ୍କ ଦ୍ୱାରା ରଚିତ 'ପ୍ରଳୟୋଲ୍ଲାସ' ଓ 'ବିରୋଧୀ' ବେଶ୍ ସୁଖ୍ୟାତି ଅର୍ଜନ କରିଥିଲା । କବିତା ରଚନା ବ୍ୟତୀତ 'ଧୂମକେତୁ' ଓ 'ଲାଙ୍ଗଲ୍' ନାମକ ପତ୍ରିକାର ସଂପାଦନା ଦାୟିତ୍ୱରେ ମଧ୍ୟ ସେ ଥାଆନ୍ତି । ନଜରୁଲ୍‌ଙ୍କ ରଚିତ

"ଓଠରେ ଚାଷୀ ଜଗତ୍‌ବାସୀ
ଧୀରେ କଷେ ଲାଂଗଲ୍ ।"

ପଦଟି ତତ୍‌କାଳୀନ ସମୟରେ କୃଷକ ସଂଗଠନ ଗୁଡ଼ିକୁ ବେଶ୍ ଉତ୍ସାହିତ କରିବାକୁ ସକ୍ଷମ ହୋଇଥିଲା । ଏହାପରେ ବିଶ୍ୱକବିଙ୍କ 'ଋଷିଆ ଭ୍ରମଣ' ଓ 'ଋଷିଆ ଚିଠି' ପ୍ରକାଶିତ ହେବା ପରେ ବଂଗ ପ୍ରଦେଶର ଯୁବ ଗୋଷ୍ଠୀଙ୍କ ମଧ୍ୟରେ ଏହା ତୀବ୍ର ପ୍ରତିକ୍ରିୟା ସୃଷ୍ଟି କରିବାକୁ ସକ୍ଷମ ହୋଇଥିଲା । ଏହା ବ୍ୟତୀତ 'ପ୍ରମଥ ନାଥ ଚୌଧୁରୀ'ଙ୍କର 'ରଇତେର୍ କଥା', ସୌମେନ୍ଦ୍ର ନାଥ ଠାକୁରଙ୍କର 'କମ୍ୟୁନିଷ୍ଟ ମାନିଫେଷ୍ଟୋର ଅନୁବାଦ, ମନୋରଂଜନ ରାଜ୍‌ରାଙ୍କର 'ପଲ୍ଲୀମାଟିର ଫସଲ', 'ନଙ୍ଗର୍‌ହୀନ ନୌକା' ନାମକ ଦୁଇଟି ଉପନ୍ୟାସ ମାଧ୍ୟମରେ ମାର୍କସ୍‌ବାଦୀ ଚିନ୍ତାଚେତନା ଶକ୍ତିଶାଳୀ ରୂପ ପରିଗ୍ରହ କରିବାକୁ ସକ୍ଷମ ହୋଇଥିଲା । 'ସଂହତି', 'ଗଣବାଣୀ',

'ପରିଚୟ', 'ଆତ୍ମଶକ୍ତି' ଇତ୍ୟାଦି ପତ୍ରିକା ମଧ୍ୟ ଏ ଦିଗରେ ଅଗ୍ରଣୀ ଭୂମିକା ଗ୍ରହଣ କରିଥିଲା ।

୧୯୩୮ ମସିହାରେ ଅନୁଷ୍ଠିତ ହୋଇଥିବା ପ୍ରଗତିଶୀଳ ଲେଖକ ସଂଘର ଦ୍ୱିତୀୟ ଅଧିବେଶନ ବଂଗଳାର ସାହିତ୍ୟିକମାନଙ୍କୁ ବିଶେଷ ପ୍ରଭାବିତ କରିଥିଲା । ୧୯୪୦ ମସିହା ବେଳକୁ ବଂଗଳା ସାହିତ୍ୟକୁ ପୂର୍ଣ୍ଣ ମାତ୍ରାରେ ଏହି ଚିନ୍ତାଦର୍ଶ ଗ୍ରାସ କରିସାରିଥାଏ । ବହୁ ସଂଖ୍ୟକ ସାହିତ୍ୟିକ ବୈପ୍ଳବିକ ଚିନ୍ତାଧାରାକୁ ନେଇ ସାହିତ୍ୟ ସୃଷ୍ଟି କରୁଥାନ୍ତି । ସେମାନଙ୍କ ମଧ୍ୟରୁ 'ବିଷ୍ଣୁଦେ' , 'ସମରସେନ୍', 'ସୁବାସ୍ ମୁଖୋପାଧ୍ୟାୟ', 'ସୁଜାତା ଭଟ୍ଟାଚାର୍ଯ୍ୟ', 'ଅମିତାଭ୍ ଚାଟାର୍ଜୀ', 'ଶଙ୍ଖଘୋଷ' ପ୍ରମୁଖ ମାର୍କସୀୟ ଚିନ୍ତାଦର୍ଶକୁ ଆଧାର କରି ଉଚ୍ଚକୋଟୀର ସାହିତ୍ୟ ସୃଷ୍ଟି କରିଥିଲେ ।

ମାର୍କସ୍‌ବାଦର ପ୍ରଭାବରୁ ସମକାଳୀନ ହିନ୍ଦୀ ସାହିତ୍ୟ ମଧ୍ୟ ମୁକ୍ତ ହୋଇପାରିନଥିଲା । ୧୯୧୯ ମସିହାରେ ପ୍ରଥମକରି 'ଶିବନାରାୟଣ ମିଶ୍ର ବୈଦ୍ୟ' ନାମକ ଜଣେ ଲେଖକ 'ସାମ୍ୟବାଦ' ନାମକ ଏକ ପୁସ୍ତକ ରଚନା କଲେ । ଯାହାକି ମାର୍କସ୍‌ବାଦୀ ତତ୍ତ୍ୱକୁ ହିନ୍ଦୀ ଭାଷାରେ ପୁସ୍ତକ ମାଧ୍ୟମରେ ପ୍ରଚାର କରିବା ପାଇଁ ଥିଲା ପ୍ରଥମ ପଦକ୍ଷେପ । ଏହା ପୂର୍ବରୁ ଅବଶ୍ୟ 'ଗୟା ପ୍ରସାଦଶୁକ୍ଳ' ସନେହୀ ନାମକ ଏକ କବିତା ରଚନା କରିଥିଲେ । ଯେଉଁ କବିତାରେ ପୁଂଜିବାଦର ବିନାଶ ଓ ସର୍ବହରାର ବିଜୟ ମଧ୍ୟରେ ସାମ୍ୟବାଦର ପ୍ରତିଷ୍ଠା ହିଁ ଥିଲା କବିତାର ଲକ୍ଷ୍ୟ । ଏହା ବ୍ୟତୀତ ତାଙ୍କ ରଚିତ 'ଗରୀବୋଁ କି ଗୁହାରୀ' (ପ୍ରତାପ - ୧୯୧୭-ସେପ୍‌ଟେମ୍ବର-୩୦ ପୃ-୬) 'ମଜ୍‌ଦୁରୋଁ କି ହୋଲି' (୧୯୨୧ ମାର୍ଚ୍ଚ - ୧ - ପ୍ରତାପ - ପୃ - ୧) ପ୍ରଭୃତି କବିତାରେ ଗରୀବ, ଅସହାୟ ମଜଦୁର୍ ମାନଙ୍କ ପ୍ରତି କବିପ୍ରାଣର ସମବେଦନାକୁ ଲକ୍ଷ୍ୟ କରାଯାଇପାରେ । କବି ଗୟାପ୍ରସାଦ ଦରିଦ୍ର ସର୍ବହରାର ଦୁଃଖ ପ୍ରତି ସମବେଦନା ଜଣାଇ କବିତା ରଚନା କଲାବେଳକୁ କବି ଦେବୀଦତ୍ତ ମିଶ୍ର ସମାଜରୁ ଏ ପ୍ରକାର ଅନ୍ୟାୟର ବିଲୋପ ପାଇଁ ତାଙ୍କ କବିତା ମାଧ୍ୟମରେ ପ୍ରତିଶ୍ରୁତିବଦ୍ଧ ହୁଅନ୍ତି । 'ଆହ୍ୱାନ' କବିତାରୁ ଏହା ପରିଲକ୍ଷିତ ହୁଏ । କବିଙ୍କ ବର୍ଣ୍ଣନାଟି ଏହିପରି –

"ପରିବର୍ତ୍ତନ ! ସ୍ୱାଗତ ଆଓ
ନବଯୁଗ ଜ୍ୟୋତ୍ସ୍ନା ଜଗାଓ ।
ଓ୍ୱହ ସାମ୍ୟ ପ୍ରଭା ପ୍ରକଟାଓ ।
ପରିବର୍ତ୍ତନ ସ୍ୱାଗତ ଆଓ ।।
କାୟର୍ ହୃଦୟୋଁ ମେଁ ଫିର୍ ସେ ହୋ ଆଦର୍ଶେ କାଭାନ୍
ଭାରତୀୟ ସ୍ୱାତନ୍ତ୍ର୍ୟ ସମର୍ ମେଁ ହୋ ସଂଘର୍ଷ ବଳିଦାନ ।"(୧୦)

କବି ଦେବୀଦତ୍ତଙ୍କ ଆହ୍ୱାନ। କବିପ୍ରାଣ ଉପରୋକ୍ତ ପଂକ୍ତିରେ ସମାଜରେ ସାମ୍ୟ ପ୍ରଭା ପ୍ରକଟାଇବାପାଇଁ, ନବଯୁଗର ଜ୍ୟୋସ୍ନା ବିକିରଣ ପାଇଁ ପ୍ରତିଜ୍ଞାବଦ୍ଧ ମନେହୁଅନ୍ତି । ଏଥିପାଇଁ ସମଗ୍ର ଜନତାଙ୍କୁ ସଚେତନ ହେବାକୁ ପଡ଼ିବ । ଏହି ଦୁଇଜଣ ଅଗ୍ରଗାମୀ କବିଙ୍କ ସହସ୍ୱର ମିଳାଇଥିଲେ କବି ଚେତନ ଶର୍ମା, ଶିବ ଦାସ ଗୁପ୍ତ ଓ ଅଯୋଧ୍ୟା ସିଂହ ଉପାଧ୍ୟାୟ ।

୧୯୩୦-୩୬ ମସିହା ଥିଲା ହିନ୍ଦୀ ସାହିତ୍ୟରେ ମାର୍କସ୍‌ବାଦୀ ଚିନ୍ତାଚେତନାର ପରିପକ୍ୱକାଳ । ଏହି ସମୟରେ ପ୍ରଗତିଶୀଳ ଲେଖକ ସଂଘର ଅଧିବେଶନ ପ୍ରେମ୍‌ଚାନ୍ଦଙ୍କ ସଭାପତିତ୍ୱରେ ଲକ୍ଷ୍ନୌଠାରେ ବସିଥିଲା । ଏହି ଚିନ୍ତାଚେତନାର ପରିପୁଷ୍ଟି ପାଇଁ ପ୍ରେମ୍‌ଚାନ୍ଦ୍‌ଙ୍କର ଅବଦାନ ମଧ୍ୟ କିଛି କମ୍ ନୁହେଁ । ଏହି ଚିନ୍ତାଧାରାକୁ ଅଧିକରୁ ଅଧିକ ଜନପ୍ରିୟ କରାଇବାରେ ସକ୍ଷମ ହୋଇଥିଲା ପ୍ରେମ୍‌ଚାନ୍ଦଙ୍କର 'ଗୋଦାନ୍' ଓ 'ପ୍ରେମାଶ୍ରମ' ଉପନ୍ୟାସ । କେବଳସେତିକିନୁହେଁ ୧୯୩୪ ମସିହାରେ ରାହୁଲ୍ ସାଂକୃତାୟନ୍‌ଙ୍କର ଏକ ନିବଂଧ 'ସାମ୍ୟବାଦ କେଁୟା' ପ୍ରକାଶିତ ହୋଇ ବିପୁଳ ଆଦୃତି ଲାଭ କରିଥିଲା । ଏଥିରୁ ପ୍ରତୀୟମାନ ହୁଏ ଯେ ମାର୍କସ୍‌ବାଦୀ ଚିନ୍ତା ଚେତନାକୁ ପ୍ରସାରିତ କରାଇବାରେ ପ୍ରଗତିଶୀଳ ଲେଖକସଂଘର ଏକ ସ୍ୱତନ୍ତ୍ର ମର୍ଯ୍ୟାଦା ରହିଛି ।

ସର୍ବଭାରତୀୟ ସ୍ତରରେ ଯେତେବେଳେ ମାର୍କସ୍‌ବାଦୀ ଚିନ୍ତା ଚେତନା ପ୍ରଭାବ ବିସ୍ତାର କରୁଥାଏ, ସମକାଳୀନ ଉର୍ଦ୍ଦୁ, ତେଲୁଗୁ, ଗୁଜୁରାଟୀ, ମରାଠୀ ସାହିତ୍ୟ ମଧ୍ୟ ଏଥିରୁ ବାଦ୍ ପଡ଼ିନଥାଏ । ଉର୍ଦ୍ଦୁ ସାହିତ୍ୟିକମାନଙ୍କ ମଧ୍ୟରୁ ହସରତ୍ ମୋହାନି ଇକ୍‌ବାଲ୍, ହୁସେନ୍ ରାୟପୁରୀ, ଅଖତାର ଅନ୍‌ସାରୀ ଓ ତେଲୁଗୁ ସାହିତ୍ୟିକମାନଙ୍କ ମଧ୍ୟରୁ କଂଗ୍ରେସ ନେତା ପଟ୍ଟାଭିସୀତାରାମୟା, ଶ୍ରୀରଂଗମ୍ ଶ୍ରୀନିବାସରାଓ, ମରାଠୀ ସାହିତ୍ୟରେ ଡି.କେ ବେନ୍‌କର, ଅନନ୍ତ କାନେକର ଓ ଗୁଜୁରାଟୀ ସାହିତ୍ୟରେ ଜନ୍‌କର ଦେଶାଇ, ରମଣଲାଲ୍ ଦେଶାଇ ପ୍ରମୁଖଙ୍କ ପ୍ରଗାଢ଼ ଉଦ୍ୟମ ଦ୍ୱାରା ସର୍ବଭାରତୀୟ ସ୍ତରରେ ମାର୍କସବାଦୀ ଚିନ୍ତାଚେତନା ପ୍ରସାର ଲାଭ କରପାରିଥିଲା । ଏହା ପୂର୍ବରୁ ଭାରତୀୟ ସାହିତ୍ୟ ଗୁଡ଼ିକରେ ପରିଲକ୍ଷିତ ହେଉଥିବା ଜାତୀୟତାବାଦୀ ଚିନ୍ତାଧାରାକୁ ଏହା ଏକ ବୈପ୍ଳବିକ ଆଭିମୁଖ୍ୟ ପ୍ରଦାନ କରିବାକୁ ସକ୍ଷମ ହୋଇ ପାରିଥିଲା ।

## ଓଡ଼ିଶାରେ ନବଯୁଗ ସାହିତ୍ୟ ସଂସଦ ଓ ପ୍ରଗତିବାଦୀ ସାହିତ୍ୟ ପ୍ରତି ଆଗ୍ରହ

୧୯୨୦ ମସିହା ବେଳକୁ ସମଗ୍ର ଭାରତବର୍ଷରେ ଜାତିପ୍ରେମର ତୀବ୍ର ବହ୍ନି ପ୍ରଜ୍ୱଳିତ ହେଉଥାଏ । ଅକ୍ଟୋବର ବିପ୍ଳବ ଭାରତୀୟ ଜନମାନସକୁ ଏତେମାତ୍ରାରେ

ପ୍ରଭାବିତ କରିଥାଏ ଯେ, ସୋଭିଏତ୍ ସାହିତ୍ୟ ଅଧ୍ୟୟନ ଏବଂ ପ୍ରାୟ ପ୍ରତ୍ୟେକ ପ୍ରାନ୍ତୀୟ ଭାଷାଭାଷୀ ସାହିତ୍ୟିକମାନେ ଏହାର ଅନୁବାଦ ଓ ଆଲୋଚନା ପ୍ରତି ଗୁରୁତ୍ୱ ଦେଉ ଥାଆନ୍ତି । ସମକାଳୀନ ଓଡ଼ିଆ ସାହିତ୍ୟ ବା' ଏଥିରୁ ବାଦ୍‌ଯିବ କିପରି ? ଋଷ୍ ବିପ୍ଳବ ହିନ୍ଦୀ, ବଙ୍ଗଳା, ଉର୍ଦ୍ଦୁ, ମରାଠୀ ସାହିତ୍ୟକୁ ଯେମିତି ପ୍ରଭାବିତ କରିଛି, ଓଡ଼ିଆ ସାହିତ୍ୟ ମଧ୍ୟ ଏହାଦ୍ୱାରା ସେପରି ପ୍ରଭାବିତ ହୋଇଛି । ଓଡ଼ିଆରେ ମଧ୍ୟ ବହୁ ପ୍ରଗତିଶୀଳ ଲେଖକ ଗୋଷ୍ଠୀ ସୃଷ୍ଟି ହୋଇଛନ୍ତି ଓ ଓଡ଼ିଆ ସାହିତ୍ୟ ଦ୍ୱାରା ଏହି ପ୍ରଗତିବାଦୀ ଚିନ୍ତାଦର୍ଶକୁ ଓଡ଼ିଶାର ପ୍ରାନ୍ତେପ୍ରାନ୍ତେ ପ୍ରଚାର କରିବାକୁ ସକ୍ଷମ ହୋଇପାରିଛନ୍ତି ।

ଓଡ଼ିଶାରେ ମାର୍କସ୍‌ବାଦୀ ଚିନ୍ତାଦର୍ଶର ଉନ୍ମେଷ 'ନବଯୁଗ ସାହିତ୍ୟ ସଂସଦ' ମାଧ୍ୟମରେ ହିଁ ଘଟିଥିଲା । ଏହା ପୂର୍ବରୁ ୧୯୨୪ ମସିହାରେ 'ସମାଜ'ରେ ଏହି ଚିନ୍ତାଧାରା ସଂପର୍କିତ ଦୁଇଟି ବିବରଣୀ ପ୍ରକାଶ ପାଇଥିଲା । ଏହି ତଥ୍ୟରୁ ମାର୍କସ୍‌ବାଦୀ ଚିନ୍ତାଦର୍ଶ ସଂପର୍କରେ କିଞ୍ଚିତ ଆଭାସ୍ ମିଳେ ।

* "ଋଷିଆରେ ସୋଭିଏତ୍ ସରକାରର ପ୍ରତିଷ୍ଠାତା ଓ ପ୍ରଧାନ ପରିଚାଳକ ମହାତ୍ମା ଲେନିନ୍ ଇହଧାମ ତ୍ୟାଗ କଲେ । XXXX ସେ ଜଣେ ବୀର ପୁରୁଷ । ସେ ନିଜେ ମରିବା ପୂର୍ବରୁ ଭୀରୁମାନେ ହିଁ ତାଙ୍କୁ ବହୁବାର ମାରିଦେଇଥିଲେ । ବର୍ତ୍ତମାନ ତାଙ୍କର ମୃତ୍ୟୁ ଖବର ପାଇ ତାଙ୍କର ଶତ୍ରୁସ୍ଥାନୀୟ ୟୁରୋପୀୟ ସରକାରମାନେ ପ୍ରାଣରେ ବଡ଼ ଆଶ୍ୱାସନା ଲଭୁଥିବେ । XXXX । ତାଙ୍କର ଜୀବନ ବ୍ୟାପୀ ସାଧନା, କଠୋର ଯନ୍ତ୍ରଣା ଭୋଗ, ଯଥେଚ୍ଛାଚାରୀ ସରକାରର ଘୋର ବିଭୀଷିକାପୂର୍ଣ୍ଣ ଅତ୍ୟାଚାର ମଧ୍ୟରେ ସାଧନାର ନିଷ୍ଠା ଋଷିଆରୁ ଯଥେଚ୍ଛାଚାରୀ ଶାସନ ଉଠାଇ ପ୍ରକୃତ ସ୍ୱାଧୀନତା ମୂଳକ ପ୍ରଜାତନ୍ତ୍ର ଶାସନ ବସାଇବା ତାଙ୍କର ସମସ୍ତ ସାଧନାର ମୂଳମନ୍ତ୍ର । ତାହା ଯେ ସେ ତାଙ୍କ ନିଜ ଜୀବନ ମଧ୍ୟରେ ସାଧି ପାରିଛନ୍ତି, ଋଷିଆର ସୋଭିଏତ୍ ଶାସନ ତାହାର ଜ୍ୱଳନ୍ତ ପ୍ରମାଣ । ମାତ୍ର ଏ ମହାପୁରୁଷଙ୍କ ଚିନ୍ତା ଓ କାର୍ଯ୍ୟ ଏକ ଦେଶ ବା' ଏକ ସମୟ ବ୍ୟାପୀ ନୁହେଁ । ଲେନିନ୍‌ଙ୍କ କାର୍ଯ୍ୟ କେବଳ ଋଷିଆର ସୀମା ମଧ୍ୟରେ ଆବଦ୍ଧ ରହିନାହିଁ । ସମଗ୍ର ପୃଥିବୀରେ ଲେନିନ୍‌ଙ୍କ ନୀତି ଓ କାର୍ଯ୍ୟ ଖେଳୁଛି ।(୧୧)

* "କମ୍ୟୁନିଷ୍ଟ ଦଳ ଭାରତରେ ଦିନକୁଦିନ ବଢୁଛନ୍ତି । ସରକାର ଏ ଦଳଙ୍କ ଉପରେ ଖୁବ୍ କଡ଼ା ନଜର ରଖିଛନ୍ତି । ଦେଶର ଭିନ୍ନଭିନ୍ନ ରାଜନୀତିକ ଦଳର ଲୋକେ ସେମାନଙ୍କ ସହିତ ଯୋଗ ଦେଇନାହାନ୍ତି । ଯୋଗ ନ ଦେବାର ପ୍ରଧାନ କାରଣ ଭୟ ।"X XX X ମାତ୍ର ସେମାନେ ଯାହା କହୁଛନ୍ତି ତାହା ସେତେ ଦୋଷାବହ ନୁହେଁ । XXXX । ଜଣେ କାହିଁକି କୋଟୀଶ୍ୱର ଆଉ ଜଣେ କାହିଁକି ଦିନରାତି ଖଟିଖଟି ପେଟପୂରା ଗଣ୍ଡେ ଖାଇବାକୁ ପାଉ ନାହିଁ ।"(୧୨)

ପ୍ରଥମ ସଂପାଦକୀୟରେ ଋଷ୍‌ରେ ସୋଭିଏତ୍ ଶାସନର ପ୍ରତିଷ୍ଠାତା ଲେନିନ୍‌ଙ୍କର କାର୍ଯ୍ୟଦକ୍ଷତା ସଂପର୍କରେ ପ୍ରଦତ୍ତ ତଥ୍ୟ ତତ୍‌କାଳୀନ ଉତ୍କଳୀୟ ଜନସାଧାରଣଙ୍କୁ ମାନସିକ ସ୍ତରରେ ପ୍ରେରଣା ପ୍ରଦାନ କରିବା ସହିତ ସମାଜରୁ ଶୋଷଣ, କଷଣର ବିଲୋପ ପାଇଁ ଆହ୍ୱାନ ପ୍ରଦାନ କରିଥିଲା । ଦ୍ୱିତୀୟ ସଂପାଦକୀୟରେ ଭାରତବର୍ଷରେ କମ୍ୟୁନିଷ୍ଟମାନଙ୍କର ସ୍ଥିତି ଓ ଶୋଷଣ ବିରୋଧୀ ସ୍ୱର ସହିତ ଜନସାଧାରଣଙ୍କୁ ସଚେତନ କରାଇବାର ବାର୍ତ୍ତା ନିହିତ ଥିଲା । ଦ୍ୱିତୀୟ ସଂପାଦକୀୟ ଲେଖିବାର କିଛିଦିନ ପୂର୍ବରୁ ୧୯୨୫ ମସିହାର ଶେଷ ଆଡ଼କୁ ଭାରତୀୟ କମ୍ୟୁନିଷ୍ଟପାର୍ଟିର ପ୍ରଥମ ସମ୍ମିଳନୀ ଅନୁଷ୍ଠିତ ହୁଏ । ଯାହାର ପ୍ରଭାବରେ ଗୋପବଂଧୁ ସମାଜରେ ଏହି ଲେଖାଟି ପ୍ରକାଶିତ କରିଥିଲେ ଓ ନିଜର ସାଂଗଠନିକ ଦକ୍ଷତାର ପରିଚୟ ପ୍ରଦାନ କରିଥିଲେ । କଲିକତାଠାରେ କାର୍ଯ୍ୟରତ ଶ୍ରମିକମାନଙ୍କୁ ଏକତ୍ରିତ କରି ଗୋପବଂଧୁ 'କଲିକତା ଶ୍ରମିକ ମଣ୍ଡଳୀ' ଓ 'କଲିକତା ଓଡ଼ିଆ ସମାଜ' ଗଠନ କରିଥିଲେ । ଏ ସଂପର୍କରେ 'ଡଗର' ପତ୍ରିକାରେ ପ୍ରକାଶିତ ଏକ ଲେଖାରୁ ଏହାର ପ୍ରମାଣ ମିଳେ ।

"ଏହି ସମୟରେ ଗୋପବଂଧୁଙ୍କ ଦ୍ୱାରା ଦୁଇଗୋଟି ଅନୁଷ୍ଠାନ ଗଠିତ ହୁଏ । ପ୍ରଥମଟି 'କଲିକତା ଓଡ଼ିଆ ସମାଜ' ଆଉ ଅପରଟି ଶ୍ରମିକମାନଙ୍କ ମଧ୍ୟରେ ସଂଗଠନ ଓ ଶୃଙ୍ଖଳାଆଣିବା ପାଇଁ 'କଲିକତା ଶ୍ରମିକ ମଣ୍ଡଳୀ' ।"(୧୩)

ଏହି ସଂଗଠନ କଲିକତାରେ ଦୀର୍ଘ ଛଅବର୍ଷ କାଳ ସକ୍ରିୟ ହୋଇରହିଥିଲା ଓ ବିଭିନ୍ନ ଅବ୍ୟବସ୍ଥା ବିରୋଧରେ ମଧ୍ୟ ଆନ୍ଦୋଳନର ଡାକରା ଦେଉଥିଲା । ଏହା ହେଉଛି ୧୯୩୦ ମସିହା ଭିତର କଥା । ଏହାପରେ ଲବଣ ସତ୍ୟାଗ୍ରହ, ଗୋଲ୍‌ଟେବୁଲ୍ ବୈଠକର ବିଫଳତା ଇତ୍ୟାଦି ଭାରତୀୟ ଜନତାଙ୍କ ମନରେ ଅସନ୍ତୋଷ ଓ ନୈରାଶ୍ୟଭାବର ଜାଗ୍ରତ କରାଇଥିଲା । ପରିଣାମସ୍ୱରୂପ ୧୯୩୪-୩୫ ମସିହାରେ ଭାରତରେ 'ପ୍ରଗତିଶୀଳ ଯୁବକ ଦଳ' ଓ 'କଂଗ୍ରେସ୍ ସୋସାଲିଷ୍ଟପାର୍ଟି' ଗଠନ କରାଗଲା । 'ବିପ୍ଳବୀ ଲକ୍ଷ୍ମୀନାରାୟଣ ରାୟ ସିଂହ'ଙ୍କ ମତରେ –

"୧୯୩୨-୩୪ ମଧ୍ୟରେ କଂଗ୍ରେସ୍ ଭିତରେ ଆଇନ୍ ଅମାନ୍ୟ ଆନ୍ଦୋଳନର ବିଫଳତା ଓ ଗୋଲ୍ ଟେବୁଲ୍ ବୈଠକର ଅସଫଳତା ପ୍ରଭୃତି ଓ ଏଥିସହ ୧୯୩୫ ଶାସନ ସଂସ୍କାର ଆଇନ୍ ପ୍ରତି ମୋହ ସୃଷ୍ଟି ଯେଉଁ ପ୍ରକାର ଦ୍ୱନ୍ଦ୍ୱ ସୃଷ୍ଟି କରିଥାଏ, ସେଥି ମଧ୍ୟରେ ବାମପନ୍ଥୀ ଚିନ୍ତାଧାରା ଦ୍ୱାରା ପ୍ରଭାବିତ ହୋଇ ଯେଉଁମାନେ ଶ୍ରେଣୀସଂଘର୍ଷକୁ ପାଥେୟ କରି ଆନ୍ଦୋଳନ କରିବେ ବୋଲି ସ୍ଥିର କଲେ, ସେମାନେ ବୈଜ୍ଞାନିକ ସମାଜବାଦକୁ ମୂଳଭିତ୍ତି କରି ଗଢ଼ିଲେ 'କଂଗ୍ରେସ୍ ସୋସାଲିଷ୍ଟ ପାର୍ଟି' ।(୧୪)

ଏହି ଯୁବସଂଗ୍ରାମୀମାନଙ୍କ ମନରେ ଏକ ଧାରଣା ଜନ୍ମିଲା ଯେ, ଗାନ୍ଧିଜୀଙ୍କ ଅହିଂସା ଆନ୍ଦୋଳନ ଦ୍ୱାରା ସ୍ୱାଧୀନତା ଲାଭ କରାଯାଇ ପାରିବ ନାହିଁ । ସ୍ୱାଧୀନତା ପାଇଁ ମାର୍କସ୍ ଓ ଲେନିନ୍‌ଙ୍କ ପ୍ରବର୍ତ୍ତିତ ବୈପ୍ଲବିକ ଆଦର୍ଶ ଏକାନ୍ତ ଆବଶ୍ୟକ ।

ସମାଜରେ ଯେତେବେଳେ ଶ୍ରେଣୀ ସଂଘର୍ଷ ବିରୋଧରେ ସଂଗ୍ରାମ ଆରମ୍ଭ ହେଲା ଭାରତବର୍ଷରେ ବହୁ ସ୍ଥାନରେ ଛୋଟଛୋଟ ସଂଗଠନମାନ ଗଢ଼ି ଉଠିଲା । ଏଇ ସଂଗଠନମାନେ ମଧ୍ୟ ଶ୍ରେଣୀସଚେତନତା ସୃଷ୍ଟି କରିବା ସହିତ ସମାଜରେ ପରିବର୍ତ୍ତନ ପାଇଁ ଆପ୍ରାଣ ଉଦ୍ୟମ ଚଳାଇଥିଲେ । କଂଗ୍ରେସ୍ ସୋସାଲିଷ୍ଟ ପାର୍ଟିର ଏକ ଶାଖା ଓଡ଼ିଶାରେ ପ୍ରତିଷ୍ଠା କରାଗଲା । ଶ୍ରୀଯୁକ୍ତ ନବକୃଷ୍ଣ ଚୌଧୁରୀ, ମାଳତୀ ଚୌଧୁରୀ, ଗୁରୁ ଚରଣ ପଟ୍ଟନାୟକ, ପ୍ରାଣନାଥ ପଟ୍ଟନାୟକ, ଭଗବତୀ ଚରଣ ପାଣିଗ୍ରାହୀ, ଅନନ୍ତ ପଟ୍ଟନାୟକ, ପ୍ରମୁଖ ଥିଲେ ଏହି ସଂଗଠନର ମୁଖ୍ୟ ସଭ୍ୟ । ଏହି ସଂଗଠନ ସଂପର୍କରେ ସବିଶେଷ ବିବରଣୀ 'ସୁରେନ୍ଦ୍ରନାଥ ଦ୍ୱିବେଦୀ'ଙ୍କ ମନ୍ତବ୍ୟରୁ ଆହରଣ କରାଯାଇ ପାରେ ।

"କ୍ରମାଗତ ଚିନ୍ତା ଫଳରେ ପ୍ରତ୍ୟେକେ ଗୋଟିଏ ସଂଘବଦ୍ଧ ଓ ଶୃଙ୍ଖଳାବଦ୍ଧ ଅନୁଷ୍ଠାନର ଅଭାବବୋଧ କଲେ ଏବଂ ତାହାରି ଫଳସ୍ୱରୂପ ୧୯୩୪ ମସିହା ଫେବୃୟାରୀ ମାସରେ କୌଣସି ନେତାଙ୍କର ଶୁଭାଶୀର୍ବାଦ ବା ସହାୟତାକୁ ଅପେକ୍ଷା ନ କରି କେତେକ କର୍ମୀ 'ଉତ୍କଳ କଂଗ୍ରେସ ସାମ୍ୟବାଦୀ କର୍ମୀ ସଂଘ' ନାମକ ଅନୁଷ୍ଠାନ ଗଢ଼ିଲେ ।" (୧୫)

ଏହି କର୍ମୀ ସଂଗଠନ ଗଠନ ହେବାର ଠିକ୍ ଦୁଇମାସ ପରେ ବାମପନ୍ଥୀ ଚିନ୍ତାଧାରାର ସାର୍ଥକ ସାରଥି ଭାବେ 'ସାରଥି' ପତ୍ରିକା ଆତ୍ମପ୍ରକାଶ କଲା ଓ ଏହା ହିଁ ଥିଲା 'ଉତ୍କଳ କଂଗ୍ରେସ ସାମ୍ୟବାଦୀ ସଂଘର ମୁଖପତ୍ର । ୧୯୩୪ ମେ' ମାସ ୧୯ ତାରିଖରେ ଗାନ୍ଧିଜୀ ହରିଜନ ପଦଯାତ୍ରାରେ ଯୋଗ ଦେବା ପରେ ନବକୃଷ୍ଣ ଚୌଧୁରୀଙ୍କ ଗୃହରେ 'କଂଗ୍ରେସ୍ ସାମ୍ୟବାଦୀ କର୍ମୀ ସଂଘ'ର କର୍ମକର୍ତ୍ତାମାନଙ୍କୁ ସାକ୍ଷାତ କଲେ ଓ ସେମାନଙ୍କ ଅନୁରୋଧ କ୍ରମେ ଏହା ନିଖିଳ ଭାରତ କଂଗ୍ରେସ୍ ସୋସାଲିଷ୍ଟ ପାର୍ଟିର ଏକ ଶାଖା ରୂପେ କାର୍ଯ୍ୟ କଲା । ଏହି ପାର୍ଟିର ପ୍ରଥମ ବୈଠକ ୧୯୩୪ ମସିହା ଜୁନ୍ ମାସ ୧୭ ତାରିଖ ଦିନ ପ୍ରାଣନାଥ ପଟ୍ଟନାୟକଙ୍କ ସଭାପତିତ୍ୱରେ ନବକୃଷ୍ଣ ଚୌଧୁରୀଙ୍କ ବାସ ଭବନରେ ଅନୁଷ୍ଠିତ ହୋଇଥିଲା । ରାଜନୈତିକ ଦୃଷ୍ଟିକୋଣରୁ ଏହା ଯେତିକି ଗୁରୁତ୍ୱପୂର୍ଣ୍ଣ ଥିଲା ସାହିତ୍ୟିକ ଓ ସାଂସ୍କୃତିକ ଦୃଷ୍ଟିକୋଣରୁ ମଧ୍ୟ ଏହାର ଭୂମିକା ଥିଲା ଗୁରୁତ୍ୱପୂର୍ଣ୍ଣ । ଏତଦ୍‌ବ୍ୟତୀତ ଗଡ଼ଜାତ ଆନ୍ଦୋଳନ, ଶ୍ରମିକ ଆନ୍ଦୋଳନ ଓ କୃଷକ ଆନ୍ଦୋଳନ

ପରିପ୍ରେକ୍ଷୀରେ ଲିଖିତ କବିତା ଗୁଡ଼ିକ ମଧ୍ୟ ମାର୍କସ୍‌ବାଦର ଏକ ପରିଚ୍ଛନ୍ନ ରୂପକୁ ପରିପ୍ରକାଶ କରିବାରେ ସକ୍ଷମ ହୋଇପାରିଥିଲା ।

ଉପରୋକ୍ତ ବର୍ଣ୍ଣନାରୁ ପ୍ରତିପାଦିତ ହୁଏ ଯେ, ୧୯୩୦ ମସିହା ପରେ ଓଡ଼ିଶାରେ ରାଜନୈତିକ କ୍ଷେତ୍ରରେ କେବଳ ଯେ ପରିବର୍ତ୍ତନର ସୂତ୍ରପାତ ହୋଇଥିଲା ତାହା ନୁହେଁ, ସାମାଜିକ କ୍ଷେତ୍ରରେ ମଧ୍ୟ ପରିବର୍ତ୍ତନ ଘଟିଥିଲା । ଗତାନୁଗତିକ ଚିନ୍ତାଧାରା ମଧ୍ୟରୁ ଓହରିଯାଇ ବିପ୍ଳବର ବୀଜମନ୍ତ୍ର ବପନ କରିଥିଲା ତତ୍‌କାଳୀନ ଓଡ଼ିଆ ସାହିତ୍ୟ । ସାମାସମୟିକ ସମାଜରେ ଘଟୁଥିବା ଏପ୍ରକାର ପରିବର୍ତ୍ତନକୁ ମଧ୍ୟ ତତ୍‌କାଳୀନ ଯୁବବିପ୍ଳବୀମାନେ ହୃଦୟଙ୍ଗମ କରିପାରିଥିଲେ । ଏହିପ୍ରଚେଷ୍ଟା ମଧ୍ୟରୁ ଜନ୍ମଲାଭ କଲା 'ନବଯୁଗ ସାହିତ୍ୟ ସଂସଦ' ଓ ତା'ର ମୁଖପତ୍ର 'ଆଧୁନିକ' । 'ନବଯୁଗ' ସାହିତ୍ୟ ସଂସଦ'ର ପ୍ରଥମ ଅଧିବେଶନ ୧୯୩୫ ମସିହା ନଭେମ୍ବର ୨୯ ତାରିଖଠାରୁ ଡିସେମ୍ବର ୪ ତାରିଖ ପର୍ଯ୍ୟନ୍ତ ଛ' ଦିନ ବ୍ୟାପୀ କଟକର ଶ୍ରୀରାମଚନ୍ଦ୍ର ଭବନଠାରେ ଅନୁଷ୍ଠିତ ହୋଇଥିଲା ଓ ଏହି ଆଲୋଚନାଚକ୍ର ଭଗବତୀ ଚରଣ ପାଣିଗ୍ରାହୀଙ୍କ ନେତୃତ୍ୱରେ ଅନୁଷ୍ଠିତ ହୋଇଥିଲା । ଏହା ଗଠନ କରିବା ପଛରେ ଭଗବତୀ ଚରଣ କେଉଁଠାରୁ ପ୍ରେରଣା ପାଇଥିଲେ ସେ ସଂପର୍କରେ ଅଭିମତ ପ୍ରଦାନ କରିବାକୁ ଯାଇ ଆଲୋଚକ ଡଃ ନିତ୍ୟାନନ୍ଦ ଶତପଥି କହନ୍ତି –

"ଏପରି ଏକ ସଂଗଠନ ଗଢ଼ିବା ପଛରେ ନିଶ୍ଚିତ ଭାବେ ଭଗବତୀ ଚରଣଙ୍କ ଚିନ୍ତାଧାରାରେ ତା ୨୧-୦୬-୧୯୩୫ ରେ ପ୍ୟାରିସ୍‌ଠାରେ ଅନୁଷ୍ଠିତ ହୋଇଥିବା ବିଶ୍ୱଶାନ୍ତି କଂଗ୍ରେସର ପ୍ରଭାବ ଜୀବନ୍ତ ଥିଲା । କାରଣ ଏହି ସମ୍ମେଳନରେ ମୁଖ୍ୟତଃ ୟୁରୋପ ଓ ଏସିଆର ବିଶିଷ୍ଟ ସାହିତ୍ୟିକମାନେ ଏକତ୍ରିତ ହୋଇଥିଲେ । X XX X । ଏହି ମର୍ମରେ ଏକ ସାଂସ୍କୃତିକ ସମ୍ମିଳନୀ କରି ନୂତନ ସାହିତ୍ୟ ସୃଷ୍ଟି ନିମନ୍ତେ ବାତାବରଣ ସୃଷ୍ଟି କରିବା ସ୍ୱର୍ଗତ ଭଗବତୀ ଚରଣଙ୍କ ସାମାଜିକ ନେତୃତ୍ୱ ଓ ଦୂରଦଷ୍ଟିର ପରିଚୟ ଦିଏ ।" (୧୬)

ଚିନ୍ତାଜଗତରେ ନୂତନ ଚେତନାର ଆବାହନ କରିବା ସଙ୍ଗେସଂଙ୍ଗେ ଯୁଗଯୁଗ ଧରି ଜମାଟ ବାନ୍ଧିଥିବା ଆବର୍ଜ୍ଜନାକୁ ସମାଜ ଜୀବନରୁ ନିଷ୍କାସନ କରି ଏକ ସୁସ୍ଥ ସମାଜ ଗଠନ ପାଇଁ ଏଇ ସାହିତ୍ୟ ସଂସଦହୋଇଥିଲା ପ୍ରତିଜ୍ଞାବଦ୍ଧ । ଏକ ନବ୍ୟ ଚିନ୍ତାଧାରା ଓ ଏକ ନବ୍ୟ ସଂସ୍କୃତିର ସ୍ରୋତ ଖେଳାଇଦେବା ଥିଲା ଏହି ସାହିତ୍ୟ ସଂସଦର ମୁଖ୍ୟ ଉଦ୍ଦେଶ୍ୟ । ଏହାର ଆଭିମୁଖ୍ୟ ସଂପର୍କରେ ସୂଚନା ପ୍ରଦାନ କରିବାକୁ ଯାଇ ପଣ୍ଡିତ ନୀଳକଣ୍ଠ ଦାଶ କହନ୍ତି –

"ଜାତୀୟ ଜୀବନର ପୁରୁଣା ପ୍ରଥାଉପରେ ନୂତନ ସ୍ତର ଫିଟାଇବା ଏହାର

ଉଦ୍ଦେଶ୍ୟ । ଜୀବନର ଚିନ୍ତା ସାହିତ୍ୟରେ ପ୍ରକାଶପାଏ ଓ ଚିନ୍ତା ହିଁ କ୍ରିୟାର ମୂଳ । ତେଣୁ ସାହିତ୍ୟରେ ବିପ୍ଳବ ପ୍ରଚାର କରି ଜାତୀୟ ଜୀବନରେ ଚଞ୍ଚଳତାର ସୂଚନା ଦେବା ନିମନ୍ତେ ଏହା କରାଯାଇଥିଲା ।"(୧୭)

ଏକ ବୃହତ୍ ଆଭିମୁଖ୍ୟକୁ ଜନାଦୃତି କରାଇବାରେ ବଦ୍ଧପରିକର ନେଇଥିବା ଏହି ଅନୁଷ୍ଠାନର ପ୍ରଥମ ଅଧିବେଶନ ପାଇଁ ଉଦ୍‌ବୋଧନ ସଂଗୀତ ରଚନା କରିଥିଲେ କବି ଅନନ୍ତ ପଟ୍ଟନାୟକ ଓ ଏହା ମାଳତୀ ଚୌଧୁରୀଙ୍କ କଣ୍ଠରେ ଗାନ କରାଯାଇଥିଲା । କବିତାଟି ହେଉଛି–

"ନବୀନ ଯୁଗର ତରୁଣ ଜାଗରେ ଜାଗ ବନ୍ଧନ ହରା
ଲକ୍ଷେ ଜୀବନ ବକ୍ଷେ ଶୋଣିତ ଖେଳାଅ ଆଲୋକ ଧାରା ।" (୧୮)

ଦୀର୍ଘ ଛ' ଦିନ ବ୍ୟାପି ଚାଲିଥିବା ଅଧିବେଶନରେ କେବଳ ଯେ ସାହିତ୍ୟ ଆଲୋଚନା କରାଯାଉଥିଲା ତାହା ନୁହେଁ, ବରଂ ଇତିହାସ, ଦର୍ଶନ, ଅର୍ଥନୀତି ଉପରେ ମଧ୍ୟ ଆଲୋଚନା କରାଯାଉଥିଲା । ଏ ସଂପର୍କରେ 'ସଂଗ୍ରାମୀ ଲକ୍ଷ୍ମୀ ନାରାୟଣ ରାୟ ସିଂହ' କହନ୍ତି –

"ସଂସଦର ପ୍ରଥମ ଦିନର ଅଧିବେଶନରେ ସଭାପତିତ୍ୱ କରିଥିଲେ କାଳିନ୍ଦୀ ଚରଣ ପାଣିଗ୍ରାହୀ । ଅନ୍ୟାନ୍ୟ ଦିନମାନଙ୍କରେ ବିଭିନ୍ନ ବିଭାଗରେ ତତ୍‌କାଳୀନ ଓଡ଼ିଶାର ସର୍ବଶ୍ରେଷ୍ଠ ବୁଦ୍ଧିଜୀବୀଗଣ ଯଥା, ଅଧ୍ୟାପକ ହରିବଂଧୁ ମହାନ୍ତି, ଦର୍ଶନ ବିଭାଗରେ ଅଧ୍ୟାପକ ମୋହିନୀ ମୋହନ ସେନାପତି, ଇତିହାସ ବିଭାଗରେ ଅଧ୍ୟାପକ ଘନଶ୍ୟାମ ଦାସ, ସମାଜ ବିଜ୍ଞାନ ବିଭାଗରେ ଲକ୍ଷ୍ମୀ ନାରାୟଣ ସାହୁ, ସାହିତ୍ୟ ବିଭାଗରେ ଶ୍ରୀ ହରିହର ମହାପାତ୍ର ପ୍ରମୁଖ ସଭାପତିତ୍ୱ କରିଥିଲେ । ଏହି ଦିନମାନଙ୍କରେ ଯେଉଁ ନୂତନ ଚିନ୍ତାଉଦ୍ରେକକାରୀ ପ୍ରବଂଧମାନ ପାଠ କରାଯାଇଥିଲା, ସେଥି ମଧ୍ୟରେ ଥିଲା ଭଗବତୀ ଚରଣ ପାଣିଗ୍ରାହୀଙ୍କର 'ଅର୍ଥ ଓ ପରମାର୍ଥ', ରାମ ପ୍ରସାଦ ସିଂହଙ୍କର "ବର୍ତ୍ତମାନ ସାହିତ୍ୟରେ ନୂତନ ଭାବଧାରାର ଆବାହନ", ଗୁରୁ ଚରଣ ପଟ୍ଟନାୟକଙ୍କର "ସାମସମୟିକ ଇତିହାସର ଗତିଧାରା", ଦାମୋଦର ମିଶ୍ରଙ୍କର "ବିଜ୍ଞାନ, ଦର୍ଶନ ଓ ଧର୍ମର ସମନ୍ୱୟ", କେଦାରନାଥ ମହାପାତ୍ରଙ୍କର "ଜାତି ଗଠନରେ ଇତିହାସର ସ୍ଥାନ, ଶଶୀଭୂଷଣ ରାୟଙ୍କର "ସାହିତ୍ୟ ପ୍ରଭାବ" ପ୍ରଭୃତି ।" (୧୯)

ନବଯୁଗ ସାହିତ୍ୟ ସଂସଦ ପ୍ରତିଷ୍ଠା ହେବାର ଚାରିମାସ ପରେ ତା ୧୦-୪-୩୬ ମସିହାରେ ଲକ୍ଷ୍ନୌଠାରେ 'ନିଖିଳ ଭାରତୀୟ ଲେଖକ ସଂଘ'ର ଏକ ଅଧିବେଶନ ଅନୁଷ୍ଠିତ ହୋଇଥିଲା । ଏଥିରେ ହିନ୍ଦୀ ସାହିତ୍ୟର କଥା ସମ୍ରାଟ୍ 'ପ୍ରେମଚାନ୍ଦ୍' ସଭାପତିତ୍ୱ କରିଥିଲେ । ଏହାକୁ ଉଦ୍‌ଘାଟନ କରିଥିଲେ ତତ୍‌କାଳୀନ ନାରୀନେତ୍ରୀ ସରୋଜିନୀ

ନାଇଡୁ । ଏଇ ସମ୍ମିଳନୀରେ ଯେଉଁ ଦଲିଲ୍ ଘୋଷଣା କରାଯାଇଥିଲା ତା'ର ଓଡ଼ିଆ ଅନୁବାଦ 'ପ୍ରାଣନାଥ ପଟ୍ଟନାୟକଙ୍କ 'ଆସନ୍ତା କାଲିର ସାହିତ୍ୟ'ରୁ ଉଦ୍ଧାର କରାଯାଇପାରେ ।

* "ଆମେ ବିଶ୍ୱାସ କରୁ ଯେ ଭାରତବର୍ଷର ନବୀନ ସାହିତ୍ୟକୁ ଆମର ବର୍ତ୍ତମାନ ଜୀବନର ମୂଳ ସମସ୍ୟା, କ୍ଷୁଧା, ଦାରିଦ୍ର୍ୟ, ସାମାଜିକ ପରାଙ୍ମୁଖତା, ରାଜନୈତିକ ପରାଧୀନତା ଘେନି ଆଲୋଚନା କରିବାକୁ ହେବ । ଆମେ ଚାହୁଁ ଜନସାଧାରଣଙ୍କ ଜୀବନ ସହିତ କଳାର ନିବିଡ଼ ସଂଯୋଗ । ଆମେ ଚାହୁଁ ଯେ ସାହିତ୍ୟରେ ଦୈନଂଦିନ ଜୀବନର ଚିତ୍ର ଫୁଟି ଉଠୁ ଏବଂ ଯେଉଁ ଭବିଷ୍ୟତର କଳ୍ପନା ଆମେ କରୁଛେ ତାକୁ ଆଗେଇ ଆଣୁ... ବୈଜ୍ଞାନିକ ଯୁକ୍ତିବାଦକୁ ସାହିତ୍ୟରେ ପ୍ରତିଷ୍ଠିତ କରି ପ୍ରଗତିକାମୀ ମାନବଧାରାକୁ ବେଗବାନ କରିବା । ଏହା ଆଜି ଲେଖକ ମାନଙ୍କର କର୍ତ୍ତବ୍ୟ ।"

"ଯେଉଁ ପରିବର୍ତ୍ତନ ବିଦ୍ୱେଷୀ ଶ୍ରେଣୀ, ଯାହା ଯୋଗୁଁ ବହୁକାଳ ଯାବତ୍ ସାହିତ୍ୟ ଓ ଅନ୍ୟାନ୍ୟ କଳାର ଅବନତି ଘଟିଛି, ସେମାନଙ୍କ କବଳରୁ ସାହିତ୍ୟକୁ ଉଦ୍ଧାର କରିବା, ଆମ୍ଭମାନଙ୍କ ସଂଘର ଉଦ୍ଦେଶ୍ୟ ।"

"ଯାହାକିଛି ଆମକୁ ନିଶ୍ଚେଷ୍ଟତା, ଅକର୍ମଣ୍ୟତା, ଯୁକ୍ତିହୀନତା ଆଡ଼କୁ ଟାଣିନିଏ ତାକୁ ଆମେ ପ୍ରଗତି ବିରୋଧୀ ବୋଲି ପ୍ରତ୍ୟାଖ୍ୟାନ କରିବୁ । ଯାହାକିଛି ଆମ୍ଭମାନଙ୍କର ବିଚାର ବୁଦ୍ଧିକୁ ଉଦ୍‌ବୁଦ୍ଧ କରେ, ସମାଜ ବ୍ୟବସ୍ଥା ଓ ରୀତିନୀତିକୁ ଯୁକ୍ତିସମ୍ମତ ଭାବେ ପରୀକ୍ଷା କରେ, ଆମ୍ଭମାନଙ୍କୁ କର୍ମ ଓ ଶୃଙ୍ଖଳିତ ସମାଜର ରୂପାନ୍ତର ସୃଷ୍ଟିରେ ସାହାଯ୍ୟ କରେ ତାହାକୁ ହିଁ ଆମେ ପ୍ରଗତିଶୀଳ ବୋଲି ଗ୍ରହଣ କରିବୁ ।"(୨୦)

ଉପରୋକ୍ତ ଦଲିଲ୍‌ରୁ ଆମେ ଧ୍ୱନିବାଦର ବୈଶିଷ୍ଟ୍ୟ ଖୋଜି ବାହାର କରିପାରିବା । ସେଗୁଡ଼ିକ ହେଉଛି–

* 'ପ୍ରଗତିବାଦ' ସାଂପ୍ରତିକ ସମାଜ ଜୀବନରେ ପରିଲକ୍ଷିତ ହେଉଥିବା ଯାବତୀୟ ବିଶୃଙ୍ଖଳା ପ୍ରତି ସଦା ସଚେତନ ।

* ସାହିତ୍ୟ ଜନସାଧାରଣଙ୍କର ଜୀବନର ଆତ୍ମଲିପି ହେବା ଏକାନ୍ତ ଆବଶ୍ୟକ ।

* ଶୋଷଣ ବିହୀନ ସୁନେଲୀ ଭବିଷ୍ୟତର କଳ୍ପନା ଏବଂ ତାକୁ ବାସ୍ତବ ରୂପ ଦେବା ପାଇଁ ଯଥାସମ୍ଭବ ପ୍ରୟାସ କରେ ଏ ସାହିତ୍ୟ ।

* ସାହିତ୍ୟକୁ ଗତାନୁଗତିକତାର ବନ୍ଧନୀ ମଧ୍ୟରୁ ବାହାର କରିବା ସହିତ, ଯାହା କିଛି ସମାଜର ପ୍ରଗତିରେ ପ୍ରତିବନ୍ଧକ ସାଜେ, ସେ ସବୁର ସମୂଳେ ଉତ୍ପାଟନ ସାଙ୍ଗକୁ ମନୁଷ୍ୟକୁ ଶୃଙ୍ଖଳିତ ଓ କର୍ମାନୁରାଗୀ କରାଇବାରେ, ଯେଉଁ ସାହିତ୍ୟ ପ୍ରେରଣା ପ୍ରଦାନକରେ ତାହା ହେଉଛି 'ପ୍ରଗତିଶୀଳ ସାହିତ୍ୟ' ।

ସମାଜରେ ଏ ଯେଉଁ ବୈପ୍ଳବିକ ପରିବର୍ତ୍ତନର ସୂତ୍ରପାତ ଘଟିଲା, ତାହା ୧୯୩୬ ମସିହା ପ୍ରାରମ୍ଭରେ 'ନବଯୁଗ ସାହିତ୍ୟ ସଂସଦର' ଗଠନ ଓ ପ୍ରଗତିଶୀଳ ଲେଖକ ସଂଘର ଲକ୍ଷ୍ନୌ ଅଧିବେଶନ ପରେ । ସେତେବେଳେ ଏହା ଥିଲା ଏକ ଯୁଗାନ୍ତକାରୀ ଆହ୍ୱାନ । ଗତାନୁଗତିକ ଚିନ୍ତାଧାରା ଉପରେ ପୂର୍ଣ୍ଣଚ୍ଛେଦ ପକାଇ, ରୋମାଣ୍ଟିକ୍ ପ୍ରେମ-ପ୍ରଣୟକୁ ପରିହାର କରି ସମାଜର ବାସ୍ତବ ଜୀବନର ନକ୍ସା ଅଂକନ କରିବାର ମନୋବୃତ୍ତି ସାହିତ୍ୟିକମାନଙ୍କୁ ପ୍ରଗତିଶୀଳ ସାହିତ୍ୟ ସୃଷ୍ଟି କରିବାପାଇଁ ପ୍ରେରଣା ପ୍ରଦାନ କଲା କହିଲେ ଅତ୍ୟୁକ୍ତି ହେବ ନାହିଁ । ବର୍ତ୍ତମାନ 'ଆଧୁନିକ' ପତ୍ରିକାର ଅବଦାନ ସଂପର୍କରେ କିଞ୍ଚିତ ଆଲୋଚନା ନ କଲେ ଆଲୋଚନାଟି ଅସଂପୂର୍ଣ୍ଣ ମନେ ହେବ ।

ଭଗବତୀ ଚରଣ ପାଣିଗ୍ରାହୀଙ୍କ ସଂପାଦନାରେ, ଏକ ନୂତନ ଚିନ୍ତା ଚେତନାକୁ ପାଥେୟକରି ଆତ୍ମପ୍ରକାଶ କଲା 'ଆଧୁନିକ'ପତ୍ରିକା । 'ନବଭାରତ'ପତ୍ରିକାରେ ପ୍ରକାଶିତ ମନ୍ତବ୍ୟରୁ ଏହାର ସୃଷ୍ଟିର ତାତ୍ପର୍ଯ୍ୟ ସଂପର୍କରେ ସୂଚନା ମିଳେ ।

"ଓଡ଼ିଶାର ପତ୍ରିକା ରାଜ୍ୟରେ ଏହା ଯୁଗାନ୍ତକାରୀ, ନବଯୁଗର ନବବାର୍ତ୍ତା ବହନ କରି ଆସୁଛି 'ଆଧୁନିକ', ସଂଚାର କରିବ ଆଧୁନିକ ହୃଦୟରେ ଅଭିନବ ଜାଗରଣ, ଧ୍ୱଂସ କରିବ ଅପସାହିତ୍ୟର ଘୃଣ୍ୟ ଆବର୍ଜ୍ଜନା, ସୃଷ୍ଟି କରିବ ଉଚ୍ଚ ଚିନ୍ତାର ଯୁଗୋପଯୋଗୀ ଲେଖା - ସନ୍ଦର୍ଭ, ପ୍ରଚାର କରିବ ଦେଶ ବିଦେଶର ପ୍ରଗତିଶୀଳ ସଜୀବଚିତ୍ର, ଶୁଣାଇବ ବାସ୍ତବ କଥା, କବିତାର ମଧୁର ମଦିର ମଳୟ ଶିଞ୍ଜନ ।" (୨୧)

ନବଯୁଗର ବାର୍ତ୍ତାବହନକାରୀ 'ଆଧୁନିକ' ପତ୍ରିକା ତତ୍କାଳୀନ ସମୟର ବହୁ ସାହିତ୍ୟିକମାନଙ୍କର ସୃଷ୍ଟି ମାନସକୁ ବାସ୍ତବ ରୂପ ପ୍ରଦାନ କରିଥିଲା । ସେଗୁଡ଼ିକ ମଧ୍ୟରୁ ଅନନ୍ତ ପଟ୍ଟନାୟକଙ୍କର 'ପ୍ରଳୟର ଆବାହନ' -୧ମ ବର୍ଷ, ୧ମ ସଂଖ୍ୟା - ୧୯୩୬ ସଂଖ୍ୟାରେ ପ୍ରକାଶ ପାଇଥିଲା । ସେହିପରି ପତ୍ରିକାର 'ବିଶ୍ୱ ପ୍ରସଂଗ' ଅଧ୍ୟାୟଟିରେ, ଋଷର ଯୁବଗୋଷ୍ଠୀର ଶକ୍ତି, ଋଷରେ ସାମ୍ୟବାଦର ଅୟମାରମ୍ଭ, ଆନ୍ତର୍ଜାତିକ ଶାନ୍ତି ସମ୍ମିଳନୀ, ସ୍ପେନ୍‌ର ଗୃହଯୁଦ୍ଧ' ଇତ୍ୟାଦି ବିଶ୍ୱର ବହୁବିଧ ସମସ୍ୟାବଳୀ ସଂପର୍କରେ ପତ୍ରିକାର ୩ୟ ସଂଖ୍ୟା, ୪ର୍ଥ ସଂଖ୍ୟା - ୧୯୩୮, ୧ମ ବର୍ଷ ୫ମ ସଂଖ୍ୟା, ୧ମ ବର୍ଷ ୬ଷ୍ଠ ସଂଖ୍ୟାରେ ଆଲୋଚନା କରାଯାଇଥିଲା । ପତ୍ରିକାର 'ପୋଥିଖଟୁଲୀ' ବିଭାଗ (ଆଧୁନିକ ୩ୟ ସଂଖ୍ୟା, ମେ ୧୯୩୬)ରେ ଅନନ୍ତ ପଟ୍ଟନାୟକଙ୍କ ଦ୍ୱାରା ବିଶ୍ୱସ୍ତରୀୟ ଲେଖକମାନଙ୍କ ସଂପର୍କରେ ସମାଲୋଚନା ପ୍ରକାଶିତ ହେଉଥିଲା । ଏତଦ୍‌ବ୍ୟତୀତ ୧ମ ବର୍ଷ ୫ମ ସଂଖ୍ୟା -୧୯୩୬ର ସାମୟିକୀ ଅଧ୍ୟାୟଟିରେ ମଧ୍ୟ ବହୁ ତାତ୍ତ୍ୱିକ ପ୍ରବଂଧମାନ ପ୍ରକାଶ ପାଉଥିଲା । ଏହି ପ୍ରସଂଗଟିକୁ ଭଗବତୀ ଚରଣ

ପାଣିଗ୍ରାହୀ ଉଲ୍ଲେଖ କରୁଥିଲେ । ଯୁଗାନ୍ତକାରୀ 'ଶିକାର' ଗଳ୍ପ ଆଧୁନିକ ୧/୧ ମେ' ୧୯୩୬ ସଂଖ୍ୟା, 'ଦା' ଓ ହାତୁଡ଼ି' ଗଳ୍ପ ଆଧୁନିକ ୧/୬ ଅକ୍ଟୋବର ୧୯୩୭ ସଂଖ୍ୟାର ପୃଷ୍ଠା ମଣ୍ଡନ କରିଥିଲା । ଭଗବତୀ ଚରଣ ଏହି ପତ୍ରିକାରେ 'ଅଘୋରୀ ଭୋଳାନାଥ' ଛଦ୍ମ ନାମରେ ଓ ଅନନ୍ତ ପଟ୍ଟନାୟକ 'ଅତନୁ' 'ବୋଧିସତ୍ତ୍ୱ' ପ୍ରିୟଦର୍ଶୀ' ଇତ୍ୟାଦି ଛଦ୍ମ ନାମରେ ଲେଖା ପ୍ରକାଶ କରୁଥିଲେ ।

ମାତ୍ର ଛ' ଗୋଟିସଂଖ୍ୟା ପ୍ରକାଶିତ ହେବା ପରେ ଏହା ବନ୍ଦ୍ ହୋଇଯାଇଥିଲା ସତ, କିନ୍ତୁ ଓଡ଼ିଆ ସାହିତ୍ୟରେ ଏହା ତୀବ୍ର ଆଲୋଡ଼ନ ସୃଷ୍ଟି କରିବା ସହିତ ଏକ ନୂତନ ଯୁଗର ଓ ନୂତନ ଚିନ୍ତାଚେତନାର ଭିତ୍ତି ପ୍ରସ୍ତର ସ୍ଥାପନ କରିଥିଲା । 'ନବଯୁଗ ସାହିତ୍ୟ ସଂସଦ' ଓ ତାର ମୁଖପତ୍ର 'ଆଧୁନିକ' ଯେ ଜନମାନସରେ ପ୍ରଗତି ସାହିତ୍ୟ ପ୍ରତି ଏକ ଆଗ୍ରହ ସୃଷ୍ଟି କରିଥିଲା କହିଲେ ଅତ୍ୟୁକ୍ତି ହେବ ନାହିଁ । ଛ' ମାସର ଆୟୁଷ ଘେନି ଆସିଥିଲେ ମଧ୍ୟ ଓଡ଼ିଆ ଜନମାନସରେ ଏହା ଯେପରି ପ୍ରଭାବ ବିସ୍ତାର କରିପାରିଥିଲା, ଉପରୋକ୍ତ ଆଲୋଚନାରୁ ତାହା ସ୍ପଷ୍ଟ ପ୍ରତୀୟମାନ ହୁଏ ।

## ଗାନ୍ଧୀଙ୍କର ଭାବବାଦୀ ଦର୍ଶନ ସହିତ ବସ୍ତୁବାଦୀ ଦର୍ଶନର ତୁଳନାତ୍ମକ ବିଚାର:-

ପୂର୍ବ ଆଲୋଚନାରୁ ପ୍ରତୀୟମାନ ହୁଏ ଯେ ଭାରତବର୍ଷରେ ଗାନ୍ଧିଜୀଙ୍କ ଅହିଂସା ଆନ୍ଦୋଳନ ସ୍ୱାଧୀନତା ସଂଗ୍ରାମ କ୍ଷେତ୍ରରେ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଥିଲା । ଏହାପରେ ଭାରତବର୍ଷକୁ ମାର୍କସ୍‌ବାଦର ଆଗମନ ଘଟିଲା । ମାର୍କସୀୟ ତତ୍ତ୍ୱସିଦ୍ଧାନ୍ତ ମଧ୍ୟ ଜନସଚେତନତା ସୃଷ୍ଟି କରିବାରେ ସକ୍ଷମ ହୋଇପାରିଲା । ଏହି ଦୁଇଟି ଦାର୍ଶନିକ ଚିନ୍ତାଧାରା କିପରି ଜନସମାଜକୁ ପ୍ରଭାବିତ କରିପାରିଥିଲା ତାହା ନିମ୍ନରେ ପ୍ରତିଫଳିତ ହୋଇଛି ।

ଊନବିଂଶ ଓ ବିଂଶ ଶତାବ୍ଦୀରେ ପୃଥିବୀପୃଷ୍ଠରେ ଦୁଇଜଣ ଯୁଗାନ୍ତକାରୀ ମହାମନୀଷୀଙ୍କର ଆବିର୍ଭାବ ଘଟିଥିଲା । ଜଣେ ପାଶ୍ଚାତ୍ୟ ଭୂଖଣ୍ଡର ମହାନ୍ ଦାର୍ଶନିକ କାର୍ଲମାର୍କସ୍ ଏବଂ ଅନ୍ୟ ଜଣକ ପ୍ରାଚ୍ୟ ଭୂଖଣ୍ଡର ମହାନାୟକ ମହାତ୍ମାଗାନ୍ଧୀ । ଏହି ଦୁଇ ମନୀଷୀଙ୍କର ଚିନ୍ତାଦର୍ଶ ଦୁଇଟି ମାର୍ଗରେ ଗତିକରୁଥିଲା । କାହାରି ସହିତ କାହାରି ସାମଞ୍ଜସ୍ୟ ନଥିଲା । ସାମଞ୍ଜସ୍ୟ ବିହୀନ ରୂପ ବାହାରକୁ ଦୃଷ୍ଟିଗୋଚର ହେଲେ ମଧ୍ୟ ଏହାର ଅନ୍ତର୍ନିହିତ ମଂଜିଟି ଥିଲା କିନ୍ତୁ ଗୋଟିଏ । ଗାନ୍ଧୀଙ୍କର ଦର୍ଶନ ଅହିଂସା ମାର୍ଗ ଉପରେ ପର୍ଯ୍ୟବେସିତ ହେଲାବେଳେ ମାର୍କସ୍‌ଙ୍କ ଦର୍ଶନ ବାସ୍ତବ ଜୀବନର ପ୍ରତିଛବି ଉପରେ ପର୍ଯ୍ୟବେସିତ ଥିଲା ।

ଦର୍ଶନ ଶାସ୍ତ୍ରକୁ ଯଦି ଭାବବାଦୀ ଓ ବସ୍ତୁବାଦୀ ନାମରେ ଦୁଇ ଭାଗରେ ବିଭକ୍ତ କରାଯାଏ, ତା'ହେଲେ ଭାବବାଦ ସତ୍ୟ, ଧର୍ମ, ନ୍ୟାୟ, ତ୍ୟାଗର ବଳିଷ୍ଠ ପୃଷ୍ଠଭୂମି ଉପରେ ଆଧାରିତ ଏବଂ ବସ୍ତୁବାଦ ସମାଜର ବାସ୍ତବ ଚିତ୍ରକୁ ନେଇ ପର୍ଯ୍ୟବେସିତ ହେବା ସହିତ ଏହା ଶୋଷିତ ଶ୍ରେଣୀର ଦର୍ଶନ ଏବଂ ପ୍ରଗତିଶୀଳ ଦର୍ଶନ ରୂପେ ଅଭିହିତ । ଶ୍ରୀଯୁକ୍ତ ପ୍ରାଣନାଥ ପଟ୍ଟନାୟକଙ୍କ ମତରେ –

"ସମାଜର ସମସ୍ତ ସ୍ତରରେ ଏହି ଉଭୟ ଦର୍ଶନ ମଧ୍ୟରେ ଅନବରତ ସଂଗ୍ରାମ ଚାଲିଛି ଓ ଶେଷରେ ବସ୍ତୁବାଦୀ ଦର୍ଶନର ହିଁ ଆଦର୍ଶବାଦୀ ଦର୍ଶନ ଉପରେ ବିଜୟ ହାସଲ୍ ହୋଇଛି । କାରଣ ତାହା ଜନ୍ମରୁ ବାସ୍ତବ ଭିତ୍ତି ଉପରେ ପ୍ରତିଷ୍ଠିତ ଏବଂ ସମାଜର ବାସ୍ତବ ବର୍ଦ୍ଧିଷ୍ଣୁ ଉତ୍ପାଦନ ଭିତ୍ତି ଉପରେ ଦଣ୍ଡାୟମାନ ଦର୍ଶନ ।" (୨୨)

ଭାବବାଦୀ ଦର୍ଶନ ଗାନ୍ଧିଜୀଙ୍କର ଦର୍ଶନ ଉପରେ ଆଧାରିତ । ବସ୍ତୁବାଦୀ ଦର୍ଶନ ମାର୍କସ୍‌ଙ୍କ ଦର୍ଶନ ଉପରେ ଆଧାରିତ । ଉଭୟ ଦର୍ଶନ ମଧ୍ୟରେ ପରିଲକ୍ଷିତ ହେଉଥିବା ପାର୍ଥକ୍ୟ ସାମଞ୍ଜସ୍ୟ ସଂପର୍କରେ ପୂର୍ବରୁ ଆଲୋଚନା କରାଯାଇଛି । ବର୍ତ୍ତମାନ ଏହି ଦୁଇ ଦର୍ଶନ ପ୍ରଭାବରେ ଓଡ଼ିଆ ସାହିତ୍ୟ କିପରି ନୂତନ ରୂପ ଲଭିଛି ସେ ସଂପର୍କରେ ଅଧ୍ୟୟନ ଆବଶ୍ୟକ ।

## ସ୍ୱାଧୀନତା ପରବର୍ତ୍ତୀ କାଳରେ ଓଡ଼ିଶାରେ ମାର୍କସ୍‌ବାଦ

'ନବଯୁଗ ସାହିତ୍ୟ ସଂସଦ' ଓ 'ଆଧୁନିକ'ର ପରିପ୍ରକାଶ ଓଡ଼ିଶାରେ ପ୍ରଗତିବାଦୀ ଚିନ୍ତାଚେତନା ସମ୍ବଳିତ ସାହିତ୍ୟର ଆବାହକ ଥିଲା । ଏହା ଥିଲା ସ୍ୱାଧୀନତା ପୂର୍ବବର୍ତ୍ତୀ ସମୟର ଘଟଣା । ତତ୍‌କାଳୀନ ସମୟରେ ଜାତିପ୍ରାଣରେ ନବଜାଗରଣର ବାର୍ତ୍ତା ପ୍ରଚାର କରିବା ସହିତ ପୁଂଜିବାଦୀ ସଭ୍ୟତାର ବିଲୋପ ସାଧନ ଘଟାଇ ଏକ ଶୋଷଣ ବିହୀନ ସମାଜ ପରିକଳ୍ପନା ଉପରେ ଏହା ଗୁରୁତ୍ୱାରୋପ କରୁଥିଲା । ଅନ୍ୟ ଭାଷାରେ କହିଲେ ଏହି ଚିନ୍ତାଧାରା ମାର୍କସ୍‌ଙ୍କର ଦର୍ଶନ ଉପରେ ଆଧାରିତ ଥିଲା । ଏହାର ଅନ୍ତର୍ନିହିତ ସ୍ୱର ଥିଲା ସମାଜର ମଂଗଳ ·ବିଧାନ । ସେତେବେଳକୁ ଆମ ଦେଶ ଭାରତବର୍ଷ ସ୍ୱାଧୀନତା ପାଇନଥାଏ । ସ୍ୱାଧୀନତା ପୂର୍ବରୁ ଓଡ଼ିଶାରେ ଏ ପ୍ରକାର ଏକ ପରିବେଶ ସୃଷ୍ଟି ହୋଇଥିଲା । ସବୁ ସ୍ଥାନରେ ଆନ୍ଦୋଳନ ଚାଲିଥାଏ । ବିଶେଷ କରି ମୋଗଲବନ୍ଦୀ ଅଂଚଳରେ କୃଷକ ସଭା (୧୯୩୫), ଗଡ଼ଜାତ ଅଂଚଳରେ ପ୍ରଜା ଆନ୍ଦୋଳନ (୧୯୩୮) ବିଭିନ୍ନ ସ୍ଥାନରେ ଶ୍ରମିକ ଆନ୍ଦୋଳନ, ଛାତ୍ର ଆନ୍ଦୋଳନ, ଉତ୍କଳ କମ୍ୟୁନିଷ୍ଟ ପାର୍ଟି ଗଠନ ଇତ୍ୟାଦି ମଧ୍ୟରେ ବୈପ୍ଳବିକ ଚିନ୍ତାଧାରା ରୂପ ପାଉଥାଏ । କିନ୍ତୁ ଦେଶ ସ୍ୱାଧୀନତା ଲାଭ କରିବାପରେ ଏହି ବୈପ୍ଳବିକ ଚିନ୍ତାଧାରାର ଏକ ଭିନ୍ନ ରୂପ ଜନମାନସରେ ପରିଲକ୍ଷିତ ହେଲା । ଯାହାର ପ୍ରତିଛବି ସାହିତ୍ୟରେ ପ୍ରତିଫଳିତ

ହେବାକୁ ଲାଗିଲା । ଏହି ସମୟ ମଧ୍ୟରେ ପୃଥିବୀବାସୀ ଦୁଇଟି ବିଶ୍ୱଯୁଦ୍ଧର ଭୟାବହତାକୁ ଅନୁଭବ କରିସାରିଲେଣି । ତେଣୁ ଯୁଦ୍ଧ, ଅନ୍ୟାୟ, ଅତ୍ୟାଚାର, ଶୋଷଣ ମଧ୍ୟରୁ ମଣିଷ କିପରି ଶାନ୍ତି ପାଇବ ଏହା ଥିଲା ଏ ସମୟର କବିତାର ଅନ୍ୟତମ ବୈଶିଷ୍ଟ୍ୟ । ଏ ସଂପର୍କରେ ଏଠାରେ ସମାଲୋଚକ ଡଃ ବିଜୟ ଶତପଥିଙ୍କର ଏକ ମନ୍ତବ୍ୟକୁ ଉଦ୍ଧାର କରାଯାଇପାରେ –

"ସଭ୍ୟତାର ଉତ୍‌ଥାନ ପତନ ମଧ୍ୟରେ ମଣିଷର ଶତପ୍ରବଞ୍ଚନା, କ୍ରୁରତା ଓ ନିଷ୍ଠୁରତାର ବଂଧନୀ ମଧ୍ୟରେ ଏହି ଶାନ୍ତି କାମନାଟି ହିଁ ଉଦ୍‌ଜୀବିତ ରହିଛି । କବିଙ୍କର ଶାନ୍ତି କାମନା ଏକ ବୃହତ୍ତର ମାନବ ସମାଜ ପାଇଁ ଅଭିପ୍ରେତ । ଆଣବିକ ଯୁଦ୍ଧର ଭୟାବହତା ଓ ବାରୁଦର ଅଗ୍ନିକୁ ନିର୍ବାପିତ କରିବା ସହିତ ଏହା ପୁଂଜିବାଦୀ ସଭ୍ୟତାର ସବୁ ବିକୃତିକୁ ମଧ୍ୟ ଧ୍ୱଂସ କରିଦେବ । ଉଦ୍‌ଭାସିତ କରିବ ଜୀବନର ସହଜ ଓ ସରଳ ଦିଗକୁ, ସ୍ୱଚ୍ଛଳ ଗତି ଧାରାକୁ ।(୨୩)

ଉପରୋକ୍ତ ମନ୍ତବ୍ୟଟି ଆଲୋଚକ କବି ଅନନ୍ତ ପଟ୍ଟନାୟକଙ୍କ କବିତା ଆଲୋଚନା ପ୍ରସଙ୍ଗରେ ପ୍ରଦାନ କରିଅଛନ୍ତି । ଏତଦ୍‌ବ୍ୟତୀତ ଆଉ ଏକ ବିଶେଷ ପ୍ରକାର ମାନସିକତା ତତ୍‌କାଳୀନ ଜନମାନସକୁ ଆଚ୍ଛାଦିତ କରିଥିଲା । ତାହା ହେଉଛି 'ସ୍ୱାଧୀନତାର ସ୍ୱପ୍ନଭଂଗ' । ପ୍ରତ୍ୟେକ ଦେଶ, ଜାତି ପାଇଁ ସ୍ମରଣୀୟ ଦିବସ ହେଉଛି ଯେଉଁଦିନ ଜାତି ଅତ୍ୟାଚାର ଓ ଅନ୍ୟାୟର ବଳୟରୁ ମୁକ୍ତ ହୋଇ ସ୍ୱାଧୀନତାର ସ୍ୱାଦ ଚାଖିଥାଏ । ଜାତିପ୍ରୀତିର ନିଦର୍ଶନ ସ୍ୱରୂପ ସାମୂହିକ କଲ୍ୟାଣ ପାଇଁ ଆତ୍ମ ବଳିଦାନ ଦେବାକୁ ମଧ୍ୟ ସଂଗ୍ରାମୀମାନେ ପଶ୍ଚାତ୍‌ପଦ ହୁଅନ୍ତି ନାହିଁ ।

କିନ୍ତୁ ଦେଶ ସ୍ୱାଧୀନତା ଲାଭ କରି ସାରିବା ପରେ ଯେତେବେଳେ ମଣିଷ ମନର ଆଶା ଆଶାରେ ରହିଯାଏ, ସେତେବେଳେ ମୋହଭଂଗ ଅବସ୍ଥା ସୃଷ୍ଟି ହୁଏ । ଏ ସଂପର୍କରେ ଏଠାରେ ଆଲୋଚକ 'ବନମାଳୀ ପାଣିଗ୍ରାହୀଙ୍କ ମତାମତକୁ ଉଲ୍ଲେଖ କରାଯାଇପାରେ ।

"ଯେ କୌଣସି ଦେଶ ପାଇଁ ସେହି ଦେଶର ଶ୍ରେଷ୍ଠ ପର୍ବ ସେହିଦିନ, ଯେଉଁ ଦିନ ଦେଶକୁ ମିଳିଥିଲା ଅତ୍ୟାଚାରୀ ଶାସନରୁ ମୁକ୍ତି । X XX X । ଏ ସଂପର୍କରେ ଭାବି ବସିଲେ ମନକୁ ଆସେ ଦେଶ ସ୍ୱାଧୀନ ହେଲାସତ, କିନ୍ତୁ ମିଳିଲା କି ଏ ଯାଏ ସ୍ୱାଧୀନତାର ସଫଳତା, ଅର୍ଥନୈତିକ ଆଧ୍ୟାତ୍ମିକ ତଥା ସାଂସ୍କୃତିକ ସ୍ୱାଧୀନତା ।"(୨୪)

ଏହି ପ୍ରସଂଗରେ କୁହାଯାଇପାରେ ଯେ, ଦେଶ ସ୍ୱାଧୀନତା ଲାଭ କରିବା ପରେ ରାଜନୈତିକ, ଅର୍ଥନୈତିକ, ସାଂସ୍କୃତିକ କ୍ଷେତ୍ରରେ ଘୋର ଅବ୍ୟବସ୍ଥା ପରିଲକ୍ଷିତ

ହେଉଛି । ସର୍ବତ୍ର ଅନ୍ୟାୟ, ଅତ୍ୟାଚାର, ଶୋଷଣ ରାଜପଣ କରୁଛି । ଗାନ୍ଧିଜୀ ଯେଉଁ ରାମରାଜ୍ୟର ପରିକଳ୍ପନା କରିଥିଲେ ତାହା ଆଜି ଆମ ପାଇଁ ସ୍ୱପ୍ନ ପାଲଟି ଯାଇଛି । ଏଠାରେ ପ୍ରାବନ୍ଧିକ ଗୋଲୋକ ବିହାରୀ ଧଳଙ୍କର 'ସ୍ୱାଧୀନ ଜାତିର ନୂତନ ମୂଲ୍ୟବୋଧ' ପ୍ରବଂଧରେ ପ୍ରଦାନ କରିଥିବା ମନ୍ତବ୍ୟ ଉପସ୍ଥାପନ କରିବା ଉଚିତ୍ ମନେ ହୁଏ ।

"ଏ ଦେଶରେ ପୂଳାଏ ମାଟି କେବଳ ସ୍ୱାଧୀନ ହୋଇଛି ମଣିଷର ମନ ନୁହେଁ ।" ମଣିଷର ମାନସିକତାକୁ ଆଜି ସଂକୀର୍ଣ୍ଣ ମୂଲ୍ୟବୋଧ ଗ୍ରାସ କରିଛି । ନୀତି, ଆଦର୍ଶ ତା' ପାଖରେ ମୂଲ୍ୟହୀନ । ତେଣୁ ସାମାଜିକ ଭିତ୍ତିଭୂମି ଆଜି ଦୋହଲି ଯାଉଛି । ତେଣୁ ସ୍ୱାଧୀନତା ପରବର୍ତ୍ତୀ କାଳର ପ୍ରଗତିବାଦୀ କବିତା ତତ୍କାଳୀନ ସମାଜର ଏ ପ୍ରକାର ପ୍ରତିଛବିକୁ ଅଙ୍କନ କରିବାକୁ ସମର୍ଥ ହେଲା । ଏଥିରେ ପ୍ରକାଶ ପାଇଲା ସ୍ୱାଧୀନତା ପରବର୍ତ୍ତୀ ମୋହଭଂଗ ଅବସ୍ଥା ତତ୍ସାଙ୍ଗକୁ ଶୋଷଣର ବିଲୋପ ଘଟାଇ ନୀତି, ଆଦର୍ଶବାଦର ପ୍ରତିଷ୍ଠା ପାଇଁ ଆହ୍ୱାନ ତତ୍କାଳୀନ ସମାଜର ଯୁବଗୋଷ୍ଠୀକୁ ଅନୁପ୍ରେରଣା ପ୍ରଦାନ କଲା । ଓଡ଼ିଶା ସମେତ ଭାରତବର୍ଷର ଅନ୍ୟାନ୍ୟ ଆଞ୍ଚଳିକ ସାହିତ୍ୟରେ ମଧ୍ୟ ଏହି ଚିନ୍ତାଦର୍ଶ ପ୍ରକାଶ ପାଇଲା ।

## ଓଡ଼ିଆ ସାହିତ୍ୟରେ ମାର୍କସ୍‌ବାଦର ପ୍ରଭାବ :-

ସର୍ବଭାରତୀୟ ସ୍ତରରେ ପ୍ରଗତିବାଦର ଉନ୍ମେଷ ଓ ବିକାଶ ସଂଗଠିତ ହେବା ପରେ ଓଡ଼ିଶାରେ ମଧ୍ୟ ଏହାର ପ୍ରଭାବ ଅନୁଭୂତ ହେବାକୁ ଲାଗିଲା । 'ନବଯୁଗ ସାହିତ୍ୟ ସଂସଦ' ଓ 'ଆଧୁନିକ' ପତ୍ରିକାର ଆତ୍ମ ପ୍ରକାଶ ପ୍ରଗତିବାଦୀ ଆନ୍ଦୋଳନକୁ ଏକ ସ୍ୱତନ୍ତ୍ର ପରିଚୟ ପ୍ରଦାନ କରିଥିଲା । ଓଡ଼ିଆ ସାହିତ୍ୟରେ ଏକ ନୂତନ ଯୁଗ ଚେତନାର, ନୂତନ ଆଦର୍ଶର ଭିତ୍ତିଭୂମି ପ୍ରତିଷ୍ଠା ପାଇଁ ଏହା ଥିଲା ସକ୍ଷମ । ସାଥୀ ଭଗବତୀ ଚରଣ ପାଣିଗ୍ରାହୀ, ଗୁରୁଚରଣ ପଟ୍ଟନାୟକ, ଅନନ୍ତ ପଟ୍ଟନାୟକ ପ୍ରମୁଖ ଏହାର ଅଗ୍ରଗାମୀ ଭୂମିକା ଗ୍ରହଣ କରିଥିଲେ । ଏମାନଙ୍କର ପ୍ରଗାଢ଼ ଉଦ୍ୟମ ପୁରାତନ ଚିନ୍ତାଚେତନା ଉପରେ ନୂତନତାର ବିଜୟ ବୈଜୟନ୍ତୀ ଉଡ଼ାଇବାକୁ ସକ୍ଷମ ହୋଇ ପାରିଥିଲା । ସମଗ୍ର ପ୍ରଦେଶରେ ମାର୍କସ୍‌ବାଦର ପ୍ରଭାବ ସ୍ୱରୂପ ଗଡ଼ଜାତ ଆନ୍ଦୋଳନ, ଶ୍ରମିକ ଆନ୍ଦୋଳନମାନ ମୁଣ୍ଡ ଟେକିଲା । ସମସ୍ତେ ସମସ୍ତଙ୍କର ଅଧିକାର ସଂପର୍କରେ ସଚେତନ ହେଲେ । ଅନ୍ୟାୟ ବିରୋଧରେ ଲଢ଼େଇ କରିବାର ପ୍ରେରଣା ପାଇଲେ । ସମାଜବାଦୀ ଚିନ୍ତାଦର୍ଶ ଦ୍ୱାରା ଉଦ୍‌ବୁଦ୍ଧ ହୋଇ ପ୍ରଗତିଶୀଳ ଲେଖକଙ୍କ ସଂଖ୍ୟା ଓ ପରିସର ଦିନକୁଦିନ ବୃଦ୍ଧି ପାଇବାକୁ ଲାଗିଲା । ଓଡ଼ିଆ ସାହିତ୍ୟରେ 'ପ୍ରଗତିବାଦୀ ଯୁଗ' ନାମରେ ଏକ ନୂତନ ଯୁଗର ଅୟମାରମ୍ଭ ଘଟିଲା ।

୧- 'ଇତିହାସର ଲୋହିତ ଚକ୍ରବାଳ' : ଡଃ ଆଶିଷ୍ ମହାପାତ୍ର, କାହାଣୀ ପ୍ରକାଶନୀ ପୃ ୧୧୩ ।
୨- 'Lenin in India' - Anand Gupta: New literature, Delhi. P- 30.
୩- 'The fundamentals of marxist leninist philosophy' page 1- progress publishers - moscow - 1974.
୪- 'Note by Engels to the English Edition of 1988'. Manifesto of the communist party-page- 46.
୫- 'ମ୍ୟାକ୍ସିମ୍ ଗର୍କୀ' - 'ମା' ଓଡ଼ିଆ ଅନୁବାଦ : (ପାଭୋଲୋର ଉକ୍ତି ବିଚାର ପତି ମାନଙ୍କ ପାଇଁ)ପୃ - ୩୮୪ ।
୬- 'ଦୁଇ ମନୀଷୀ' : 'ମାକ୍ସ ଓ ଗାନ୍ଧୀ' : ଆଲେଖ୍ୟ - ଡଃ ବିଜୟ ନାୟକ, ରବିବାର ପୃଷ୍ଠା-ସମାଜ - ୨୩ ଅପ୍ରିଲ - ୨୦୦୬ ।
୭- 'ଓଡ଼ିଶାରେ ସାମ୍ୟବାଦୀଦଳ' ସୁରେନ୍ଦ୍ରନାଥ ଦ୍ୱିବେଦୀ, 'ନବଭାରତ' ପତ୍ରିକା, ପୃ- ୧୦ ।
୮- 'Sedition committee report' - 1918, suptd. Govt. printing India, calcutta- 1918, p -96-97.
୯- 'October Revolution : Impact on Indian literature', Edited by Qumur Rasi : P - 1978. P-22.
୧୦. 'ଆହ୍ୱାନ' - କବି ଦେବୀଦତ୍ତ ମିଶ୍ର, 'ପ୍ରଭା'- ଜାନୁଆରୀ - ୧୯୨୧, ପୃ- ୨୧୬ ।
୧୧- 'ସମାଜ': ସଂପାଦକୀୟ : 'ଉତ୍କଳମଣି ଗୋପବଂଧୁ ଦାସ' ୨-୨-୧୯୨୪ ।
୧୨- 'ସମାଜ' : ସଂପାଦକୀୟ : 'ଉତ୍କଳମଣି ଗୋପବଂଧୁ ଦାସ' - ୨-୧-୧୯୨୬ ।
୧୩- 'ପ୍ରବାସୀ ଓଡ଼ିଆ ଆନ୍ଦୋଳନ' ଶୁକଦେବ ସାହୁ, ରାମଚନ୍ଦ୍ର ବେହେରା:ଡଗର, ହୋଲି ସଂଖ୍ୟା-୧୯୪୮
୧୪- 'ଓଡ଼ିଶାରେ ନୂତନ ଭାବଧାରାର ଉନ୍ମେଷ' : ଭଗବତୀ ଚରଣ ପାଣିଗ୍ରାହୀ : ଲକ୍ଷ୍ମୀ ନାରାୟଣ ରାୟସିଂହ ପୃ-୧୦ ।
୧୫- 'ଓଡ଼ିଶାରେ ସାମ୍ୟବାଦୀ ଦଳ' : ସୁରେନ୍ଦ୍ର ନାଥ ଦ୍ୱିବେଦୀ : ନବଭାରତ, କକଡ଼ା, ୧୩୪୩ ।
୧୬- 'ସବୁଜରୁ ସାଂପ୍ରତିକ' : ପଞ୍ଚମ ସଂସ୍କରଣ ଜାନୁଆରୀ ୨୦୦୮, ଡଃ ନିତ୍ୟାନନ୍ଦ ଶତପଥୀ, ଗ୍ରନ୍ଥ ମନ୍ଦିର, ପୃ-୨୪୬ ।
୧୭- 'ନବଭାରତ' ପ. ନୀଳକଣ୍ଠ ଦାସ - ଧନୁ ୧୩୪୨, ୨ୟ ବର୍ଷ ୬ଷ୍ଠ ଓ ୭ମ ସଂଖ୍ୟା ଜାନୁଆରୀ ୧୯୩୬ ।

୧୮- 'ଉଦ୍‌ବୋଧନୀ' 'ନବଭାରତ' ଧନୁ ୧୩୪୨ ।
୧୯- 'ଭଗବତୀ ଚରଣ ପାଣିଗ୍ରାହୀ ବିଶେଷାଙ୍କ' ଭଗବତୀ ଚରଣ ଜୀବନୀ ଓ ଆଲୋଚନା - ଲକ୍ଷ୍ମୀନାରାୟଣ ରାୟ ସିଂହ ପୃ-୨୪ ।
୨୦-'ଆସନ୍ତା କାଲିର ସାହିତ୍ୟ' : ପ୍ରାଣନାଥ ପଟ୍ଟନାୟକ ନବଯୁଗ ଗ୍ରନ୍ଥାଳୟ, ୧୯୭୦, ପୃ ୧୨୯/୧୩୦ ।
୨୧- 'ଆଧୁନିକ' ବିଜ୍ଞାପନ - ନବଭାରତ : ବିଛା ଓ ଧନୁ ସଂଖ୍ୟା ବା, ୨ୟ ବର୍ଷ ୬ଷ୍ଠ/୭ମ/୧୩୪୨ ।
୨୨- 'ଆସନ୍ତା କାଲିର ସାହିତ୍ୟ' ପ୍ରାଣନାଥ ପଟ୍ଟନାୟକ ନବଯୁଗ ଗ୍ରନ୍ଥାଳୟ, ୧୯୭୦, ପୃ ୭୦ ।
୨୩- 'କବି ଅନନ୍ତ ପଟ୍ଟନାୟକ' : ଓଡ଼ିଆ ସାହିତ୍ୟରେ ପ୍ରଗତିବାଦୀ ଧାରା : ଡଃ ବିଜୟ କୁମାର ଶତପଥି, ଓଡ଼ିଶା ବୁକ୍‌ଷ୍ଟୋର, କଟକ - ପୃ ୨୯୦/୨୯୧ ।
୨୪- 'କିଛି ଆଲୋଚନା କିଛି ସମାଲୋଚନା' : ବନମାଳୀ ପାଣିଗ୍ରାହୀ, ପୃ - ୧୨ ।



## ତୃତୀୟ ଅଧ୍ୟାୟ

# ସ୍ୱାଧୀନତା ପୂର୍ବବର୍ତ୍ତୀ ଓଡ଼ିଆ କବିତାରେ ପ୍ରଗତିବାଦୀ ଚେତନା

ସବୁଜ ଯୁଗର ରୋମାଣ୍ଟିକ୍ କଳ୍ପନା ବିଳାସିତାକୁ ପରିହାର କରି ଓଡ଼ିଆ କାବ୍ୟ କବିତା ଏକ ନୂତନ ଚିନ୍ତାଦର୍ଶକୁ ଆଦରି ନେଲା । ସବୁଜ କାବ୍ୟଧାରା ପ୍ରାୟତଃ ୧୯୩୦/୩୩ ପର୍ଯ୍ୟନ୍ତ ଅବ୍ୟାହତ ଥିଲା । କିନ୍ତୁ 'ନବଯୁଗ ସାହିତ୍ୟ ସଂସଦ'ର ଗଠନ ଓ 'ଆଧୁନିକ' ପତ୍ରିକାର ଆତ୍ମପ୍ରକାଶ ପରେ ପରେ ଓଡ଼ିଆ କାବ୍ୟ କବିତା ମାର୍କସ୍‌ବାଦୀ ଆଭିମୁଖ୍ୟକୁ ଗ୍ରହଣ କରିନେଲା । ଏହାର ପ୍ରଭାବରେ ସବୁଜ ଗୋଷ୍ଠୀର କବିମାନେ ମଧ୍ୟ ପ୍ରଭାବିତ ହୋଇଛନ୍ତି । କବି କାଳିନ୍ଦୀ ଚରଣ ରୋମାଣ୍ଟିକ୍ କଳ୍ପନା ବିଳାସକୁ ବାଦ୍ ଦେଇ, କବି ବୈକୁଣ୍ଠନାଥ ରହସ୍ୟବାଦକୁ ପଛରେ ପକାଇ ବାସ୍ତବବାଦୀ କାବ୍ୟ ଆଭିମୁଖ୍ୟକୁ ଗ୍ରହଣ କରିନେଇଛନ୍ତି । ସବୁଜ ଯୁଗର ଏହି କବି ମାନଙ୍କର ସାରସ୍ୱତ ସୃଷ୍ଟି ମଧ୍ୟ ଭବିଷ୍ୟତରେ ବହୁ ପ୍ରଗତିବାଦୀ କବିମାନଙ୍କୁ ପଥପ୍ରଦର୍ଶନ କରିଛି ଏଥିରେ ଦ୍ୱିମତ ହେବାର ନାହିଁ ।

## ସବୁଜ କବିଙ୍କ କବିତାରେ ପ୍ରଗତିବାଦୀ ଚେତନା :-

ସତ୍ୟବାଦୀ ଯୁଗର ଉଗ୍ରଜାତୀୟବାଦୀ ଚିନ୍ତାଧାରାର ବଳୟ ତ୍ୟାଗକରି ଓଡ଼ିଆ କାବ୍ୟକବିତାରେ ରୋମାଣ୍ଟିକ କଳ୍ପନାର କାଉଁରୀ ସ୍ପର୍ଶ ଦେଖିବାକୁ ମିଳିଲା । ଏହାର ସୂତ୍ରଧର ଥିଲେ କବି ଅନ୍ନଦାଶଙ୍କର ରାୟ, ବୈକୁଣ୍ଠନାଥ ପଟ୍ଟନାୟକ, କାଳିନ୍ଦୀ ଚରଣ ପାଣିଗ୍ରାହୀ, ଶରତ ଚନ୍ଦ୍ର ମୁଖାର୍ଜୀ ଓ ହରିହର ମହାପାତ୍ର । ୧୯୨୧-୨୨ ମସିହା ବେଳକୁ ତତ୍‌କାଳୀନ ଓଡ଼ିଶାର ପ୍ରମୁଖ ଶିକ୍ଷାକେନ୍ଦ୍ର ରେଭେନ୍‌ସା ମହାବିଦ୍ୟାଳୟ ଏମାନଙ୍କ ବଂଧୁତାର କେନ୍ଦ୍ରସ୍ଥଳଥିଲା । ଏହାପରେ ମାତ୍ର ଚାରିବର୍ଷର ରହଣୀ ମଧ୍ୟରେ ଅନ୍ନଦା ଶଙ୍କର ଓଡ଼ିଆ କାବ୍ୟକବିତାର ପାଠକମାନଙ୍କୁ ପରୀରାଇଜରେ ଭାସି ବୁଲିବାର ସ୍ୱପ୍ନରେ

ମତୁଆଲା କରିଥିଲାବେଳେ, କାଳିନ୍ଦୀଚରଣ ରୋମାଣ୍ଟିକ ଉଚ୍ଛ୍ୱାସରେ ଉଚ୍ଚାଟିତ କରିଦେଇ ପାରୁଥିଲେ । ଏ ଦୁଇଜଣଙ୍କ ବ୍ୟତୀତ କବି ବୈକୁଣ୍ଠନାଥ ମଧ୍ୟ ପାଠକର ମନକୁ ରହସ୍ୟର ମାୟାଜାଲରେ ଆଚ୍ଛାଦିତ କରିଦେଇ ପାରୁଥିଲେ । ଅନ୍ୟ ଦୁଇ ଯୁବକବି ଶ୍ରୀ ହରିହର ଓ ଶ୍ରୀ ଶରତଚନ୍ଦ୍ରଙ୍କ ସୃଷ୍ଟି ସୀମିତ, ଯାହା କି ଉତ୍କଳ ସାହିତ୍ୟ, ମୁକୁର, ଅବକାଶ, ଯୁଗବୀଣା ଇତ୍ୟାଦି ପତ୍ରିକା ମଧ୍ୟରେ ସୀମିତ ରହିଥିଲା । ଏହି ପାଞ୍ଚଜଣ ବଂଧୁଙ୍କ ଚିନ୍ତାପ୍ରସୂତ 'ସବୁଜଯୁଗ' କିନ୍ତୁ ଦୀର୍ଘସ୍ଥାୟୀ ହୋଇ ପାରିନଥିଲା । ଅନ୍ନଦାଶଙ୍କରଙ୍କର ଓଡ଼ିଶା ପରିତ୍ୟାଗ ହିଁ ଏ ଯୁଗର ବିଲୟର କାରଣ ହୋଇଥିଲା । ଅନ୍ନଦାଶଙ୍କର ସ୍ୱୟଂ ନିଜେ ଏ ସଂପର୍କରେ ମତବ୍ୟକ୍ତ କରନ୍ତି ଯେ –

"ନୂଆରକ୍ତ ନ' ଆସିଲେ କୌଣସି ଆନ୍ଦୋଳନ ବା' ଯୁଗ ବେଶୀଦିନ ଚଳିପାରେ ନାହିଁ । ସବୁଜ ଦଳରେ କୌଣସି ଦିନ ସାତ ଆଠଜଣରୁ ଅଧିକ ଲେଖକ ଲେଖିବା ନଥିଲେ । ନିୟମିତ ଲେଖକ ଥିଲେ ଆହୁରି ସ୍ୱଳ୍ପ ସଂଖ୍ୟକ । ଏ ଯୁଗ ଦଶବର୍ଷ ଖଣ୍ଡେ ଜୀବିତ ଥିଲା କେଉଁ ମନ୍ତ୍ର ବଳରେ ? ସେ ମନ୍ତ୍ରର ନାମ ବନ୍ଧୁ ବାତ୍ସଲ୍ୟ ।"(୧)

ଚାରିବନ୍ଧୁଙ୍କର ଏକତ୍ର ସହାବସ୍ଥାନ ମଧ୍ୟରୁ ସବୁଜ ଯୁଗର ଅୟମାରମ୍ଭ, ଅନ୍ନଦାଶଙ୍କରଙ୍କର ପଳାୟନ ପରେ ଏହାର ପରିସମାପ୍ତି । କଟକ ଛାଡ଼ିବାର କିଛି କାଳ ପରେ ବୈକୁଣ୍ଠନାଥ ଓ କାଳିନ୍ଦୀ ଚରଣ ଏହି ଧାରାରେ କାବ୍ୟ କବିତା ରଚନା କଲେ । କିନ୍ତୁ ତାହା ଦୀର୍ଘ କାଳ ତିଷ୍ଠି ରହିଲା ନାହିଁ । ଧୀରେଧୀରେ ମାର୍କସ୍‌ବାଦୀ ଚିନ୍ତାଧାରା ଏମାନଙ୍କୁ ପ୍ରଭାବିତ କଲା । ପରିଣାମ ସ୍ୱରୂପ ଏମାନଙ୍କ କବିତା ଏକ ନୂତନ ରୂପ ନେଇ ଆତ୍ମ ପ୍ରକାଶ କଲା । ଯେଉଁଥିରେ ମାନବ ସମାଜପ୍ରତି ସମ୍ବେଦନା, ସର୍ବାଙ୍ଗୀନ ଉନ୍ନତି ବିଧାନ ହିଁ ହେଲା ଏହାର ମୁଖ୍ୟସ୍ୱର । ବର୍ତ୍ତମାନ ସବୁଜ କବିଗଣଙ୍କ କବିତାରେ ଏହି ଆଭିମୁଖ୍ୟ କିପରି ଆତ୍ମପ୍ରକାଶ କରିଛି ସେ ସଂପର୍କରେ ଆଲୋଚନା କରିବା ।

## କାଳିନ୍ଦୀ ଚରଣ ପାଣିଗ୍ରାହୀ

କବି କାଳିନ୍ଦୀ ଚରଣଙ୍କ କାବ୍ୟିକ ଚେତନାର ଅୟମାରମ୍ଭ ହୁଏ ୧୯୨୦ ମସିହା ବେଳକୁ । ପ୍ରାରମ୍ଭିକ ପର୍ଯ୍ୟାୟରେ ଏହା ରୋମାଣ୍ଟିକ୍ ଭାବାଦର୍ଶ ଦ୍ୱାରା ଅନୁପ୍ରାଣିତ ହୋଇଥିଲା । ଏହି ଭାବଧାରାର ସ୍ଥିତି ବଜାୟ ରହେ ୧୯୩୨ ମସିହା ପର୍ଯ୍ୟନ୍ତ । ୧୯୩୨ ମସିହାପରେ କବିଙ୍କର କାବ୍ୟିକ ଚେତନା ଏକ ଭିନ୍ନ ପଥରେ ଗତି କରେ ଓ ଏହା ପ୍ରାୟ ୧୯୪୫ ମସିହା ପର୍ଯ୍ୟନ୍ତ ବଜାୟ ରହେ। ଏଥିରୁ ପ୍ରତୀୟମାନ ହୁଏ ଯେ, କବି କାଳିନ୍ଦୀ ରୋମାଣ୍ଟିକ୍ କବି ଭାବରେ ଯେତିକି ଖ୍ୟାତିର ଅଧିକାରୀ, ପ୍ରଗତିବାଦୀ କବି ଭାବରେ ମଧ୍ୟ ସେତିକି ଖ୍ୟାତିର ଅଧିକାରୀ । କବିଙ୍କର ଗୋଟିଏ ଚିନ୍ତାଦର୍ଶରୁ ଅନ୍ୟ ଏକ ଭିନ୍ନ ଚିନ୍ତାଦର୍ଶକୁ ପ୍ରବେଶ କରିବା ପଛରେ ନିଶ୍ଚିତ ଭାବରେ

ଏକ ବଳିଷ୍ଠ ପୃଷ୍ଠଭୂମି ରହିଛି । ତାହା ହେଉଛି ନବଯୁଗ ସାହିତ୍ୟ ସଂସଦ ଓ ଆଧୁନିକର ପ୍ରତିଷ୍ଠାତା ଅନୁଜ ଭ୍ରାତା ଶ୍ରୀଯୁକ୍ତ ଭଗବତୀ ଚରଣ ପାଣିଗ୍ରାହୀଙ୍କ ଅନୁପ୍ରେରଣା । ଏ ସଂପର୍କରେ ସମାଲୋଚକ ଡଃ ନିତ୍ୟାନନ୍ଦ ଶତପଥୀ ମତବ୍ୟକ୍ତ କରନ୍ତି –

"୧୯୩୫ ମସିହା ହିଁ କାଳିନ୍ଦୀ କାବ୍ୟମାନସର ଏହି ଦ୍ୱନ୍ଦ୍ୱକୁ ଏକ ନିଶ୍ଚିତ ଦିଗ୍‌ଦର୍ଶନ ଦେଇପାରିଛି । ୧୯୩୫ ରେ ତାଙ୍କ ଅନୁଜ ଶ୍ରୀ ଭଗବତୀ ଚରଣ ପାଣିଗ୍ରାହୀଙ୍କ ନେତୃତ୍ୱରେ 'ନବଯୁଗ ସାହିତ୍ୟ ସଂସଦ'ର ପ୍ରତିଷ୍ଠା ବସ୍ତୁତଃ ସବୁଜର ମଣିମୟ ମୀନାର୍ 'ସବୁଜ ସାହିତ୍ୟ ସଂସଦ' ପ୍ରତି ଏକ ସର୍ତ୍ତହୀନ ଯୁଦ୍ଧ ଘୋଷଣା । ଗୋଟିଏ ସ୍ୱପ୍ନର ଝଲ୍‌ମଲ୍ ଦୃଷ୍ଟି ସୀମାତୀତ ବର୍ଣ୍ଣବିଭା ତ' ଅନ୍ୟଟି ଜୀବନର ଧୂସର ବାସ୍ତବତା ପ୍ରତି ସଙ୍କୋଚ ଦୃଷ୍ଟିଭଙ୍ଗୀ । ପୁଣି ଯୁଗବୀଣା' ଯେଉଁ ଯୁଗର ଧ୍ୱନିକୁ ତା'ର ତନ୍ତ୍ରୀରେ ପ୍ରକାଶ କରିପାରିନଥିଲା, 'ଆଧୁନିକ' ସେଠି ତା'ର ଦୃଢ଼ ପଦକ୍ଷେପକୁ ଶୁଣାଇ ଯୁବଚେତନାର ସମସ୍ତ କ୍ଳୀବତାକୁ ଭାଙ୍ଗି ଦେବାକୁ ଅଗ୍ରସର ହୋଇଥିଲା । ଗୋଟିଏ ପରିବାରର ଏକ ଦୁଇ ଭିନ୍ନ ଦିଗଯାତ୍ରୀ ଥିଲା ବାସ୍ତବତାର ସଂଧାନ ପାଇଁ ଏକ ଚରମ ପରୀକ୍ଷାର ସଂକଟ । ଭଗବତୀ ଏହି ସଂଧାନରେ ଜିତି ଯାଇଥିଲେ । ତେଣୁ ବହୁ ଚିନ୍ତା ଦୋଳିତ କାଳିନ୍ଦୀ କାବ୍ୟ ମାନସ ଭଗବତୀଙ୍କ ବାମପନ୍ଥୀ ଚିନ୍ତାଧାରା ପ୍ରତି ଆକୃଷ୍ଟ ହୋଇପଡ଼ିବା ସ୍ୱାଭାବିକ ।(୨)

ଏଥିରୁ ପ୍ରତିପାଦିତ ହୁଏ ଯେ କାଳିନ୍ଦୀ ଚରଣ ପ୍ରଗତିବାଦୀ ଆଭିମୁଖ୍ୟକୁ ଆଦରି ନେବା ପଛରେ ଅନୁଜ ଭଗବତୀ ଚରଣଙ୍କ ଅଦମ୍ୟ ନିଷ୍ଠା ହିଁ ଦାୟୀ । କାଳିନ୍ଦୀଚରଣଙ୍କ କେତେଗୁଡ଼ିଏ କବିତାକୁ ଅନୁଶୀଳନ କଲେ ତାଙ୍କର ପ୍ରଗତିବାଦୀ ଆଭିମୁଖ୍ୟ ସଂପର୍କରେ ଏକ ସ୍ୱଷ୍ଟ ଧାରଣା କରିହୁଏ । ଏହି ଚିନ୍ତାଦର୍ଶର ପ୍ରଥମ ପଦଚିହ୍ନ ପ୍ରତିପାଦିତ ହୁଏ 'ପ୍ରତିମା' କବିତାରେ । କବିଙ୍କ ବର୍ଣ୍ଣନାରେ –

"ନ ମିଳେ ନୃପତି
ଡାକି ଡାକି ଶୁଖେ କଣ୍ଠ
କାହିଁ ଶାନ୍ତି କାହିଁରେ ମୁକତି ? (୩)

କବିତାରେ ମନୁଷ୍ୟକୁ କର୍ମବାଦୀ ହେବାପାଇଁ କବିକଣ୍ଠର ଆହ୍ୱାନ ପରିଲକ୍ଷିତ ହୁଏ । ମଣିଷ ଯଦି ନିଜେ ନିଜର କ୍ଷମତା ଉପରେ ଆସ୍ଥା ସ୍ଥାପନ କରି ନ ପାରିବ, ତା' ହେଲେ ସେ ସମାଜରେ ଆଗକୁ ଚାଲି ପାରିବ ନାହିଁ । ଭାଗ୍ୟ, ଭଗବାନଙ୍କ ଉପରେ ଆସ୍ଥା ନରଖି ନିଜର ଆତ୍ମବିଶ୍ୱାସ, ନିଜର ଶକ୍ତି ଉପରେ ଆସ୍ଥା ରଖିବାକୁ ପଡ଼ିବ । ଅନୁରୂପ କାବ୍ୟସ୍ୱର କବି ଅନନ୍ତ ପଟ୍ଟନାୟକଙ୍କ 'ଦେବତା ନାହିଁ ଭୁବନ ବନେ' କବିତାରେ ଶୁଣିବାକୁ ମିଳେ । କବି ଅନନ୍ତ ଆହ୍ୱାନ ଦିଅନ୍ତି –

"ସର୍ବହରା ବିଶ୍ୱେ ତୁ'ରେ
ବଂଚିତ ତୁ ସକଳ ଧନେ
ଖୋଜୁରେ ବୃଥା ଜୀବନ କଥା
ଦେଉଳ ତଳେ ଶୂନ୍ୟ ମନେ
ଶିଳାରେ ପିଟୁ ମୁଣ୍ଡ ଖାଲି
ଯାତ୍ରା ପଥେ ତପ୍ତ ବାଲି
ନାହିଁ ରେ ନାହିଁ ଶୀତଳ ଛାଇ
ଦେବତା ନାହିଁ ଭୂବନ ବନେ ।" (୪)

'ପ୍ରତିମା'ରେ ପ୍ରକଟିତ ଚିନ୍ତାଧାରା ଆହୁରି ପରିଚ୍ଛନ୍ନ ରୂପ ଲାଭ କରିଛି 'ବିଦାୟ ଭଗବାନ' କବିତାରେ । ଯେଉଁ କବି କାଳିନ୍ଦୀଚରଣ ଦିନେ ନିଜର ଶରୀର ତ୍ୟାଗ କରି ଈଶ୍ୱରଙ୍କ ଶରୀରରେ ମିଳିତ ହେବାର କଳ୍ପନା କରୁଥିଲେ ଏବଂ କବିତାରେ ପ୍ରକାଶ କରିଥିଲେ :-

"ହେ ଅତନୁ ! ତନୁଛାଡ଼ି ମିଳିବାକୁ ତୁମରି ଗତିରେ
ଲୋଡୁଅଛି ପ୍ରାଣ ମମ ଆଜି ଏଇ ଚଇତି ରାତିରେ ।"(୫)

ସେହି କବି ସମୟର ପ୍ରଭାବରେ ପ୍ରଗତିବାଦ ଦ୍ୱାରା ଏତେ ମାତ୍ରାରେ ପ୍ରଭାବିତ ହୋଇଛନ୍ତି- ଯେ ଈଶ୍ୱରଙ୍କ ବିରୋଧରେ ବିଷୋଦ୍‌ଗାର କରିବାକୁ ମଧ୍ୟ ପଛାଇ ନାହାନ୍ତି । ମନୁଷ୍ୟ ସଭ୍ୟତାକୁ ଶୋଷଣର ମାୟାଜାଲରୁ ମୁକ୍ତ କରିବା ପାଇଁ ଦୃଢ଼ ସଂକଳ୍ପବଦ୍ଧ ହୋଇ ମାର୍କସ୍ ଯେପରି ଧର୍ମକୁ ଅଫିମନିଶା ବୋଲି ଅଭିହିତ କରିଥିଲେ, କବି କାଳିନ୍ଦୀଚରଣ ମଧ୍ୟ ଜଣେ ସାର୍ଥକ ମାର୍କସ୍‌ବାଦୀ କବି ଭାବରେ ତାଙ୍କରି ପଥ ଅନୁସରଣ କରିବାକୁ ଯାଇ ଧର୍ମକୁ ଏକ 'ଯାଦୁଘର' ବୋଲି ଅଭିହିତ କଲେ ।

"ବୁଦ୍ଧ ଯୀଶୁଙ୍କ ମନ୍ତ୍ର କାହିଁ ବା କାହିଁ ମହମ୍ମଦ ଖୋଦା
ସବୁ ଦିଅଁ ଆଜି ବଳି ଲୋଡ଼ି ଲେଣି ମଣିଷ ହୋଇଛି ବୋଦା ।"(୬)

ଏଠାରେ ଅଫିମ ଓ ଯାଦୁଘର ମଧ୍ୟରେ କୌଣସି ତଫାତ୍ ନାହିଁ । ଅଫିମ ଯେପରି ମଣିଷକୁ ନିଶାସକ୍ତ କରାଏ, ଯାଦୁଘର ମଧ୍ୟ ମଣିଷକୁ ଚିନ୍ତାଶୂନ୍ୟ କରିଦିଏ । ତେଣୁ ମନୁଷ୍ୟ 'ଅଫିମ' ଓ 'ଯାଦୁଘର' ରୂପୀ କ୍ଷଣିକ ପ୍ରଲୋଭନର ବଶବର୍ତ୍ତୀ ନ ହୋଇ ବାସ୍ତବବାଦୀ ହେବା ପାଇଁ କବିଙ୍କର କବିତା ଗୁଡ଼ିକ ଆହ୍ୱାନ ପ୍ରଦାନ କରେ । ଏହି ଚିନ୍ତାଧାରା ଆହୁରି ଶାଣିତ ହୋଇପାରିଛି 'ଛୁରୀଟିଏ ଲୋଡ଼ା' କବିତାରେ । ଆହ୍ୱାନୀ କବି ପ୍ରାଣ ଏକାଗ୍ର ଚିତ୍ତରେ ଦୁନିଆର ଦଳିତ ପୀଡ଼ିତ ପ୍ରାଣକୁ ସମ୍ବୋଧିତ କରିବାକୁ ଯାଇ କହୁଛି –

"ମଣିଷ ମଣିଷ ଶୁଭିଲା ଦୂରରୁ ଡାକ
ଦୁନିଆର ଯେତେ ଦଳିତ ପୀଡ଼ିତ ଯାକ,
ସ୍ପନ୍ଦନ ସେଇ ପୁଲକ ପରାସ ରେଖା
ବଂଧୁର ପଥେ ବଂଧୁସେ ମୋର ଏକା ।" (୭)

କବିତାଟି ନବଭାରତ ପତ୍ରିକାରେ ନଭେମ୍ବର ୧୯୩୯ ରେ 'ଦେବତା ଓ ମଣିଷ' ନାମରେ ପ୍ରକାଶିତ ହୋଇଥିଲା । କବିତାଟିରେ କବି ହୃଦୟର ସମବେଦନା ପ୍ରକାଶିତ । କବିଙ୍କର ବୈପ୍ଳବିକ ଚିନ୍ତାଦର୍ଶ ଚରମ ପର୍ଯ୍ୟାୟକୁ ଉନ୍ନୀତ ହୋଇଛି 'ବାଜିରାଉତ' କବିତାରେ । ସାମନ୍ତବାଦୀ ଢେଙ୍କାନାଳ ରାଜାର ଶୋଷଣ ଅତ୍ୟାଚାର ଦେଖି କବି ଲେଖନୀ ନୀରବ ପାଲଟିଥାନ୍ତା କିପରି ? କବି ବାଜି ରାଉତ, ଓ ସାଥୀ ଲକ୍ଷ୍ମଣ, ନଟ, ରଘୁ, ଗୁରୀ, ହୁରୁଷୀଙ୍କର ଆଦର୍ଶ ଓ ସାହସକୁ ରୂପ ଦେବାକୁ ମଧ ପଶ୍ଚାତ୍‌ପଦ ହୋଇ ନାହାଁନ୍ତି । କବିଙ୍କ ଦୃଷ୍ଟିରେ ବାଜିରାଉତ ଅମର ପାଲଟି ଯାଇଛି ।

"ଆସ ଲକ୍ଷ୍ମଣ ଆସ ନଟ, ରଘୁ, ଗୁରି
ହୁରୁଷୀ ପଧାନ ବଜାରେ ମରଣ ତୂରୀ
ଡର ନାହିଁ ଡର ନାହିଁ
ବାର ବରଷର ବାଜି ରାଉତ ସେ
ମରିନାହିଁ ମରି ନାହିଁ ।" (୮)

ବାଜି ରାଉତ ମୃତ୍ୟୁ ବିଜୟୀ । ମୃତ୍ୟୁକୁ ସେ ଭୟ କରି ନାହିଁ । ତା'ର ସାହସ ନିକଟରେ ମୃତ୍ୟୁ ମଥାନତ କରିଛି । ଅନୁରୂପ କାବ୍ୟିକ ସ୍ୱର ସଚ୍ଚିଦାନନ୍ଦଙ୍କ ବାଜି ରାଉତରେ ମଧ୍ୟ ଶୁଣିବାକୁ ମିଳିଥାଏ । କବି ସଚ୍ଚିଦାନନ୍ଦଙ୍କ ଦୃଷ୍ଟିରେ ବାଜିରାଉତ ସମଆସନର ଅଧିକାରୀ । ସେ ମୃତ୍ୟୁଞ୍ଜୟୀ ନଚିକେତା । ଅମାନିଆ ଅଝଟିଆ ପିଲା ଯିଏକି ଫଉଜର ଗୁଳି, ଗୋଳା କିଛି ମାନି ନଥିଲା । ଯେଉଁ ସମୟରେ ଧୂଳିରେ ବାଲିଘର କରି ଖେଳିବା କଥା, ସେହି ସମୟରେ ଗୁଳି ଆଗେ ଜୀବନକୁ ହସି ହସି ଟେକି ଦେଲା । ଆଜି ମଧ ଜନମାନସରେ ଅମରତ୍ୱ ଲଭିଥିବା ବାଜିରାଉତ କବି ଦୃଷ୍ଟିରୁ ବାଦ୍ ନ ଯାଇ ଆଗାମୀ ସମାଜ ପାଇଁ ପ୍ରେରଣାର ଉତ୍ସ ପାଲଟିଯାଇଛି । ଯଥାରୀତି ସମବେଦନା ବ୍ୟକ୍ତ କରିବା ପରେପରେ, କବି ପ୍ରାଣ ପ୍ରତିକ୍ରିୟାଶୀଳ ହୋଇ ଉଠିଛି ସମାଜର ଅତ୍ୟାଚାରୀ ଗୋଷ୍ଠୀ ବିରୋଧରେ । ତୀବ୍ର ବିରୋଧାଭାସ ପ୍ରକଟିତ କରିବାକୁ ଯାଇ କବି ଗାନ କରିଛନ୍ତି –

"କିଏ ଡକାୟତ୍ କାହା ପାଇଁ ଫାଶୀ
କିଏ ସମାଜର ରୋଗ

କାହା ପିଠି ଲୋଡ଼େ ଜୋତା ଓ ଚାବୁକ୍
କାହା ପାଇଁ ଜେଲ୍ ଭୋଗ ।" (୯)

କବିଙ୍କର ସଂଗ୍ରାମୀ ମନୋବୃତ୍ତି ସଂପର୍କରେ ପ୍ରାବନ୍ଧିକ ଡଃ ନିତ୍ୟାନନ୍ଦ ଶତପଥୀ ମତପ୍ରଦାନ କରି କହନ୍ତି –

"ସମାଜରେ ଥିଲା ନଥିଲାର ସେଇ ଅତିକାୟ ପ୍ରାଚୀର ଉପରେ ସେ ବୋମାମାଡ଼ କରିବାକୁ ଚାହାଁନ୍ତି । ତେଣୁ ସବୁ ସାମ୍ୟବାଦୀ କବିଙ୍କ ଚିନ୍ତାପରି ଶ୍ରେଣୀମୁକ୍ତ ସମାଜ ହିଁ ତାଙ୍କ କବିତାର ଲକ୍ଷ୍ୟନିଷ୍ଠ ଦୃଢ଼ ସିଦ୍ଧାନ୍ତ ।"(୧୦) ସମାଜରେ ପ୍ରତିଦିନ ଥିଲାବାଲା ଓ ନଥିଲାବାଲା ମଧ୍ୟରେ ଚାଲିଥିବା ସଂଘର୍ଷର ଅବସାନ ସହିତ, ଦୁର୍ଗତି ଓ ଦୁର୍ଦ୍ଦିନର ପରିସମାପ୍ତି ପାଇଁ କବି ଆଶାପୋଷଣ କରନ୍ତି । ଆଗାମୀ କାଲିର ଦୁର୍ନୀତିମୁକ୍ତ ସମାଜ ବ୍ୟବସ୍ଥାର ସ୍ୱପ୍ନ ଦେଖୁଥିବା କବି କାଳିନ୍ଦୀ ଚରଣ ସ୍ପଷ୍ଟ ଭାବରେ ଏକ ସିଦ୍ଧାନ୍ତରେ ଉପନୀତ ହୁଅନ୍ତି ତାଂକ କବିତାରେ । ତାହା ହେଉଛି –

"କବିତା ଗଢ଼େ ଏକ ବିରାଟ ସମାଜର
ସବୁରି ପାଇଁ ଯହିଁ ବଖୁରେ ହେଲେ ଘର ।
ସକଳେ ଲଭିବାକୁ ମୁଠାଏ ଦୁଧ ଭାତ
ଯୋଗ୍ୟ ଯେତେ ଯହିଁ ବାଳକ ବାଳିକା ତ
ଦୁଇଟା ଲୁଗା ଜାମା ସବୁରି ପାଇଁ ମିଳେ
ପଢ଼ିବା ପାଇଁ ବାଧା କାହାରି ନାହିଁ ତିଳେ
ବେକାର ରହିବାକୁ ନାହିଁଟି ଅଧିକାର
ସବୁରି ପାଇଁ କାମ ଯୋଗାଏ ସରକାର
କହିବା ପାଇଁ କଥା ସବୁରି ଦାବି ଅଛି
ମୁଁ ସେଇ ସମାଜର କବିତା ବସେ ରଚି ।" (୧୧)

'ଆଗାମୀ' କବିତାରେ ଆଦର୍ଶ ସମାଜ ଗଠନକୁ ନେଇ ବ୍ୟଥିତ କବିପ୍ରାଣ କ'ଣ ସତରେ ପରିତୃପ୍ତି ଲଭିଛି ? ତା'ର ଉତ୍ତର ସମୟ ହିଁ ଦେବ । ସେ ଯାହା ହେଉନା କାହିଁକି କାଳିନ୍ଦୀ ଚରଣ କବିତା ମାଧ୍ୟମରେ ଜୀବନ ପ୍ରତି, ସମାଜ ପ୍ରତି ଯେଉଁ ଦୃଷ୍ଟିଭଂଗୀ ପୋଷଣ କରିଛନ୍ତି, ଆଗାମୀ କାଳର ପ୍ରଗତିବାଦୀ କବିମାନଙ୍କପାଇଁ ଏହା ଯେ ଏକ ନୂତନ ପଥ ଉନ୍ମୋଚନ କରିବ ଏହା ନିଃସନ୍ଦେହରେ କୁହାଯାଇପାରେ ।

## କବି ବୈକୁଣ୍ଠନାଥ ପଟ୍ଟନାୟକ

କବି ଜୀବନର ପ୍ରାଥମିକ ପର୍ଯ୍ୟାୟରେ ରୋମାଣ୍ଟିକ୍ ଚେତନା ସମ୍ବଳିତ କାବ୍ୟକବିତା ରଚନା କରୁଥିବା କବି ବୈକୁଣ୍ଠନାଥଙ୍କ କବିତା ମଧ୍ୟ ବହୁବିଧ ଦିଗ୍‌ବଳୟକୁ

ସ୍ପର୍ଶ କରିପାରିଛି । ୧୯୨୩-୩୦ ମଧ୍ୟରେ ରଚିତ 'ଯୌବନ ପୂଜା', 'ଚିଲିକାରେ ରାତ୍ରୀ', 'ନିର୍ଜନ ଉପବନ', 'କବି ପ୍ରେୟସୀ', 'ପ୍ରଣୟୀର ସ୍ୱପ୍ନ', 'ରାଜଜେମା' ଇତ୍ୟାଦି ରୋମାଣ୍ଟିକ୍ ଭାବୋଚ୍ଛ୍ୱାସରେ ପରିପୁଷ୍ଟ । କାବ୍ୟିକ ଉତ୍ତରଣର ମଧ୍ୟାହ୍ନରେ ଈଶ୍ୱରୀୟ ଚେତନା ପାଠକର ମାନସ ପଟକୁ ରହସ୍ୟାଚ୍ଛନ୍ନ କରିପକାଏ । ଅନ୍ୟ ଭାଷାରେ କହିଲେ ଏହି ପର୍ଯ୍ୟାୟର କବିତାରେ ଆଧାତ୍ମିକ ଚିନ୍ତାଚେତନାର ପରିପ୍ରକାଶ ଘଟିଛି । ଏହା ଧୀରେଧୀରେ ରହସ୍ୟବାଦର ବଳୟ ମଧ୍ୟକୁ ଅନୁପ୍ରବେଶ କରିଛି । କବିଙ୍କର ଏହି ଚିନ୍ତାଧାରା କେତେବେଳେ ପ୍ରକୃତିର ସୌନ୍ଦର୍ଯ୍ୟ ଅବଲୋକନ ମଧ୍ୟରେ ପ୍ରତିଫଳିତ ହୋଇଛି ତ କେତେବେଳେ ଦୁଃଖ, ଶୋକ, ଅନୁଶୋଚନା ମାଧ୍ୟମରେ ମଧ୍ୟ ପ୍ରତିଫଳିତ ହୋଇଛି । ହୁଏତ କବି ବ୍ୟକ୍ତିଗତ ଜୀବନର ଦୁଃଖକୁ ଭୁଲିବା ପାଇଁ ଏପରି ଏକ ଆଧାତ୍ମିକ ଚିନ୍ତାଧାରାର ଆଶ୍ରୟ ନେଇଛନ୍ତି । କେବଳ ଯେ ପାଠକଙ୍କୁ ରହସ୍ୟମୟ ଜଗତରେ ନେଇ ବିଚରଣ କରାଇଛନ୍ତି ତାହା ନୁହେଁ, ତାଙ୍କ କାବ୍ୟ କବିତାରେ ଇତିହାସର କାହାଣୀ ଓ କିମ୍ବଦନ୍ତୀ ମଧ୍ୟ ରୂପ ଲାଭ କରିଛି । 'ଅମ୍ବାପାଲିର ଉତ୍କଣ୍ଠା' 'ବୁଦ୍ଧ ବନ୍ଦନା', 'ମହାନିର୍ବାଣ', 'କିସ୍‌ସା ଗୌତମୀ' ଆଦି କବିତା ଗୁଡ଼ିକ ଏହାର ଗୋଟିଏ ଗୋଟିଏ ଉଜ୍ଜ୍ୱଳ ଦୃଷ୍ଟାନ୍ତ । ସୋପାନ ପରେ ସୋପାନ ଅତିକ୍ରମ କରି ବୈକୁଣ୍ଠନାଥ କାବ୍ୟ ମାନସ ବାସ୍ତବବାଦୀ ଚିନ୍ତାଚେତନା ନିକଟରେ ପହଞ୍ଚି ପାରିଛି । ୧୯୩୪ ମସିହାରେ ଲିଖିତ 'ବନ୍ୟା ବିପ୍ଳବ' ଏବଂ ତତ୍‌ପରେ ଲିଖିତ 'ଯଶୋଲିପ୍‌ସା' କବିତାରେ ସମାଜର ବାସ୍ତବ ପ୍ରତିଛବି ଉତ୍ତୋଳିତ ହେବା ସଂଗେ ସଂଗେ କବି ହୃଦୟର ପ୍ରତିକ୍ରିୟା ମଧ୍ୟ ପ୍ରକାଶ ପାଇଛି ।

ରୋମାଣ୍ଟିକ୍-ଆଧାତ୍ମିକ-ରହସ୍ୟବାଦୀ-ଐତିହାସିକ ଚିନ୍ତାଧାରା ପରେ କବି ବୈକୁଣ୍ଠନାଥଙ୍କ କାବ୍ୟ ମାନସ ବାସ୍ତବବାଦୀ ଚିନ୍ତା ଚେତନା ଦ୍ୱାରା ପ୍ରଭାବିତ ହେବା ପଛରେ ହୁଏତ ତତ୍‌କାଳୀନ ସାମାଜିକ ପରିସ୍ଥିତି ହିଁ ମୁଖ୍ୟତଃ ଦାୟୀ । ସମ୍ଭବତଃ ସେହି କାରଣରୁ କବି 'ପ୍ରଗତିବାଦ' / 'ବାସ୍ତବବାଦ'ର ବନ୍ୟା ମଧ୍ୟରୁ ନିଜକୁ ବାଦ୍ ନଦେବାକୁ ଯଥା ସମ୍ଭବ ଚେଷ୍ଟା କରିଛନ୍ତି । 'ବନ୍ୟା ବିପ୍ଳବ' କବିତାରୁ ଏହା ପ୍ରମାଣିତ ହୁଏ ।

"ସାମ୍ୟବାଦୀ ଦେଶ ସେବୀ ଧନୀ ସୌଧେ ଅଂଗୁଳି ଦର୍ଶାଇ
ତର୍କ କହେ ଧ୍ୱଂସ ବିନା ଦରିଦ୍ରର ଅନ୍ୟ ଗତି ନାହିଁ
ପର ଅଂଗ ପୁଷ୍ଟ ଯେତେ ନିବସନ୍ତି ବିଳାସ ବ୍ୟସନେ
ଗତ୍ୟନ୍ତର ନାହିଁ ଯେବେ ନ ମିଶିବେ ମାଟିର ସେରଂଗେ ।" (୧୨)

ଜଣେ ସାର୍ଥକ ସାମ୍ୟବାଦୀ କବି ଭାବରେ ସମାଜର ବାସ୍ତବ ଚିତ୍ରକୁ କବି ଏଥିରେ ଅଂକନ କରିଛନ୍ତି । ସମାଜର ଦୂରବସ୍ଥା ସାଙ୍ଗକୁ ନିମ୍ନ ବର୍ଗର ଚରିତ୍ରମାନଙ୍କପ୍ରତି

ସମବେଦନା ପ୍ରକଟିତ କରାଇବାରେ କବି ଅଧିକ ଯତ୍ନବାନ ମନେ ହୁଅନ୍ତି । ତେଣୁ କବି ସାମ୍ୟବାଦୀ ଦେଶସେବୀଙ୍କ ମାଧ୍ୟମରେ ବିପ୍ଳବର ସ୍ୱର ଶୁଣାନ୍ତି ସମାଜବାଦୀ ରାଷ୍ଟ୍ର ଗଠନ ପାଇଁ ।

'ବନ୍ୟା ବିପ୍ଳବ' କବିତାରେ ପ୍ରକଟିତ ସାମ୍ୟବାଦୀ ଚିନ୍ତାଦର୍ଶ 'ରିକ୍‌ସାବାଲା'କବିତାରେ ମାନବବାଦରେ ରୂପାନ୍ତରିତ ହୋଇଛି । ବର୍ଷା ହେତୁ ଦରିଦ୍ର ରିକ୍‌ସାବାଲାଟି ଆଶ୍ରୟପାଇଁ ଧନୀବ୍ୟକ୍ତିର ବାରଣ୍ଡାକୁ ଉଠିଯାଇଛି । କିନ୍ତୁ ଗୃହସ୍ଥଙ୍କର ଘରଣୀ ରିକ୍‌ସାବାଲାଟିକୁ ନିଷ୍ଠୁର ଭାବେ ଭର୍ତ୍ସନା କରି ବିଦା କରିଦେଇଛନ୍ତି । ତେଣୁ ରିକ୍‌ସାବାଲାଟି ପ୍ରତି କବି ହୃଦୟର ସମବେଦନା ପ୍ରକାଶ ପାଇବା ସ୍ୱାଭାବିକ୍ । ଯେତେବେଳେ ମନୁଷ୍ୟ ପ୍ରତି ସମବେଦନାର ମାତ୍ରା ଅଧିକ ହୁଏ ସେତେବେଳେ କବି ଚାହେଁ ଏହାର ପରିସମାପ୍ତି । ତେଣୁ କବିଟି ବୈପ୍ଳବିକ ପନ୍ଥାକୁ ଆଦରି ନିଏ । ତେଣୁ ବିପ୍ଳବ ସହିତ 'ମାନବବାଦ' ଅଂଗାଗୀ ଭାବେ ଜଡ଼ିତ । କବିତାଟିର ଅନ୍ୟ ଏକ ଦିଗ ମଧ୍ୟ ରହିଛି । ତାହା ହେଉଛି କବି ଏଠାରେ ଧନୀ ଓ ଦରିଦ୍ର ମଧ୍ୟରେ ଥିବା ତାରତମ୍ୟର ପ୍ରାଚୀରକୁ ଆକ୍ଷେପ କରିଛନ୍ତି । ରିକ୍‌ସାବାଲାଟି ଧନୀ ହୋଇନଥିବାରୁ ତା'ର କୌଣସି ଅଧିକାର ନାହିଁ ଧନୀ ବ୍ୟକ୍ତିର ବାରଣ୍ଡା ଉପରେ ଆଶ୍ରୟ ନେବାପାଇଁ । ସମାଜ ବ୍ୟବସ୍ଥାର ଏହି ଦିଗ ପ୍ରତି କବି ଆକ୍ଷେପ କରିବା ସହିତ ତାରତମ୍ୟର ପ୍ରାଚୀର ହଟାଇ ସାମ୍ୟ, ମୈତ୍ରୀର ବାଣୀ ପ୍ରଚାର କରିଛନ୍ତି 'ଅଗଷ୍ଟ ବିପ୍ଳବ' କବିତାରେ ।

"ରକ୍ତ କରବୀ ଜବା ଫୁଟିବ
  କୋଟି କଣ୍ଠ ଗୀତି ଛୁଟିବ,
ମୈତ୍ରୀ ସାମ୍ୟ ମହାବାଣୀରେ
  ଶୁଣି ମଢ଼ ଶମଶାନୁ ଉଠିବ ।" (୧୩)

କବି ଆଶାପୋଷଣ କରିଛନ୍ତି ବିପ୍ଳବର ମନ୍ଦ୍ରଧ୍ୱନି ସାରା ଜଗତରେ ନିନାଦିତ ହେବ । କୋଟି କଣ୍ଠରୁ ନିସୃତ ଏହି ବଜ୍ର ଗମ୍ଭୀର ଧ୍ୱନି ଶୁଣି ମୃତବ୍ୟକ୍ତି ମଧ୍ୟ ଶ୍ମଶାନରୁ ଜୀବିତ ହୋଇ ପାରିବ । ଅନୁରୂପ କାବ୍ୟ ସ୍ୱର ସଚ୍ଚିଦାନନ୍ଦଙ୍କ ବାଜିରାଉତ କବିତାରେ ମଧ୍ୟ ଦେଖିବାକୁ ମିଳେ । ପଂକ୍ତିଟି ହେଉଛି:-

"କଥା କହ କାଠଯୋଡ଼ୀ, କଥା କହ ଆରେ ହେ ମୂର୍ଦ୍ଧାର ।" ସଚ୍ଚିଦାନନ୍ଦଙ୍କ କାବ୍ୟିକ ପ୍ରତିଭା ଯେମିତି ମୂର୍ଦ୍ଧାର ମାନଙ୍କୁ କଥାକୁହାଇବା ପାଇଁ ଉଦ୍ଦିଷ୍ଟ ଥିଲା, ଅନୁରୂପ ଭାବେ ବୈକୁଣ୍ଠନାଥଙ୍କ ସାମ୍ୟବାଦୀ କାବ୍ୟସ୍ୱର ଏହା ତୁଳନାରେ କିଛି କମ୍ ନଥିଲା । ସମଗ୍ର ବିଶ୍ୱବାସୀଙ୍କୁ ସାମ୍ୟବାଦୀ ଭାବଧାରାରେ ପ୍ଳାବିତ କରିବା ପାଇଁ ଏହା ଉଦ୍ଦିଷ୍ଟ

ଥିଲା । ସବୁଜକବିମାନଙ୍କର ମାନବବାଦୀ ଆଭିମୁଖ୍ୟ ପ୍ରତି ପ୍ରଫେସର୍ ନିତ୍ୟାନନ୍ଦ ଶତପଥୀ ମତବ୍ୟକ୍ତ କରନ୍ତି –

"ମାନବିକତାର ପ୍ରତିଷ୍ଠା ପାଇଁ ବ୍ୟାକୁଳତାରେ ସବୁଜ କବିମାନେ ଏକ ଆଦର୍ଶବାଦୀ ଭୂମିକାରେ ଉପନୀତ । ଦରିଦ୍ର ଦୁଃଖୀ ରଂକୀଙ୍କ ଦୁଃଖରେ ସେମାନଙ୍କ କବିତାରେ ସହାନୁଭୂତିର ସ୍ୱର ଖଣ୍ଡିତ ଭାବେ ପ୍ରକାଶିତ । ମଣିଷର ଦୁଃଖ ଓ ଅଶ୍ରୁରେ ସେମାନେ ଯେତିକି ମ୍ରିୟମାଣ, ମଣିଷର ଗୌରବ ପାଇଁ ସେତିକି ଆକାଂକ୍ଷିତ । ପୁଣି ମଣିଷର ଦୁଃଖ ଓ ଯନ୍ତ୍ରଣାର ସ୍ତର ଭେଦ କରି ସବୁଜ କବିମାନେ ସାମୂହିକ ଭାବେ ସମାଜ ଆଡ଼କୁ ଦୃଷ୍ଟିପାତ କରିଛନ୍ତି ।"(୧୪)

ସୀମିତ ସମୟ ପାଇଁ ଏମାନଙ୍କ କବିତାରେ ପ୍ରଗତିବାଦୀ ଦୃଷ୍ଟିଭଂଗୀ ପ୍ରକାଶ ପାଇଥିଲେ ମଧ୍ୟ ତାହା ଯେ' ପରବର୍ତ୍ତୀ ପୀଢ଼ିଙ୍କୁ ଅନୁପ୍ରେରିତ କରିଛି ଏହାକୁ ଅସ୍ୱୀକାର କରାଯାଇନପାରେ ।

## କୁନ୍ତଳାକୁମାରୀ ସାବତ :-

ସବୁଜ ସାମସମୟିକ କବି କୁନ୍ତଳାକୁମାରୀଙ୍କ କାବ୍ୟିକ ଚେତନା ମଧ୍ୟରେ ଆଧିଭୌତିକ ଚିନ୍ତାଧାରା ଯେମିତି ପ୍ରକାଶ ପାଇଛି, ଜାତୀୟତାବାଦୀ ଚିନ୍ତାଧାରା ମଧ୍ୟ ସେମିତି ପ୍ରକାଶ ପାଇଛି । କିନ୍ତୁ ଅନ୍ତିମ ପର୍ଯ୍ୟାୟରେ କୁନ୍ତଳାଙ୍କ ଚିନ୍ତାଧାରା ବାସ୍ତବବାଦୀ ହୋଇଥିବାର ଲକ୍ଷ୍ୟ କରାଯାଏ । ବ୍ୟକ୍ତିଗତ ଜୀବନରେ ବହୁ ଦୁଃଖଦ ପରିସ୍ଥିତିକୁ ସାମ୍ନା କରିବା ପରେ ତାଙ୍କ ଚିନ୍ତାଧାରା କ୍ରମଶଃ ବାସ୍ତବବାଦୀ ହୋଇଥିବାର ଲକ୍ଷ୍ୟ କରାଯାଏ । କଲିକତା ରହଣୀ କାଳରେ ଲିଖିତ 'ଓଡ଼ିଆଙ୍କ କାନ୍ଦଣା', 'ପତିତାର କାନ୍ଦ'. ଇତ୍ୟାଦି ଏହି ଚିନ୍ତାଧାରାନ୍ୱିତା । ସେହିପରି ଗଡ଼ଜାତ ଅଞ୍ଚଳରେ ଏକ ଦୁସ୍ଥ ଚାଷୀ ଗୋକୁଳି ନାଏକର ଦୁଃଖ ଦୁର୍ଦ୍ଦଶା ଦେଖି କବି ପ୍ରାଣ ବ୍ୟଥିତ ହୋଇ ଉଠିଛି । ସମବେଦନାର ସ୍ୱର ଉଚ୍ଚାରିତ ହୋଇଛି କବି କଣ୍ଠରୁ –

"ଗୋକୁଳି ନାଏକ ଗୋକୁଳି ନାଏକ ସବୁତୁ ସହୁ
ମିଛରେ ଡାକୁ ତୁ ଭଣ୍ଡ ଠାକୁରଙ୍କୁ ହେ ମହାପ୍ରଭୁ
ପଥର ପଥର ଥିବ ଚିରକାଳ, ବୋଳି ସିନ୍ଦୂର
ଡାକିଲେ ତୋ ଦୁଃଖ ଶୁଣିବ କି ସେ ରେ, ହେଲୁ ବା'ତୁଳ ?
ଏ ଦିଅଁ ଦେବତା ଧରମ ତ ସବୁ ତୁମ ବଇରି
ଗରିବ ଦଳିବା ପାଇଁ କିରେ ବାବୁ, ଜନ୍ମ ତାଙ୍କରି ।(୧୫)

ସ୍ୱାଧୀନତା ପୂର୍ବବର୍ତ୍ତୀ କାଳରେ ଗଡ଼ଜାତ ଅଞ୍ଚଳରେ ରାଜା, ଜମିଦାରମାନେ ଯେଉଁ ଅତ୍ୟାଚାର କରୁଥିଲେ, ତା'ର ଏକ କରୁଣଚିତ୍ର 'ଗଡ଼ଜାତ କୃଷକ'ରେ

ପ୍ରତିଫଳିତ । କୃଷକ ଶ୍ରେଣୀର ପ୍ରତିନିଧିତ୍ୱ କରୁଛି 'ଗୋକୁଳି ନାଏକ' । କବୀ କୁନ୍ତଳା ଏଠାରେ ଗୋକୁଳି ନାଏକର ଦୁଃଖରେ ସମବେଦନା ଜଣାଇଛନ୍ତି । ଧର୍ମ, ଭଗବାନ ଓ ଈଶ୍ୱରଙ୍କ ଉପରେ ଅହେତୁକ ଆଶାପୋଷଣ ନ କରିବା ପାଇଁ ପରାମର୍ଶ ଦେଇଛନ୍ତି ସତ, କିନ୍ତୁ ଏଇ କବିତାରେ ଗୋକୁଳି ନାଏକ କଣ୍ଠରେ କବୀ ପ୍ରତିବାଦ କରିବାର ସାମର୍ଥ୍ୟ ଭରି ଦେଇ ନାହାନ୍ତି ! ପ୍ରଗତିବାଦୀ କବି ଅତ୍ୟାଚାରିତର ପକ୍ଷ ସମର୍ଥନ କରିବା ସହିତ ଶୋଷକ ଗୋଷ୍ଠୀ ବିରୋଧରେ ସଂଗ୍ରାମ କରିବା ପାଇଁ ଯଥେଷ୍ଟ ସାହସ ଓ ପ୍ରେରଣା ପ୍ରଦାନ କରେ, ଯାହା କି କୁନ୍ତଳାକୁମାରୀ ତାଙ୍କ ବାସ୍ତବବାଦୀ ଚିନ୍ତାଧାରା ସମ୍ଭୂତ କବିତା ଗୁଡ଼ିକରେ କରିପାରି ନାହାନ୍ତି । ତେଣୁ ପ୍ରଗତିବାଦର ଆଗ୍ନେୟ ଉଚ୍ଛ୍ୱାସ ପରିବର୍ତ୍ତେ ସମବେଦନାର ଏକ ଶାନ୍ତ ସଲୀଳ ଫଲ୍‌ଗୁ ଧାରା ତାଙ୍କ କବିତା ଗୁଡ଼ିକରେ ପ୍ରବାହିତ ହୋଇଥିବାର ଯେ କେହି ପାଠକ ଲକ୍ଷ୍ୟ କରିପାରିବେ ।

## କାନ୍ତକବି ଲକ୍ଷ୍ମୀକାନ୍ତ ମହାପାତ୍ର :-

ଉତ୍କଳ ଭାରତୀ କୁନ୍ତଳାକୁମାରୀ ସାବତ୍‌ଙ୍କ ପରି କାନ୍ତକବି ଲକ୍ଷ୍ମୀକାନ୍ତ ମହାପାତ୍ରଙ୍କୁ ମଧ୍ୟ ଆମେ ଏହି ପର୍ଯ୍ୟାୟଭୁକ୍ତ କରିପାରିବା । ସ୍ୱକୀୟ କାବ୍ୟଚେତନାର ଆଦର୍ଶ ଭାବରେ କାନ୍ତକବି, ଗୋପବନ୍ଧୁଙ୍କୁ ଗ୍ରହଣ କରିଛନ୍ତି । ସେ ସଂପର୍କରେ କବି ସ୍ୱୟଂ ମତବ୍ୟକ୍ତ କରିବାକୁ ଯାଇ କହନ୍ତି –

"ମୋର କବିତା ଲେଖାର ଆଦ୍ୟ ଗୁରୁ ଭାବରେ ସେ ମୋର ପୂଜ୍ୟ । ତାଙ୍କରି କବିତା ମୋର ପ୍ରାଣରେ କବିତାର ଉନ୍ମେଷ କରିଛି । ତାଙ୍କରି ପ୍ରେରଣା ମୋର ପ୍ରାଣରେ କବିତାର ସ୍ଫୂର୍ତ୍ତି ଆଣି ଦେଇଛି । ଏ କଥା ସ୍ୱୀକାର କଲାବେଳେ ଛାତି ମୋର ଫୁଲି ଫୁଲି ଉଠୁଛି, ଗର୍ବରେ ଶିରନତ ହୋଇ ଯାଉଛି ତାଙ୍କରି ପବିତ୍ର ଚରଣରେ ।(୧୬)

ମନପ୍ରାଣରେ ନିଜକୁ ଜଣେ ଜାତୀୟବାଦୀ ଭାବରେ ପରିଚିତ କରାଉଥିବା କାନ୍ତକବିଙ୍କ କବିତାରେ ଉଗ୍ରଜାତୀୟବାଦୀ ଚିନ୍ତାଧାରାକୁ ଲକ୍ଷ୍ୟ କରିପାରିବା ।

"ବନ୍ଦେ ଉତ୍କଳ ଜନନୀ
ବନ୍ଦେ ଉତ୍କଳ ଜନନୀ
ଚାରୁ ହାସମୟୀ ଚାରୁ ଭାଷମୟୀ

ଜନନୀ ଜନନୀ ଜନନୀ ।" ଠାରୁ ଆରମ୍ଭ କରି "କୋଟି କଣ୍ଠେ ଆଜି ଉଠୁରେ ଗମ୍ଭୀରେ ବାଜି ଉତ୍କଳର ଜୟଗୀତି" ପରି କବିତା ଏହାର ସ୍ପଷ୍ଟ ନିଦର୍ଶନ । ଅତିଶୟ ଉତ୍କଳ ପ୍ରୀତି ଓ ଜନ୍ମ ମାଟିର ବନ୍ଦନାରେ ଏହା ମୁଖରିତ । ପ୍ରଗତିବାଦର ସଂଜ୍ଞା, ସ୍ୱରୂପ ଓ ବୈଶିଷ୍ଟ୍ୟ ଦୃଷ୍ଟିରୁ ଦେଖିଲେ, କାନ୍ତକବିଙ୍କ କବିତା ଆମକୁ ନିରାଶ କରିଥାଏ ।

## ଗୋଦାବରୀଶ ମହାପାତ୍ର :-

ଗୋଦାବରୀଶ ମହାପାତ୍ର ମଧ୍ୟ ସବୁଜ ସାମସମୟିକ ସ୍ରଷ୍ଟା ମାନଙ୍କ ମଧ୍ୟରେ ଅନ୍ୟତମ । କବି ସତ୍ୟବାଦୀ ବନ ବିଦ୍ୟାଳୟର ଛାତ୍ରଥିବା ସମୟରେ ଗୋପବଂଧୁଙ୍କ ପ୍ରତ୍ୟକ୍ଷ ସଂସ୍ପର୍ଶରେ ଆସି ଭାରତୀୟ ମୁକ୍ତି ସଂଗ୍ରାମରେ ସକ୍ରିୟ ଅଂଶ ଗ୍ରହଣ କରିଥିଲେ । ତେଣୁ ତାଙ୍କ କବିତା ମଧ୍ୟ ଏହି ଜାତୀୟତାର ବାର୍ତ୍ତା ବହନ କରିଛି । କିନ୍ତୁ ଓଡ଼ିଆ ସାହିତ୍ୟରେ ପ୍ରଗତିବାଦୀ ଧାରାର ଅନୁପ୍ରବେଶ ଘଟିବା ପରେ କବି ଗୋଦାବରୀଶ ମଧ୍ୟ ଏହି ଧାରାରୁ ନିଜକୁ ନିବୃତ୍ତ କରିପାରିନାହାନ୍ତି । ଦୃଷ୍ଟାନ୍ତ ସ୍ୱରୂପ ଏଠାରେ 'ଉଠ କଂକାଳ' ସଂକଳନର 'ଜମିଦାରର ମୃତ୍ୟୁ' କବିତାଟିକୁ ବିଚାରକୁ ନିଆଯାଇପାରେ । ସମାଜବାଦୀ ସମାଜଗଠନ ପାଇଁ କବି ଏଠାରେ ପ୍ରତିଜ୍ଞାବଦ୍ଧ ହୋଇ ଦୃଢ଼ ସ୍ୱରରେ ଘୋଷଣା କରନ୍ତି –

"ମରିଚି ସେ ଚିଲ ଆଜି ଏ ଧରଣୀ ତଳେ
ଗମ୍ବୁଜନଭୁ ତା'ରି ପଡ଼ିଚି ଖସି
ପଥ ଭୁଲେ ଇତିହାସ ଏପରି ଥରେ
ମୁଣ୍ଡା ହୋଇଛି ତା'ର ଶାଣିତ ଅସି ।" (୧୭)

କବିତାରେ କୃଷକର ଦୁଃଖରେ କବି ହୃଦୟ ବ୍ୟଥିତ । ସନ୍ତାପିତ କୃଷକର ପ୍ରାଣରେ ଆଶ୍ୱାସନାର ବାରି ସିଞ୍ଚନ ପାଇଁ ଜମିଦାରୀ ସଭ୍ୟତାର ଦିନେନା'ଦିନେ ବିଲୋପ ଘଟିବ ସେଥିପାଇଁ କବି କବିତା ମାଧ୍ୟମରେ ଉଦ୍ୟମ କରନ୍ତି । ପ୍ରଗତି ଯୁଗର ଅନ୍ୟାନ୍ୟ ବହୁ ସ୍ରଷ୍ଟାମାନଙ୍କ ପରି କବି ଗୋଦାବରୀଶଙ୍କୁ ମହାନ୍ ସାମ୍ୟବାଦୀ ନେତା ଲେନିନ୍‌ଙ୍କ ମୃତ୍ୟୁ ବ୍ୟଥିତ କରିଛି । ଅଶ୍ରୁଳ ଶ୍ରଦ୍ଧାଞ୍ଜଳୀ ଜ୍ଞାପନ କରିବାକୁ ଯାଇ କବି 'ଲେନିନ୍' କବିତାରେ ଉଲ୍ଲେଖ କରନ୍ତି –

"ସାମ୍ୟବାଦର ଯଜ୍ଞ ଦୁଆରେ ତୁମରି ରକ୍ତ କେତନ ତଳେ,
ହେଲେ ସମବେତ ଭକ୍ତ ସାଧକ ବାଧା ବନ୍ଧନ ବିଶୋରୀ ହେଲେ
ଟାଣି ନେଇ କୋଳେ ଚୁମ୍ବନ ଦେଲେ ଅଗ୍ନି ଅଧରେ ମଧୁରେ ହସି ।
ଚକିତ ନୟନେ ଚାହିଁଥିଲେ ଖାଲି ସେଦିନ ପ୍ରଭାତେ ବିଶ୍ୱବାସୀ ।"(୧୮)

ତେଣୁ ସାମ୍ୟବାଦୀ ଆଦର୍ଶ ଯେ କବିଙ୍କୁ ପ୍ରଭାବିତ କରିଥିଲା ତାହା ଏଥିରୁ ସ୍ପଷ୍ଟ ସୂଚିତ ହୁଏ । ପ୍ରଗତିବାଦୀ ବା ସାମ୍ୟବାଦୀ ସ୍ରଷ୍ଟାଚାହେଁ ସାମାଜିକ ଅଂଗୀକାରବଦ୍ଧତା । ଏହା ପୂର୍ଣ୍ଣ ଭାବରେ ସମାଜ ସଂସ୍କାର ଉଦ୍ଦେଶ୍ୟରେ ନିହିତ ହୋଇଥିବା ଆବଶ୍ୟକ । କେବଳ ସେତିକି ନୁହେଁ ତାହା ଅର୍ଥନୈତିକ, ରାଜନୈତିକ କ୍ଷେତ୍ରରେ ମଧ୍ୟ ପରିବର୍ତ୍ତନ

ଚାହେଁ । ଏତଦ୍‌ବ୍ୟତୀତ ପ୍ରଗତିବାଦର ଅନ୍ୟ ଏକ ଦିଗ ମଧ୍ୟ ଗୋଦାବରୀଶଙ୍କ କବିତାରେ ପ୍ରତିଫଳିତ । ତାହା ହେଉଛି ସ୍ୱାଧୀନ ଭାରତ ବର୍ଷର ବହୁବିଧ ସମସ୍ୟା ପ୍ରତି ଦୃଷ୍ଟିପାତ କରିବା ଓ ଏସବୁର ସହଜ ସମାଧାନ ମଧ୍ୟରେ ସାମ୍ୟବାଦର ଆନୟନ ପାଇଁ କବି ଯଥାସମ୍ଭବ ପ୍ରୟାସ ଜାରି ରଖିଛନ୍ତି । ଯାହାର ପ୍ରମାଣ ଆମେ 'ବଂକା ଓ ସିଧା' ସଂକଳନର ମୁଖବଂଧରୁ ପାଇଥାଉ ।

"ସ୍ୱାଧୀନ ଭାରତରେ ଉତ୍କଳୀୟ ଜନତାକୁ ଜାତୀୟ ପ୍ରଗତିରେ କେତେବେଳେ ବଂକା ଓ କେତେବେଳେ ସିଧା ପଥରେ ଆଗେଇ ଯିବା ପାଇଁ ଓ ଅତୀତ ପରଂପରାର ଆଧାରରେ ଏ ଜାତିକୁ ଉଦ୍‌ବୁଦ୍ଧ କରିବାରେ ଚେତାବନୀ ଶୁଣାଇବାରେ ଓ ବଙ୍କିମ ପଥର ବିକଟତାରୁ ଋଜୁ ପଥର ସରଳତା ଆଡ଼କୁ ଜାତିର ଚିନ୍ତାଧାରା ନିୟନ୍ତ୍ରିତ କରିବାରେ ଏସବୁ କବିତା ଜନମତକୁ କେତେଦୂର ପ୍ରଭାବିତ ଓ ପଲ୍ଲବିତ କରିପାରିଛି, ତାହାର ଯଥାର୍ଥ ବିଚାରରେ ହିଁ 'ବଂକା ଓ ସିଧା' ଗ୍ରନ୍ଥର ଯଥାର୍ଥ ମୂଲ୍ୟାଙ୍କନ ହେବ ବୋଲି ମୋର ବିଶ୍ୱାସ ।"(୧୯)

ତେଣୁ ଜଣେ ସାର୍ଥକ ସାମ୍ୟବାଦୀ ସ୍ରଷ୍ଟା ଭାବେ ନିଜକୁ ପ୍ରତିପାଦିତ କରିବା ପାଇଁ କବି ସାହିତ୍ୟରେ ରାଜନୈତିକ ଚେତନାକୁ ରୂପଦେବା ସହିତ ସାମାଜିକ ସଚେତନତାକୁ ମଧ୍ୟ ପ୍ରାଧାନ୍ୟ ଦେଇଛନ୍ତି । ସ୍ୱାଧୀନତା ପରବର୍ତ୍ତୀ କାଳର ସାମାଜିକ ଅବ୍ୟବସ୍ଥା ମଧ୍ୟରୁ ସୃଷ୍ଟ ମନୁଷ୍ୟର ନୈରାଶ୍ୟ, ସ୍ୱପ୍ନଭଂଗକୁ ବହନ କରିଛି 'ଛବିଶ୍ ଜାନୁଆରୀ' କବିତା ।

"ଆଜ୍ଞା ଆଜି ବିଶେଷଜ୍ଞ, ରାମରାଜ୍ୟ ବଂଧା ନାଗ ଫାଶେ
ପାଣ୍ଡିତ୍ୟ ଯାଉଚି ଲୁଚି ଶଠତାର ଘୋର ଇନ୍ଦ୍ରଜାଲେ
ଏତେବେଳେ ହେ ଛବିଶ ? କି ଗାଇବି ତୁମର ବନ୍ଦନା ?
କରଭାରେ ଦରିଦ୍ରର ମେରୁଦଣ୍ଡ ପଡୁଅଛି ଭାଜି
ସାର୍ବଭୌମ ରାଷ୍ଟ୍ର ନାମେ ନ୍ୟସ୍ତ ସ୍ୱାର୍ଥ ରଚେ ବିଡ଼ମ୍ବନା
ଭାଷା ମୋ ବନ୍ଦିନୀ, ଡାକେ ପ୍ରତିବାଦେ ତୁମ ଦ୍ୱାରେ ଆଜି ।" (୨୦)

ସ୍ୱାଧୀନତା ପ୍ରାପ୍ତି ପୂର୍ବରୁ ମନୁଷ୍ୟ ଦେଖିଥିବା ରାମରାଜ୍ୟର ସ୍ୱପ୍ନ କ୍ରମଶଃ ଧୂଳିସାତ୍ ହୋଇଯାଇଛି । ଚତୁର୍ଦ୍ଦିଗରେ ମିଥ୍ୟା, ଶଠତା ରାଜପଣ କରୁଛି । କିନ୍ତୁ ମୂର୍ଖ ମାନବ 'ଛବିଶ୍ ଜାନୁଆରୀ' ଦିନ ପତାକା ଉଡ଼ାଇ ଜାତୀୟ ସଂଗୀତ ଗାଇ ନିଜକୁ ଜଣେ ସାର୍ଥକ ଦେଶପ୍ରେମୀ ରୂପେ ପରିଚିତ କରାଉଅଛି । କିନ୍ତୁ ବାସ୍ତବ କ୍ଷେତ୍ରରେ ସମାଜ ପାଇଁ ସେ କେତେ ଅଂଗୀକାରବଦ୍ଧ ? ସମାଜର ଉନ୍ନତି ପାଇଁ ସେ କେତେ ମାତ୍ରାରେ ପ୍ରତିଶ୍ରୁତିବଦ୍ଧ ତାହା ସେ ନିଜେ ମଧ୍ୟ ଜାଣେ ନାହିଁ, ତା'ର ହୃଦ୍‌ବୋଧ ହୁଏ ଜାତୀୟ ସଂଗୀତ ଗାଇ ପତାକା ତଳେ ନତ ମସ୍ତକ ହେବା ହିଁ ଏକ ଆଦର୍ଶ ଜାତିପ୍ରେମ ।

ସମାଜର ତଥାକଥିତ ଆଧୁନିକ ମଣିଷମାନଙ୍କର ଏତାଦୃଶ ବିଚାରବୋଧ ପ୍ରତି କବି ଗୋଦାବରୀଶ ସିଧାସଳଖ ଅଂଗୁଳି ଉଠାଇଛନ୍ତି । କବିତାରେ ଯଦିଓ ପ୍ରଗତିବାଦର ଆଗ୍ନେୟ ଉତ୍ତାପର ସ୍ପର୍ଶ ପାଠକ ଅନୁଭବ କରିପାରିବେ ନାହିଁ, କିନ୍ତୁ ଜଣେ ସଫଳ ଅଂଗୀକାରବଦ୍ଧ ସ୍ରଷ୍ଟା ଭାବରେ କବି ଏଠାରେ ସଚେତନ ଅଟନ୍ତି । ଶଠତାର ଇନ୍ଦ୍ରଜାଲ ମଧ୍ୟରୁ ସମାଜକୁ ମୁକ୍ତ କରିବା ପାଇଁ ଆଗେଇ ଆସୁଛନ୍ତି । ଏଥିପାଇଁ କବି ଅଗ୍ନିବର୍ଷୀ ଭାଷାକୁ ମାଧ୍ୟମ ଭାବେ ଗ୍ରହଣ ନକରି ନିର୍ଭୀକ ଚିତ୍ତରେ ସହଜ ସରଳ ଭାଷା ମାଧ୍ୟମରେ ରୂପାୟିତ କରିଛନ୍ତି । ଏ ସଂପର୍କରେ କାଳିନ୍ଦୀଚରଣ ପାଣିଗ୍ରାହୀ ମତବ୍ୟକ୍ତ କରନ୍ତି –

"ଘଟଣା ଓ ଚିନ୍ତାର ସଂଘର୍ଷ ଫଳରେ ଜନ୍ମଲାଭ କରେ ବିପ୍ଳବ ଓ ସାହିତ୍ୟ । ସେଥିଲାଗି କବି ଓ ସାହିତ୍ୟିକ ମାତ୍ରେ ବିପ୍ଳବୀ । ତାଙ୍କ ବୈପ୍ଳବିକ ଚିନ୍ତାଧାରା ଓ ଭାଷା ସମାଜର ସ୍ତରେସ୍ତରେ ଆଘାତ କରି ଏହାକୁ ସୁନ୍ଦର, ସ୍ୱାଭାବିକ ଭାବେ ଦେଖିବାକୁ ଲୋଡ଼େ । କୌଣସି କୌଣସି ଲେଖକଙ୍କ ଠାରେ ଏହି ଚିନ୍ତାଧାରାର ଉଗ୍ରତା ଓ ତୀବ୍ରତା ଲେଖକଙ୍କୁ ତାଙ୍କରି ଦ୍ୱାରା ଆକ୍ରାନ୍ତ ବ୍ୟକ୍ତି ବିଶେଷଙ୍କର ଅପ୍ରିୟ କରିପକାଏ ମଧ୍ୟ । ସେଥିପ୍ରତି ଭ୍ରୂକ୍ଷେପ ନ କରି ଯେଉଁ ଲେଖନୀ ଚାଳିତ ହୁଏ, ତାହା ନିର୍ଭୀକ । ଗୋଦାବରୀଶ ଏହିପରି ନିର୍ଭୀକ ଲେଖକ ଥିଲେ । (୨୧)

ଶ୍ରୀଯୁକ୍ତ ମହାପାତ୍ରଙ୍କ କାବ୍ୟିକ ବୈଶିଷ୍ଟ୍ୟରୁ ଏହା ପ୍ରତିପାଦିତ ହୁଏ ଯେ; ସମାଜରେ ପରିଦୃଷ୍ଟ ଅନ୍ୟାୟ ଓ ଶୋଷଣର ପରିସମାପ୍ତି ପାଇଁ ସେ ପ୍ରତିଶ୍ରୁତିବଦ୍ଧ ।

## କୃଷ୍ଣଚନ୍ଦ୍ର ତ୍ରିପାଠୀ:-

ସବୁଜ ସାମସମୟିକ କବିଗୋଷ୍ଠୀ ମଧ୍ୟରେ ଅନ୍ୟ ଜଣେ ସାମ୍ୟବାଦୀ ସାହିତ୍ୟ ସୃଷ୍ଟି କରିଥିବା ସ୍ରଷ୍ଟା ହେଉଛନ୍ତି କବି କୃଷ୍ଣଚନ୍ଦ୍ର ତ୍ରିପାଠୀ । ୧୯୩୦ ମସିହାରୁ ୧୯୭୦ ମସିହା ସୁଦୀର୍ଘ କାଳିକେ ପଦଯାତ୍ରା ମଧ୍ୟରେ କବି ବହୁ ଅନୁଭୂତିକୁ ସାଉଁଟି ଆଣି ତାକୁ ମର୍ଯ୍ୟାଦାବନ୍ତ ସ୍ଥାନ ଦେଇଛନ୍ତି ନିଜସ୍ୱ ସୃଷ୍ଟି ସମ୍ଭାରରେ । ଏତାଦୃଶ ପ୍ରତିଭାବନ୍ତ ଅଧିକାରୀଙ୍କୁ ଓଡ଼ିଆ ସାହିତ୍ୟର ତଥାକଥିତ ସମାଲୋଚକମାନେ ଉପଯୁକ୍ତ ମର୍ଯ୍ୟାଦା ପ୍ରଦାନ କରି ନାହାନ୍ତି । କାରଣ ସ୍ୱରୂପ ଏହା ହୁଏତ କୁହାଯାଇପାରେ ଯେ ପ୍ରକାଶନରୁ ବଞ୍ଚିତ ହୋଇଥିବାରୁ କବି କୃଷ୍ଣଚନ୍ଦ୍ର ଦୀର୍ଘକାଳ ପାଇଁ ସମାଲୋଚକମାନଙ୍କର ଚକ୍ଷୁ ଆଢୁଆଳରେ ରହିଯାଇଛନ୍ତି ।

କାବ୍ୟିକ ଜୀବନର ପ୍ରସ୍ତୁତିପର୍ବ ଆରମ୍ଭ ହୁଏ କବି ଗୋଦାବରୀଶଙ୍କ ଉଚ୍ଚାଙ୍ଗ ସାହିତ୍ୟ ସୃଷ୍ଟି ସଂପର୍କରେ ଅବଗତ ହେବା ପରେ । ତେଣୁ ପ୍ରାରମ୍ଭିକ ପର୍ଯ୍ୟାୟର କବିତା

ଗୁଡ଼ିକରେ ଜାତୀୟତାବାଦର ସ୍ୱର ବାରି ହୋଇପଡ଼େ । ଦୃଷ୍ଟାନ୍ତ ସ୍ୱରୂପ 'ସୈନିକ ସମାଧି' କବିତାଟିକୁ ବିଚାରକୁ ନିଆଯାଇପାରେ ।

"ଜନନୀରେ ଚାହିଁ କହିଲା ସିଏ ପକାଇ ରାଣ
ବିକଳ ଅଥୟ ହୁଅନା ବୋଉ
ମୁଁ ନୁହଇ ଖାଲି ତୋହରି ଧନ,
ଦେଶର ପ୍ରାଣ ମୁଁ ଜାତିର ଟାଣ
ଜନମ ଦେଇଛୁ କରିବାକୁ ଖାଲି ଦେଶର କାମ, X XX X
ଜନମ ମାଟିର ଜୀବନ ରହୁ
କଟି ଯାଉ ପଛେ ମୋହରି ବେକ ।" (୨୨)

କବିତାଟିରେ ବୀର ସୈନିକଟି ତାର ଜନନୀକୁ ଆଶ୍ୱାସନା ଦେଉଛି ବୀରର ଜାତକରେ ପଛଘୁଞ୍ଚା ଦେବା ଲେଖା ନାହିଁ । ଆମ୍ଭେମାନେ ଉତ୍କଳ ମାତାର ସନ୍ତାନ । ଜୀବନ ପଛେ ଚାଲିଯାଉ କିନ୍ତୁ ଦେଶ ମାତୃକାର ଟେକ ରକ୍ଷା ହେଉ । ପ୍ରକୃତ ପକ୍ଷେ ଦେଖିବାକୁ ଗଲେ ଉତ୍କଳୀୟ ବୀରମାନଙ୍କର ବୀରତ୍ୱର ପରାକାଷ୍ଠା ପ୍ରଦର୍ଶନ କରିବାର ଅନ୍ତରାଳରେ କବି ହୃଦୟର ଜାତିପ୍ରୀତିକୁ ମଧ୍ୟ ପାଠକେ ଅନୁଭବ କରିପାରିବେ । ଏହି ଜାତୀୟ ଚେତନା ଯେ ତାଙ୍କ ସୃଷ୍ଟିର ଏକମାତ୍ର ପରିଚୟ ତାହା ନୁହେଁ, ଧୀରେଧୀରେ ତାଙ୍କ ଚିନ୍ତାଚେତନା ମାନବିକତାର ଦିଗ୍‌ବଳୟକୁ ସ୍ପର୍ଶ କରିଛି । 'ମାଟିଦୀପ' 'ରୂପାୟନ' 'ଦିଗ୍‌ବଳୟ' 'ଉତ୍ସ' ଇତ୍ୟାଦି ଅଧିକାଂଶ କବିତା ଏହି ପର୍ଯ୍ୟାୟର ଅନ୍ତର୍ଭୁକ୍ତ । 'ଉତ୍ସ'ର ମୁଖବଂଧରେ କବି ମାନସିଂହଙ୍କ ମନ୍ତବ୍ୟରୁ ଏହା ପ୍ରମାଣିତ ହୁଏ ।

"ସୁଦୂର ପଲ୍ଲୀ ଅଭ୍ୟନ୍ତରରେ, ଆପଣାର ଦରିଦ୍ର କୁଟୀରରେ ନିଃସଂଗ ନିଶୀଥର ମ୍ଳାନ ଦୀପ ଶିଖା ତଳେ ଏଇ କବି, ଦେଶର ସମଗାନକୁ ଅପେକ୍ଷା ନକରି ଯେପରି ନିରବଚ୍ଛିନ୍ନ ଭାବରେ ଅଗଣିତ କବିତାରେ ଦେଶ ଓ ଜାତିର ଦୁଃଖରେ ଅଭିଭୂତ ନିଜର କୋମଳ ଆତ୍ମାକୁ ଢାଳି ଚାଲିଛନ୍ତି, ତାହା ବିଚାର କରି ମୁଁ ମୁଗ୍ଧ ଭାବରେ ଠିଆ ହୋଇଛି ।"(୨୩)

ମାନସିଂହଙ୍କ ମନ୍ତବ୍ୟରୁ ପ୍ରତିପାଦିତ ହୁଏ ଯେ କବିଙ୍କ ମାନବବାଦୀ ସମ୍ବେଦନଶୀଳ ଆତ୍ମା ନିଜଗ୍ରାମ, ଦେଶ ସର୍ବୋପରି ଏକ ବୃହତ୍ତର ମାନବ ସମାଜର ଦୁଃଖ ଦୂର କରିବା ଉଦ୍ଦେଶ୍ୟରେ ଅଭିପ୍ରେତ । ମାନବବାଦୀ କାବ୍ୟ ଚେତନା ଧୀରେଧୀରେ ଉଗ୍ରରୂପ ଧାରଣ କରିଛି ସାମାଜିକ ବୈଷମ୍ୟ ଓ ଶୋଷଣ କ୍ଷେତ୍ରରେ । ଯାହାର ପରିଚୟ ବହନ କରିଛି 'ଅଗ୍ନି ଶଙ୍ଖ' କବିତା ।

"ମୁହିଁ ଦେଖେ ସେଇଠାରେ
ଥାଏ ସ୍ୱାଧୀନତା ଯେଉଁଠାରେ
ମଣିଷ ମଣିଷ ମେଳେ
ଫୁଟେ ନାହିଁ ହିଂସା ବର୍ବରତା
ଯେଉଁଠାରେ ପୃଥିବୀର ସମସ୍ତ ବିବେକ
ଦେଖୁଥିବ ପୃଥିବୀରେ କେହି ନାହିଁ ନିଃସ୍ୱ ବା ନିରେଖ ।" (୨୪)

ସମାଜ ମଧ୍ୟରେ ଏକ ଶୋଷଣ ବିହୀନ ସମାଜର ପରିକଳ୍ପନା କରନ୍ତି କବି କୃଷ୍ଣଚନ୍ଦ୍ର । କେବଳ କଳ୍ପନା ଯେ ସାମ୍ୟବାଦର ପ୍ରତିଷ୍ଠା ପାଇଁ ବାଟ କଢ଼ାଇନିଏ, ତାହାନୁହେଁ ଏଥିପାଇଁ 'ବିପ୍ଳବ' ଯେ ଏକାନ୍ତ ଆବଶ୍ୟକ ଏହାକୁ ଅନୁଭବ କରି କବି ରଚନା କରନ୍ତି 'ବିପ୍ଳବ' କବିତା ।

"ଦେଖାଇ ମୋହର ଆଗ୍ନେୟ ଶିଖା
ଶୋଷକ ଶାସକ ସବୁ ଅହମିକା
ପୋଡ଼ିଜାଳି ମୁହିଁ କରଇ ଭସ୍ମ ସେଇ ଭସ୍ମାବଶେଷ ପରେ
ରଚିଯାଏ ମୋର ସପନର ଅଟ୍ଟାଳି
ବିପ୍ଳବ ମୁଁ ଯେ ବଂଧୁ ଧରାଇ
ସ୍ତରେ ସ୍ତରେ ମୋର ସାମ୍ୟ ସୋହାଗ
କୋଟି ବିକ୍ରମେ ଢାଳି ।" (୨୫)

କବିତାରେ ଅନୁରଣିତ ସାମ୍ୟବାଦୀ କାବ୍ୟସ୍ୱର ତଥାକଥିତ ପ୍ରଗତିବାଦୀ କବିମାନଙ୍କଠାରୁ କୌଣସି ଗୁଣରେ କମ୍ ନୁହେଁ । ଶୋଷକଗୋଷ୍ଠୀର ଶୋଷଣର ପରିସମାପ୍ତି ଘଟାଇବା ପାଇଁ କବି ପ୍ରତିଜ୍ଞାବଦ୍ଧ । ଚତୁର୍ଦ୍ଦିଗରେ ସାମ୍ୟବାଦର ବାଣୀ ପ୍ରଚାର କରିବା ସହିତ ଶୋଷିତ ଜନତାକୁ ନୂତନ ଜୀବନ ଭରିଦେବାପାଇଁ କବିତାଟି ସଂକଳ୍ପବଦ୍ଧ । ଏହି ବିପ୍ଳବୀ କବିତା ସଂପର୍କରେ ପ୍ରାବନ୍ଧିକ ଡଃ ନିତ୍ୟାନନ୍ଦ ଶତପଥୀଙ୍କ କହନ୍ତି :–

"ମୁକ୍ତିର ଅଗ୍ରଣୀ ଏଇ ବିପ୍ଳବୀ କେତେ ପତିତ, ପୀଡ଼ିତ, ପାତିତର ଆଖିରୁ ଆକୁଳ ଅଶ୍ରୁକୁ ପୋଛିଦେବ । ଏକ ଭସ୍ମାବଶେଷ ଉପରେ ସ୍ଥାପନ କରିବ ସ୍ୱପ୍ନର ଅଟ୍ଟାଳି – ସାମ୍ୟବାଦ । ମୁମୂର୍ଷୁ ମଣିଷକୁ ନୂତନ ରୂପ ଓ ପ୍ରାଣ ଦାନ କରିବ । ଚତୁର୍ଦ୍ଦିଗରେ କେବଳ ନୂତନ ଜୀବନର ଉଚ୍ଛଳ ସୋହାଗ ଓ ନବଲାବଣ୍ୟର ଠାଣି ଖେଳିଯିବ । ଆଶକ୍ତ ପଙ୍ଗୁ ମଣିଷର ଧମନୀରେ ନୂତନ୍ ରକ୍ତ ପ୍ରବାହ ଛୁଟିବ ।"(୨୬)

ପରିଶେଷରେ ଶ୍ରୀଯୁକ୍ତ ତ୍ରିପାଠୀଙ୍କ କାବ୍ୟସ୍ୱର ସଂପର୍କରେ ଏତିକି କୁହାଯାଇପାରେ ଯେ, ଏତାଦୃଶ ସାମ୍ୟବାଦୀ ଭାବଚେତନା ସମ୍ବଳିତ କବିତା ରଚନା କରିଥିବା କବିଙ୍କୁ ଓଡ଼ିଆ ସାହିତ୍ୟରେ ପ୍ରଗତିବାଦୀ କବିର ଯଥାଯଥ ମର୍ଯ୍ୟାଦା ପ୍ରଦାନ କରାଯାଇନାହିଁ । କବିଙ୍କର କବିତା ଯେ ସାମାଜିକ ଅଂଗୀକାରବଦ୍ଧତାର ଏକଏକ ସାର୍ଥକ ପ୍ରତିନିଧି ଏହାକୁ ଅସ୍ୱୀକାର କରାଯାଇନପାରେ ।

ଉପରୋକ୍ତ ଆଲୋଚନାରେ ପର୍ଯ୍ୟବେସିତ ସବୁଜ ଯୁଗର ସାଧକ କାଳିନ୍ଦୀ ଚରଣ, ବୈକୁଣ୍ଠ ନାଥଙ୍କଠାରୁ ଆରମ୍ଭ କରି କୁନ୍ତଳା କୁମାରୀ, ଗୋଦାବରୀଶ, କୃଷ୍ଣଚନ୍ଦ୍ରଙ୍କ ପର୍ଯ୍ୟନ୍ତ କବିଗଣଙ୍କ କବିତାରେ ପ୍ରଗତିବାଦର ଯେଉଁ ସ୍ୱର ଅନୁରଣିତ ହୋଇଥିଲା ତାହାକୁ ଆମେ ଏ ଯୁଗର ପ୍ରଥମ ପାବଚ୍ଛ ଭାବେ ଗ୍ରହଣ କଲେ ଅତ୍ୟୁକ୍ତି ହେବ ନାହିଁ । ଏମାନଙ୍କ କବିତା ଯେ ପରବର୍ତ୍ତୀ ସମୟରେ ଏକ ବୃହତ୍ତର ବୈପ୍ଲବିକ ପୃଷ୍ଠଭୂମି ନିର୍ମାଣ କରିଛି ଏହାକୁ ଅସ୍ୱୀକାର କରାଯାଇନପାରେ ।

## ସବୁଜ ଯୁଗର ସାମସାମୟିକ ବିଶିଷ୍ଟ ପ୍ରଗତିବାଦୀ କବି

### କବି ସଚ୍ଚିଦାନନ୍ଦ ରାଉତରାୟ

କ୍ରାନ୍ତିର କାଳଜୟୀ କଣ୍ଠସ୍ୱର ଉତ୍ତୋଳନ କରିଥିବା କାବ୍ୟକର୍ମୀ ସଚ୍ଚିଦାନନ୍ଦ ରାଉତରାୟ ମହାକାଳର ସ୍ରୋତରେ ମେଲାଣି ନେଇ ସାରିଛନ୍ତି ଅଗଣିତ ଜନତାଙ୍କ ନିକଟରୁ । ବହ୍ନିମାନ ପୁରୁଷ ଶ୍ରୀଯୁକ୍ତ ରାଉତରାୟ ଯାହାଙ୍କର କାବ୍ୟିକ ପ୍ରତିଭା କାଠଯୋଡ଼ି ନଦୀକୁ କଥା କୁହାଇବା ପାଇଁ ଥିଲା ଉଦ୍ଦିଷ୍ଟ, ଯାହାଙ୍କର କବିତା ମୃର୍ଦ୍ଦାର ମାନଙ୍କୁ ବାଧ କରୁଥିଲା ସ୍ୱର ଉତ୍ତୋଳନ କରିବା ପାଇଁ, ଏପରି ପ୍ରତିଭାଦୀପ୍ତ ଦର୍ଶକଙ୍କର ରକ୍ତଶିଖାସ୍ନାତ ଅଜସ୍ର ମୁକ୍ତି ଗୀତିକା ଯାହାକି ଭବିଷ୍ୟତକାଳ ପାଇଁ ପାଥେୟ ହୋଇରହିଯାଇଛି । ଏତାଦୃଶ ବିରଳ ପ୍ରତିଭାର ଅଧିକାରୀ କବି ରାଉତରାୟ ଯାହାଙ୍କର ସାଧନା, ଅଗଣିତ ପାଠକଙ୍କୁ ବାଧ କରେ ତାଙ୍କ ପାଦତଳେ ଶିର ନୁଆଁଇବା ପାଇଁ ଶତ ସହସ୍ରବାର । ଏହି ମହାନ୍ କବି ଖୋର୍ଦ୍ଧା ଜିଲ୍ଲାର ଗୁରୁଜଂଗ ଗ୍ରାମରେ ୧୯୧୬ ମସିହା ମେ’ ମାସ ୧୩ ତାରିଖ ଦିନ ଜନ୍ମଗ୍ରହଣ କରିଥିଲେ । ଯେଉଁ ଗୁରୁଜଂଗ ଗାମ ମଧ୍ୟ ଦେଇ ଯାତ୍ରା କଲାବେଳେ, ଆଜି ମଧ୍ୟ ସଚ୍ଚିରାଉତରାୟଙ୍କର ସ୍ମୃତିକୁ ପୁନଃଜାଗରିତ କରିଥାଏ । ଝାଟିମାଟି କାଦୁଅ ଛିଞ୍ଚା ଘର, ପାହାଡ଼ି ଝରଣାର କୁଳୁ କୁଳୁ ସ୍ୱର, ଶ୍ମଶାନ, ତୋଟାମାଳ, ଗାଈଆଳ ପିଲାର ଗାଈ ଗୋଠ, ରାସ୍ତାର ଉଭୟ ପାର୍ଶ୍ୱର ସବୁଜ ଧାନ କିଆରୀର ଅପୂର୍ବ ରୂପ ସମ୍ଭାର, ଦୂର ପର୍ବତର ପାଦ ଦେଶରୁ ଭାସି ଆସୁଥିବା ଗାଈଆଳ ପିଲାର ମୁରଲୀ ସ୍ୱନ, ଶାନ୍ତ-କାନ୍ତ-କମନୀୟ ପରିବେଶ ଚକ୍ଷୁର ପଟଳରେ ମାୟାର ଅଂଜନ ଲେପନ

କରିଦେଇ କିଛି କ୍ଷଣ ପାଇଁ ଶ୍ରୀଯୁକ୍ତ ରାଉତରାୟଙ୍କର କାବ୍ୟିକ ସ୍ମୃତିକୁ ପାଠକ ମନରେ ପୁନଃଜାଗରିତ କରାଇଥାଏ ।

ଏକାଧାରରେ ଏକ ନୂତନ ସମୟ ଖଣ୍ଡର ପୁରୋଧା, ଯୁଗ ପ୍ରବର୍ତ୍ତନକାରୀ କବି, ଗାଳ୍ପିକ, ଔପନ୍ୟାସିକ ଓ ପ୍ରାବନ୍ଧିକ । ପ୍ରତିଭା ବିକାଶର ଅରୁଣୋଦୟ କାଳରୁ ଦୀର୍ଘ ନବେଦଶକ ପର୍ଯ୍ୟନ୍ତ ତାଙ୍କର ଲେଖନୀ ଥିଲା ଚଳଚଞ୍ଚଳ । ଦୀର୍ଘ ବର୍ଷର ସାରସ୍ୱତ ସାଧନା ବଳରେ ଓଡ଼ିଆ ସାହିତ୍ୟରେ ଯେଉଁ ସ୍ଥାପତ୍ୟ ନିର୍ମାଣ କରିଯାଇଛନ୍ତି, ତାହା ତାଙ୍କୁ ଆଜି ମଧ୍ୟ ଅଗଣିତ ପାଠକମାନଙ୍କର ହୃଦୟରେ ସ୍ଥାନ ଦେଇପାରିଛି ।

କବି ସଚ୍ଚିଦାନନ୍ଦଙ୍କ ବିପୁଳ କୀର୍ତ୍ତି ସମ୍ଭାରର ପୃଷ୍ଠପଟରେ ଥିଲା ସାମସମୟିକ କାଳରେ ଦେଖା ଦେଇଥିବା ଆନ୍ଦୋଳନର ଜୀବନ୍ତ ଚିତ୍ର । ବାଲ୍ୟ କାଳରୁ ସ୍ୱାଧୀନତା ସଂଗ୍ରାମରେ ସକ୍ରିୟ ଅଂଶ ଗ୍ରହଣ କରିଥିଲେ ଏବଂ ଓଡ଼ିଶାର ଗଡ଼ଜାତ ଅଞ୍ଚଳରେ ରାଜା ଓ ଜମିଦାରମାନଙ୍କ ଦ୍ୱାରା ଯେଉଁ କୁଶାସନ ଘନୀଭୂତ ହୋଇଥିଲା ଏହା ବିରୋଧରେ କବି ଆନ୍ଦୋଳନ ଆରମ୍ଭ କରିଥିଲେ । ସେହି ସମୟରେ ସମଗ୍ର ଦେଶରେ ମାର୍କସ୍‌ବାଦର ପ୍ରଭାବ ଅନୁଭୂତ ହେଉଥାଏ । ୧୯୩୬ ମସିହାରେ କବି କଲିକତାରେ ଆଇ.ଏ. ପଢୁଥିଲା ବେଳେ ବଂଗଳା ସାହିତ୍ୟ ମାଧ୍ୟମରେ ମାର୍କସ୍‌ବାଦୀ ଚିନ୍ତାଧାରାର ଘନିଷ୍ଠ ସଂସ୍ପର୍ଶରେ ଆସିଥିଲେ । ଏହା ବ୍ୟତୀତ ତତ୍‌କାଳୀନ ସମୟରେ ମୁଣ୍ଡ ଟେକିଥିବା ଛାତ୍ର ଆନ୍ଦୋଳନରେ ମଧ୍ୟ ସେ ସକ୍ରିୟ ଅଂଶ ଗ୍ରହଣ କରିଥିଲେ । ଏଥିପାଇଁ ତାଙ୍କୁ ଦୁଇ ଦୁଇ ଥର କାରାବରଣ କରିବାକୁ ମଧ୍ୟ ପଡ଼ିଥିଲା । ୧୯୩୭ ମସିହାରେ କଲିକତାରେ ଥିବା ସମୟରେ ରାଜନୈତିକ ଷଡ଼ଯନ୍ତ୍ରର ଶିକାର ହୋଇ ବନ୍ଦୀ ହେବା ପରେ ସେ କଟକ ଚାଲି ଆସନ୍ତି ଓ ରେଭେନ୍‌ସା ମହାବିଦ୍ୟାଳୟରେ ଅଧ୍ୟୟନ କରନ୍ତି । ଓଡ଼ିଶାର ରହଣି ତାଙ୍କୁ ଗଡ଼ଜାତ ଆନ୍ଦୋଳନ ଓ ଛାତ୍ର ଆନ୍ଦୋଳନ ସହିତ ପ୍ରତ୍ୟକ୍ଷ ଭାବରେ ସଂପୃକ୍ତ କରାଇବା ପାଇଁ ଖୋରାକ୍ ଯୋଗାଇଥିଲା । ନିଖିଳ ଭାରତୀୟ କୃଷକ ସଂଘ ଓଡ଼ିଶା ଶାଖାର ସଂପାଦକ ଭାବରେ ମଧ୍ୟ ତାଙ୍କୁ ନିଯୁକ୍ତ କରାଯାଇଥିଲା । ଏହି ସମୟ ମଧ୍ୟରେ ଓଡ଼ିଶାରେ ୧୯୩୫ ମସିହାରେ 'ନବଯୁଗ ସାହିତ୍ୟ ସଂସଦ' ୧୯୩୬ ମେ' ମାସରୁ ପ୍ରକାଶିତ ହେଉଥିବା 'ଆଧୁନିକ' ପତ୍ରିକାର ନିବିଡ଼ ସଂସ୍ପର୍ଶରେ କବି ଆସିସାରିଥିଲେ । ତେଣୁ କବି ସଚ୍ଚିଦାନନ୍ଦଙ୍କର ନିର୍ବାହିତ ଜୀବନଚର୍ଯ୍ୟାର ଉପରୋକ୍ତ ଅଂଶ (୧୯୩୫-୧୯୩୯)କୁ ଅବଲୋକନ କଲେ ଏଥିରୁ ସ୍ପଷ୍ଟ ପ୍ରମାଣିତହୁଏ ଯେ, ଓଡ଼ିଆ ସାହିତ୍ୟ କ୍ଷେତ୍ରରେ 'ନବଯୁଗ ସଂସଦ' ଓ 'ଆଧୁନିକ' ପତ୍ରିକା ମାଧ୍ୟମରେ ଯେଉଁ ନୂତନ ବୈପ୍ଳବିକ କାବ୍ୟଧାରାର ସୂତ୍ରପାତ ହୋଇଥିଲା କବି ରାଉତରାୟ ମଧ୍ୟ ଏହାର ପ୍ରତିନିଧିତ୍ୱ କରିଥିଲେ । ତେଣୁ ବର୍ତ୍ତମାନ ରାଉତରାୟ କାବ୍ୟ ମାନସରେ ଏହି ଚିନ୍ତାଦର୍ଶର ପ୍ରତିଫଳିତ କିପରି ଘଟିଥିଲା ତାହା ଏଠାରେ ଆଲୋଚ୍ୟ ।

୧୯୨୯ ମସିହାରୁ ଶ୍ରୀଯୁକ୍ତ ରାଉତରାୟ କବିତା ରଚନା କ୍ଷେତ୍ରରେ ମନୋନିବେଶ କରନ୍ତି । ସେ ସମୟରେ ତାଙ୍କର କବିତାଗୁଡ଼ିକ 'ନବୀନ', 'ସହକାର', 'ଉତ୍କଳ ସାହିତ୍ୟ' ଆଦି ପତ୍ରିକାରେ ଆତ୍ମ ପ୍ରକାଶ କରୁଥିଲା । ପ୍ରାଥମିକ ପର୍ଯ୍ୟାୟରୁ କବିଙ୍କ ମାନସ ସମ୍ଭୁତ କବିତା ଗୁଡ଼ିକରେ ସବୁଜ ଯୁଗୀୟ କାବ୍ୟିକ ପ୍ରତିଛବି ପ୍ରତିଫଳିତ ହେଉଥିବାର ସ୍ପଷ୍ଟ ଅନୁମିତ ହୁଏ । ଏଠାରେ ଆଲୋଚକ କୃଷ୍ଣଚନ୍ଦ୍ର ପାଣିଗ୍ରାହୀଙ୍କର ମତାମତଟି ଉପରୋକ୍ତ ମତାମତର ଯଥାର୍ଥତା ଦାବି କରେ । ଶ୍ରୀଯୁକ୍ତ ପାଣିଗ୍ରାହୀଙ୍କ ମତରେ-

"ସେ ସଂପୂର୍ଣ୍ଣ ରୂପେ ସବୁଜ ଶୈଳୀକୁ ଅନୁସରଣ କରିଛନ୍ତି ।" ("ଆଧୁନିକ ଓଡ଼ିଆ ସାହିତ୍ୟରେ ବାଣିଜ୍ୟ ମୂଲ୍ୟ" କୃଷ୍ଣଚନ୍ଦ୍ର ପାଣିଗ୍ରାହୀ, 'ଶଂଖ' ୧ମ୍ ବର୍ଷ- ୭ମ ସଂଖ୍ୟା- ଜାନୁୟାରୀ ୧୯୪୫) ପ୍ରକୃତ ପକ୍ଷେ ଆମେ ମଧ୍ୟ ଯଦି ସଚ୍ଚିଦାନନ୍ଦଙ୍କର ପ୍ରାଥମିକ ପର୍ଯ୍ୟାୟର ସୃଷ୍ଟି ସମ୍ଭାରକୁ ଅବଲୋକନ କରିବା ଉକ୍ତିର ସତ୍ୟତା ଦୃଷ୍ଟି ସମ୍ମୁଖକୁ ଆସିଯିବ ।

(କ) "ଆଜି ଏ ଭାଦର ପ୍ରାତେ
ସବୁଜ ସୁନ୍ଦର ପଥେ
କିଏ ଗୋ ଦେବତା ଆସିଛ ମୋ ପ୍ରାଣେ
ଭାସି ଏ ବରଷା ସ୍ରୋତେ ।"

('ଭାଦ୍ର-ଅତିଥି' - କବିତା)

(ଖ) "ଆକାଶେ ବାର ବାର ମୃତ୍ୟୁ ମାଦଳ
ଯାତ୍ରା କଲ ଆଦି ରୁଦ୍ର ପାଗଳ
ଝଟିକା ଝମ ଝମ ଅଧିରେ ଗଲା ଡାକି
ନୀରବେ ନଇଁ ଆସେ ଅଳସ ମୋର ଆଖି ।"

('ପ୍ରଳୟର ଅଭିସାର' କବିତା)

ଠିକ୍ ସେହିପରି ଉକ୍ତ ସମୟ ଖଣ୍ଡ ମଧ୍ୟରେ କବିଙ୍କର ନିସୃତ 'ଜୀବନ କବିତା', 'ଶେଷ ରାତ୍ରି' ଇତ୍ୟାଦି କବିତା ସବୁଜ ଯୁଗୀୟ ପ୍ରଭାବରୁ ମୁକ୍ତ ହୋଇପାରି ନାହିଁ । ଉକ୍ତ କବିତାଗୁଡ଼ିକ ଉତ୍କଳ ସାହିତ୍ୟ ପତ୍ରିକାର ୩୬ ଭାଗ ୪ର୍ଥ ସଂଖ୍ୟା ଓ ୩୯ଶ ଭାଗ, ୧୧ଶ ସଂଖ୍ୟାରେ ପ୍ରକାଶିତ ହୋଇଥିଲା ।

କିଶୋର ସୁଲଭ ତାରୁଣ୍ୟର ଉଚ୍ଛ୍ୱାସ ଓ ଅଜସ୍ର ଆବେଗ, ଅନୁଭୂତିକୁ ନେଇ ୧୯୩୧ ମସିହାରେ ଆତ୍ମପ୍ରକାଶ କରେ 'ପାଥେୟ' । 'ପାଥେୟ'ସଂକଳନରୁ କବିଙ୍କର

ବହୁମୁଖୀ କାବ୍ୟିକପ୍ରତିଭାର ପରିଚୟ ମିଳିଥାଏ । ସବୁଜ ଯୁଗୀୟ ରୋମାଣ୍ଟିକ ଭାବାବେଗ ସହିତ ରବୀନ୍ଦ୍ର କାବ୍ୟ ମାନସର ପ୍ରତିଫଳନ ଏବଂ ଉଦାର ନୈତିକ ମାନବତାବାଦର ଏକ ମିଶ୍ରିତ ରୂପ ଅବଲୋକନ କରାଯାଇଥାଏ । ସଂକଳିତ କବିତାଗୁଡ଼ିକ ପାଠ କଲେ ଏକ ଗଭୀର ଅଲୌକିକ ରହସ୍ୟାଚ୍ଛାଦିତ ଆଧ୍ୟାତ୍ମିକ ଅନୁଭବ ସାଙ୍ଗକୁ ସଂସାରର ଯାବତୀୟ ଦୃଶ୍ୟମାନ ପଦାର୍ଥଠାରୁ ନିଜକୁ ଯଥାସମ୍ଭବ ଦୂରେଇ ରଖି ଏକ ଅଲୌକିକ ଜଗତ ମଧ୍ୟରେ ବିଚରଣ କରାଇବାର ପ୍ରଚେଷ୍ଟା, ପାଠକକୁ ମୋହାବିଷ୍ଟ କରାଇଥାଏ । ବିଚିତ୍ରବର୍ଣ୍ଣା ପୃଥିବୀ କବି ଦୃଷ୍ଟିରେ ପାଲଟିଯାଏ ଏକ ପାନ୍ଥଶାଳାରେ । ଯେଉଁଠାରେ ଅଗଣିତ ଅତିଥି ମାନଙ୍କର ଚଳପ୍ରଚଳ ଅହରହ ଲାଗିରହିଥାଏ । ଅତିଥିମାନଙ୍କର ଏହି ଆଗମନ ଓ ପ୍ରତ୍ୟାଗମନ ଭିତରେ ଲୁକ୍‌କାୟିତ ହୋଇରହିଥାଏ ପୃଥିବୀର ସେହି ଚିରନ୍ତନ ସତ୍ୟ- 'ମନୁଷ୍ୟର ଜନ୍ମ, ତାର ଲୀଳାଖେଳା ଓ ଶେଷରେ ଇହଧାମରୁ ବିଦାୟ ।' କବିଙ୍କ ଭାଷାରେ-

"ଏ ଦୁନିଆ ପାନ୍ଥଶାଳା
ନିତି କେତେ ପାନ୍ଥ
ଆସୁଛନ୍ତି ଭିକ୍ଷୁ ପରି ଶୂନ୍ୟ କରି ହାତ
ଯିବେ ପୁଣି ଏକା ଶୂନ୍ୟେ ଫେରି ନିଜ ପଥେ
ମିଳନର ଆଡ଼ମ୍ବର ଲିଭିଯିବ ପଥେ ।"(୨୭)

(ସଚ୍ଚିଦାନନ୍ଦ ରାଉତରାୟ : ପାଥେୟ)

'ପାଥେୟ' ସଂକଳନଟି କେବଳ ଯେ ଏହି ଚିନ୍ତାଦର୍ଶକୁ ସ୍ଥାନିତ କରିଛି ତାହା ନୁହେଁ, ପରବର୍ତ୍ତୀ କାଳରେ ତୀକ୍ଷ୍ଣ, ଶାଣିତ ରୂପ ଧାରଣ କରିଥିବା ବୈପ୍ଳବିକ ଚିନ୍ତାଦର୍ଶଟି ସମ୍ଭୁତ ହୋଇଛି ଏହି 'ପାଥେୟ' ନିକଟରୁ । ଦୁଃଖୀ, ଦରିଦ୍ରର ଆର୍ତ୍ତ ଚିତ୍କାର କବିର ବକ୍ଷକୁ ଖଣ୍ଡ ବିଖଣ୍ଡିତ କରିପକାଉଛି । ତେଣୁ କବି ଏଠାରେ ସ୍ମରଣ କରୁଛନ୍ତି ପୁଣ୍ୟାତ୍ମା ଗୋପବନ୍ଧୁଙ୍କୁ, ଯାହାଙ୍କର ହୃଦୟ ଅବିରତ କ୍ରନ୍ଦନ କରୁଥିଲା ଦରିଦ୍ରମାନଙ୍କ ପାଇଁ । କବିଙ୍କ ବର୍ଣ୍ଣନାରେ-

"ଦରିଦ୍ରର ଡାକ ଆଜି ବାଜୁଛି ମୋ ପ୍ରାଣେ
ଦୁର୍ବଳର ହାହାକାର ବକ୍ଷ ମୋର ହାଣେ ।
ଦେଖିଛି ତୁମକୁ ମୁହିଁ ଦରିଦ୍ର ଗହଣେ
ପୀଡ଼ିତର ଶଯ୍ୟା ପାର୍ଶ୍ୱେ ଦୁଃଖର କ୍ରନ୍ଦନେ ।"(୨୮)
(ସଚ୍ଚିଦାନନ୍ଦ ରାଉତରାୟ : ପାଥେୟ- କବିତା ସଂକଳନ)

କାବ୍ୟିକ ପ୍ରତିଭାର ଉନ୍ମେଷ- 'ପାଥେୟ', ପରେ ପରେ ୧୯୪୧ ମସିହାରେ

ସ୍ୱକୀୟ ଜନ୍ମମାଟିର ଜୟଗାନ କରିବା ସଂଗେ ସଂଗେ ପଲ୍ଲୀ ଜୀବନର ନିଖୁଣ ଚିତ୍ର ସାଉଁଟିବାରେ ସକ୍ଷମ ହୋଇଛନ୍ତି 'ପଲ୍ଲୀଶ୍ରୀ' ସଂକଳନରେ । କବିଙ୍କ ମତରେ 'ଜନନୀ, ଜନ୍ମଭୂମି ସ୍ୱର୍ଗ ଠାରୁ ମଧ୍ୟ ମହାନ୍, (ଜନନୀ ଜନ୍ମଭୂମିଶ୍ଚ ସ୍ୱର୍ଗାଦପି ଗରୀୟସୀ) ଭୂଗୋଳ, ଇତିହାସରେ ହୁଏତ ତା'ର ନାମ ନଥାଇପାରେ କିନ୍ତୁ ମୋ ଜନ୍ମମାଟି ମୋ ପାଇଁ ସରଗ ତୁଲ୍ୟ ।' ଏହିପରି ଏକ ସ୍ୱର୍ଗୀୟ ଭାବଧାରାକୁ ବହନ କରି ଆଜି ମଧ୍ୟ ଜନ ମାନସରେ ଜନପ୍ରିୟ 'ପଲ୍ଲୀଶ୍ରୀ' ସଂକଳନସ୍ଥ 'ଛୋଟ ମୋର ଗାଁ'ଟି କବିତାର ପ୍ରିୟ ପଦ ।

"ଛୋଟ ମୋର ଗାଁଟି / ଭୂଗୋଳ ପୋଥି ପତରେ ପଛେ
ନଥାଉ ତା'ର ନାଁଟି / ମାଟିର ସେଇ ସରଗ ମୋର /
ସେଇଠି ଅଛି ମୋ ଷଠୀଘର... ।" (୨୯) ('ଛୋଟ ମୋର ଗାଁ ଟି' - 'ପଲ୍ଲିଶ୍ରୀ'

ଗ୍ରାମୀଣ ପରିବେଶର ନିଖୁଣ ବର୍ଣ୍ଣନା ପାଠକକୁ ସ୍ୱପ୍ନ, କଳ୍ପନା ଓ ଭାବ ପ୍ରବଣତାର ରାଜ୍ୟରେ କିୟତ୍‌କାଳ ଅବଗାହିତ କରାଇବା ପରେ କବିଙ୍କର କାବ୍ୟିକ ଚେତନା ମଧ୍ୟରେ ଏକ ନୂତନ କାବ୍ୟ ସ୍ୱରକୁ ପାଠକ ଅନୁସନ୍ଧାନ କରିଥାଏ । ପରିବର୍ତ୍ତନର ପ୍ରାରମ୍ଭିକ ସୂଚନା ୧୯୩୫ ମସିହାରେ ରଚିତ ହୋଇଥିବା 'ଶ୍ରମିକର ଶ୍ରୀପଞ୍ଚମୀ', 'ଶ୍ରମିକ କବି', ୧୯୩୬ ମସିହାରେ ରଚିତ ହୋଇଥିବା 'ବାର୍ତ୍ତା', 'ସହର ତଳିର ଉଷା' ଇତ୍ୟାଦି କବିତାରୁ ମିଳିଥାଏ । ଉପରୋକ୍ତ କବିତାମାନଙ୍କରେ କବି ଶୋଷିତ, ପୀଡ଼ିତ ପ୍ରାଣର ବ୍ୟଥାକୁ ହୃଦୟଙ୍ଗମ କରିବା ସହିତ ସମାଜରେ ଶୋଷକ ଓ ଶୋଷିତ ମଧ୍ୟରେ ଥିବା ତାରତମ୍ୟର ପ୍ରାଚୀରକୁ ଭଂଗ କରିବାର ଯଥାସାଧ୍ୟ ପ୍ରୟାସ ଆରମ୍ଭ କରିଛନ୍ତି । ଯାହାର ପ୍ରମାଣ ଆମେ ଶ୍ରୀଯୁକ୍ତ ରାଉତରାୟଙ୍କର 'ଜନ ସାଧାରଣଙ୍କର ସାହିତ୍ୟ' ଶୀର୍ଷକ ପ୍ରବଂଧରୁ କିଞ୍ଚିତ୍ ଅଂଶରୁ ପାଇଥାଉ ।

"ବର୍ତ୍ତମାନ ଓଡ଼ିଆ ସାହିତ୍ୟ ଯେଉଁ ଅବସ୍ଥାରେ ପହଞ୍ଚିଛି, ତାହାକୁ ମଧ୍ୟବିତ୍ତ ଶ୍ରେଣୀର ସାହିତ୍ୟ ବୋଲି ଆଖ୍ୟା ଦିଆଯାଇପାରେ । ଏହା ଉପରେ ଜନସାଧାରଣଙ୍କର ଜୀବନ ସଂଗ୍ରାମର କୌଣସି ସ୍ପଷ୍ଟ ଛାଇ ପଡୁ ନଥିବାରୁ ଏହା ଯେ ସେମାନଙ୍କ ଦ୍ୱାରା ଖାଲି ଅନାଦୃତ ବା ଅବହେଳିତ ହେଉଛି ତାହା ନୁହେଁ ବରଂ ଅନେକ ସମୟରେ ପ୍ରତିକ୍ରିୟାଶୀଳ ହୋଇପଡୁଛି । ସାହିତ୍ୟକୁ ଏହି ଆପତ୍ତିଜନକ ଶୀତଳତା କବଳରୁ ରକ୍ଷା କରି ତହିଁ ମଧ୍ୟରେ ଆଶାନୁରୂପ ଉତ୍ତାପ ସଂଚାର କରିବାକୁ ହେଲେ ପ୍ରଥମେ ତାକୁ ଜନସାଧାରଣଙ୍କର ଗ୍ରହଣଯୋଗ୍ୟ କରିବାକୁ ପଡ଼ିବ ।"(୩୦)

କବିଙ୍କର ଏତାଦୃଶ ସ୍ୱର ପରିବର୍ତ୍ତନର ପୃଷ୍ଠପଟ୍ଟରେ ଥିଲା ଛାତ୍ର ଆନ୍ଦୋଳନ, ଗଡ଼ଜାତ ଆନ୍ଦୋଳନ, କୃଷକ ଓ ଶ୍ରମିକ ଆନ୍ଦୋଳନରେ ସକ୍ରିୟ ଅଂଶ ଗ୍ରହଣ । ତେଣୁ

୧୯୩୬-୩୮ ମସିହା ମଧ୍ୟରେ ରାଉତରାୟଙ୍କ ଚିନ୍ତାଧାରା ସବୁଜ ଯୁଗୀୟ କାବ୍ୟିକ ବଳୟ ମଧ୍ୟରୁ ନିଜକୁ ମୁକ୍ତ କରି ସମାଜ ଜୀବନର ବାସ୍ତବ ପ୍ରତିଛବି ଉତ୍ତୋଳନ କରିବାକୁ ଆଗଭର ହୋଇଉଠିଛି ଓ କବିତାରେ ବୈପ୍ଲବିକ ଚିନ୍ତାଚେତନାର ଅୟମାରମ୍ଭ ହୋଇଛି । ୧୯୩୮ ମସିହାରେ ପ୍ରକାଶ ପାଇଛି 'ଅଭିଯାନ' ସଂକଳନ । ଏଥିରେ କବି, ଭାଗ୍ୟବାଦର ଦୁହାଇ ଦେଇ ଧର୍ମୀୟ ଖୋଳପା ପରିହିତ ସମାଜପତି ଗୋଷ୍ଠୀଙ୍କର ଯାବତୀୟ କୁତ୍ସିତ କାର୍ଯ୍ୟକଳାପ ବିରୋଧରେ ବିଦ୍ରୋହ ଅଭିଯାନର ଶୁଭାରମ୍ଭ କରିଛନ୍ତି । ବିଦ୍ରୋହ କରିବାକୁ ଯାଇ, କବି ରାଉତରାୟ ପ୍ରଥମେ ପୁଞ୍ଜିପତି ଗୋଷ୍ଠୀର ରକ୍ଷା କବଚ ସାଜିଥିବା ପାଷାଣ ଭଗବାନଙ୍କୁ ମଧ ବାଦ୍ ଦେଇନାହାନ୍ତି । ଭଗବାନଙ୍କୁ ପ୍ରଶ୍ନ କରିଛନ୍ତି-

'ଚୁରିବାକୁ ହେଲେ ଧନୀର ବି ଧନ
ରକ୍ତ ତୁମର ଲୋଡ଼ା ଭଗବାନ
ତୁମରି କବର ଧନୀର କବର
ମରଣ ତୁମର ଚାହିଁ
ଭଗବାନ ଅଛ କାହିଁ ।" (୩୧)

(ସଚ୍ଚିଦାନନ୍ଦ ରାଉତରାୟ 'ଭଗବାନ ଅଛ କାହିଁ'- କବିତା ସଂକଳନ 'ଅଭିଯାନ')

ସେହିପରି ଗଡ଼ଜାତ ଆନ୍ଦୋଳନର ମୂକସାକ୍ଷୀ ପାଲଟିଛି 'ବାଜି ରାଉତ' ଖଣ୍ଡ କାବ୍ୟ, ଯାହାକୁ ପାଠ କଲେ ଅଗଣିତ କିଶୋର ଓ ପାଠକର ପ୍ରାଣରେ ଆମ ଦେଶରେ ଚାଲୁଥିବା ଅଂଧାରୀ ଶାସନ ବିରୋଧରେ ପ୍ରତିବାଦ କରିବା ପାଇଁ ପ୍ରେରଣା ଯୋଗାଇଥାଏ । ବିଦ୍ରୋହ ଓ କାରୁଣ୍ୟର ଏକ ମିଶ୍ରିତ ରୂପକୁ ପାଠକ ଏଥିରେ ଅବଲୋକନ କରିପାରେ। ସନ ୧୯୩୮ ମସିହା, ଅକ୍ଟୋବର ମାସ ୧୦ ତାରିଖ । ତୁହାକୁ ତୁହା ବର୍ଷା ଘଡ଼ଘଡ଼ି ବିଜୁଳି ଅଂଧକାର ରାତ୍ରିର ଛାତି ଚିରି କ୍ଷଣିକ ପାଇଁ ଆଲୋକିତ କରୁଥାଏ । ଏହିପରି ଏକ ଭୟାନକ ଅଂଧକାର ରାତ୍ରିକୁ ଖାତିର ନକରି ୧୨ ବର୍ଷର ବାଳକ 'ବାଜି' ଘାଟ ଜଗିଥାଏ । ମାତ୍ର ୧୨ ବର୍ଷ ହେଲେ କ'ଣ ହେବ ? ମନ ମଧ୍ୟରେ ଭରି ରହିଛି ଅୟୁତ ଶକ୍ତିର ପରାକ୍ରମ । ବ୍ରିଟିଶ୍ ଫୌଜ ଭୂବନ ଗ୍ରାମରେ ରକ୍ତପାତ ଘଟାଇ ଫେରୁଥାନ୍ତି । ଅଂଧକାର ରାତ୍ରି ସାଂଗକୁ ଭରା ନଈ ବ୍ରାହ୍ମଣୀ । ପାର ହେବେ କିପରି ? ଘାଟ ଜଗିଥିବା ବାଳକକୁ ହୁକୁମ ଦେଲେ ନଦୀ ପାର କରିବା ପାଇଁ । ପ୍ରଜା ମଣ୍ଡଳର ସିପାହୀ ହୋଇଥିବାରୁ ବାଜି ପାର କରିବା ପାଇଁ ରୋକ୍‌ଠୋକ୍ ମନା କରିଦେଇଛି । ସଂଗେ ସଂଗେ ପୋଲିସ୍ ଫୌଜର ଗୁଳି ବିଦ୍ଧ କରିଛି ବାଜିର ହୃଦୟକୁ । ତଥାପି ସାହସ ସଂଚୟ କରି ବାଜି ସଂଗେ ସଂଗେ ଡାକ

ପକାଇଛି ପ୍ରଜା ମଣ୍ଡଳର ଅନ୍ୟ ସାଥୀ ଭାଇମାନଙ୍କୁ । ତତ୍କ୍ଷଣାତ୍ ସେଠାରେ ହାଜର୍ ହୋଯାଇଛନ୍ତି ହୁରୁଷି, ନଟ, ଫଗୁ, ଗୁରି, ରଘୁ, ଲକ୍ଷ୍ମଣ । ସେମାନେ ମଧ୍ୟ ଶେଷରେ ମୃତ୍ୟୁ ନିକଟରେ ହାର୍ ମାନିଛନ୍ତି । କ୍ଷଣିକ ସମୟ ପାଇଁ ବ୍ରାହ୍ମଣୀର ନୀଳ ଜଳ ରାଶି ହୋଇଉଠିଛି ରକ୍ତ ରଂଜିତ । ନିଜର ଅସୀମ ସାହସ ଏବଂ ବୀରତ୍ୱ ପାଇଁ ଏହି ସପ୍ତରଥୀଙ୍କୁ ଯେତେବେଳେ ଖାନନଗର ଶ୍ମଶାନରେ ସତ୍କାର ପାଇଁ ଅଣାଯାଇଛି କବି ରାଉତରାୟ ଏହାର ପ୍ରତ୍ୟକ୍ଷଦର୍ଶୀ ସାଜିଛନ୍ତି । ଯାହାର ବର୍ଣ୍ଣନା ସ୍ୱୟଂ କବି 'ଗ୍ରନ୍ଥାବଳୀ'ରେ ପ୍ରଦାନ କରିଛନ୍ତି ।

ପ୍ରକୃତ ପକ୍ଷେ ଦେଖିବାକୁ ଗଲେ କବି ଦୃଷ୍ଟିରେ ଏହି ୧୨ ବର୍ଷର ବାଳକ ସାମାନ୍ୟ ନୁହେଁ । ସେ ଏକ ଅସାମାନ୍ୟ, ପ୍ରଚଣ୍ଡ ବୀରତ୍ୱର ଅଧିକାରୀ, ଯିଏକି ଜୀବନରମାନେ କ'ଣ ହୃଦୟଙ୍ଗମ କରିବା ପୂର୍ବରୁ ମୃତ୍ୟୁକୁ ବାଜି ମାତ୍ କରିଦେଲା । ତେଣୁ ସେ 'ବାଜି ରାଉତ' । ପ୍ରଚଣ୍ଡ ପ୍ରତିଭାଧର ଏହି ବାଳକର ଶରୀରକୁ ସର୍ବଗ୍ରାସୀ ଅଗ୍ନିର ଲେଲିହାନ ଜିହ୍ୱା ଚାଟି ଦେଉଥିବା ସମୟରେ କବି ଆତ୍ମା ଶତଧା ବିଦୀର୍ଣ୍ଣ ହୋଇ ଉଠୁଥିଲା । ଯାହାର ପରିଣତି ସ୍ୱରୂପ ସମ୍ଭୁତ ହେଲା- 'ବାଜି ରାଉତ' ଶତାବ୍ଦୀର ଶ୍ରେଷ୍ଠ ପୁଷ୍ପ ମୁକୁଳିତ ମୃତ୍ୟୁହୀନ ପ୍ରାଣ, ଶିଖା ପ୍ରିୟତମ ।'

'ବାଜି ରାଉତ' ଖଣ୍ଡକାବ୍ୟର ସେହି କାଳଜୟୀ କଣ୍ଠସ୍ୱର-

'ଧୂଳି ଖେଳ ଛାଡ଼ି
ଗୁଳି ଆଗେ ଜୀବନକୁ ହସି ହସି ଦେଲା ସିନା ବାଢ଼ି
ଝଡ଼ ଠାରୁ ସେ ଯେ ବଡ଼
ମେଘ ଠାରୁ ଆଉରି ସେ କଳା,
ସାନ ଦେହେ ଖେଳେ ତାର
ଜୀବନର ଅଲିଭା ଚପଳା । (୩୨)
(ବାଜି ରାଉତ - ଗ୍ର. ପୃ.-୫୭୯)

ଆଜି ମଧ୍ୟ ଆବାଳବୃଦ୍ଧବନିତାଙ୍କୁ ବିଦ୍ରୋହର ଅଗ୍ନିରେ ଝାସ ଦେବା ପାଇଁ ଧାବମାନ କରାଏ ।

ବିଦ୍ରୋହାତ୍ମକ ଚିନ୍ତାଧାରା ପରିପକ୍ୱତା ଲଭିଛି ପାଣ୍ଡୁଲିପିର ପରିଚ୍ଛନ୍ନ ପଦାବଳୀ ମଧ୍ୟରେ । 'ଧୂସର' ଓ 'ଲୋହିତ' ନାମରେ ନାମିତ ଷାଠିଏ (୨୭ / ୩୩) ଗୋଟି କବିତାର ସମ୍ମିଶ୍ରିତ ରୂପ 'ପାଣ୍ଡୁଲିପି' । ୧୯୩୧-୧୯୪୭ ଦୀର୍ଘ ଷୋହଳ ବର୍ଷର ସମୟ ଖଣ୍ଡର ବିସ୍ମୟକର ବିବୃତିକୁ ବହନ କରିଛି ଏହି 'ପାଣ୍ଡୁଲିପି' । ଯୁଗ ଯୁଗ ଧରି ଦାସତ୍ୱର ବେଡ଼ିରେ ବଂଧା ପଡ଼ିଥିବା ସରଳ ଜନସାଧାରଣଙ୍କ ପ୍ରାଣରେ ସଂଗ୍ରାମର

ବାର୍ତ୍ତାକୁ କେବଳ ପ୍ରଚାର କରିନାହାନ୍ତି କବି ବରଂ ଆଧୁନିକ ମନୁଷ୍ୟ ଜୀବନର ବ୍ୟର୍ଥତା ଓ ବିଫଳତାର ଚିତ୍ର ଅଂକନ କରିଛନ୍ତି । ଏହା ବ୍ୟତୀତ ଆଂଗିକ କ୍ଷେତ୍ରରେ ପ୍ରତୀକ, ଚିତ୍ରକଳ୍ପର ପ୍ରୟୋଗ ଓଡ଼ିଆ ସାହିତ୍ୟରେ ଏକ ନୂତନ ଦିଗନ୍ତର ଉନ୍ମୋଚନ କରିଛି । କବି ଗିରିଜା ବଳୀୟାରସିଂହଙ୍କ ଭାଷାରେ-

"ପାଣ୍ଡୁଲିପିର ସମସ୍ପର୍ଦ୍ଧୀ ଏକ କାବ୍ୟକୃତି ଖୋଜି ବାହାର କରିବା କାଠିକର ପାଠ । ସଚ୍ଚି ରାଉତରାୟଙ୍କ ଅଦ୍ଭୁତ ଅନ୍ତର୍ଦୃଷ୍ଟି, ଅପାରଂପରିକ ଆଂଗିକ, ପ୍ରଗତିବାଦ ଓ ପ୍ରୟୋଗବାଦର ଚୂଡ଼ାନ୍ତ ଚିତ୍ରକଳ୍ପ, ପ୍ରତୀକ, ରୂପକ, ପରି ମୌଳିକ ପରିବେଷଣ ମାଧ୍ୟମରେ ଶାଣିତ ଶବ୍ଦ ସଂଯୋଜନା, ଭାଷାର ଦ୍ରୁତ ବିଳମ୍ବିତ ବ୍ୟଞ୍ଜନା 'ପାଣ୍ଡୁଲିପି'କୁ ପରିଣତ କରିପାରିଛି ଏକ ଚିରକାଳୀନ ଧ୍ରୁପଦୀ କାବ୍ୟକୃତିରେ ।" (୩୩)

ସାମନ୍ତବାଦୀ ସଂସ୍କୃତିର ବିକୃତ ଦିଗ ପ୍ରତି କଟାକ୍ଷପାତ ସହିତ ମାନବବାଦର ବିଜୟ ନିର୍ଘୋଷ ପାଣ୍ଡୁଲିପି ସ୍ଥିତ 'କୋଣାର୍କ' କବିତାରେ ଘୋଷିତ ହେଲାବେଳେ, ଜୀବନର ବ୍ୟର୍ଥତା ସ୍ୱପ୍ନଭଂଗ ଓ ବିଫଳତାର ପ୍ରତିଛବିକୁ ପ୍ରତିବିମ୍ବିତ କରୁଛି 'ପ୍ରତିମା ନାୟକ' । ତଥାପି ନୈରାଶ୍ୟ ମଧ୍ୟରେ କବି ଆଶାବାଦୀ ହୋଇଉଠିଛନ୍ତି । ସ୍ୱପ୍ନବାଦୀ ହୋଇଉଠିଛନ୍ତି 'ବନ୍ଦନା ମହାନ୍ତି'ର ସ୍ୱପ୍ନ ଭିତରେ । 'ବନ୍ଦନା ମହାନ୍ତି' ସ୍ୱପ୍ନ ଦେଖୁଛି-

"ଯାରି ମଧେ ବୁଡ଼େ ସୂର୍ଯ୍ୟ
ଉଇଁ ଆସେ ଚାନ୍ଦ ଶରତର
ସୁନାର ଦାଆ କାଟି କାଟି ଅଂଧାର ଫସଲ
ବୁଣିଦିଏ ହୀରାର ମୁରୁଜ
ପଥର ଚଉକି ପରେ ସ୍ୱପ୍ନ ଦେଖେ 'ବନ୍ଦନା ମହାନ୍ତି' (୩୪) ('ବନ୍ଦନା ମହାନ୍ତି- ପାଣ୍ଡୁଲିପି)

ତେଣୁ ପାଣ୍ଡୁଲିପିର କାବ୍ୟ ସ୍ୱରରେ ଜୀବନର ବିଫଳତା ଅପେକ୍ଷା ସର୍ବାଙ୍ଗୀନ ଉନ୍ନତି, ଜୀବନରୁ ଅଂଧକାର ଅପସରି ଯାଇ ଆଲୋକର ଆଗମନର ବାର୍ତ୍ତା ପ୍ରଚାରିତ ହେବା ମଧ୍ୟରେ, ନୈରାଶ୍ୟର କଳା ବାଦଲ ମଧ୍ୟରୁ ଚପଳାର ଚମକ ପରି ଉଙ୍କି ମାରୁଛି ଆଶାବାଦର ଝଲକ୍ ।

ଅଭିଯାନ, ବାଜିରାଉତ, ପାଣ୍ଡୁଲିପିରେ ବିଦ୍ରୋହର ପରିପକ୍ୱ ରୂପକୁ ଅବଲୋକନ କରୁଥିବା ବେଳେ, 'ଭାନୁମତୀର ଦେଶେ' କାବ୍ୟ କୃତିରେ ଆମେ ଏକ ଭିନ୍ନ ସଚ୍ଚିଦାନନ୍ଦଙ୍କୁ ଭେଟିଥାଉ । ଏଥିରେ କବି ଅତୀତ ଓ ବର୍ତ୍ତମାନର ସଂଘର୍ଷକୁ ମନୋଜ୍ଞ ଶୈଳୀରେ ଚିତ୍ରିତ କରିବା ସହିତ 'ପ୍ରେମର' ନୂତନ ସ୍ୱରୂପ ଉଦ୍‌ଘାଟନ କରିବାକୁ ପ୍ରୟାସ କରିଛନ୍ତି । 'ଭାନୁମତୀର ଦେଶ' କାବ୍ୟର ନାୟକ ତରଂଗ ଓ ନାୟିକା ବିନତା

ଉଭୟ ପରସ୍ପର ପ୍ରତି ଆକର୍ଷିତ । ନାୟକ ତରଂଗର ଗ୍ରାମୀଣ ସଭ୍ୟତା ପ୍ରତି ଅହେତୁ... ଆକର୍ଷଣ ରହିଛି ଯାହାକି ଅତୀତପ୍ରୀତିର ପରିଚାୟକ । ତେଣୁ ସେ ସାରା ଜୀବନ ଗ୍ରାମରେ ଅତିବାହିତ କରିବା ପାଇଁ ନିଷତ୍ତି ନେଇଛି । ଅପରପକ୍ଷରେ ତରଂଗର ଏତାଦୃଶ ନିଷତ୍ତିକୁ ସହରୀ ଆଦବ୍ କାଇଦା ମଧ୍ୟରେ ଲାଳିତା ପାଳିତା ବିନତା କିନ୍ତୁ ସହଜରେ ଗ୍ରହଣ କରି ନେଇପାରି ନାହିଁ । ଗ୍ରାମୀଣ ସଭ୍ୟତା ସହିତ ସହରୀ ସଭ୍ୟତା, ଅନ୍ୟ ଭାଷାରେ କହିଲେ ଅତୀତ ସହିତ ବର୍ତ୍ତମାନର ସଘର୍ଷ ଘଟିଛି । ଉଭୟଙ୍କ ମଧ୍ୟରେ ଅନ୍ତର୍ଦ୍ୱନ୍ଦ୍ୱର ସୂତ୍ରପାତ ହୋଇଛି । ଶେଷରେ ବିନତା ତରଙ୍ଗ ଯେ ତା' ପ୍ରତି ଆସକ୍ତ ଏଇ ଆଶ୍ୱାସନାଟିକୁ ପାଥେୟ କରି ସମଗ୍ର ଜୀବନ ଅତିବାହିତ କରିବାକୁ ସଂକଳ୍ପବଦ୍ଧା ହୋଇଛି । ତରଂଗ ଓ ବିନତାର ଆକର୍ଷଣ ଏଠାରେ ଏହା ପ୍ରତିପାଦିତ କରୁଛି ଯେ, ଆଧୁନିକ ଯୁଗର ପ୍ରେମିକ ପ୍ରେମିକା କେହି କାହା ପାଇଁ ସର୍ବସ୍ୱ ତ୍ୟାଗ କରିବାକୁ ଉଚିତ୍ ମଣୁ ନାହିଁ । ବରଂ ସେମାନେ ପରସ୍ପରର ଆଦର୍ଶକୁ ନେଇ ବଞ୍ଚିବାକୁ ବ୍ୟଗ୍ର ।

'ପଲ୍ଲୀଶ୍ରୀ'ରେ ପ୍ରତିପାଦିତ ଧାଡ଼ି ଧାଡ଼ି ଶାଗୁଆ ଧାନ କ୍ଷେତର ମାନଚିତ୍ର, 'ବାଜି ରାଉତ'ରେ 'ବାଜି'ର ଅସୀମ ସାହସ ବର୍ଣ୍ଣନା, 'ପାଣ୍ଡୁଲିପି'ରେ ଓଡ଼ିଆ କାବ୍ୟିକ ଜଗତରେ ନିନାଦିତ ହେଉଥିବା ନୂତନତାର ଆବାହନ ଧୀରେ ଧୀରେ ଅପସରି ଯାଇଛି, ଆଧୁନିକ ମନୁଷ୍ୟର ହତାଶା, ବ୍ୟର୍ଥତା, ସ୍ୱପ୍ନଭଂଗ ଓ ବ୍ୟକ୍ତି କୈନ୍ଦ୍ରିକ ଭାବଧାରା ନିକଟରେ । ସମାଲୋଚକ ଡଃ ବିଜୟ ଶତପଥୀଙ୍କ ମତରେ-

"୧୯୫୦ ପରେ ଏହି ବିପ୍ଳବୀ କାବ୍ୟମାନସ ଭିନ୍ନ ପଥରେ ଗତିଶୀଳ ହୋଇଛି । ସ୍ୱାଧୀନତା ପରବର୍ତ୍ତୀ ଆମର ସାମାଜିକ ଅର୍ଥନୈତିକ ସଂକଟ ହୁଏତ ଏଥିପାଇଁ ଦାୟୀ । ବିଦ୍ରୋହ ପରିବର୍ତ୍ତେ ମଣିଷର ନିଃସଂଗ ବ୍ୟକ୍ତିସତ୍ତା, ବିଭକ୍ତ ବ୍ୟକ୍ତିତ୍ୱ ଫଳ କବିତାରେ ରୂପ ଲଭିଛି ।"(୩୫)

ସଂକଳନର ପ୍ରାରମ୍ଭରେ କବି ନୂତନ କବିତାର ଧର୍ମ ସଂପର୍କରେ ସୂଚନା ପ୍ରଦାନ କରିଛନ୍ତି । ରାଉତରାୟଙ୍କ ମତରେ-

"ବାକ୍ ରୀତି ସଂଗେ କାବ୍ୟିକ ରୀତିର ସମନ୍ୱୟ ଘଟାଇବା ଏବଂ ନୂତନ ଜୀବନର ପ୍ରତିନିଧିତ୍ୱ କରିବା- ଏହାହିଁ ହେଉଛି ନୂତନ କବିତାର ମୂଳମନ୍ତ୍ର ।"(୩୬)

'ବାଜିରାଉତ' ଓ 'ପାଣ୍ଡୁଲିପି'ର ଯେଉଁ କାବ୍ୟିକ ପ୍ରତିଧ୍ୱନି ଜନଜୀବନ ସହିତ ସଂପର୍କିତ ହୋଇ, ସମାଜରୁ ଅନ୍ୟାୟ, ଅତ୍ୟାଚାର, ଶୋଷଣର ବିଲୋପ ଘଟାଇ ସାମ୍ୟବାଦର ପରିପ୍ରଚାର ପାଇଁ ଉଦ୍ଦିଷ୍ଟ ହୋଇଛି, 'କବିତା-୧୯୬୨' ବେଳକୁ ଏହି କାବ୍ୟିକ ସ୍ୱର ଆତ୍ମକୈନ୍ଦ୍ରିକ ପାଲଟି ଯାଇଛି । 'କବି ତୀର୍ଥାନନ୍ଦ ମିଶ୍ର' ଉପରୋକ୍ତ ଚିନ୍ତାଧାରା ସଂପର୍କରେ ମତାମତ ପ୍ରଦାନ କରିବା ପାଇଁ ଯାଇ କହନ୍ତି-

"କବିତାକୁ ଜନ ଜୀବନ ସହିତ ସଂପର୍କିତ ହେବା ପାଇଁ ଏହି ସମୟରେ କବିମାନେ ପୂର୍ଣ୍ଣ ଉଦ୍ୟମ କରି ଆସିଛନ୍ତି । ଏକ ବୃହତ୍ତର ଜୀବନ ସହ ସଂପୃକ୍ତ ହୋଇ ଏହି କାଳର କବିତା ଗଣର ପରିବର୍ତ୍ତେ ଜଣର ହୋଇଯାଇଛି ।" (୩୭)

'ବାଜିରାଉତ' ଓ 'ପାଣ୍ଡୁଲିପି'ର ଉଚ୍ଚାରିତ ହୋଇଥିବା ଶାଣିତ ସ୍ୱର କ୍ରମେ କବିତା-୧୯୬୨ ବେଳକୁ ସ୍ତବ୍ଧ ପାଲଟି ଯାଇଛି । 'ସ୍ୱଗତ' ସଂକଳନରେ ମଧ୍ୟ ସଚ୍ଚିରାଉତରାୟଙ୍କର ପୂର୍ବୋକ୍ତ ସଂଳାପ ଶୁଣାଯାଏନି । ତେଣୁ କବିତା-୧୯୬୨ ପରେ ରାଉତରାୟଙ୍କର କାବ୍ୟିକ ସ୍ୱର ଏକ ଭିନ୍ନ ପଥ ମଧ୍ୟ ଦେଇ ଗତି କରିଛି । 'ହସନ୍ତ' ସଂକଳନରେ କବି ବ୍ୟଙ୍ଗକୁ ଆଶ୍ରା କରିଥିଲେ, ମଧ୍ୟ ପୂର୍ବୋକ୍ତ କାବ୍ୟିକ ପ୍ରତିଭା ମ୍ଳାନ ପଡ଼ି ଆସିଛି ।

କବିତା-୧୯୬୨ ପରେ ଆତ୍ମପ୍ରକାଶ କରିଥିବା ସଂକଳନଗୁଡ଼ିକ ଯଥା-ଶହୀଦ ପ୍ରଦୀପ୍ତ (୧୯୬୫), ଏସିଆର ସ୍ୱପ୍ନ (୧୯୬୮), କବିତା ୧୯୬୯, କବିତା ୧୯୭୧ ଇତ୍ୟାଦିରେ ପୂର୍ବୋକ୍ତ ମାଧୁର୍ଯ୍ୟ ଓ ସୌକୁମାର୍ଯ୍ୟ ପରିଲକ୍ଷିତ ହୁଏ ନାହିଁ । ତେଣୁ ଅନ୍ତିମ ପର୍ଯ୍ୟାୟର କବିତା ଗୁଡ଼ିକରେ ଆମେ ସଚ୍ଚିଦାନନ୍ଦଙ୍କୁ ଏକ ନିର୍ଜ୍ଜନ-ନିରୁଦ୍ଧିଷ୍ଟ ବ୍ୟକ୍ତିତ୍ୱ ଭାବରେ ଦେଖିଥାଉ ।

ଉପରୋକ୍ତ ଆଲୋଚନା ଅନୁଯାୟୀ କବି ସଚ୍ଚିଦାନନ୍ଦ କାବ୍ୟିକ ଜୀବନରେ ତିନୋଟି ପର୍ଯ୍ୟାୟ ମଧ୍ୟ ଦେଇ ଗତି କରିଛନ୍ତି । ପ୍ରାରମ୍ଭ ପର୍ଯ୍ୟାୟରେ କବି ସବୁଜ ଯୁଗୀୟ ରୋମାଣ୍ଟିକ୍ ଚିନ୍ତାଧାରାକୁ ଛାଡ଼ି ପାରିନାହାନ୍ତି । ମଧ୍ୟ ଭାଗରେ ବିଶ୍ୱର ବହୁବିଧ ସାହିତ୍ୟିକ ଆନ୍ଦୋଳନ ସାଙ୍ଗକୁ ଗଡ଼ଜାତ ଅଂଚଳର ପ୍ରଜା ଆନ୍ଦୋଳନ, କୃଷକ ଓ ଶ୍ରମିକ ଆନ୍ଦୋଳନ କାବ୍ୟ ଚେତନାକୁ ବହୁ ଭାବରେ ପ୍ରଭାବିତ କରିଛି ।

ପରିଣତି ସ୍ୱରୂପ କାବ୍ୟରେ ଶୋଷଣ ବିରୋଧୀ ଶାଣିତ, ତୀକ୍ଷ୍ଣ ସ୍ୱର ଉଚ୍ଚାରିତ କରିଛନ୍ତି । ଅନ୍ତିମ ପର୍ଯ୍ୟାୟରେ ପୁନର୍ବାର କବି ସ୍ୱର ପରିବର୍ତ୍ତନ କରିବାକୁ ଯାଇ ଏକ ଭିନ୍ନ ଇଲାକାରେ ପ୍ରବେଶ କରିଛନ୍ତି । ତେଣୁ ସାହିତ୍ୟରେ ଗୋଷ୍ଠୀ କୈନ୍ଦ୍ରିକ ସମାଜନିଷ୍ଠ ଚିନ୍ତାଧାରାକୁ ପରିହାରକରି କବି ରାଉତରାୟ ମୋଡ଼ ପରିବର୍ତ୍ତନ କରିଥିଲେ ମଧ୍ୟ କବିଙ୍କର ସମଗ୍ର କାବ୍ୟିକ ସତ୍ତା ସମାଜ ନିଷ୍ଠ ଚିନ୍ତାଧାରାକୁ ବାଦ୍ ଦେଇପାରିନାହିଁ । ଯାହାର ପ୍ରମାଣ ଆମେ 'ନାଗଭୂଷଣ', 'ରୋସନ୍ନାରା', 'ମୁଜିବୁର୍' ଓ 'ଯାହିଆ ଖାଁ' ଇତ୍ୟାଦି କବିତାରେ ପାଇଥାଉ । କବିଙ୍କର ଏ ପ୍ରକାର ଦୃଷ୍ଟିଭଂଗୀ ପ୍ରଗତିବାଦୀ ଚିନ୍ତା ଓ ଚେତନା ଦ୍ୱାରା ସମନ୍ୱିତ ଏକ ଚିନ୍ତାଧାରା ।

ପରିଶେଷରେ କେବଳ ଏତିକି କୁହାଯାଇପାରେ ଯେ, ଦୀର୍ଘ ଅର୍ଦ୍ଧଶତାବ୍ଦୀ ବ୍ୟାପୀ କବି ସଚ୍ଚିଦାନନ୍ଦ ନିଜର କାବ୍ୟିକ ସାଧନା ଜାରି ରଖିଥିଲେ ତେଣୁ କବି ଆଜି

ଚିରନମସ୍ୟ । କେବେ ଚକ୍ଷୁରେ ନ ଦେଖିଲେ ମଧ୍ୟ, ଏପରି ଏକ ବିରଳ ପ୍ରତିଭାର ଅଧିକାରୀ କବିଙ୍କୁ ସ୍ୱତଃ ପ୍ରବୃତ୍ତ ଭାବେ ଭଲ ପାଇହୁଏ । ଆଜି କବି ରାଉତରାୟ ଆମ ସଭିଙ୍କ ଗହଣରୁ ବିଦାୟ ନେଇସାରିଛନ୍ତି, କିନ୍ତୁ ତାଙ୍କର ସର୍ଜନଶୀଳ କାବ୍ୟିକ ପ୍ରତିଭା, ଓଡ଼ିଆ ଭାଷା, ସାହିତ୍ୟ ଓ ସଂସ୍କୃତିକୁ ଏକ ନୂତନ ଦିଗ୍‌ଦର୍ଶନ ପ୍ରଦାନ କରିପାରିଛି । ତେଣୁ କବିତାର ଏହି କୁଳବୃଦ୍ଧ କୀର୍ତ୍ତିମାନ ଏହି କାବ୍ୟ ପୁରୁଷଙ୍କୁ ଅଜସ୍ର ପ୍ରଣାମ ।

## କବି ଅନନ୍ତ ପଟ୍ଟନାୟକ

ଓଡ଼ିଆ ସାହିତ୍ୟରେ ପ୍ରଗତିବାଦୀ କାବ୍ୟ ଚେତନା ସଂପର୍କରେ ଆଲୋଚନା କଲାବେଳେ କମ୍ରେଡ୍ ଭଗବତୀ ଚରଣ ପାଣିଗ୍ରାହୀଙ୍କ ପରେ ପରେ ଯେଉଁ ସଂଗ୍ରାମୀ କାବ୍ୟ ପୁରୁଷଙ୍କ ନାମ ସ୍ମରଣକୁ ଆସେ ସେ ହେଉଛନ୍ତି କବି ଅନନ୍ତ ପଟ୍ଟନାୟକ । କବି ଅନନ୍ତ ୧୯୧୨ ମସିହା ଜୁନ୍‌ମାସ ୧୨ ତାରିଖ ଦିନ ପୁରୀ ଜିଲ୍ଲାର ଚଣାହାଟ ଗ୍ରାମରେ ପିତା ଜୟକୃଷ୍ଣ ପଟ୍ଟନାୟକଙ୍କ ଔରସରୁ ମହାଦେଈଙ୍କ ଗର୍ଭରୁ ସମ୍ଭୂତ ହୋଇଥିଲେ । ବାଲ୍ୟକାଳରୁ ପିତାମାତାଙ୍କୁ ହରାଇ ପିଉସୀଙ୍କ ଆଦର ଯତ୍ନରେ ଲାଳିତପାଳିତ ହୋଇଥିଲେ । ଅନନ୍ତଙ୍କ କକା କୃଷ୍ଣମୋହନ ପଟ୍ଟନାୟକ ଥିଲେ ତତ୍‌କାଳୀନ ସମୟର ଜଣେ ନାମଜାଦା ସ୍ୱାଧୀନତା ସଂଗ୍ରାମୀ ଏବଂ କବି । କଲିକତାର ସନ୍ତ୍ରାସବାଦୀ ଆନ୍ଦୋଳନରେ ସେ ସକ୍ରିୟ ଅଂଶ ଗ୍ରହଣ କରି ଥିଲେ । ଓଡ଼ିଶାରେ ଉତ୍କଳ ସମ୍ମିଳନୀ ଗଠନ କ୍ଷେତ୍ରରେ ମଧ୍ୟ ତାଙ୍କର ଭୂମିକାକୁ ଅସ୍ୱୀକାର କରାଯାଇ ପାରିବ ନାହିଁ । କକା କୃଷ୍ଣମୋହନଙ୍କର ସଂଗ୍ରାମୀ ବ୍ୟକ୍ତିତ୍ୱ ସାଙ୍ଗକୁ ତାଂକର କବି ପ୍ରତିଭା ଅନନ୍ତଙ୍କୁ ବେଶ୍ ପ୍ରଭାବିତ କରିଥିଲା । ଏହା ବ୍ୟତୀତ ପୁରୀ ଜିଲ୍ଲା ସ୍କୁଲ୍‌ରେ ଅଧ୍ୟୟନ କରିବା ସମୟରେ ଉତ୍କଳମଣି ଗୋପବଂଧୁଙ୍କର ନିବିଡ଼ ସଂସ୍ପର୍ଶରେ ଆସିବାର ସୁଯୋଗ ସେ ପାଇଥିଲେ । ବନ୍ୟା ଦୁର୍ଭିକ୍ଷ ପ୍ରପୀଡ଼ିତଙ୍କପାଇଁ ସାହାଯ୍ୟ ବଣ୍ଟନ ସମୟରେ ମଧ୍ୟ ଗୋପବଂଧୁଙ୍କ ପଦଯାତ୍ରାରେ ଅନନ୍ତ ଯୋଗ ଦିଅନ୍ତି । ଏହା ହିଁ ଥିଲା ତାଙ୍କ ସଂଗ୍ରାମୀ ଜୀବନର ପ୍ରଥମ ପଦକ୍ଷେପ । ଏଥିରେ ତାଙ୍କୁ ସହଯୋଗ କରନ୍ତି ସାଥି ଗୋକୁଳ ମୋହନ ରାୟ ଚୂଡ଼ାମଣି ! ଏହାପରେ ତାଙ୍କର ପିଉସା- କର୍ମକ୍ଷେତ୍ରରେ ସ୍ଥାନାନ୍ତରିତ ହୋଇ କଟକ ଚାଲି ଆସନ୍ତି । ଅନନ୍ତଙ୍କର ନାମ ଲେଖା ହୁଏ କଲିଜିଏଟ୍ ସ୍କୁଲରେ । ପୁରୀ ଜିଲ୍ଲା ସ୍କୁଲରେ ଆରମ୍ଭ ହୋଇଥିବା ସଂଗ୍ରାମୀ ପଦକ୍ଷେପ ଏଠାରେ ଆହୁରି ତୀବ୍ର ରୂପ ଧାରଣ କରେ । ସ୍କୁଲ ଜୀବନରେ "ଛାତ୍ରବଂଧୁ" ନାମକ ଏକ ହାତଲେଖା - ଶିଶୁ-କିଶୋର ପତ୍ରିକା ପ୍ରକାଶ କରନ୍ତି । ମାଟ୍ରିକ ଟେଷ୍ଟ ପରୀକ୍ଷାରେ ପଢ଼ିଥିବା ଏକ ପ୍ରବଂଧ " student's duties and responsibilities" ରେ ଅନନ୍ତ ସମସ୍ତ ଛାତ୍ରମାନଙ୍କୁ ଦେଶ ମାତୃକାର ରକ୍ଷା ପାଇଁ ସ୍ୱାଧୀନତା ସଂଗ୍ରାମରେ ଯୋଗଦାନ କରିବା

ଏକ ପ୍ରମୁଖ କର୍ତ୍ତବ୍ୟ ବୋଲି ଲେଖିବା ପରେ ପ୍ରଧାନଶିକ୍ଷକଙ୍କ ରୋଷର ଶିକାର ହୁଅନ୍ତି । ପରିସ୍ଥିତି ଏପରି ହୁଏ ଯେ ସ୍କୁଲରୁ ବହିଷ୍କୃତ ହେବାର ଅବସ୍ଥା ଆସେ । କିନ୍ତୁ ରାଧାନାଥ ଟ୍ରେନିଂ ସ୍କୁଲ୍‌ର ତତ୍‌କାଳୀନ ଅଧକ୍ଷ ଆଣ୍ଡରସନ୍‌ଙ୍କ ଯୋଗୁଁ ଅନନ୍ତ ବହିଷ୍କୃତ ହେବାରୁ ବର୍ତ୍ତି ଯାଆନ୍ତି ।

ବିପ୍ଳବୀ ଅନନ୍ତଙ୍କର ସଂଗ୍ରାମ କିନ୍ତୁ ଏଇଠି ଶେଷ ହୁଏ ନାହିଁ । ଜଣେ ବିପ୍ଳବୀ ହୋଇଥିବାରୁ ୧୯୩୦ ମସିହାରେ ରେଭେନ୍‌ସା ମହାବିଦ୍ୟାଳୟରେ ଉଚ୍ଚତର ଶିକ୍ଷା ଲାଭ ପାଇଁ ଭର୍ତ୍ତି ହୋଇପାରନ୍ତି ନାହିଁ । ଏକ ବର୍ଷ ପରେ ଗାନ୍ଧୀ ଇରଉଇନ୍ ଚୁକ୍ତି ସ୍ୱାକ୍ଷରିତ ହେବା ପରେ ଅନନ୍ତ ରେଭେନ୍‌ସା ମହାବିଦ୍ୟାଳୟରେ ଭର୍ତ୍ତି ହୁଅନ୍ତି । ସେହି ସମୟରେ ଅନନ୍ତଙ୍କ ସମେତ ବୈଦ୍ୟନାଥ ରଥ, ବିଶ୍ୱନାଥ ପଶାଏତ୍ ମଧ୍ୟ ଆଡ଼ମିସ୍‌ନ ନିଅନ୍ତି । ସମସ୍ତେ ଥାଆନ୍ତି ସଂଗ୍ରାମୀ ମନୋଭାବାପନ୍ନ ବ୍ୟକ୍ତିତ୍ୱ । ରେଭେନ୍‌ସାରେ ଏମାନଙ୍କ ଆସର ଖୁବ୍ ଜମି ଉଠେ । ଏତଦ୍‌ବ୍ୟତୀତ ରାଜନୀତି ଚର୍ଚ୍ଚା କ୍ଷେତ୍ରରେ ଅନନ୍ତ ସର୍ବଦା ଭଗବତୀ ଚରଣ ପାଣିଗ୍ରାହୀଙ୍କ ସାନ୍ନିଧ୍ୟ ଲାଭର ସୁଯୋଗ ପାଆନ୍ତି । ଏହି ସମୟରେ ନବକୃଷ୍ଣ ଚୌଧୁରୀ ଓ ମାଳତୀ ଚୌଧୁରୀଙ୍କ ନେତୃତ୍ୱରେ 'କଂଗ୍ରେସ୍ ସୋସାଲିଷ୍ଟ ଫୋରମ୍' ଗଠିତ ହୋଇ ସାରିଥାଏ । ଏହି ଫୋରମ୍‌ରେ ଭଗବତୀ, ଅନନ୍ତ, ଗୋକୁଳମୋହନ, ନୀଳମଣି ରାଉତରାୟ ପ୍ରମୁଖ ଯୋଗ ଦିଅନ୍ତି । ସୁଦୀର୍ଘ ସଂଗ୍ରାମୀ ଜୀବନର ପୃଷ୍ଠଭୂମି ମଧ୍ୟରୁ ଅଂକୁରିତ ହୋଇଥିବା କବିତା କଢ଼ିଟି ଧୀରେଧୀରେ ଏଇ ସଂଗ୍ରାମୀ ଭାବାଦର୍ଶକୁ ନେଇ ପ୍ରସ୍ଫୁଟିତ ହୁଏ । କବିତାରେ ଫୁଟି ଉଠେ ସମାଜର ଅଗଣିତ ନିଷ୍ପେଷିତ ଜନତାଙ୍କୁ ଶ୍ରେଣୀ ସଂଗ୍ରାମ ପାଇଁ ସଚେତନ କରାଇବା ।

'କଂଗ୍ରେସ ସୋସାଲିଷ୍ଟ ଫୋରମ୍', 'ସାମ୍ୟବାଦୀ କର୍ମୀ ସଂଘ', 'ସାରଥି' ଓ 'ନବ ଭାରତ' ପତ୍ରିକାର ଆତ୍ମପ୍ରକାଶ ପ୍ରାୟ ପ୍ରତ୍ୟେକ କ୍ଷେତ୍ରରେ ଭଗବତୀଙ୍କର ସାର୍ଥକ ସହକର୍ମୀ ଥାଆନ୍ତି କବି ଅନନ୍ତ ପଟ୍ଟନାୟକ । ୧୯୩୪ ଓ ୧୯୩୫ ମସିହାରେ 'ନବଭାରତ' ପତ୍ରିକାରେ ଆତ୍ମପ୍ରକାଶ କରେ କବିତା 'ସମାଧାନ' ଓ 'ଦେବତା ନାହିଁ ଭୂବନ ବନେ' । ନିମ୍ନୋକ୍ତ ପଂକ୍ତିରୁ କବିଙ୍କର କାବ୍ୟିକ ଆଭିମୁଖ୍ୟ ସଂପର୍କରେ ସୂଚନା ପ୍ରଦତ୍ତ ହୁଏ –

* "ଦେବତା ବୋଲି ହେ' ନ ପାରିବୁ ଆଉ ଡାକି  
ଦେଖିଲୁଣି ପରା ଧର୍ମ ସକଳ ଫାଙ୍କି  
ବୁଝିଲୁଣି ଆଜି ନ୍ୟାୟ ନାହିଁ ଧରା ତଳେ  
ସ୍ୱର୍ଗ ସ୍ୱପନେ ଭସାଇ ପରାଣ ସୁଖେ ।" (୩୮)

* "ସର୍ବହରା ବିଶ୍ୱେ ତୁ'ରେ

ବଞ୍ଚିତ ତୁ ସକଳ ଧନେ
ଖୋଜୁରେ ବୃଥା ଜୀବନ କଥା
ଦେଉଳ ତଳେ ଶୂନ୍ୟ ମନେ ।! (୩୯)

ମାର୍କସ୍ ସକଳ ଧର୍ମ ବିଶ୍ୱାସକୁ ପଛରେ ପକାଇ ମନୁଷ୍ୟକୁ ନିଜର ଶକ୍ତି ସଂପର୍କରେ ସଚେତନ କରାଇବା ପାଇଁ ଆହ୍ୱାନ ପ୍ରଦାନ କରିଥିଲେ ଓ ଧର୍ମକୁ ଅଫିମ ନିଶା ଭାବରେ ଅଭିହିତ କରିଥିଲେ । ଜଣେ ସାର୍ଥକ ମାର୍କସ୍‌ବାଦୀ କବି ଭାବରେ କବି ଅନନ୍ତ ମଧ୍ୟ ନିଜର କବିତାରେ ଏହି ଆଦର୍ଶକୁ ସଫଳତାର ସହିତ ତୁଲାଇଛନ୍ତି । କବି ଭଗବାନଙ୍କ ଅସ୍ତିତ୍ୱ ବିଷୟରେ ସନ୍ଦିହାନ । ଏ ସଂସାରରେ ନ୍ୟାୟଅନ୍ୟାୟ, ଧର୍ମ ଅଧର୍ମ ବୋଲି କିଛି ନାହିଁ । ଦେବତା ଭଗବାନ ବୋଲି ମଣିଷ ଯାହାଙ୍କୁ ଉଚ୍ଚ ଆସନ ପ୍ରଦାନ କରେ; ଶତଦୁଃଖ ଦୁର୍ବିପାକରେ ପଡ଼ି ଛଟପଟ ହେଲେ ମଧ୍ୟ ଦେବତା ଭଗବାନ ତା'ର ଦୁଃଖ ମୋଚନ କରନ୍ତି ନାହିଁ.। ଏଥିପାଇଁ ଆବଶ୍ୟକ ଯଥାର୍ଥ ସଂଗ୍ରାମ । ଯାହାର ବର୍ଣ୍ଣନା 'ସମାଧାନ' କବିତାରେ ଦେଖିବାକୁ ମିଳେ । ଠିକ୍ ସେହିପରି ସମାଜରେ ଏ ପ୍ରକାର ଦୁଃଖ ଭୋଗୁଥିବା ସର୍ବହରାମାନେ ହିଁ କବିଙ୍କ ମାନସପଟରେ ଉଚ୍ଚସ୍ଥାନ ଅଧିକାର କରିଛନ୍ତି । ଶ୍ରମିକଟିଏ କୃଷକଟିଏ, ସକଳ ଉନ୍ନତିର ପଥ ଉନ୍ମୋଚନ କରେ କିନ୍ତୁ ସେ ସେହି ପଥର ପଥିକ ହୁଏ ନାହିଁ । ପରିଶ୍ରମ ତାର ବୃଥା ପାଲଟିଯାଏ । ଅର୍ଥ ଉପାର୍ଜ୍ଜନର ଲାଳସା ହୁଏ ଅବଦମିତ । ଏହି ଯାତ୍ରା ପଥରେ ସେ କେବଳ ତପ୍ତ ବାଲିର ଉଷ୍ଣତା ଅନୁଭବ କରେ । ଶୀତଳ ଛାୟା ତା' ପାଇଁ ସ୍ୱପ୍ନ ପାଲଟିଯାଏ । ଈଶ୍ୱରଙ୍କ ସୃଷ୍ଟିରେ ଏ ପ୍ରକାର ଯନ୍ତ୍ରଣା ଭୋଗ କରୁଥିବା ଅସହାୟ ଜନତାଙ୍କ ଉଦ୍ଦେଶ୍ୟରେ କବି ଆତ୍ମା ବ୍ୟଥିତ ହୋଇ ସୃଷ୍ଟି କରିଛି, 'ଦେବତା ନାହିଁ ଭୂବନ ବନେ' କବିତା ।

ମାର୍କସ୍‌ବାଦୀ ସ୍ରଷ୍ଟା ଭାବେ କବି ଈଶ୍ୱର ବିରୋଧୀ ଚିନ୍ତାଦର୍ଶକୁ କବିତାରେ ରୂପ ଦେବା ସଙ୍ଗେ ସଙ୍ଗେ ନିଜର ବୈପ୍ଳବିକ ଭାବାଦର୍ଶକୁ ମଧ୍ୟ ରୂପାୟିତ କରିଛନ୍ତି । ମଣିଷ ସମାଜର ଏତାଦୃଶ ଅବସ୍ଥା ପାଇଁ ଯେ କେବଳ ଈଶ୍ୱର ଦାୟୀ ତାହା ନୁହେଁ ସଂକୀର୍ଣ୍ଣତା, ରକ୍ଷଣଶୀଳତାର ବଂଧନୀ ମଧ୍ୟରେ ଆବଦ୍ଧ ଥିବା ପୌଢ଼ମାନେ ମଧ୍ୟ ଏଥିପାଇଁ ଦାୟୀ । ସେଥିପାଇଁ ବିକ୍ଷୋଭିତ କବି କଣ୍ଠ ଉଚ୍ଚାରଣ କରିଛି –

"କାହିଁ ଭଗବାନ କାହିଁ ବା ସ୍ୱର୍ଗ କହ
କାହା ପାଇଁ ବସି ଗଡ଼ାଅ କାଷ୍ଠ ମାଳି ?
ଛାଡ଼ିଦିଅ ପଥ, ନବୀନ ଆଲୋକ ଜାଳି
ତରୁଣ ବାହିନୀ ଛୁଟୁରେ ଦର୍ପ ଭରେ ।(୪୦)

ବୃଦ୍ଧମାନେ ପୁରାତନ ଚିନ୍ତାଦର୍ଶର ପ୍ରତୀକ । ରକ୍ଷଣଶୀଳତାର ବଂଧନୀରେ

ଆବଦ୍ଧ । ସେମାନେ କଦାପି ଏଥିରୁ ନିଜକୁ ମୁକୁଳାଇ ପାରନ୍ତି ନାହିଁ । ବରଂ ଯେଉଁମାନେ ଈଶ୍ୱରଙ୍କ ଅସ୍ତିତ୍ୱକୁ ଅସ୍ୱୀକାର କରି ନୂତନ ଆଦର୍ଶର ପ୍ରତିଷ୍ଠା ପାଇଁ ଅଣ୍ଟା ଭିଡ଼ି ବାହାରି ପଡ଼ନ୍ତି ସେମାନଙ୍କୁ ନୈତିକ ସମର୍ଥନ ଦିଏ କବିଙ୍କର କବିତା 'ବୃଦ୍ଧ ହେ ତୁମ ଦିବସ ଯାଇଛି ଚାଲି' । ଅନ୍ୟ ଭାଷାରେ କହିଲେ ଯୁବଶକ୍ତି ଉପରେ କବିଙ୍କର ଦୃଢ଼ ଆସ୍ଥା ଏଠାରେ ପ୍ରକଟିତ । କବିତାଟି କବି ୧୯୩୫ ମସିହାରେ ରଚନା କରିଥିଲେ । କବିତା ରଚନା ଆଗରୁ ସମାଜର ପରିବର୍ତ୍ତନ ପାଇଁ କବି ସେତେବେଳେ ପୂର୍ଣ୍ଣ ମାତ୍ରାରେ ନିଜକୁ ନିୟୋଜିତ କରିସାରିଥିଲେ ।

୧୯୩୫ ମସିହାରେ ବି.ଏ. ପାଶ୍ କରିବା ପରେ ଅନନ୍ତ ଆଇନ୍ ମହାବିଦ୍ୟାଳୟରେ ନାମଲେଖାନ୍ତି । ସେଠାରେ ତାଙ୍କ ନେତୃତ୍ୱରେ 'ଛାତ୍ର ସଂଘ' ଗଠିତ ହୁଏ । ଛାତ୍ରମାନଙ୍କର ବିଭିନ୍ନ ସମସ୍ୟା ଓ ତାର ସମାଧାନ ପାଇଁ ଅନନ୍ତ ସବୁସମୟରେ ସଚେତନ ଥାଆନ୍ତି । ୧୯୩୫ ମସିହାରେ ସ୍ପେନ୍‌ରେ କମ୍ୟୁନିଷ୍ଟମାନେ ତତ୍‌କାଳୀନ ଫ୍ରାଙ୍କୋ ସରକାର ବିରୁଦ୍ଧରେ ଗୃହଯୁଦ୍ଧ ଆରମ୍ଭ କରନ୍ତି । ୧୯୩୫ ମସିହା ଜୁନ୍ ୨୧ ରେ ପ୍ୟାରିସ୍ ସହରରେ ପ୍ରଖ୍ୟାତ ଲେଖକ ମାକ୍‌ସିମ୍ ଗର୍କୀ, ରୋମାରୋଁ ଲାଁ ପ୍ରଭୃତିଙ୍କ ନେତୃତ୍ୱରେ ଫାସିବାଦ ବିରୋଧୀ ସଭା ଅନୁଷ୍ଠିତ ହୁଏ । ଏହାର ପ୍ରଭାବ ସମଗ୍ର ବିଶ୍ୱର କୋଣେ ଅନୁକୋଣେ ଅନୁରଣିତ ହେବାକୁ ଲାଗେ । ଏହାଦ୍ୱାରା ତତ୍‌କାଳୀନ ଓଡ଼ିଶାର ଯୁବ କମ୍ରେଡ଼ ଭଗବତୀ ପାଣିଗ୍ରାହୀ ବିଶେଷ ପ୍ରଭାବିତ ହୁଅନ୍ତି । ଫଳସ୍ୱରୂପ ନୂତନ ଯୁଗର ସନ୍ଦେଶ ବହନକରି ୧୯୩୫ ମସିହା ନଭେମ୍ବର ୨୯ ତାରିଖରୁ ଡିସେମ୍ବର ୪ ତାରିଖ ଯାଏ କଟକର ଶ୍ରୀରାମଚନ୍ଦ୍ର ଭବନଠାରେ ଅନୁଷ୍ଠିତ ହୁଏ 'ନବଯୁଗ ସାହିତ୍ୟ ସଂସଦ' ଅନୁଷ୍ଠାନର ପ୍ରଥମ ଅଧିବେଶନ । ସଭାପତିତ୍ୱ କରନ୍ତି କାଳିନ୍ଦୀ ଚରଣ ପାଣିଗ୍ରାହୀ । ଉଦ୍‌ବୋଧନୀ ସଂଗୀତ ଗାନକରନ୍ତି ମାଳତୀ ଚୌଧୁରୀ, ଅଶୋକରାଓ, ଗୋକୁଳ ଜୋରଆରଦାର । ଏହି ସଂଗୀତକୁ ରଚନା କରିଥିଲେ କବି ଅନନ୍ତ । କବିତାଟିରେ କବିଙ୍କର ସାମ୍ୟବାଦୀ ଚିନ୍ତାଦର୍ଶ କିପରି ପ୍ରତିଫଳିତ ତାହା ଏଠାରେ ସ୍ପଷ୍ଟ ପ୍ରତିପାଦିତ ହୁଏ ।

"ନବୀନ ଯୁଗର ତରୁଣ ଜାଗରେ ଜାଗ ବଂଧନ ହରା
ବକ୍ଷେ ଶୋଣିତ ଲକ୍ଷେ ଜୀବନ ଖେଳାଅ ଆଲୋକ ଧାରା
ଛିନ୍ନ କରରେ ବଂଧନ ରାଜି କ୍ରନ୍ଦନ ହେଉ ଶେଷ
ଲୁପ୍ତ ହେଉରେ ଜାତି ଉପଜାତି, ଖଣ୍ଡିତ ଶତ ଦେଶ
ମହା ମାନବର ଶଙ୍ଖ ଶବଦେ ସମ୍ମୁରେ ଦୁଃଖ ଜ୍ୱାଳା
ଜାଗ ବଂଧନ ହରା । (୪୧)

କବିଙ୍କର ଏହି ରଚନାଟି ପ୍ରଗତିବାଦୀ କାବ୍ୟ କବିତାକ୍ଷେତ୍ରରେ ଏକ ସ୍ୱତନ୍ତ୍ର ସ୍ଥାନ ଅଧିକାର କରିପାରିଛି । କବି ଯେଉଁ ସ୍ୱର ଉତ୍ତୋଳନ କରିଛନ୍ତି 'ବୃଦ୍ଧ ହେ ତୁମ ଦିବସ ଯାଇଛି ଚାଲି' କବିତାରେ ତାହାର ଏକ ପରିପୂର୍ଣ୍ଣ ପ୍ରତିଛବି ଆମେ ଏ କବିତାରେ ଖୋଜିଲେ ପାଇପାରିବା । ଯୁବଶକ୍ତିକୁ ଆହୁରି ସଂଗଠିତ, ସଚେତନଶୀଳ କରିବା ପାଇଁ କବି ଆହ୍ୱାନୀ ଢଂଗରେ କବିତାଟି ରଚନା କରିଛନ୍ତି । କବି ମର୍ମେମର୍ମେ ଅନୁଭବ କରନ୍ତି ଯୁବଶକ୍ତି ଆଗାମୀ ଦେଶର ଭବିଷ୍ୟତ । ଯୁବଶକ୍ତି ଉଦ୍‌ଜୀବିତ ହେଲେ ଦେଶ ଉନ୍ନତିର ପଥରେ ପରିଚାଳିତ ହେବ । ତେଣୁ ସମାଜରେ ଏକ ନବୀନ ଭାବ ଓ ନବୀନ ଚିନ୍ତାଦର୍ଶ ଖେଳାଇବା ପାଇଁ ନବୀନ ଯୁଗର ତରୁଣ ଗୋଷ୍ଠୀ ସକଳ ବାଧାବନ୍ଧନକୁ ଛିନ୍ନ କରି ଆଗେଇ ଆସିବା ଉଚିତ୍ ।

କବିଙ୍କର ବୈପ୍ଳବିକ ଚିନ୍ତାଦର୍ଶ ଧର୍ମ ଓ ଈଶ୍ୱରଙ୍କୁ ଅସ୍ୱୀକାର କରିବା ସହିତ ଯୁବ ତରୁଣ ଗୋଷ୍ଠୀଙ୍କୁ ଆହ୍ୱାନ ପ୍ରଦାନ ମଧ୍ୟରେ ସୀମାବଦ୍ଧ ହୋଇ ରହିନାହିଁ । ଧୀରେଧୀରେ ଏହା କୃଷକ, ଶ୍ରମିକ, ସର୍ବହରା ଗୋଷ୍ଠୀର ମୁଖ୍ୟସ୍ୱର ପାଲଟିବା ସଂଗେସଂଗେ ଅତ୍ୟାଚାର ବିରୋଧରେ ହିଂସାତ୍ମକ ଆହ୍ୱାନ ପ୍ରଦାନ କରିଛି 'ରକ୍ତଶିଖା', 'କିଞ୍ଚିତ', 'ଛାଇର ଛିଟା', 'ଅଲୋଡ଼ା ଲୋଡ଼ା' ପ୍ରଭୃତି ସଂକଳନ ମାନଙ୍କରେ । ବର୍ତ୍ତମାନ କବିଙ୍କର ବୈପ୍ଳବିକ କାବ୍ୟାଦର୍ଶ ତାଙ୍କର ସଂକଳନମାନଙ୍କରେ କିପରି ରୂପ ଲାଭ କରିଛି ତାକୁ ଆଲୋଚନା କରିବା ।

ପ୍ରଥମ ପର୍ଯ୍ୟାୟର କବିତା ଗୁଡ଼ିକରେ ମାର୍କସୀୟ ଚିନ୍ତାଚେତନାର ଆହ୍ୱାନ ସ୍ୱରୂପ କବି ଧର୍ମ ଓ ଈଶ୍ୱର ବିଶ୍ୱାସ ଉପରେ ଆସ୍ଥା ପ୍ରକଟ ନକରି ମନୁଷ୍ୟକୁ ନିଜର ଶକ୍ତିସାମର୍ଥ୍ୟ ଉପରେ ଆଶାପୋଷଣ କରିବା ପାଇଁ ଆହ୍ୱାନ ପ୍ରଦାନ କରିଛନ୍ତି । ଦ୍ୱିତୀୟ ପର୍ଯ୍ୟାୟରେ କବି ଶ୍ରମିକ, ଚାଷୀ, ମୂଲିଆଗୋଷ୍ଠୀ ଉପରେ ପ୍ରାଧାନ୍ୟ ଆରୋପ କରିଛନ୍ତି । ତାଙ୍କ ଦୃଷ୍ଟିରେ ଏମାନେ ହେଉଛନ୍ତି ସମାଜରେ ସମ୍ମାନନୀୟ ବ୍ୟକ୍ତିତ୍ୱ । କାରଣ ସେମାନଙ୍କର ଅକ୍ଲାନ୍ତ ପରିଶ୍ରମ ହିଁ ସମାଜର ମେରୁଦଣ୍ଡକୁ ସୁଦୃଢ଼ କରେ । କିନ୍ତୁ ପରିସ୍ଥିତିର ଚାପରେ ସେମାନେ ହୁଅନ୍ତି ସମାଜରେ ଅବହେଳିତ । ଏହି ନିଷ୍ପେଷିତ ଗୋଷ୍ଠୀଙ୍କ ହୃଦୟରେ ଦୃଢ଼ ଆତ୍ମଶକ୍ତି ସଂଚାରିତ କରିବା ପାଇଁ କବି ଅନନ୍ତ କବିତା ମାଧ୍ୟମରେ ପ୍ରଳୟର ଆବାହନ କରିବାକୁ ମଧ୍ୟ ପାଶ୍ଚାତ୍‌ପଦ ହୁଅନ୍ତି ନାହିଁ ।

"ସର୍ବହରାର ଦଳ ! ଚାଲ ଚାଲ ଖରତର
ଚୂର ଚୂର କଂଜିର କାରାରେ
କଣ୍ଠେ ଖେଳୁ ହେ ତବ, ବିଦ୍ୟୁତ ଦ୍ୟୁତି ନବ
ବକ୍ଷେ ବିକଶୁ ପ୍ରୀତି ଧାରାରେ

ପୁଂଜିତ ପଥେ ପଥେ ଭ୍ରାନ୍ତି, ବେଦନା ରାଶି ବନ୍ଧ
ଦୁଆର କୋଟି ପୁରରେ ।
ମୁକ୍ତ କରରେ ସବୁ ରୁଦ୍ଧ ଜୀବନ ଧାରା
ସଂଗୀତ, ତୋଳ ନବ ସୁରରେ ।" (୪୨)

ସର୍ବହରା ଗୋଷ୍ଠୀ ସାମର୍ଥ୍ୟହୀନ ଓ ଶକ୍ତିହୀନ । ତେଣୁ ସର୍ବହରାର ପ୍ରାଣରେ ଅଗ୍ନିର ସ୍ଫୁଲିଙ୍ଗ ଜାଳି ଦେବା ସହିତ ଅନ୍ୟାୟ ଅତ୍ୟାଚାରରୂପୀ କାରାଗାରର ଲୌହକୁ ଚୂର୍ଣ୍ଣ କରିବା ଉଦ୍ଦେଶ୍ୟରେ କବିତାଟି ସମର୍ପିତ । କବିତାଟିରେ କବି ଯେଉଁ ବୈପ୍ଳବିକ ସ୍ୱର ଉତ୍ତୋଳନ କରିଛନ୍ତି ତାହା ଯଥାର୍ଥରେ ମାର୍କସ୍ ପ୍ରଦର୍ଶିତ ମାର୍ଗର ଅନୁରୂପ ।

ପୂର୍ବରୁ ଉଲ୍ଲେଖ କରିଅଛି ଯେ, କବି ଅନନ୍ତଙ୍କ କବିତାରେ ଶ୍ରମିକ, କୃଷକମାନେ ଉଚ୍ଚସ୍ଥାନ ଲାଭ କରିଛନ୍ତି । ୧୯୩୫/୩୬ ମସିହା ବେଳକୁ ସମଗ୍ର ଓଡ଼ିଶାରେ ସମାଜବାଦୀ ଆନ୍ଦୋଳନ ବିସ୍ତାରଲାଭ କରିସାରିଥାଏ । ଗଡ଼ଜାତ ଅଞ୍ଚଳ ମାନଙ୍କରେ ରାଜାମାନଙ୍କର ଅତ୍ୟାଚାର ସହ୍ୟ କରି ନପାରି ପ୍ରଜା ଆନ୍ଦୋଳନ, ଜମିଦାର ମାନଙ୍କର ଅତ୍ୟାଚାର ବିରୋଧରେ କୃଷକ ଆନ୍ଦୋଳନ ତେଜି ଉଠୁଥାଏ । ଖୋର୍ଦ୍ଧାରେ ଭଗବତୀ ଚରଣଙ୍କ ନେତୃତ୍ୱରେ 'ନିଖିଳ ଉତ୍କଳ କୃଷକ ମହାସଭା' ନାମକ ଏକ ସଂଗଠନ ପ୍ରତିଷ୍ଠା ହେବା ସଙ୍ଗେ ସଙ୍ଗେ 'କୃଷକ' ନାମକ ଏକ ପତ୍ରିକାଟିଏ ମଧ୍ୟ ପ୍ରକାଶ ପାଇଲା । ଯାହାର ସଂପାଦକ ନିଜେ ଭଗବତୀ ହିଁ ଥିଲେ । ଏହାପରେ ୧୯୩୬ ମସିହାରେ କଟକରେ ମଧ୍ୟ ଏକ ବିରାଟ କୃଷକ ସମ୍ମିଳନୀର ଆୟୋଜନ କରାଗଲା । ସେହିବର୍ଷ ଅକ୍ଟୋବର ମାସରେ ପୁରୀଠାରେ ଅନୁଷ୍ଠିତ ହେଲା ରାଜ୍ୟ କୃଷକ ସମାବେଶ । ୧୯୩୫ ମସିହାରେ ନବଯୁଗ ସାହିତ୍ୟ ସଂସଦର ଉଦ୍‌ଘାଟନୀ ଉତ୍ସବରେ ଯେଉଁ ସଂଗୀତ ଗାନ କରାଯାଇଥିଲା, ତାକୁ ଯେପରି ଅନନ୍ତ ରଚନା କରିଥିଲେ ଠିକ୍ ସେହିପରି ୧୯୩୬ ମସିହାରେ ଅନୁଷ୍ଠିତ ହୋଇଥିବା ରାଜ୍ୟ କୃଷକ ସମାବେଶ ସମ୍ମିଳନୀର ଉଦ୍‌ବୋଧନୀ ସଂଗୀତ ମଧ୍ୟ ସେ ରଚନା କରିଥିଲେ । ସଂଗୀତଟି ମଧ୍ୟ ଅନୁରୂପ ଲୋକପ୍ରିୟତା ହାସଲ କରିଥିଲା । କବିତାଟି ହେଉଛି –

"ଜୀବନ ଧରି ହେ ଢାଳିଲୁ ରକ୍ତ ତୋଳିଲୁ ସଉଧମାଳା
ଆମରି ଲାଗିରେ ଶାସନ ଶକ୍ତ ଆମେଇ ସର୍ବହରା
ଝାଂଜି ପବନ ସହିରେ ସଘନ ଗହୀରେ ରୋଇଲୁ ଧାନ
ବରଷା କାଦୁଅ ଚକଟି କେତେରେ ଖୀନ୍ନ କରିଲୁ ପ୍ରାଣ
ପଉଷ ପ୍ରଭାତେ କାଟିଲୁ ଶସ୍ୟ ହସିଲେ ନିଖିଳବାସୀ
ଶକ୍ତିଶାଳୀର କରାଳ କବଳ ନେଲାରେ ସକଳ ଗ୍ରାସି

କେତେ ଯେ ଦେଏଣା କେତେ ଯେ ପାଉଣା ମହାଜନ ଜମିଦାର
ନେଲେଟି ଶୋଷିରେ ଚାହିଁଲୁ ନୀରବେ ଘେନି କଂକାଳ ମାଳ । (୪୩)

କୃଷି ସମାଜର ମାନଦଣ୍ଡ । କୃଷକର ଅକ୍ଳାନ୍ତ ପରିଶ୍ରମ ହିଁ ସମାଜ ମୁଖରେ ହସ ଫୁଟାଏ । କିନ୍ତୁ ସେ ଯଦି ଅତ୍ୟାଚାରିତ ହେବ ସମାଜର ଭିତ୍ତିଭୂମି ଦୋହଲିଯିବ । କୃଷକମାନଙ୍କୁ ଜାଗ୍ରତ କରିବାକୁ ଓ ନିଜର ଅଧିକାର ସଂପର୍କରେ ସଚେତନ କରାଇବା ଉଦ୍ଦେଶ୍ୟରେ କବିତାଟି ରଚନା କରାଯାଇଥିଲା । କୃଷକ ସମାବେଶରେ ଗାନ କରାଯାଇଥିବା ଏହି କବିତାଟି ଧୀରେଧୀରେ ଏତେ ଆଦୃତି ଲାଭ କଲା ଯେ' ଯେଉଁ ସ୍ଥାନରେ କୃଷକ ଆନ୍ଦୋଳନ ଆରମ୍ଭ ହେଲା ସେଠାରେ ଏହା ଗାନ କରାଗଲା । ପ୍ରକୃତ ପକ୍ଷେ କହିବାକୁ ଗଲେ ଋଷୀୟମାନଙ୍କ ହୃଦୟରେ ଲେନିନ୍‌ଙ୍କ କବିତା ଯେପରି ପ୍ରଭାବ ବିସ୍ତାର କରିଥିଲା ଓଡ଼ିଆମାନଂକ ପାଇଁ କବି ଅନନ୍ତଙ୍କ କବିତା କୌଣସି ଗୁଣରେ ଏହାଠାରୁ କମ୍ ନଥିଲା । ଉତ୍ସାହ ଓ ଉନ୍ମାଦନାରେ ଏହା ଭରପୁର୍ ଥିଲା ।

୧୯୩୮ ମସିହାରେ ଗଡ଼ଜାତ ରାଜାମାନଙ୍କ ବିରୋଧରେ ଆନ୍ଦୋଳନକୁ ତୀବ୍ର କରିବା ପାଇଁ କଟକରେ ଆସି ପହଞ୍ଚିଥାନ୍ତି ସର୍ବଭାରତୀୟ କୃଷକ ମହାସଭାର ପୁରୋଧା 'ପଟ୍ଟାଭି ସୀତାରାମାୟା' । ଓଡ଼ିଶାର ଗଡ଼ଜାତ ଅଞ୍ଚଳରେ ପରିଦୃଷ୍ଟ ହେଉଥିବା ଅତ୍ୟାଚାର ସଂପର୍କରେ ତାଙ୍କୁ ସୂଚାଇବା ପାଇଁ ଅନନ୍ତଙ୍କ ସମେତ ଭଗବତୀ ଓ ବିପ୍ଳବୀ ସାରଂଗଧର ଦାସ ମଧ୍ୟ ଥାଆନ୍ତି । ଗଡ଼ଜାତ ଅଞ୍ଚଳର ଅତ୍ୟାଚାର ମଧ୍ୟରେ ଢେଙ୍କାନାଳ ରାଜାଙ୍କର ଅତ୍ୟାଚାର ଅତ୍ୟନ୍ତ ନିର୍ମମ ଥାଏ । ପ୍ରଜାମାନେ ଏହାକୁ ସହ୍ୟ କରିନପାରି କଟକ, ପୁରୀ ଇତ୍ୟାଦି ଆଖପାଖ ଅଞ୍ଚଳକୁ ପଳାୟନ କରୁଥାନ୍ତି । ଢେଙ୍କାନାଳ ରାଜତନ୍ତ୍ରର ଅଂଧାରୀ ଶାସନ ବ୍ୟବସ୍ଥାକୁ ପ୍ରତ୍ୟକ୍ଷ ଭାବରେ ଚ୍ୟାଲେଞ୍ଜ ଦିଏ କବିଙ୍କର କବିତା ପୁସ୍ତିକା 'ରକ୍ତଶିଖା' । ସଂକଳନରେ ସ୍ଥାନିତ 'ମୁକ୍ତି ସଂଗୀତ' 'ଆଗେ ଚାଲ୍', 'ସର୍ବହରା' 'ଆମେ ମୂଲିଆର ଜାତି ଜାଗିବୁ' କବିତା ଗୁଡ଼ିକୁ ଏ କ୍ଷେତ୍ରରେ ଏକ ଏକ ମାଇଲ୍ ଖୁଣ୍ଟ ବୋଲି ଆଖ୍ୟା ଦେଲେ ଅତ୍ୟୁକ୍ତି ହେବ ନାହିଁ । ଦୃଷ୍ଟାନ୍ତ ସ୍ୱରୂପ କିଛି କବିତାଂଶକୁ ଏଠାରେ ଆଲୋଚନା କରାଯାଇପାରେ ।

"ବାସି ଓଳିତଳ, ଘରେ ନାହିଁ ଦାନା
ହଂସା ଉଡ଼ିଯାଏ, ହାଡ଼ ହୁଏ ଗଣା
କଂସା, ଥାଳି ବିକି ଦେଲୁଣି ଖଜଣା
ଆଉ କାହିଁ ପାଇଁ ଡରିବୁ ?
ଘରଡିହ ଖଣ୍ଡେ ନୋହେଁ ତ ଆମର
ନିଜ ଘରେ ଆମେ ଗୋଲାମ ପରର ।

ଗୋଇଠା ଖାଇଲେ ଅଇଁଠା ଚାଟୁଛୁ
 କେତେ ଦିନ ଆଖି ବୁଜିବୁ ?(୪୪)
* "ସନ୍ତକ ତୋର ହାତୁଡ଼ି ଦାଆ
 ସମ୍ମୁଖେ ତୋର ଫୁଟିଛି ରାହା
ମନେରଖ ତୁହି ତୋହରି ସାହା
 ଉଠା ତୋ ଜୟ କାର ।" (୪୫)
*"ମଜଦୁର୍ ଚାଷୀ ବକ୍ଷରେ ରଚେରେ ଯେହୁ ନାଥ
ତାକୁରେ ଆଜି ବିପ୍ଳବୀ ତୁ ମାରଣ ବିଷଯାଚ
ଧ୍ୱଂସ ପାଉ ଶୋଷକ କୁଳ ସାମ୍ରାଜ୍ୟ ପିଶାଚ
ମଜଦୁର୍ ଚାଷୀ ରାଜ୍ୟ ହେଉ, ଲଭରେ ଅଧିକାର
ସାମ୍ୟବାଦୀ ଅଗ୍ରଣୀ ତୁ ହୁଅରେ ଆଗୁସାର ।" (୪୬)

କବିଙ୍କର ପ୍ରତ୍ୟେକଟି କବିତାକୁ ଅନୁଶୀଳନ କଲେ ଜଣାଯାଏ ଯେ ସତେଯେପରି କବିତା ଗୁଡ଼ିକ ଜନ ସାଧାରଣ ଭୋଗୁଥିବା ନିର୍ଯ୍ୟାତନା ବିରୋଧରେ ଲଢ଼େଇ କରିବା ପାଇଁ ଶତ ପ୍ରତିଶତ ପ୍ରେରଣା ପ୍ରଦାନ କରିବା ସହିତ ଏକ ସାମାଜିକ ଅଙ୍ଗୀକାରବଦ୍ଧତାର ମହାମନ୍ତ୍ରରେ ଉଦ୍‌ବୁଦ୍ଧ ହୋଇଉଠିଛି ।

କବିଙ୍କର ମାର୍କସ୍‌ବାଦୀ ଭାବନା ଧୀରେ ଧୀରେ ଜୀବନର ବ୍ୟାପକତାକୁ ରୂପାୟିତ କରିଛି । ଭାରତୀୟ ଜନ ଜୀବନର ଚିତ୍ର ଏଥିରେ ଅକ୍ଷୁଣ୍ଣ ଭାବରେ ବର୍ଣ୍ଣିତ । କବି ଆଶାୟୀ ହୋଇ ପଡ଼ିଛନ୍ତି ଏକ ଶୋଷଣମୁକ୍ତ ସମାଜ ବ୍ୟବସ୍ଥାର ଆଗମନ ପାଇଁ, ଯାହାର ଝଲକ୍ ଦେଖିବାକୁ ମିଳେ ତାଙ୍କ କବିତାର ପ୍ରତ୍ୟେକ ପଂକ୍ତିରେ । ମନୁଷ୍ୟ ସମାଜର ସର୍ବକୁଶଳ ମନାସୁଥିବା କବିଙ୍କର ଏହି ଦୃଷ୍ଟିଭଂଗୀ ଅଗଣିତ ପାଠକ ପାଠିକାଙ୍କର ହୃଦୟ ଜିଣି ନେଇଛି । କବିଙ୍କର ଏ ପ୍ରକାର କାବ୍ୟିକ ପ୍ରତିଭା ସଂପର୍କରେ ଡଃ ବିଜୟ ଶତପଥି ମତବ୍ୟକ୍ତ କରନ୍ତି –

"କବି ସ୍ୱପ୍ନ ଦେଖୁଛନ୍ତି ଏକ ଶୋଷଣମୁକ୍ତ ସମାଜ ବ୍ୟବସ୍ଥା ପାଇଁ । ସେଠାରେ ଜୀବନ ମୁକ୍ତ ଓ ସ୍ୱାଧୀନ । କୁଟୀରଠାରୁ ଆରମ୍ଭ କରି ସହର ତଳି ପର୍ଯ୍ୟନ୍ତ ପୁଣି କମାର ଶାଳର 'ଅନଳ ଦୋଳି'ଠାରୁ ଗହଳ ବିଲରେ ପ୍ରାଣ ଉଚ୍ଛୁଳା ସଂଗୀତ ପର୍ଯ୍ୟନ୍ତ ସର୍ବତ୍ର ସେଇ ନୂଆ ଜୀବନ ରୀତିର ବନ୍ଦନା । ସେଠାରେ ହିଂସା, ଦ୍ୱେଷର ସ୍ଥାନ ନାହିଁ, ମଣିଷ ସେଠି ମସ୍ତକ ଉନ୍ନତ କରି ବଞ୍ଚିବାକୁ ଶିଖିଛି । (୪୭)

କାବ୍ୟିକ ପ୍ରତିଭାର ବଳିଷ୍ଠତା ପ୍ରମାଣ କରିବା ସହିତ କବି ସ୍ୱପ୍ନ ଦେଖିଛନ୍ତି –

"ସ୍ୱପନ ଦେଖୁଛି - ହିଂସା ପରଶ ନାହିଁ

ଜାଣେନା ଜାତି ମୋ' ମାଲିକ ମୂଲିଆ କଥା,
ଦସ୍ୟୁ ବଣିକ ଯାଇଚି କାହିଁ
ସମାନ ସକଳେ ଉଚ୍ଚ ମଣିଷ ମଥା ।" (୪୮)

କବି ଦେଖୁଥିବା ସ୍ୱପ୍ନ ନିଶ୍ଚେ ଦିନେନା ଦିନେ ସାର୍ଥକ ହେବ । ସମାଜରୁ ଅନ୍ୟାୟ, ଅତ୍ୟାଚାରର ବିଲୋପ ଘଟିବ । ତଥାକଥିତ ବୁର୍ଜୋୟା ଗୋଷ୍ଠୀ ଯେତେ ପ୍ରତିବଂଧକ ସୃଷ୍ଟି କଲେ ମଧ୍ୟ ତାହା ଅଚିରେ ଧ୍ୱଂସ ପାଇବ । ସକଳ ମନୁଷ୍ୟ ମଥା ଉନ୍ନତ କରି ବଞ୍ଚିବେ । ସଭିଙ୍କର ଓଠରେ ହସ ଉକୁଟି ଉଠିବ । ତେଣୁ କବି ପୁନର୍ବାର ଆଶାପୋଷଣ କରୁଛନ୍ତି –

"ନବଜାତକର ଝଙ୍କାର ଆଜି ବାଜୁ
ମୁଠିଏ ବୋଲି ହସ ଆଣିଚି ମୁଁ
ମୁଠିଏ,
ଘାସର ଘୂର୍ଣ୍ଣିରେ ଏଇ ନାଚେ ।" (୪୯)

ଅଦ୍ୟାବଧି କବିତାରେ 'ରକ୍ତ ମୁଖା' ବିପ୍ଳବର ଆବାହନ କରୁଥିବା କବି ଅନନ୍ତ ଶାନ୍ତି କାମନା ମଧ୍ୟ କରୁଛନ୍ତି । କବିଙ୍କର ଏତାଦୃଶ କାବ୍ୟିକ ଦୃଷ୍ଟିଭଂଗୀ ସଂପର୍କରେ ମତପୋଷଣ କରିବାକୁ ଯାଇ କବି ସୀତାକାନ୍ତ ମହାପାତ୍ର କହନ୍ତି–

"ବିପ୍ଳବ ଜନ୍ମନିଏ ସ୍ନେହରୁ । ଈର୍ଷା- କ୍ରୋଧ କି ଅସୂୟାରୁ ନୁହେଁ । ବଞ୍ଚିତ, ଦଳିତ, ମଥିତ, ଅତ୍ୟାଚାରିତ ମଣିଷ ପ୍ରତି ସ୍ୱାଭାବିକ ଅନ୍ତରଂଗ ସ୍ନେହରୁ ଜନ୍ମନିଏ ପ୍ରକୃଷ୍ଟ ବିପ୍ଳବ । ସେଇଥିପାଇଁ ବିପ୍ଳବ ଶାନ୍ତି ଚାହେଁ । ଶାନ୍ତିର କପୋତକୁ ଉନ୍ମୁକ୍ତ ଆକାଶକୁ ଉଡ଼ାଇ ଦେବାକୁ ଚାହେଁ । କପୋତର ପକ୍ଷ ଆକାଶକୁ ଛୁଇଁ ଛୁଇଁ ଦୂରରେ ହଜିଯିବା ହିଁ ବିପ୍ଳବର ଅନ୍ତିମ ଲକ୍ଷ୍ୟ ।" (୫୦)

ଯୁଦ୍ଧ ପରେ ଯେମିତି ଶାନ୍ତିର ଆଗମନ ଘଟେ, ଠିକ୍ ସେମିତି ବିପ୍ଳବ ପରେ ହିଁ ଶାନ୍ତି ପ୍ରତିଷ୍ଠା ହୋଇଥାଏ । ବିପ୍ଳବ ହିଁ ବିପ୍ଳବ ହିଁ ଶାନ୍ତିର ବାର୍ତ୍ତାବହ । ସୁଖ, ଶାନ୍ତି, ସୁସ୍ଥ ବାତାବରଣ ପାଇଁ ମନୁଷ୍ୟ ବିପ୍ଳବ ସଂରଚନା କରେ । ତେଣୁ ଶାନ୍ତି ଓ ବିପ୍ଳବ ମଧ୍ୟ ପରସ୍ପର ଅଙ୍ଗାଙ୍ଗୀ ଭାବେ ଜଡ଼ିତ । କବିଙ୍କର ଶାନ୍ତିଶିଖା ଏହି ବାର୍ତ୍ତାକୁ ବହନ କରି ହୋଇଛି ଉର୍ଦ୍ଧ୍ୱସ୍ୱଳ । ଦ୍ୱିତୀୟ ମହାଯୁଦ୍ଧର ପ୍ରଚଣ୍ଡ ବିଭୀଷିକାର ଚିତ୍ର ସାଙ୍ଗକୁ ତତ୍କାଳୀନ ସମୟରେ ଦେଶର ଦୟନୀୟ ଅବସ୍ଥା ମଧ୍ୟରେ ଶାନ୍ତି ପାଇଁ ବିହ୍ୱଳିତ ମନୁଷ୍ୟ ହୃଦୟର ଆକୁଳତାକୁ ବହନ କରିଛି 'ହଟାଅ-ହଟାଅ' କବିତା ।

"ହଟାଅ ହଟାଅ- ମୃତ୍ୟୁ ବାହିନୀ ଦୁଆରୁ
ଆଉ ନାହିଁ ବେଳ, ଆଉ ନାହିଁ ବେଳ, ଭାଇରେ !

ଉଠାଅ ଉଠାଅ ଶାନ୍ତି ଆନନ୍ଦ ଲୁହାରୁ
ଦୁନିଆ ଛାତିରେ ସୈନ୍ୟ ଦଳ ଗଲା ଛାଇରେ ।" (୫୧)

ମୃତ୍ୟୁ ମଣିଷ ହୃଦୟରୁ ଶାନ୍ତି, ମୈତ୍ରୀକୁ ଲୁଣ୍ଠନ କରିଛି । ତେଣୁ ମୃତ୍ୟୁର କରାଳତା ମଧ୍ୟରୁ ମଣିଷର ସୁଖ, ଶାନ୍ତି ଫେରାଇ ଆଣିବା ପାଇଁ କବି ଆହ୍ୱାନ ପ୍ରଦାନ କରିଛି । ବିଶ୍ୱଯୁଦ୍ଧର ଭୟାବହତାର ଚିତ୍ର କବିଙ୍କ କବିତାରେ ମଧ୍ୟ ସୁସ୍ପଷ୍ଟ । ହିରୋସୀମା, ନାଗାସାକି ସହର ଉପରେ ଆମେରିକାର ପରମାଣୁ ବୋମା ପକାଇବାପରି ଯେଉଁ ନିଷ୍ଠୁର ବର୍ବରତାର ଚିତ୍ର ମାନବିକତାର ଇତିହାସରେ ବିରଳ । ତେଣୁ ସମଗ୍ର ମାନବ ସମାଜ ପାଇଁ ବିଶ୍ୱ ଶାନ୍ତିର ଆବାହକ ସାଜନ୍ତି କବି ଅନନ୍ତ ଏବଂ ଗାନ କରନ୍ତି ଶାନ୍ତିର ମହାମନ୍ତ୍ର :–

"ଶାନ୍ତି ଭରସା ଆଶା ଶାନ୍ତି ମରମ ଭାଷା
ଶାନ୍ତି ଜୀବନ ପଥ ସାହାରେ
ଶାନ୍ତି ସରିତେ ପ୍ରୀତି ବାହାରେ ।" (୫୨)

ଏଇ ଶାନ୍ତି କାମନାକୁ କବି ସ୍ଥାନ-କାଳ-ପାତ୍ରର ବଂଧନୀ ମଧ୍ୟରେ ଆବଦ୍ଧ କରିନାହାନ୍ତି । ଏହା ଏକ ବୃହତ୍ତର ମାନବ ସମାଜ ପ୍ରତିଷ୍ଠା ଉଦ୍ଦେଶ୍ୟରେ ଅଭିପ୍ରେତ । କବିଙ୍କ ଭାଷାରେ –

"ଶାନ୍ତି ଆମ ତରୁଣ ସାଧନାରେ ସୃଜନର ବିଳାସ
  ବୃଦ୍ଧ ମନେ ତାରୁଣ୍ୟର ଦ୍ୟୋତନା
ଶାନ୍ତି ଆମ ଶ୍ୱେତ ମଲ୍ଲୀ ଶୋଣିତାଶା- ପଳାସ
  ସୀମାହୀନ ଜୀବନର ନବ ନବ ଦ୍ୟୋତନା ।"(୫୩)

କବିଙ୍କର କବିତାଗୁଡ଼ିକରୁ ସ୍ପଷ୍ଟ ପ୍ରମାଣିତ ହୁଏ ଯେ', କବିଙ୍କର ସଂଗ୍ରାମୀ ବ୍ୟକ୍ତିତ୍ୱ ସହିତ ତାଙ୍କ କବିତ୍ୱ- ପ୍ରତିଭା ଅଂଗାଗୀ ଭାବେ ଜଡ଼ିତ । ଭଗବତୀ ପାଣିଗ୍ରାହୀଙ୍କ ମୃତ୍ୟୁ ଓ ଧୀରେ ଧୀରେ କମ୍ୟୁନିଷ୍ଟ ପାର୍ଟି ସହିତ ତାଙ୍କର ସଂପର୍କ ଦୁର୍ବଳ ହୋଇଯିବା ପରେ କବିଙ୍କ କବିତାର ଉଗ୍ର ବୈପ୍ଳବିକ ରୂପ କ୍ରମଶଃ ଶିଥିଳ ପଡ଼ିଯାଇଛି । ଏକ ନୂତନ ଚିନ୍ତାଚେତନା ତାଙ୍କ କବିତାକୁ ଗ୍ରାସ କରିଛି ତାହା ହେଉଛି ଅସ୍ତିତ୍ୱବାଦୀ ଦର୍ଶନ । ତଥାପି କବି ଅନନ୍ତଙ୍କ କାବ୍ୟସ୍ୱର ବହୁକାଳ ଧରି ସାମ୍ୟବାଦର ବିଜୟ ବାର୍ତ୍ତା ବହନ କରିଛି । ଅନ୍ତିମ ପର୍ଯ୍ୟାୟର କବିତାରେ କିଛି ମାତ୍ରାରେ ଶିଥିଳତା ପରିଲକ୍ଷିତ ହେଲେ ମଧ୍ୟ ଏହା ତାଙ୍କ ସମଗ୍ର କାବ୍ୟିକ ଜୀବନର ବାହକ ନୁହେଁ । ତାଂକର କାବ୍ୟିକ ଚିନ୍ତାଧାରା ସାମ୍ୟବାଦକୁ ଆଦରି ନେଇଛି । ତେଣୁ ପ୍ରଗତିଶୀଳ ଓଡ଼ିଆ କବିତାର ଇତିହାସରେ ଚିରକାଳ କବି ଅନନ୍ତ ପଟ୍ଟନାୟକ ଯେ ଏକ ବହ୍ନିମାନ ଆଗ୍ନେୟ ଶିଖାର ଜ୍ୱଳନ୍ତ ରୂପ ଏହାକୁ ଅସ୍ୱୀକାର କରାଯାଇ ନ'ପାରେ ।

## କବି ରଘୁନାଥ ଦାସ

ବୈପ୍ଳବିକ ସାହିତ୍ୟର ଅନ୍ୟତମ ପ୍ରଚଣ୍ଡ ପ୍ରତିଭାବାନ୍ ସ୍ରଷ୍ଟା ଯାହାଙ୍କର କବିତା ଜନମାନସକୁ ପ୍ରେରଣା ପ୍ରଦାନ କରେ ପ୍ରଚଳିତ ପରଂପରା ବିରୋଧରେ ସ୍ୱର ଉତ୍ତୋଳନ କରିବାକୁ କେବଳ ସେତିକି ନୁହେଁ, କବିଙ୍କର କାବ୍ୟକବିତା ମଧ୍ୟ ଶୋଷକଗୋଷ୍ଠୀଙ୍କ ବିରୋଧରେ ତୀବ୍ର ସଂଗ୍ରାମର ଆହ୍ୱାନ ଦେବାସହିତ ଶୋଷିତବର୍ଗଙ୍କୁ ଅହେତୁକ ପ୍ରେରଣା ପ୍ରଦାନ କରିବାକୁ ନୈତିକ ମଦତ୍ ଯୋଗାଏ, ସେ ହେଉଛନ୍ତି କବି ରଘୁନାଥ ଦାସ । ଏହି ପ୍ରତିଭାବାନ୍ ସ୍ରଷ୍ଟା, ସଂଗ୍ରାମୀ କାବ୍ୟ ପୁରୁଷଙ୍କୁ ଓଡ଼ିଆ ସାହିତ୍ୟ ସେତିକି ମର୍ଯ୍ୟାଦା ପ୍ରଦାନ କରିନାହିଁ । ୧୯୩୮/୩୯ ମସିହାରୁ କବିଙ୍କର କବିତା ବିଭିନ୍ନ ପତ୍ରପତ୍ରିକାର ପୃଷ୍ଠା ମଣ୍ଡନ କରୁଥିଲା । ୧୯୪୦-୧୯୫୩ ମସିହା ମଧ୍ୟରେ ରଚିତ କାବ୍ୟ କବିତା ଗୁଡ଼ିକରେ ବୈପ୍ଳବିକ ଚିନ୍ତାଦର୍ଶର ଏକ ପରିପୂର୍ଣ୍ଣ ରୂପକୁ ଆମେ ଲକ୍ଷ୍ୟ କରିପାରିବା । କିନ୍ତୁ ୧୯୫୩ ପରେ କବି ରଘୁନାଥଙ୍କର ନୀରବତା ହିଁ କବିଙ୍କୁ ପାଠକମାନଙ୍କ ନିକଟରୁ ଦୂରେଇ ଆଣିଥିଲା । ସମଧର୍ମା କବି ରବି ସିଂଙ୍କ ପ୍ରଚେଷ୍ଟାରେ ୧୯୭୩ ମସିହାରେ କବିଙ୍କର 'ଅଗଷ୍ଟ ପନ୍ଦର ଓ ଅନ୍ୟାନ୍ୟ କବିତା' ପ୍ରକାଶ ପାଇଥିଲା । ଏହାପରେ ୩ ଜୁଲାଇ ୨୦୦୨ ମସିହାରେ କବି ବଜ୍ରନାଥ ରଥଙ୍କର ଐକାନ୍ତିକ ପ୍ରଚେଷ୍ଟା ଓ କବି ସଦାଶିବ ଦାଶଙ୍କର ଅକ୍ଳାନ୍ତ ଉଦ୍ୟମ ହେତୁ ଆତ୍ମପ୍ରକାଶ କଲା "ରଘୁନାଥ ଦାସ ରଚନା ସମଗ୍ର" ।

କବିଙ୍କର କାବ୍ୟିକ ପ୍ରତିଭା ସଂପର୍କରେ ଆଲୋଚନା କରିବା ପୂର୍ବରୁ ପ୍ରଥମେ ତାଙ୍କର କାବ୍ୟ, କବିତା ଓ ପ୍ରବଂଧ କେଉଁ ପୃଷ୍ଠଭୂମି ଉପରେ ଆଧାରିତ- ତାହା ଆଲୋଚନା କରିବା ନିତାନ୍ତ ଆବଶ୍ୟକ । କବିଙ୍କର କାବ୍ୟିକ ପ୍ରତିଭା ମୁଖ୍ୟତଃ ସଂଗ୍ରାମଶୀଳ ପୃଷ୍ଠଭୂମି ଉପରେ ଥିଲା ପର୍ଯ୍ୟବେସିତ । ୧୯୩୬-୪୦ ମସିହା ମଧ୍ୟରେ କବି ସେତେବେଳେ ରେଭେନ୍ସା ମହାବିଦ୍ୟାଳୟର ଛାତ୍ର ଥାଆନ୍ତି ଏବଂ ତତ୍କାଳୀନ ସମୟରେ ଦେଖାଦେଇଥିବା ଛାତ୍ର ଆନ୍ଦୋଳନରେ ସକ୍ରିୟ ଯୋଗଦାନ କରି ନିଜକୁ ଜଣେ ସଂଗ୍ରାମୀ ଛାତ୍ର ଭାବରେ ପ୍ରତିପାଦିତ କରନ୍ତି । ବିଦ୍ୟାଳୟରେ ଅଧ୍ୟୟନ କରୁଥିବା ସମୟରେ ମଧ୍ୟ ଲବଣ ଆନ୍ଦୋଳନରେ ସକ୍ରିୟ ଅଂଶଗ୍ରହଣ କରିଥିଲେ କବି ରଘୁନାଥ ଦାସ । ଏଥିପାଇଁ କବିଙ୍କୁ ଏକମାସ ଜେଲ୍ ଭୋଗିବାକୁ ପଡ଼ିଥିଲା । କବି ରଘୁନାଥ 'ଭଗବତୀ ଚରଣ ପାଣିଗ୍ରାହୀ', 'ଅନନ୍ତ ପଟ୍ଟନାୟକ', 'ସଚ୍ଚିଦାନନ୍ଦ ରାଉତରାୟ'ଙ୍କର କାବ୍ୟକବିତା ସର୍ବୋପରି 'ନବଯୁଗ ସାହିତ୍ୟ ସଂସଦ' ଦ୍ୱାରା ଯେ ପ୍ରଭାବିତ ହୋଇଛନ୍ତି ଏହାକୁ ନିଃସନ୍ଦେହରେ ସ୍ୱୀକାର କରାଯାଇପାରେ । କବିଙ୍କର କାବ୍ୟମାନସ କିପରି ସାମ୍ୟବାଦୀ ଚିନ୍ତାଦର୍ଶକୁ ମୁଖ୍ୟ ଆୟୁଧ ଭାବରେ ଗ୍ରହଣ କରିଛି ତାହା ତାଙ୍କର "ଅଗଷ୍ଟ

ପନ୍ଦର ଓ ଅନ୍ୟାନ୍ୟ କବିତା" ସଂକଳନରୁ ସ୍ପଷ୍ଟ ବାରି ହୋଇପଡ଼େ । 'ଅଗଷ୍ଟ ପନ୍ଦର' କବିତା ତିନୋଟି ଭାଗରେ ରଚିତ ହୋଇଥିଲା । ଅଗଷ୍ଟ ପନ୍ଦର ୧୯୪୭ ଅଗଷ୍ଟପନ୍ଦର ୧୯୪୮ ଓ ଅଗଷ୍ଟ ପନ୍ଦର ୧୯୪୯ । ପ୍ରଥମ କବିତାଟି ଶଶୀଭୂଷଣ ପଟ୍ଟନାୟକଙ୍କ ସଂପାଦିତ 'ଶତାବ୍ଦୀ' ପତ୍ରିକାରେ ପ୍ରଥମେ ଆତ୍ମପ୍ରକାଶ କରିଥିଲା । ଆଧୁନିକ ଓଡ଼ିଆ କବିତା କ୍ଷେତ୍ରରେ 'ବାଜିରାଉତ' ପରେ ପରେ ଏହା ଦ୍ୱିତୀୟ ଦୀର୍ଘ କବିତାର ମାନ୍ୟତା ଅର୍ଜନ କରେ । କବିତାଟି ପ୍ରକାଶିତ ହେବା ପରେ କବି ରବି ସିଂ କବିତା ସଂପର୍କରେ ଯେଉଁ ମନ୍ତବ୍ୟ ପ୍ରଦାନ କରିଥିଲେ ତାହା କବିତାର ମହତ୍ତ୍ୱକୁ ପ୍ରତିପାଦିତ କରେ । କବିଙ୍କ ଭାଷାରେ –

"ଏ ଅଗଷ୍ଟ ପନ୍ଦର ୧୯୪୭ ସାଲରେ ଭାରତର କଳା ସାହେବଙ୍କ କର କମଳରେ ଇଂରେଜ କର୍ତ୍ତୃକ ଉପହାର ସୂତ୍ରେ ତଥାକଥିତ ସ୍ୱାଧୀନତାର ପ୍ରଥମ ନାନ୍ଦୀପାଠ ନୁହେଁ - ଏ 'ଅଗଷ୍ଟ ପନ୍ଦର' ଜନତାର ସେହି ଅନାଗତ ମୁକ୍ତିର ମନ୍ତ୍ରଧ୍ୱନି ଏବଂ ୧୯୪୭, ୧୯୪୮, ୧୯୪୯ ଏଇ ତିନୋଟି ବର୍ଷ ଭିତରେ ଦାନ ସୂତ୍ରରେ ମିଳିଥିବା 'ଅଗଷ୍ଟ ପନ୍ଦର'ର ସନ୍ତ୍ରାସବାଦ ଓ ତା'ର କାବ୍ୟିକ ପରିପ୍ରକାଶ । ସଚ୍ଚିରାଉତରାୟଙ୍କ ବିଖ୍ୟାତ 'ବାଜିରାଉତ' ପରେ କବି ରଘୁନାଥ ଦାସଙ୍କ ରଚିତ 'ଅଗଷ୍ଟ ପନ୍ଦର' ଆଉ ଏକ ବିଖ୍ୟାତ ଦ୍ୱିତୀୟ କୁଶଳୀ କାବ୍ୟକୀର୍ତ୍ତି ଓଡ଼ିଆ କାବ୍ୟ ଜଗତରେ ।"(୫୪)

ବର୍ଷବର୍ଷ ଧରି ଅଗଣିତ ଭାରତବାସୀଙ୍କର ଲହୁ ଆଉ ଲୁହକୁ ପାଥେୟ କରି ଆରମ୍ଭ ହୋଇଥିବା ଆଗ୍ନେୟ ବିଦ୍ରୋହର ସ୍ୱର୍ଣ୍ଣପ୍ରସୂଫଳ ହେଉଛି ଭାରତବର୍ଷର ସ୍ୱାଧୀନତା । ଗୁଳିଗୋଳା, ଲାଠିମାଡ଼କୁ ଖାତିର୍ ନ କରି ଜୀବନକୁ ବାଜି ଲଗାଇ ସଂଗ୍ରାମୀ ମନୁଷ୍ୟ ସ୍ୱାଧୀନତା ପାଇଁ ଆଗେଇ ଚାଲିଛି । କବି ରଘୁନାଥ ଭାରତବର୍ଷର ସମସ୍ତ ଜନତାଙ୍କୁ ବିପ୍ଳବର ଆଗ୍ନେୟମନ୍ତ୍ର ଉଚ୍ଚାରଣ କରିବା ପାଇଁ ଆହ୍ୱାନ ପ୍ରଦାନ କରିଛନ୍ତି । କବିଙ୍କ ଭାଷାରେ –

"ଏକ୍‌ଜୁଟ୍ ହୁଅ ଭାଇ ଭାରତର ତ୍ରିଂଶ କୋଟିଲୋକ !!
ତ୍ରିଂଶ କୋଟି ଭାରତୀୟ ଅନ୍ନହୀନ ସର୍ବହରା-ଭାଇ
କାଙ୍ଗାଳ ହୋଇଛି ଦେଶ- ମୁଠେ ଲୁଣ ବଞ୍ଚିବାର ପାଇଁ
ଚାହୁଁ ଆମେ ! ପ୍ରାଣ ଥାଉଁ ଖୋଲିବୁନି ଏ ମୁଠାର ଜୀବ !
ବଂଧୁକ ଆବାଜ୍ ଆଗେ ବକ୍ଷ ଖୋଲି ଦିଅଇ ଜବାବ୍
ଭାରତର ମୁକ୍ତି ସେନା-ସତ୍ୟାଗ୍ରହୀ-ତିଳେ ନାହିଁ ଭୟ

ଉଲ୍ଲଙ୍ଗ ଫକୀର ଜଣେ ଆଗେ ଚାଲ "ଜୟ-ଜୟ ଗାନ୍ଧିଜୀର ଜୟ ।" (୫୫)

ଭାରତର ତିରିଶ୍ କୋଟି ଜନତା ସ୍ଥାନକାଳପାତ୍ର ନିର୍ବିଶେଷରେ ଏକଜୁଟ୍ ହେବେ । ମିଥ୍ୟା, ଅରାଜକତା, ଅନ୍ୟାୟର ପଥରୋଧ କରି ସତ୍ୟ ଧର୍ମର ବିଜୟ ସେମାନେ ଆଣିବେ । ଧାରେ ଆଲୋକର ସାମାନ୍ୟ ଶିଖା ଅଂଧକାରକୁ ଦୂର କଲାପରି ସାମାନ୍ୟ ବନ୍ଧୁକ ଗୁଳିର ଆବାଜ୍ ବିପ୍ଳବକୁ ଦୂରେଇ ଦେଇପାରିବ ନାହିଁ ।

ପ୍ରତୀକ୍ଷାର ଅନ୍ତ ଘଟାଇ ଅନ୍ୟାୟରୂପୀ ଅଂଧକାରର ବକ୍ଷଭେଦ କରି ସ୍ୱାଧୀନତାରୂପକ ନବ ସୂର୍ଯ୍ୟୋଦୟର ଉଦୟ ଘଟିଛି ଭାରତୀୟ ଆକାଶରେ ୧୯୪୭ ମସିହା ଅଗଷ୍ଟ ପନ୍ଦର ତାରିଖ ଦିନ । ସେଦିନର ଏହି ସ୍ୱର୍ଣ୍ଣାଭ ସକାଳର ଆଗମନରେ କବିଙ୍କର ଉଚ୍ଛ୍ୱସିତ କଣ୍ଠସ୍ୱର ଉଚ୍ଚାରଣ କରିଛି –

"ଅଗଷ୍ଟ ପନ୍ଦର ଆଜି,
ଆଜି-
ଦୀର୍ଘ ଅମାବ୍ୟାପି ମର୍ମନ୍ତୁଦ କରାଳ ଦୁଃସ୍ୱପ୍ନ
ଯାଇଅଛି ଭାଜି ।" (୫୬)

ସମାଜରେ ଅଗଣିତ ମନୁଷ୍ୟଙ୍କର ଆଶା, ଆକାଂକ୍ଷା ବାସ୍ତବତାର ପଟ୍ଟଭୂମିରେ ପ୍ରତିଫଳିତ ହୁଏ । ପ୍ରଚଳିତ ସ୍ଥିତାବସ୍ଥାର ଅବସାନ ଘଟାଇ କବି ନୂତନ ମୂଲ୍ୟବୋଧର ଆବାହନ କରେ । ମୁକ୍ତି ପାଇଁ ଆକାଂକ୍ଷା ପୋଷଣ କରେ । ସେତେବେଳେ କବିର କବିତା କ୍ରାନ୍ତିକାରୀ କବିତାର ମାନ୍ୟତା ପାଏ । ଆଗାମୀ କାଲିର ଏକ ସ୍ୱର୍ଣ୍ଣାଭ ଭବିଷ୍ୟତର ସ୍ୱପ୍ନ ଦେଖୁଥିବା କବିଟି ମୁକ୍ତିକାମୀ ଜନଗଣଙ୍କୁ ଉଦ୍‌ବୁଦ୍ଧ କରିବା, ସଂଗଠିତ କରିବା ସହିତ, ଦିଗ୍‌ଦର୍ଶନ ଦେବାକୁ ଯାଇ ଆହ୍ୱାନ କରେ –

"ଯାତ୍ରୀ ସାବଧାନ !
ତୋର ଏଇ ଯାତ୍ରା ପଥେ ନୁହେ ଏ ଯେ ଅନ୍ତିମ ସୋପାନ ।
ସଂଗ୍ରାମ ତୋ ସରିନି ଏବେ ବି;
ଏବେ ମଧ୍ୟ ଊର୍ଦ୍ଧ୍ୱେ ତୋର ଜନତାର ରକ୍ତ ମାଂସ ଲୋଭୀ
ଗୃଧ୍ରପଲ ଚକ୍ରମାରେ; ଝାମ୍ପି ନିଏ ଶ୍ରମିକର ଆୟୁ
ଏବେ ମଧ୍ୟ ଭାତଥାଳୀ ଭାଗ କରେ ମାଲିକ ଓ ସାହୁ !!

x x x x

ମୁକ୍ତ କଣ୍ଠେ ଗାଅ ସର୍ବେ ଜନତାର ଜୟ' ।
ଏ ଜୀବନ ହେଉ ସତ୍ୟ, ହେଉ ପୂର୍ଣ୍ଣ, ହେଉ ଶାନ୍ତିମୟ" ।(୫୭)
(ଅଗଷ୍ଟପନ୍ଦର ୧୯୪୭- 'ରଘୁନାଥ ଦାସ ରଚନାସମଗ୍ର', ପୃ-୬)

କବିତାର ପଂକ୍ତି ମଧ୍ୟରେ ଆଶାବାଦର ସ୍ୱର ଅନୁରଣିତ । ଏହା ପୁଣି ଜନଜୀବନ ଉଦ୍ଦେଶ୍ୟରେ ପ୍ରଧାବିତ । କ୍ରାନ୍ତଦର୍ଶୀ କବିର କବିତା ସଦାସର୍ବଦା ଗଣମୁଖୀ ହେବା ବିଧେୟ । ଯାହାକି ରଘୁନାଥଙ୍କ କବିତାରେ ପରିଦୃଷ୍ଟ ହୁଏ । କବିଙ୍କର ଏହି ଚିନ୍ତାଦର୍ଶ ସଂପର୍କରେ ମତବ୍ୟକ୍ତ କରିବାକୁ ଯାଇ କବି ବ୍ରଜନାଥ ରଥ କହନ୍ତି –

"ଗଣଙ୍କର ଜୀବନ ଓ ସଂଗ୍ରାମକୁ ଗଣଙ୍କ ଭାଷାରେ ରୂପାୟିତ କରେ ଏବଂ ସେମାନଙ୍କୁ ଏକ ଶୋଷଣମୁକ୍ତ, ସୁଖୀ, ସମାଜବାଦୀ ରାଷ୍ଟ୍ର ଗଠନରେ ଉଦ୍‌ବୁଦ୍ଧ କରି ଆଗେଇ ନିଏ, ତାହାହିଁ ପ୍ରକୃତ ଗଣ ସାହିତ୍ୟ ।" (୫୮)

ଗଣ ଜୀବନର ସଂଗ୍ରାମୀ ପୃଷ୍ଠଭୂମି ଉପରେ ପର୍ଯ୍ୟବେସିତ 'ଅଗଷ୍ଟ ପନ୍ଦର' ଅସୁମାରୀ ଆଶା, ସ୍ୱପ୍ନ, ସ୍ୱପ୍ନଭଂଗ, ଏବଂ ଶପଥର କବିତା । ୧୯୪୭ ମସିହାରେ କବି ଦେଖୁଛନ୍ତି ଉପନିବେଶବାଦର ଅବସାନ ଘଟିଛି । ବିଲାତୀ ଶାସନର ପୂର୍ଣ୍ଣଚ୍ଛେଦ୍ ପଡ଼ିଛି । ଭାରତୀୟ ଜନତା ଦାବୀ କରିଛି ତା'ର ବଞ୍ଚିବାର ନ୍ୟାର୍ଯ୍ୟ ଅଧିକାର । ଶେଷରେ ଅଗଣିତ ଜନତାଙ୍କର ସ୍ୱପ୍ନ ସାର୍ଥକ ହୋଇଛି । ଭାରତବର୍ଷ ସ୍ୱାଧୀନତା ଲାଭ କରିଛି । ଅନ୍ୟାୟ ଅଂଧକାର ରୂପକ କାଳରାତ୍ରୀର କବରକୁ ଢାଙ୍କି ଦେଉଛି ଆଗାମୀ କାଲିର ସୁନେଲୀ ଜ୍ୟୋସ୍ନାର ଚାଦର । ଲଂକାତାରା, ଉଲ୍‌କା ପରି ଯେତେସବୁ ନିଶାଚର ସମସ୍ତେ ବିଦାୟ ଲଭିଛନ୍ତି । ସକଳ ଜନତା ପ୍ରତୀକ୍ଷାରତ ଏକ ନୂତନ ସକାଳକୁ । ଏକ ବର୍ଷ ତଳର ଏହି ଉତ୍ସବ ମୁଖର ସ୍ୱପ୍ନିଳ ଉନ୍ମାଦନା କିନ୍ତୁ ଦୀର୍ଘସ୍ଥାୟୀ ହୋଇପାରି ନାହିଁ । ଅତୀତର ସ୍ମୃତି କବି ହୃଦୟକୁ ରୋମନ୍ଥିତ କରିଛି । ସ୍ୱାଧୀନତାର ଆଗମନ କାଳର ଉତ୍ସବ ସମାରୋହ ସତେଯେପରି ନିର୍ଜୀବ ପାଲଟି ଯାଇଛି । ସୁଖସ୍ୱପ୍ନ ମରୀଚିକା ପରି ଧୀରେଧୀରେ ଆଖିସାମ୍ନାରୁ ଅପହଞ୍ଚ ଦୂରତାକୁ ଚାଲିଯାଉଛି । ନିଛକ ବାସ୍ତବତାର ରୁକ୍ଷ ଚିତ୍ର କବି ରଘୁନାଥଙ୍କୁ ପ୍ରତିହିଂସା ପରାୟଣ କରି ଦେଉଛି । କବି ହୃଦୟରେ ମୋହଭଂଗ ଦେଖା ଦେଇଛି । କ୍ରୋଧ ଜର୍ଜରିତ କବି ଗାନ କରୁଛନ୍ତି –

"ମୁମୂର୍ଷୁର ପ୍ରାଣେ ସେ ଯେ ଜାଗିଥିଲା ଦୀପ୍ତ ଉଦ୍ଦୀପନା -
ଆଜି ତା'ର ଦେଖେ ଭସ୍ମ । ସବୁ ମିଥ୍ୟା, କ୍ରୂର ପ୍ରବଞ୍ଚନା ।
ଶତ୍ରୁର ସେ ଥିଲା ଚାଲ୍ । ଖାଲି ଗୋଟେ ମସ୍ତ ଧପ୍‌ପାବାଜି

X X X

ଧରା ପଡ଼େ ଜାଲ
ନଗ୍ନ ରୂପେ ଦେଖାଦିଏ ଶୋଷକର ଉଦ୍ଧତ ଦଲାଲ ।" (୫୯)

ମୁକ୍ତିର ଦିବସ ଅଗଷ୍ଟ ପନ୍ଦର ଜନତାଙ୍କୁ ମିଥ୍ୟା, ପ୍ରତାରଣା, ପ୍ରବଞ୍ଚନା ଆଣିଦେଇଛି । 'ମୁକ୍ତି' ମଣିଷକୁ ଦାନ ସୂତ୍ରରେ ମିଳେ ନାହିଁ । ଏଥିପାଇଁ ମଣିଷକୁ

ସଂଘବଦ୍ଧ ହୋଇ ନିଜର ହକ୍‌ପାଇଁ ଲଢ଼େଇ କରିବାକୁ ହୁଏ । ସକଳ ବାଧାବଂଧନକୁ ଚୂର୍ଣ୍ଣ କରି ଆଗାମୀ କାଲିକୁ ସ୍ୱର୍ଣ୍ଣାଭ କରିବା ପାଇଁ ପ୍ରତିଶ୍ରୁତିବଦ୍ଧ ହେବାକୁ ପଡ଼େ । କବିଙ୍କ କବିତାରେ ତାହା କିପରି ରୂପଲଭିଛି ଦେଖନ୍ତୁ :-

"ମୂଲ୍ୟ ତା'ର କରିଥିଲି ଦୟାବନ୍ତ ଶତ୍ରୁର କରୁଣା
ହୁଡ଼ିଥିଲି ମୁକ୍ତି ମାର୍ଗ ..... ଭୁଲିଥିଲି ବଂଧନକୁ ଚୂନା
କରିବାକୁ ହେବ ମୋତେ ନିଜ ବଳେ ବଜ୍ର ମୁଷ୍ଟିଘାତେ;
ଭୁଲିଥିଲି - ସୂର୍ଯ୍ୟ ସେ ଯେ ଜନ୍ମ ଲଭେ ରକ୍ତାକ୍ତ ପ୍ରଭାତେ । (୬୦)

ସ୍ୱାଧୀନତା ପ୍ରାପ୍ତି କାଳରେ ଗୌରବ ଅନୁଭବ କରୁଥିବା କବି ପରବର୍ତ୍ତୀ ସମୟରେ ଭାରତର ଶାସନ ବ୍ୟବସ୍ଥାରେ କ୍ଷୁବ୍‌ଧ ହୋଇ ଶାଣିତ ବକ୍ତବ୍ୟ ଉପସ୍ଥାପନ କରିଛନ୍ତି । ଏ ସଂପର୍କରେ ପ୍ରାବଂଧକ 'ନିତ୍ୟାନନ୍ଦ ଶତପଥି' ମତପ୍ରଦାନ କରନ୍ତି–

"ଏକ ରକ୍ତାକ୍ତ ପ୍ରଭାତର ଯେଉଁ ସୂର୍ଯ୍ୟ ପାଇଁ କବି କଣ୍ଠରେ ଅସୀମ ବନ୍ଦନାର ସ୍ୱର ଉଚ୍ଚାରିତ ହୁଏ, ସେ ସୂର୍ଯ୍ୟ ତଥାପି ପୂର୍ବ ଦିଗନ୍ତରେ ଉଇଁବାକୁ ବାକି ଅଛି । ସେ ସ୍ୱୟଂସିଦ୍ଧ ଓ ସ୍ୱୟଂଭୂ । ମିଥ୍ୟାଚାର ସହିତ ସେଇ ନୂତନ ଦର୍ଶନର ଭାଗବଣ୍ଟା ସମ୍ଭବ ନୁହେଁ । ସେଥିପାଇଁ କବି ହିଂସାତ୍ମକ ପନ୍ଥାକୁ ଅନୁମୋଦନ କରିଛନ୍ତି ।" (୬୧)

ସାମ୍ୟବାଦୀ କବି ଲେନିନ୍ ସଦାସର୍ବଦା ସାହିତ୍ୟ ଜନସାଧାରଣଙ୍କ ଉଦ୍ଦେଶ୍ୟରେ ଏବଂ ସେମାନଙ୍କର ବୋଧଗମ୍ୟ ହେବା ଉଚିତ୍ ବୋଲି ମତବ୍ୟକ୍ତ କରୁଥିଲେ । ଯାହାକି ସଂଗ୍ରାମୀ ରଘୁନାଥଙ୍କ କବିତାରୁ ସ୍ପଷ୍ଟ ଅନୁମିତ ହୋଇଥାଏ । କବିଙ୍କର କ୍ଷୁବ୍‌ଧ ଆତ୍ମା ସେହି ଜନଗଣଙ୍କ ଉଦ୍ଦେଶ୍ୟରେ ସ୍ୱରଉତ୍ତୋଳନ କରେ । କବିଙ୍କର ତିକ୍ତ ଅନୁଭବ ସେମାନଙ୍କୁ ଉପଯୁକ୍ତ ନ୍ୟାର୍ଯ୍ୟ ପ୍ରଦାନ ଦିଗରେ ସହାୟକ ହୁଏ । ଆନ୍ଦୋଳନାତ୍ମକ ମନୋବୃତ୍ତିକୁ ଆପଣେଇ ନେବା ପାଇଁ ଆହ୍ୱାନ ଦିଏ । ଏ ସଂପର୍କରେ ଡଃ ବାସୁଦେବ ସାହୁ ମତପ୍ରଦାନ କରନ୍ତି –

"ସ୍ୱାଧୀନତା ପୂର୍ବରୁ ଉଦ୍‌ବେଳିତ ଜନସାଧାରଣଙ୍କୁ ଆନ୍ଦୋଳନର ଲକ୍ଷ୍ୟ ପଥରେ ଅବିଚଳିତ ଭାବରେ ଆଗେଇ ନେବାକୁ ପ୍ରେରଣା ଦେବା ପାଇଁ, ଏବଂ ସେମାନଙ୍କ ମାନସ ପଟରେ ଏକ ନୂତନ ସମାଜର ସୁସ୍ପଷ୍ଟ ଚିତ୍ର ଆଙ୍କିଦେବା ପାଇଁ ଯେଉଁ କେତେଜଣ କୃତୀ ସ୍ରଷ୍ଟା ଲେଖନୀ ଚାଳନା କରିଥିଲେ, ସେମାନଙ୍କ ମଧ୍ୟରେ ସଚ୍ଚିରାଉତରାୟ ଓ ଅନନ୍ତ ପଟ୍ଟନାୟକଙ୍କ ସମେତ ମାର୍କସ୍‌ବାଦୀ କବି ରଘୁନାଥ ଦାସ ଆମ୍ଭ ଦୃଷ୍ଟିରେ ବିଶେଷ ଭାବରେ ବନ୍ଦନୀୟ ।'(୬୨) ନିଜ ଉପରୁ ଆସ୍ଥା ନ ହରାଇ କବି ଶେଷରେ ବଜ୍ରଶପଥ ନିଅନ୍ତି ।

"ଚିତ୍ତ ଦୁର୍ଜୟ ସେ ବଳ ଆଣ ପ୍ରାଣେ, ଶକ୍ତ କର ବାହା
ମୋ ସାଥେ ଶପଥ ଘେନ ଏ ଦେଶର ହାତୁଡ଼ି ଓ ଦାଆ ।" (୬୩)

କବିତା '୧୯୪୯ରେ କବି ଅଗଷ୍ଟପନ୍ଦର ଭିତରେ ଦେଖୁଛନ୍ତି କ୍ରୁର ପୈଶାଚିକ ଦଶଶିର ରୂପୀ ରାବଣକୁ । କ୍ଷୋଭ ଜର୍ଜରିତ କବି ଆତ୍ମା ପୌରାଣିକ ମିଥ୍ ମାଧ୍ୟମରେ ବିପ୍ଳବୀ ଚିନ୍ତାଚେତନାକୁ ବ୍ୟକ୍ତ କରିବାକୁ ସଫଳ ହୋଇଛି । ବର୍ତ୍ତମାନର ଦିଲ୍ଲୀ ପାଲଟିଛି ଅତ୍ୟାଚାରୀ ଦୁର୍ଯ୍ୟୋଧନ, ଦୁଃଶାସନ, ଶକୁନି ମାନଙ୍କର ପୀଠସ୍ଥଳୀ । ସେଠାରେ ସଦାସର୍ବଦା କପଟପାଶାର ଆୟୋଜନ ଚାଲିଛି । ଏହି କପଟତାର ଛିଦ୍ର ଭେଦ କରିବାକୁ ସାଧାରଣ ନିରୀହ ଜନତା ଅସମର୍ଥ । ସାଧାରଣ ବର୍ଗର ପ୍ରତିନିଧିତ୍ୱ କରୁଥିବା ପାଞ୍ଚାଳୀକୁ ଏଠାରେ ପ୍ରତି ମୁହୂର୍ତ୍ତରେ ବିବସନା ହେବାକୁ ପଡ଼େ । ତେଣୁ ଏ ପ୍ରକାର ଦୁର୍ଦ୍ଦିନର ପରିସମାପ୍ତି ଅବଶ୍ୟ ଘଟିବ । ଏଥିପାଇଁ ବିପ୍ଳବ ଅନିବାର୍ଯ୍ୟ । ଏହା ଜନତାର ତାତିଲା ନିଶ୍ୱାସ ମଧ୍ୟରୁ ସମ୍ଭୁତ ହେବ । ଏହାର ବେଗ ଟର୍ଣ୍ଣାଡ଼ୋଠାରୁ ମଧ୍ୟ କ୍ଷୀପ୍ର । ବିପ୍ଳବୀର ଏହି ଆଗ୍ନେୟ ଶପଥ ନିଶ୍ଚେ ଆଗାମୀର ସୁବାର୍ତ୍ତା ପ୍ରେରଣ କରିବାକୁ ସକ୍ଷମ ହେବ । କବିଙ୍କ ବର୍ଣ୍ଣନାରେ ଏହା ପ୍ରତିଫଳିତ ।

"ସାବଧାନ ! ସାବଧାନ ! ଯୁଗାନ୍ତକ ଝଡ଼ ଘୋଟି ଆସେ ।
ଜନତାର ବୁକୁ ତଳେ ରୁଦ୍ଧ ଯେତେ ଉତ୍ତପ୍ତ ନିଶ୍ୱାସ
ଯେତେ ବ୍ୟଥା ଅସନ୍ତୋଷ ସବୁ ଆଜି ଥରାଇ ଆକାଶ
ବହିଯାଏ ସତେ
ଆଗାମୀର ଗାନ ତୋଳି ବିପ୍ଳବୀର ଆଗ୍ନେୟ ଶପଥ ।" (୬୪)

ଆଲୋଚ୍ୟ ତିନୋଟି କବିତା କବି ରଘୁନାଥଙ୍କ ବୈପ୍ଳବିକ ଚିନ୍ତାଚେତନାର ଅନନ୍ୟ ପରିପ୍ରକାଶ । ଏକ ପକ୍ଷରେ ସାମାଜିକ ଅଂଗୀକାରବଦ୍ଧତାର ସ୍ୱର ବହନ କରିଥିଲାବେଳେ, ଅପରପକ୍ଷରେ କବି ଅତୀତ (୧୯୪୭), ବର୍ତ୍ତମାନ (୧୯୪୮), ଭବିଷ୍ୟତ (୧୯୪୯)କୁ ଏକ ସୂତ୍ରରେ ଗୁନ୍ଥି ଦେଇଛନ୍ତି । କବିତା ତିନୋଟି ମାର୍କସୀୟ ଚିନ୍ତାଧାରାର ଚରମ ସ୍ୱାକ୍ଷରକୁ ବହନ କରିଛି । ମାର୍କସ୍ ମଧ୍ୟ କଳା ସହିତ ରାଜନୀତିର ଯେ ସଂପର୍କ ରହିଛି ଏହାକୁ ସ୍ୱୀକାର କରିଛନ୍ତି । ରାଜନୈତିକ କ୍ଷେତ୍ରରେ ପରିବର୍ତ୍ତନ ହିଁ ସୁସ୍ଥ ସମାଜର ସଫଳତାର ମାପକାଠି ବୋଲି ବିବେଚନା କରାଯାଏ । ଆଲୋଚ୍ୟ କବିତା ତିନୋଟିରେ ମଧ୍ୟ କଳା ଓ ରାଜନୀତିର ଆତ୍ମିକ ସଂପର୍କକୁ ଲକ୍ଷ୍ୟ କରାଯାଏ । କବିତାର ଉତ୍କୃଷ୍ଟତା ସଂପର୍କରେ ମତବ୍ୟକ୍ତ କରିବାକୁ ଯାଇ ଡଃ ଆଶୁତୋଷ ପରିଡ଼ା କହନ୍ତି –

"ଅଗଷ୍ଟ ପନ୍ଦର' ଭୁଲି ହୋଇଯିବାର କବିତା ନୁହେଁ । ତେଣୁ ଏହା ରଚିତ ହେବାର ପଚିଶରୁ ଊର୍ଦ୍ଧ୍ୱ ବର୍ଷ ପରେ ମଧ୍ୟ ଏହାର ଆବେଦନ ଅମ୍ଳାନ ରହିଛି । ଏହାର ରଚୟିତା ଭାବରେ କବି ରଘୁନାଥ ସ୍ମରଣୀୟ ହୋଇ ରହିବେ ।"(୬୫)

କବିଙ୍କ କବିତା କେବଳ ଯେ ଭାରତବର୍ଷର ସାଂପ୍ରତିକ ସମସ୍ୟା ବିରୋଧରେ ସ୍ୱର ଉତ୍ତୋଳନ କରିଛି ତାହା ନୁହେଁ ଭାରତ ବାହାରେ କବି ଯେଉଁଠାରେ ଶୋଷଣ ଦେଖିଛନ୍ତି ତାହା ବିରୋଧରେ ସ୍ୱରଉତ୍ତୋଳନ କରିବା ପାଇଁ ତାଙ୍କର ଲେଖନୀ ବାଦ୍ ପଡ଼ି ନାହିଁ । ଅନ୍ୟ ଭାଷାରେ କହିଲେ ଶୋଷଣ ବିରୋଧୀ ସଂଗ୍ରାମ ନିକଟରେ ସ୍ଥାନ, କାଳ, ପାତ୍ରର ପ୍ରଭେଦ ନାହିଁ । ସାରା ପୃଥିବୀର ସର୍ବହରା ସର୍ବତ୍ର ସମାନ । ଶୋଷଣ, ଅତ୍ୟାଚାର ମଧ୍ୟ ସର୍ବତ୍ର ସମାନ । ଏହାକୁ କୌଣସି ଭୌଗୋଳିକ ସୀମା ମଧ୍ୟରେ ଆବଦ୍ଧ କରାଯାଇନପାରେ । ଉଦାହରଣ ସ୍ୱରୂପ ଇଂରେଜମାନଙ୍କ ଅତ୍ୟାଚାର ବିରୋଧରେ ମାଳୟବାସୀ ଯେଉଁ ସଂଗ୍ରାମ କରିଥିଲେ ତାହା ରୂପ ଲାଭ କରିଛି 'ଗଣପତି' କବିତାରେ । ମାଳୟବାସୀଙ୍କ ସଂଗ୍ରାମର ନେତୃତ୍ୱ ନେଇଥିଲେ ବୀର ଗଣପତି । ଦେଶ, ଜାତି ପାଇଁ ଶେଷରେ ସେ ନିଜ ଜୀବନକୁ ବାଜି ଲଗାଇଦେଲେ । ଇଂରେଜ ସରକାର ଶେଷରେ ତାଙ୍କୁ ଫାଶୀଖୁଣ୍ଟରେ ଝୁଲାଇ ଦେଲେ ସତ, କିନ୍ତୁ ତାଙ୍କର ବୈପ୍ଳବିକ ଚିନ୍ତାଧାରା ମାଳୟରେ ଶହଶହ ସଂଗ୍ରାମୀ ସୃଷ୍ଟି କରିଥିଲା । ଏହିପରି ସଂଗ୍ରାମୀ ବିପ୍ଳବୀମାନଙ୍କୁ କବି ନିଜର ଶ୍ରଦ୍ଧା ନିବେଦନ ଜ୍ଞାପନ କରିଛନ୍ତି । କବିଙ୍କ ଦୃଷ୍ଟିରେ 'ଗଣପତି', 'ମାଓ-ସେ-ତୁଙ୍ଗ୍' 'ଲେନିନ୍', 'ନାଗଭୂଷଣ', 'ଭଗବତୀ' ଏମାନଙ୍କ ମଧ୍ୟରେ କୌଣସି ତଫାତ୍ ନାହିଁ । ସମସ୍ତେ ବିପ୍ଳବୀ ଚେତନାର ସାର୍ଥକ ରୂପକାର । କବିଙ୍କ ବର୍ଣ୍ଣନାରେ ସେମାନେ ଏହିପରି ରୂପ ଲଭିଛନ୍ତି ।

* "ଜୟଗଣପତି ଜୟ' ଗର୍ଜି ଉଠେ ସମଗ୍ର ମାଳୟ
ଗଣପତି ନୁହେଁ ହତ, ରଣାଙ୍ଗନ ଗଣପତି ମୟ,
ବୀର ଗଣପତି !
ଅଭିଯାତ୍ରୀ ଜନତାର ଅଗ୍ରଦୂତ, ହେ ସତ୍ୟ ସାରଥି !
ଚାହଁ ଚାହଁ । ତୁମ ଧ୍ୱଜା ଉଡ଼ି ଉଠେ
ମାଳୟରେ ନୁହେଁ ଖାଲି ବିଶ୍ୱନଭେ ଉଚ୍ଚେ,
ନିଃସ୍ୱ ତା'ର ମୁକ୍ତି ରଚେ ଆପଣାର ବଳୀୟାର ଭୁଜେ ।" (୬୬)

* "ସେ ରହିଛି ଚାଳିଆ ଘରେ ଅଳିଆ ତଳେ ତଳେ
କାଳିଆ ଦେହ ମସିଆ ଲୁଗା ଜନତା ମେଳେ ମେଳେ;

ନାଗଭୂଷଣ ନୁହେଁରେ କେହି ଆମରି ମୂକ ଭାଷା
ତା'ଠାରେ ଫୁଟେ ଦଳିତ ପ୍ରାଣ ଦଳିତ ଜନ ଆଶା ।" (୬୭)

'ଗଣପତି' କବିତାରେ ପ୍ରତିଫଳିତ ହୋଇଥିବା ଚିନ୍ତାଦର୍ଶର ବିକାଶ ଘଟିଛି 'କୋରିଆ' ଓ 'ମୃତ୍ୟୁହୀନ' କବିତାରେ । ମାର୍କିନ୍ ସେନାପତି ମାର୍କ ଆର୍ଥରଙ୍କ ବିରୋଧରେ ସଂଗ୍ରାମ କରିବାକୁ କୋରିଆବାସୀ ସଂକଳ୍ପବଦ୍ଧ । ଶତ ଚେଷ୍ଟା କଲେ ମଧ୍ୟ ବିପ୍ଳବର ଏହି ବହ୍ନିକୁ ଅବଦମିତ କରାଯାଇପାରିବ ନାହିଁ । ନିଷ୍ଠୁର ଆର୍ଥରର ବର୍ବରତା କୋରିଆବାସୀଙ୍କ ଦୃଢ଼ତା ନିକଟରେ ହାର୍‌ମାନିଛି । କବିଙ୍କ ଭାଷାରେ:-

"ଶସ୍ତ୍ରେ ଛେଦିଲେ ହିଁ ଛିଡ଼େ ନାହିଁ
ବହ୍ନିରେ ଦହିଲି ପୋଡ଼େ ନାହିଁ
ଜଳେ ବୁଡାଇଲି ବୁଡ଼େ ନାହିଁ
ଆକାଶେ ଛାଇଲି ବୋମା ବାହୀ
ତଥାପି ନମରେ
ଉଦ୍ଦୀପିତ ଶିଖାସମ ତେଜି ଉଠେ ଦକ୍ଷିଣେ ଉତ୍ତରେ
ଅକ୍ଷୁଣ୍ଣ, କ୍ଷମତା ଶତବ୍ୟୂହ, ଲକ୍ଷ ସେନା,
କୋଟି ଅସ୍ତ୍ର, ସବୁ ହେଲା ବ୍ୟର୍ଥ (୬୮)

ଭୌଗୋଳିକ ଅବସ୍ଥିତି ଦୃଷ୍ଟିରୁ କୋରିଆ କ୍ଷୁଦ୍ର ହେଲେ ମଧ୍ୟ ମୁକ୍ତିସଂଗ୍ରାମ ପାଇଁ କୋରିଆବାସୀ କରିଥିବା ପ୍ରଚେଷ୍ଟା ସମଗ୍ର ପୃଥିବୀବାସୀଙ୍କ ପାଇଁ ପ୍ରେରଣା ହୋଇରହିଥିବ । 'ମୃତ୍ୟୁହୀନ' ମଧ୍ୟ ସେହି କୋରିଆ ଯୁଦ୍ଧର ଘଟଣାବଳୀ ଉପରେ ଆଧାରିତ । ମାର୍କିନ୍ ସୈନ୍ୟମାନଙ୍କର ବୋମା ମାଡ଼ରେ କୋରିଆ ଧ୍ୱସ୍ତ ବିଧ୍ୱସ୍ତ ହୋଇଯାଇଛି । ସେହି ଧ୍ୱଂସସ୍ତୂପ ମଧ୍ୟରେ ଜଣେ ସନ୍ତାନହରା ଜନନୀ ତା'ର ସନ୍ତାନକୁ ଖୋଜି ଚାଲିଛି । ସନ୍ତାନ ପ୍ରତି ଥିବା ଅହେତୁକ ସ୍ନେହ ମମତା ତାକୁ ଏପରି ଭାବପ୍ରବଣ କରିଦେଇଛି ଯେ, ସ୍ୱପ୍ନରେ ମୃତ ସନ୍ତାନଟି ଆସି ମା'କୁ ସାନ୍ତ୍ୱନା ଦେବାକୁ ଯାଇ କହୁଛି –

"ମା' ତୁମେ କାନ୍ଦନା
ମୁଁ ମରିନି, ମୁଁ ବଞ୍ଚିଛି, ମିଛ ନୁହେଁ, ଏ ନୁହେଁ ଛଳନା
ମୃତ ବତ୍ସା ହେ ଜନନୀ ! ମୁଁ ବଞ୍ଚିଛି ତମରି ଗର୍ଭରେ
ମୁଁ ବଞ୍ଚିଛି ମୋ ଦେଶର କୋଟି ପ୍ରାଣେ, ଘରେ ଘରେ ଘରେ ।" (୬୯)

ଶିଶୁ ମୃତ୍ୟୁକୁ ପ୍ରତୀକ ଭାବେ ଗ୍ରହଣ କରି ତାରି ମାଧ୍ୟମରେ କବି ମାନସର ପ୍ରଚ୍ଛନ୍ନ ବୈପ୍ଲବିକ ଇଂଗିତ ପରିଲକ୍ଷିତ ହୁଏ । ଶିଶୁଟି ମାତୃକୋଳ ଶୂନ୍ୟ କରିଛି ସତ, କିନ୍ତୁ ମରି ମଧ୍ୟ ଜାତି ପାଇଁ ସେ ଅମର । କୋଟି କୋଟି ଜନତାଙ୍କ ହୃଦୟରେ ସେ

ସ୍ଥାନ ନେଇପାରିଛି । ଶିଶୁଟିର କ୍ଷୁଦ୍ର ପ୍ରାଣ ଅନନ୍ତ ପ୍ରେରଣା ଯୋଗାଉଛି । ସମଗ୍ର କୋରିଆ ଭୂମି ତାକୁ ନେଇ ଗର୍ବ କରିବ । ତା'ର ମୃତ୍ୟୁ କୋଟିକୋଟି କୋରିଆବାସୀଙ୍କ ହୃଦୟରେ ପ୍ରେରଣା ପ୍ରଦାନ କରିବ । ସାଂଘାଇ ଓ ଚୀନ୍ କବିତାଟି ମଧ୍ୟ ଏଇ ଶ୍ରେଣୀଭୁକ୍ତ ଅଟେ । କବିଙ୍କର ବୈପ୍ଳବିକ ଚିନ୍ତାମାନସ ଭୌଗୋଳିକ ପରିସୀମା ଭେଦ କରି ବିଶ୍ୱର ଜନତାଙ୍କୁ ଏକଜୁଟ୍ ହେବା ପାଇଁ ଆବାହନ କରୁଅଛି ।

"ଭୂଗୋଳର ଭେଦ ଭୂଲି
ଦେଶେ ଦେଶେ ଆମ ଅଭିଯାନ
ରକ୍ତଖିଆ ରାକ୍ଷସ ବିରୁଦ୍ଧେ,
କାହିଁ ଶୋଭାଯାତ୍ରା, କାହିଁ ଧର୍ମଘଟ, କାହିଁ ଅବା ଯୁଦ୍ଧେ,
ବିଶ୍ୱର ଜନତା ଆମେ ଆଜି ଏକ ପ୍ରାଣ ।" (୭୦)

ସମଗ୍ର ପୃଥିବୀବାସୀଙ୍କ ପାଇଁ ବିପ୍ଳବର ବୀଜମନ୍ତ୍ର ବୁଣିସାରିବା ପରେ କବି ରଘୁନାଥଙ୍କ କାବ୍ୟସ୍ୱର ସତେଯେପରି ଶାନ୍ତିରେ କିଛିଦିନ ପାଇଁ ନୀରବି ଯାଇଛି । ଏହି ବିପ୍ଳବୀ କାବ୍ୟପୁରୁଷ ୧୯୫୩ ମସିହା ବେଳକୁ କମ୍ୟୁନିଷ୍ଟ ପାର୍ଟି ସହିତ ତାଙ୍କର ସମସ୍ତ ସଂପର୍କ ଛିନ୍ନ କରିଦିଅନ୍ତି । ବୋଧହୁଏ ଉତ୍ତର ସ୍ୱାଧୀନତା କାଳର ଅବକ୍ଷୟବାଦୀ ଚିନ୍ତାଧାରା ସାମସମୟିକ ପରିବେଶ, ପରିସ୍ଥିତି ସହିତ କବି ସାଲିସ୍ କରପାରି ନାହାନ୍ତି । ଏ ସଂପର୍କରେ ରଜନୀକାନ୍ତ ମହାନ୍ତିଙ୍କର ମତାମତଟି ଏଠାରେ ଉପଜୀବ୍ୟ :-

"ବିଶ୍ୱଯୁଦ୍ଧ ଓ ଶାନ୍ତି ଆନ୍ଦୋଳନ ପରଠାରୁ ଆନ୍ତର୍ଜାତିକ ସାମ୍ୟ ଓ ସମାଜବାଦୀ ଆନ୍ଦୋଳନର ଧାରା, ଆଦର୍ଶ ଓ କୌଶଳ ବହୁଧା ବିଭକ୍ତ ଓ ଖଣ୍ଡିତ ହୋଇ ପଡ଼ିବାରୁ ଓ ଛଳନା ପୂର୍ଣ୍ଣ ଆବରଣାତ୍ମକ ତଥାକଥିତ ବିପ୍ଳବୀ ମାର୍କା ସୁବିଧାବାଦୀ ଶ୍ରେଣୀର ଅଭ୍ୟୁଦୟ ଯୋଗୁଁ ଐତିହାସିକ ଘଟଣା ଗୁଡ଼ିକ କବିଙ୍କର ବୈପ୍ଳବିକ ଚେତନାର କାବ୍ୟିକ ଅବବୋଧ ପାଇଁ ସ୍ଫୂର୍ତ୍ତି ଓ ଉଦାତ୍ତ ପ୍ରତୀକ, ରୂପକ ଓ ଚିତ୍ର ସହଯୋଗ କରିପାରିବାରେ ପୂର୍ଣ୍ଣକ୍ଷମ ହୋଇପାରି ନାହାନ୍ତି ।" (୭୧)

କବି ନିଜେ ମଧ୍ୟ ନିଜର ନୀରବତା ସଂପର୍କରେ ମତାମତ ପ୍ରଦାନ କରିବାକୁ ଯାଇ କହନ୍ତି –

"ମୁଁ ନିଶ୍ଚିତ ଭାବେ ଅନୁଭବ କଲି, ଜନଗଣଙ୍କର ଅଭାବ ଅସୁବିଧା କହି ମନକିଣା ମିଥ୍ୟା ପ୍ରତିଶ୍ରୁତି ଶୁଣାଇ, ସେମାନଙ୍କୁ ପ୍ରତାରିତ କରି ସଭିଏଁ ଆପଣାର ବ୍ୟକ୍ତିଗତ ସ୍ୱାର୍ଥସିଦ୍ଧି ଲାଗି ଅଧିକ ଯତ୍ନବାନ । ସେ ପରିପ୍ରେକ୍ଷୀରେ ବିପ୍ଳବୀ କବିତା ଜନଗଣଙ୍କ ପ୍ରତି ପ୍ରତାରଣାର ହତିଆର ହୋଇଥାନ୍ତା ସିନା ! ମୁଁ ସେ ପାପରେ ଭାଗିଦାର୍ ହେବାକୁ ଚାହିଁ ନଥିଲି । ବିଗୁଲ୍ ବାଜା ବନ୍ଦ କରିବାକୁ ମୋର ବୈପ୍ଳବିକ

ଚେତନା ମୋତେ ଦୃଢ଼ ଭାବେ ବାରଣ କରିଥିଲା ।" (୭୨)

କବିଙ୍କର ମନ୍ତବ୍ୟରୁ ସୂଚିତ ହୁଏ ଯେ, ଯେଉଁ କମ୍ୟୁନିଷ୍ଟମାନେ ଦିନେ ଜନତାଙ୍କର ସାମୂହିକ କଲ୍ୟାଣ ପାଇଁ ପ୍ରତିଜ୍ଞାବଦ୍ଧ ଥିଲେ, ସେମାନେ ଯେତେବେଳେ ସୁବିଧାବାଦୀ ଚିନ୍ତାଧାରାକୁ ଆଦରି ନେଲେ, ତେଣୁ କବି ପ୍ରାଣରେ ଜାତ ହୋଇଥିବା ଏତାଦୃଶ ସଂଶୟ ବୋଧ ହିଁ ତାଙ୍କୁ ବାରଣ କଲା ସାମ୍ୟବାଦୀ ଚିନ୍ତାଦର୍ଶର କାବ୍ୟ କବିତା ରଚନା କରିବାକୁ । କବିଙ୍କର କାବ୍ୟିକ ଚିନ୍ତାଧାରାର ଉତ୍ତାଳ ତରଂଗ ମଧ୍ୟରେ ସୃଷ୍ଟି ହୋଇଥିବା ଭଟ୍ଟାକୁ ଲକ୍ଷ୍ୟ କରି କବି ରବି ସିଂ କହନ୍ତି –

"କବି ରଘୁନାଥ ଦାସ ଯଦିଓ ଆଜି ସୁସ୍ଥ ଓ ସଚେତନ; ତଥାପି ତାଙ୍କ ସାହିତ୍ୟିକ ପ୍ରତିଭା ଆଜି ବିରତରେ ସ୍ତବ୍ଧ । X X X । ବିଭିନ୍ନ ସମୟରେ କଥାଛଳରେ ଯେତେଥର ମୁଁ ତାଙ୍କ ପାଖରେ ତାଙ୍କର ସାହିତ୍ୟିକ ଜୀବନ କଥା ଉଠାଇଛି, ସେତେଥର ତାଙ୍କଠାରେ ଲକ୍ଷ୍ୟ କରିଛି ଏକ ରୁଦ୍ଧ ବିରକ୍ତି ଏବଂ ପରିଶେଷରେ ସେହି ଗୋଟିଏ କଥା "ପୂର୍ବର ସେ ମଣିଷଟି ମରିଯାଇଛି ।" (୭୩)

କବି ରବି ସିଂଙ୍କର ପ୍ରେରଣା, ଉଦ୍ୟମ ବ୍ୟର୍ଥ ହୋଇ ନାହିଁ । 'ଅଗଷ୍ଟ ପନ୍ଦର ଓ ଅନ୍ୟାନ୍ୟ କବିତା' ଗ୍ରନ୍ଥ ପ୍ରକାଶିତ ହେବା ପରେପରେ କବିଙ୍କର ସାମ୍ୟବାଦୀ ଚେତନା ପୁନଃଜାଗରିତ ହୋଇଉଠିଛି । 'ଶ୍ରୀ ଜଟାୟୁ' ଛଦ୍ମ ନାମରେ ସାମସମୟିକ ବହୁ ପତ୍ରିକାରେ କବି ଆତ୍ମପ୍ରକାଶ କରିଛନ୍ତି । ତ୍ରେତୟା ଯୁଗରେ 'ଜଟାୟୁ' ପକ୍ଷୀ ରାବଣର ପଥରୋଧ କରିଥିଲା । କବି ଏଠାରେ ସ୍ୱୟଂ ନିଜକୁ 'ଜଟାୟୁ' ବୋଲି ଅବିହିତ କରୁଛନ୍ତି ଏବଂ ପ୍ରଗତିର ପଥରୋଧ କରୁଥିବା 'ରାବଣ' ରୂପୀ ଦୁରାଚାରୀ ଶୋଷକବର୍ଗ ବିରୋଧରେ ପ୍ରତିବାଦ କରିବାକୁ ମଧ୍ୟ ପଛଘୁଞ୍ଚା ଦେଇ ନାହାନ୍ତି । କବି ଜାଣନ୍ତି ଜଟାୟୁର ଶକ୍ତି କ୍ଷୀଣ, ତଥାପ ମଧ୍ୟ ସେ ବିଶ୍ୱାସ କରନ୍ତି –

"ମୁଁ ଛାର ଜଟାୟୁ ପକ୍ଷୀ,
ପ୍ରତିପକ୍ଷ ପ୍ରବଳ ପ୍ରତାପୀ
ନୁହେଁ ତା'ର ସମକକ୍ଷ
ପ୍ରତିବାଦ କରିବି ତଥାପି ।
X X X
ବେନିପକ୍ଷ ଛିଡ଼ିଗଲା
ଛିଡ଼ିଯାଉ, ନାହିଁ ମୋ ଶୋଚନା
ମୁଁ ରହିବି ଯୁଗେ ଯୁଯୁତ୍ସୁର
ଜ୍ୱଳନ୍ତ ପ୍ରେରଣା ।" (୭୪)

ଏହା ବ୍ୟତୀତ ସଂକଳନରେ ଥିବା ଅନ୍ୟାନ୍ୟ କବିତାଗୁଡ଼ିକ ମଧ୍ୟରୁ 'ପୁନରାବୃତ୍ତି', 'ପଦ୍ମତୋଳା', 'ରାହୁଗ୍ରାସ', 'ଆହ୍ୱାନ', 'ମାନଚିତ୍ର ଜନତାର' ଇତ୍ୟାଦିରେ ସାମସମୟିକ ସାମାଜିକ ଓ ରାଜନୈତିକ ଅବ୍ୟବସ୍ଥା ବିରୋଧରେ ବିରୋଧାଭାସ ପ୍ରକଟିତ ହୋଇଛି । ସର୍ବତ୍ର କବି ସମସ୍ତ ପ୍ରକାରର ଅତ୍ୟାଚାର ଅବ୍ୟବସ୍ଥାର ଅନ୍ତ ଘଟାଇ ନୂତନ ରାମରାଜ୍ୟର ସ୍ୱପ୍ନରେ ସତେଯେପରି ବିଭୋର । କବିଙ୍କ ଭାଷାରେ –

"ସୂର୍ଯ୍ୟ ହେବ ରାହୁମୁକ୍ତ... ।
ପୁଣି ସଦ୍ୟସ୍ନାତ ଧରିତ୍ରୀର ପବିତ୍ର ମାଟିରେ
ଫୁଟିବ ସୁନାର ଆଭା ... ।
ନୀତିର ଝରଣା ପୁଣି ଛୁଟିବରେ ଆଶାସିକ୍ତ ପ୍ରାଣୁ

x x x x

ଏହା ସତ୍ୟ, ମିତ ଏକାନ୍ତ ନିଶ୍ଚିତ
ସୂର୍ଯ୍ୟ ହେବ ରାହୁ ମୁକ୍ତ ।" (୭୫)

କବିତା ସଂକଳନର କେତେକ କବିତାରେ ଆଖ୍ୟାୟିକା ଓ ମିଥ୍ ମାଧ୍ୟମରେ କବିଙ୍କର ବିପ୍ଳବୀ ଚେତନା ପ୍ରକଟିତ ହୋଇଛି । କବିତା 'ମୃଗୁଣୀ ସ୍ତୁତି'ରେ ମୃଗୁଣୀର ମାଂସ ପ୍ରତି ବ୍ୟାଧ ଲୋଭାସକ୍ତ । ମୃଗୁଣୀ ଏଠାରେ ସରଳତା ଓ ନିରୀହତାର ପ୍ରତୀକ । ବ୍ୟାଧ କବଳରେ ପଡ଼ି ସେ ଯେତେବେଳେ ଛଟପଟ ହେଉଛି ସେତେବେଳେ ଈଶ୍ୱରଙ୍କର ଶରଣାପନ୍ନ ହେଉଛି । ଶେଷରେ ଈଶ୍ୱରଙ୍କ କୃପାରୁ ମୃଗୁଣୀ ଆସନ୍ନ ବିପଦରୁ ଉଦ୍ଧାର ପାଇଯାଇଛି । କବି ରଘୁନାଥ ମୃଗୁଣୀକୁ ସମାଜର ସରଳ, ନିରୀହ ଜନତାଙ୍କ ସହିତ ତୁଳନା କରୁଛନ୍ତି । 'ବ୍ୟାଧ' କବି ଦୃଷ୍ଟିରେ ଶୋଷକ ବର୍ଗର ପ୍ରତିନିଧିତ୍ୱ କରୁଥିବା ଚରିତ୍ର । 'ବ୍ୟାଧରୂପୀ ଶୋଷକର ମାୟାଜାଲରୁ ମୁକ୍ତି ପାଇବାକୁ ହେଲେ ନିରୀହ ଜନତାଙ୍କୁ ମୃଗୁଣୀ ପରି ସ୍ତୁତି କରିବାକୁ ପଡ଼ିବ । କବିଙ୍କ ଭାଷାରେ –

"ଜାଗ-ହରିଣୀ-ଜନତା ଜାଗ
ଅନ୍ତର ଆହ୍ୱାନ ତଳେ;
ଆତ୍ମାର ନିର୍ଦ୍ଦେଶ ମାଗ;
ଜାଗ ତୁ ଜନତା ଜାଗ ।" (୭୬)

କବି ରଘୁନାଥ ଆଲୋଚ୍ୟ କବିତାରେ ଯେପରି 'ଈଶ୍ୱର ଆରାଧନା' ମାଧ୍ୟମରେ ଶୋଷଣର ପରିସମାପ୍ତି ପାଇଁ ଆଶାପୋଷଣ କରିଛନ୍ତି, ତାହା ମାର୍କସ୍‌ବାଦୀ ତତ୍ତ୍ୱ ଦର୍ଶନର ବିରୋଧାଚରଣ କରେ । ମାର୍କସ୍ ଧର୍ମ, ଈଶ୍ୱର ବିଶ୍ୱାସ ବିରୋଧରେ ଖୋଲାଖୋଲି ସ୍ୱର ଉତ୍ତୋଳନ କରୁଥିଲେ । କବିଙ୍କର ସମସ୍ତ କବିତା ଯେ ଈଶ୍ୱରୀୟ

ଧର୍ମ ବିଶ୍ୱାସକୁ ପ୍ରାଧାନ୍ୟ ଦେଇଛି ତାହା ନୁହେଁ କେତେକ କବିତାରେ ମଧ୍ୟ କବି ରବି ସିଂଙ୍କ ପରି ଈଶ୍ୱରଙ୍କ ବିରୋଧରେ ବିରୋଧାଭାସ ପ୍ରକାଶ ପାଇଛି । କବି ସିଂ, ଈଶ୍ୱରଙ୍କ ଶରୀରରୁ ଶିରଚ୍ଛେଦନ କରିବା ପାଇଁ 'ଚରମ ପନ୍ଥ'ରେ ଆହ୍ୱାନ ଦେବା ପରି କବି ରଘୁନାଥ ମଧ୍ୟ ଅନୁରୂପ ଢଂଗରେ ବଜ୍ର ଶପଥ ନେଇଛନ୍ତି ତାଂକର କବିତାରେ । କବିଙ୍କ ଭାଷାରେ–

"ତେଣୁ ଚିତ୍ତେ ମୋର ତୀବ୍ରତା
ତୁମର ପ୍ରଭୁତ୍ୱ ବିରୁଦ୍ଧରେ ।
ତେଣୁ ମୁଁ ଖଡଗ୍ ଉତ୍ତୋଳନ କରିଥିଲି
ତୁମର ସିଂହାସନକୁ ଧୂଳିସାତ୍ କରିବା ଲାଗି,
ଆଉ ଆଜି ତୁମର ପୁଂଜିର ନିବିଡ଼ ଗ୍ରନ୍ଥିକୁ ଛିନ୍ନ କରୁଛି
ଉତ୍ତେଜନାରେ ସଗର୍ବରେ ।" (୭୭)

କବି ଜୀବନର ମଧ୍ୟାହ୍ନରେ କବିତା ରଚନାରେ ନିଜକୁ ନିବୃତ୍ତ କରିଥିଲେ ମଧ୍ୟ, ପୁନଶ୍ଚ ସଂଗ୍ରାମୀ କାବ୍ୟ ମାନସର ଆହ୍ୱାନ ତାଙ୍କୁ କାବ୍ୟକବିତା କ୍ଷେତ୍ରରେ ମନୋନିବେଶ କରିବା ପାଇଁ ପ୍ରେରଣା ପ୍ରଦାନ କରିଛି ଓ ଏହା ଜୀବନର ଅନ୍ତିମ ପର୍ଯ୍ୟାୟ ପର୍ଯ୍ୟନ୍ତ ଅବ୍ୟାହତ ରହିଛି । କମ୍ୟୁନିଷ୍ଟ ପାର୍ଟି ସହିତ ସଂପର୍କଛିନ୍ନ କରିଥିଲେ ମଧ୍ୟ ନିଜସ୍ୱ ଚିନ୍ତାଦର୍ଶକୁ ନେଇ ସେ ଥିଲେ ସଂକଳ୍ପବଦ୍ଧ । ଏ ପ୍ରକାର ସଂଗ୍ରାମୀ ବ୍ୟକ୍ତିତ୍ୱକୁ ଓଡ଼ିଆ ସାହିତ୍ୟ ଉଚିତ୍ ମର୍ଯ୍ୟାଦା ପ୍ରଦାନ ନ କରିବା ଅତ୍ୟନ୍ତ ପରିତାପର ବିଷୟ ।

## କବି ମନମୋହନ ମିଶ୍ର

"କାରଖାନା, ଖଳାବାଡ଼ି, ଖଦାନ, ବାଗାନ୍‌ରେ
'ଏକ ହୁଅ, ଏକ ହୁଅ ତୁ ଭାରତ ଜନତା ସଂଗ୍ରାମର ମଇଦାନରେ ।"

ଶ୍ରମିକ ଓ କୃଷକମାନଙ୍କର ଏକତ୍ୱ ପ୍ରତିଷ୍ଠା ପାଇଁ ଓ ମାନବିକତାର ପ୍ରତିଷ୍ଠା ପାଇଁ ବିପ୍ଲବୀ କବି ମନମୋହନ ମିଶ୍ର ରଚନା କରିଥିବା କାଳଜୟୀ ସଂଗୀତ, ଯାହାକି ତତ୍‌କାଳୀନ ସମୟର ବହୁ ବିପ୍ଲବୀଙ୍କ ପ୍ରାଣରେ ବିଦ୍ରୋହୀ ଭାବନାକୁ ଜାଗ୍ରତ କରିଦେଇପାରୁଥିଲା । କବି ମନମୋହନଙ୍କର ବିଦ୍ରୋହୀ କାବ୍ୟଚେତନା ସହିତ ତାଙ୍କର ସଂଗ୍ରାମୀ ଜୀବନ ଓତଃପ୍ରୋତ ଭାବରେ ଜଡ଼ିତଥିଲା। ରେଭେନ୍‌ସା ମହାବିଦ୍ୟାଳୟରେ ଛାତ୍ରଥିବା ସମୟରେ କବି ପ୍ରଥମେ ଛାତ୍ର ଆନ୍ଦୋଳନ (୧୯୩୯)ରେ ସକ୍ରିୟ ଅଂଶଗ୍ରହଣ କରନ୍ତି । ଏହାପରେ ୧୯୪୦ ମସିହା ଅପ୍ରେଲ୍ ୧୩ ତାରିଖ ଦିନ ପୁରୀଠାରେ ଜାଲିଆନାୱାଲାବାଗ୍‌ର ମର୍ମନ୍ତୁଦ ଦୁଃଖଦ ଘଟଣା ସଂପର୍କରେ ସମବେତ ଜନତାଙ୍କୁ ଉଦ୍‌ବୋଧନ ଦେବା ଅବକାଶରେ ମନମୋହନ କାରାବରଣ କରନ୍ତି । ଏହାପରେ

୧୯୪୨ ର ଭାରତଛାଡ଼୍ ଆନ୍ଦୋଳନ, ୧୯୪୮ ମସିହାର ତେଲେଙ୍ଗାନା ଆନ୍ଦୋଳନରେ ମଧ୍ୟ ସକ୍ରିୟ ଅଂଶ ଗ୍ରହଣ କରନ୍ତି । କାରାବରଣକୁ ଭ୍ରୂକ୍ଷେପ ନ କରି କବି ମନମୋହନ ନିଜର ସଂଗ୍ରାମୀ ଜୀବନପଥରେ ଆଗେଇ ଚାଲନ୍ତି । କମ୍ୟୁନିଷ୍ଟ ପାର୍ଟିର ଜଣେ ସକ୍ରିୟ ସଦସ୍ୟ ହେବା ସହିତ ବିଭିନ୍ନ ଶ୍ରମିକ ସଂଗଠନର ନେତୃତ୍ୱ ନେବା ଏବଂ ପରବର୍ତ୍ତୀ ପର୍ଯ୍ୟାୟରେ ମୁଣ୍ଡଟେକିଥିବା ନକ୍ସାଲବାଡ଼ି ଆନ୍ଦୋଳନର ଜଣେ ଅଗ୍ରଗାମୀ କର୍ଣ୍ଣଧାର ଅଟନ୍ତି କବି ମନମୋହନ ମିଶ୍ର ।

ଏ ପ୍ରକାର ବୈପ୍ଳବିକ ପଛଭୂମିରେ ନିଜଜୀବନକୁ ଗଢ଼ିତୋଳିଥିବା କବି ମନମୋହନ ଏହି ଆଦର୍ଶକୁ ସାହିତ୍ୟ କ୍ଷେତ୍ରରେ ମଧ୍ୟ ପ୍ରତିଫଳିତ କରାନ୍ତି । ପ୍ରାଥମିକ ପର୍ଯ୍ୟାୟରେ ରଚିତ କବିତାଗୁଡ଼ିକ ବିଭିନ୍ନ ଆନ୍ଦୋଳନର ପୃଷ୍ଠଭୂମି ଉପରେ ରଚିତ ହୋଇଥିଲା । ଏହିପରି କେତୋଟି କବିତାର ସମାହାର ହେଉଛି ୧୯୪୭ ମସିହାରେ ପ୍ରକାଶିତ ହୋଇଥିବା 'ଚଲାକୋଦାଳ' କବିତା ସଂକଳନ । ସଂକଳନରେ ଆଠଗୋଟି କବିତା ସ୍ଥାନିତ । କବିତା ଗୁଡ଼ିକ ପଟିଆର କୃଷକ ଆନ୍ଦୋଳନର ପୃଷ୍ଠଭୂମି ଉପରେ ରଚିତ । ଏହାପରେ କବିଙ୍କର ବୈପ୍ଳବିକ ଚିନ୍ତାଦର୍ଶ ପାଠକ ମାନଙ୍କୁ ଉପହାର ଦିଏ ଗୋଟିଏ ପରେ ଗୋଟିଏ ସଂକଳନ । 'କୋଟିକଣ୍ଠେ', 'ଜନତାର ଡାକ', 'ଜୀବନର ଜୟଗାନ', 'ଆବାଜ୍' ପ୍ରତ୍ୟେକଟି ସଂକଳନରେ ସାମ୍ରାଜ୍ୟବାଦ ବିରୋଧୀ କାବ୍ୟସ୍ୱର ଅନୁରଣିତ । ସୁଖ, ଦୁଃଖ, ଅଭିମାନଭରା କଣ୍ଠସ୍ୱରରେ ଜୀବନର ଜୟଗାନ କରିବା ସହିତ, ଏକ ସାମ୍ୟବାଦୀ ସମାଜ ଗଠନ ପାଇଁ ଆହ୍ୱାନ ପ୍ରଦାନ କରନ୍ତି । କବିଙ୍କ ରଚିତ ପ୍ରତ୍ୟେକଟି ସଂଗୀତର ଗୁରୁତ୍ୱପୂର୍ଣ୍ଣ ଭୂମିକାକୁ ଅସ୍ୱୀକାର କରାଯାଇନପାରେ ।

୧୯୪୨ - ୧୯୫୧ ମସିହା ମଧ୍ୟରେ ଲିଖିତ କିଛି ସଂଗ୍ରାମୀ ଚିନ୍ତାଧାରାର ସମନ୍ୱୟ ହେଉଛି 'କୋଟି କଣ୍ଠେ' କବିତା ସଂକଳନ । ଏହା ପ୍ରଥମେ ଯେତେବେଳେ ଆତ୍ମପ୍ରକାଶ କରେ, ଏହାର ଲୋକପ୍ରିୟତାକୁ ଦେଖି ଇଂରେଜ ସରକାର ଏହାକୁ ବାଜ୍ୟାପ୍ତ କରିଦିଅନ୍ତି । ସଂକଳନରେ ସ୍ଥାନିତ କବିତାଗୁଡ଼ିକୁ ପର୍ଯ୍ୟାଲୋଚନା କଲେ ଜଣାଯାଏ ଯେ କବି ଭାରତବର୍ଷର ସ୍ୱାଧୀନତା ସଂଗ୍ରାମକୁ ଯେତିକି ପ୍ରାଧାନ୍ୟ ଦେଇଛନ୍ତି, ଶ୍ରମିକ, କୃଷକମାନଙ୍କର ମୁକ୍ତିର ସ୍ୱପ୍ନକୁ ସେତିକି ପ୍ରାଧାନ୍ୟ ଦେଇଛନ୍ତି । ବହୁ କବିତାରେ ମାର୍କସ୍‌ବାଦୀ ତତ୍ତ୍ୱ, ଦର୍ଶନର ସିଧାସଳଖ ବର୍ଣ୍ଣନା ମଧ୍ୟ ପରିଲକ୍ଷିତ ହୁଏ । ସ୍ୱଦେଶର ସାମନ୍ତବାଦୀ ଶୋଷଣ ପୀଡ଼ିତ ଅଗଣିତ ଜନତାଙ୍କର ଆର୍ତ୍ତି ଯେପରି ତାଙ୍କର କବିତାକୁ ରଂଜିତ କରିଦେଇପାରିଛି, ସେମାନଙ୍କ ଅନ୍ତରର ଭାଷାକୁ କବି ଋଷିଆର ଲାଲ୍ ସେନା, ଚୀନ୍‌ର ଗରିଲାମାନଙ୍କ କଣ୍ଠରେ ଶୁଣି ପାରିଛନ୍ତି । କବି ଦୃଷ୍ଟିରେ ଯାଜପୁରର ଅନାହାରକ୍ଲିଷ୍ଟ ଜନତା, ଗଂଜାମ୍‌ର ରୟତ୍, ଋଷ୍ ଓ ଚୀନ୍‌ର ଅତ୍ୟାଚାରିତ ଜନସାଧାରଣଙ୍କ ମଧ୍ୟରେ

ପାର୍ଥକ୍ୟ କିଛି ନାହିଁ । ସଭିଏଁ ଗୋଟିଏ ଜାତିର, ଗୋଟିଏ ମା'ର ସନ୍ତାନ । ସେ ଜାତି ହେଉଛି ମନୁଷ୍ୟ ଜାତି । ଏହି ମନୁଷ୍ୟ ଜାତିକୁ ଉଦ୍‌ବୋଧନ ଦେବାକୁ ଯାଇ କବି କହିଛନ୍ତି –

"ଡାକେ ବାଇଶି ଜୁନ୍ ଲାଲ୍ ସେନା କଣ୍ଠେ
ଚୀନ୍ ଗରିଲାଦଳ ମରୁ ଉପକଣ୍ଠେ ।
ଜାଗ ଭାରତବାସୀ ଅଭୟ ପାଇଁ (ସମୟ ନାଇଁ)
ଜନ୍ମମାଟି ଡାକରେ ।
ଡାକେ ଯାଜପୁର ଆଜି ଅନାହାରେ
ଡାକେ ଗଂଜାମ ରଇତ ମୃତ୍ୟୁ ପାରେ
ଚାଲ କ୍ଷୁଧିତ ବାରେ ନବ ଅଭିସାରେ
ଜନ୍ମମାଟି ଡାକରେ ।" (୭୮)
('କୋଟି କଣ୍ଠେ' – ୪ର୍ଥ ସଂଗୀତ)

ଏହି ସଂଗୀତରେ ଜନତା ହୃଦୟର ମରମବାଣୀ ଯେପରି ପ୍ରକାଶିତ କବି ହୃଦୟର ଜାତୀୟବାଦୀ ଚିନ୍ତାଧାରା ମଧ୍ୟ ସେମିତି ପ୍ରକାଶିତ । ଜାତୀୟତାକୁ କୌଣସି ଭୌଗୋଳିକ ସୀମା ଦ୍ୱାରା ଆବଦ୍ଧ କରାଯାଇନପାରେ । ଜାତୀୟତାରେ ସାନବଡ଼ର ତାରତମ୍ୟ ନଥାଏ । ପଣ୍ଡିତ ନୀଳକଣ୍ଠଙ୍କ ମତରେ – "ରକ୍ତ, ମାଂସ, ପିଣ୍ଡ ବା ଅପରିବର୍ତ୍ତିତ ଭୂଖଣ୍ଡରେ ଜାତୀୟତା ରହେ ନାହିଁ, ଜାତୀୟତା ରହେ ଭାବରେ, ଆଦର୍ଶରେ ଜାତୀୟ ଜୀବନର ମୌଳିକତା ଓ ଶକ୍ତିରେ ।"(୭୯) ଦେଶ, ଜାତି ଯେତେବେଳେ ପରାଧୀନ, ଅନ୍ୟାୟ, ଅତ୍ୟାଚାରରେ ପ୍ରପୀଡ଼ିତ, ସ୍ୱାଧୀନତାର ଆଶା ବିଡ଼ମ୍ବିତ ଏହିପରି ଏକ ଘଡ଼ିସନ୍ଧି ମୁହୂର୍ତ୍ତରେ ସମସ୍ତ ଜନତା ଜନ୍ମମାଟିର ଆହ୍ୱାନରେ ଏକତ୍ରିତ ହୋଇ ଅନ୍ୟାୟ ବିରୋଧରେ ସଂଗ୍ରାମ କରିବା ଏକାନ୍ତ ଆବଶ୍ୟକ । କବିଙ୍କର ସଂଗ୍ରାମୀ କାବ୍ୟମାନସ ସ୍ଥାନେସ୍ଥାନେ ପୌରାଣିକ ମିଥ୍‌କୁ ଆଶ୍ରୟ କରିଛି । 'କୋଟିକଣ୍ଠେ' ସଂକଳନର '୩ୟ ସଂଗୀତ' ଓ '୯ମ ସଂଗୀତ'ରୁ ଏହାର ପ୍ରମାଣ ମିଳେ ।

"ଆସ ଭାଇ ହିନ୍ଦୁ ମୁସଲମାନ୍
ଆସ ମଜଦୁର୍ ଆସ ଲିଗ୍ ଜବାନ
ମୁକତି ମିଳିଛି କାହିଁ ବିନା କୁର୍ବାନ୍
ବିନା ରକତେ କି ବାନ୍ଧେ ଦ୍ରୌପଦୀ ଜୁଡ଼ା;
ଗୋରା ପଲଟଣ ମାରୁଅଛି ମଉଜ / ତା ରକତେ ରଂଗା ତୋର ନିଶାଣ ଉଡ଼ା ।"(୮୦) (୩ୟ ସଂଗୀତ)

*"କଂସ ରାଜୁତି ଆଜି
ଏବେ ଯାଇନାହିଁ ଭାଜି
ନୟନ ଲୋତକେଦେବକୀ ମାଆ ଗୋ ଶାଙ୍କୋଳି ବସେ ମାଜି
ମୁକତି ଫେରି ନାହିଁ କେତେ ସୀତା ସତୀ କାଚ କାଢ଼ି ବସେ ।
କୁସୁମ କୋମଳ ଶିଶୁ ଝରିଆ ସେ ....।" (୮୧)
(୯ମ ସଂଗୀତ)

ଉପରୋକ୍ତ ଦୁଇଟି ପଂକ୍ତିରେ ଚମତ୍କାର ବର୍ଣ୍ଣନା ବିଳାସ ଓ ପୌରାଣିକ ବ୍ୟଂଜନା ମାଧ୍ୟମରେ ଜାତି ପ୍ରତି ଆହ୍ୱାନ ପ୍ରକାଶିତ । ଜାତି, ଧର୍ମ, ବର୍ଣ୍ଣ ନିର୍ବିଶେଷରେ କବି ସଂଗ୍ରାମର ଆହ୍ୱାନ କରୁଛନ୍ତି । ଦୃଷ୍ଟାନ୍ତ ପ୍ରଦାନ କରୁଛନ୍ତି ପୁରାଣର ଦ୍ରୌପଦୀ ଉପାଖ୍ୟାନର । ଅତ୍ୟାଚାରୀ କୌରବର ରକ୍ତରେ ଦ୍ରୌପଦୀର କେଶ ବଂଧନ ହେଲାପରି, ବିନା ରକ୍ତାକ୍ତ ସଂଗ୍ରାମରେ ଅଗଣିତ ଜନତାର ଦୁଃଖ ମୋଚନ ହୋଇପାରିବ ନାହିଁ । ଦେଶକୁ ଅତ୍ୟାଚାରୀ ଇଂରେଜ ଶାସନ କବଳରୁ ମୁକ୍ତ କରିବାକୁ ହେଲେ ରକ୍ତାକ୍ତ ସଂଗ୍ରାମ ଅନିବାର୍ଯ୍ୟ । ୨ୟ ପଂକ୍ତିରେ କବି ଭଗବାନ କୃଷ୍ଣଙ୍କୁ ବିପ୍ଳବର ପ୍ରତୀକ ଏବଂ କଂସକୁ ଅନ୍ୟାୟ, ଅତ୍ୟାଚାରର ପ୍ରତୀକ ଭାବେ ଉପସ୍ଥାପନ କରିଛନ୍ତି । କୃଷ୍ଣରୂପୀ ବିପ୍ଳବର ଆଗମନ ନ ଘଟିଲେ କଂସରୂପୀ ଦୁରାଚାରୀର ଅତ୍ୟାଚାରର ବିନାଶ ଘଟିବ ନାହିଁ ।

କବିଙ୍କର ସଂଗ୍ରାମୀ କାବ୍ୟମାନସକୁ ଦ୍ୱିତୀୟ ପୃଥିବୀ ମହାଯୁଦ୍ଧର ଭୟାବହ ବିଭୀଷିକା ମଧ୍ୟ ବହୁ ମାତ୍ରାରେ ପ୍ରଭାବିତ କରିଛି । ସମଗ୍ର ପୃଥିବୀବାସୀ ଯୁଦ୍ଧର ଘନଘଟା ମଧ୍ୟରେ ଭୀତତ୍ରସ୍ତ । ଚତୁର୍ଦ୍ଦିଗରେ ମୃତ୍ୟୁର କରାଳ ସ୍ୱର । ଏହା ମଧ୍ୟରୁ ଜୀବନରୂପୀ ଆଶାର ଆଲୋକ ପୁନଃ ଜାଗରିତ କରିବା ପାଇଁ କବି ସଂକଳ୍ପବଦ୍ଧ । ସମଗ୍ର ପୃଥିବୀ ଅପେକ୍ଷାରତ ଏକ ନୂତନ ସମୟର ଶୁଭଆଗମନକୁ । ଯେଉଁ ପୃଥିବୀରେ ଅତ୍ୟାଚାର, ଶୋଷଣର ପରିସମାପ୍ତି ଘଟି ମନୁଷ୍ୟ ଶାନ୍ତିପୂର୍ଣ୍ଣ ସହାବସ୍ଥାନ କରୁଥିବ । କବିଙ୍କ କବିତାରୁ ପତିପନ୍ନ ହୁଏ ଯେ, ଜାତିର ଉନ୍ନତି ଓ ପ୍ରଗତି ପାଇଁ ଶାନ୍ତି ଏକାନ୍ତ ଆବଶ୍ୟକ । ଏହା ମାଧ୍ୟମରେ ଆଣବିକ ମାରଣାସ୍ତ୍ରର ପ୍ରତିଯୋଗିତା, ସାମ୍ରାଜ୍ୟବାଦୀ ମନୋଭାବର ଅବସାନ ଘଟାଯାଇପାରିବ । କବିଙ୍କର ଏହି ଚିନ୍ତାଧାରାରୁ ପ୍ରତିଫଳିତ ହୁଏ ଯେ ହିଂସାତ୍ମକ ବିପ୍ଳବ ମାଧ୍ୟମରେ ଯେ ପରିବର୍ତ୍ତନର ସୂତ୍ରପାତ କରାଯାଇପାରିବ ତାହାନୁହେଁ, ଶାନ୍ତି କାମନା ମାଧ୍ୟମରେ ମଧ୍ୟ ଏହା ସମ୍ଭବ । କାରଣ ବିପ୍ଳବର ଆଗମନ ଶାନ୍ତିକାମନା ପାଇଁ ହିଁ ଉଦ୍ଦିଷ୍ଟଥାଏ । କବି ସୀତାକାନ୍ତ ମହାପାତ୍ରଙ୍କ ଭାଷାରେ – "ବିପ୍ଳବ ଜନ୍ମନିଏ ସ୍ନେହରୁ । ଈର୍ଷା-କ୍ରୋଧ କି ଅସୂୟାରୁ ନୁହେଁ । ବଞ୍ଚିତ, ଦଳିତ, ମଥିତ, ଅତ୍ୟାଚାରିତ ମଣିଷ ପ୍ରତି ସ୍ୱାଭାବିକ ଅନ୍ତରଂଗ ସେହ୍ନରୁ ଜନ୍ମନିଏ ପ୍ରକୃଷ୍ଟ

ବିପ୍ଳବ । ସେଥିପାଇଁ ବିପ୍ଳବ ଶାନ୍ତି ଚାହେଁ । ଶାନ୍ତିର କପୋତକୁ ଉନ୍ମୁକ୍ତ ଆକାଶକୁ ଉଡ଼ାଇ ଦେବାକୁ ଚାହେଁ । କପୋତର ପକ୍ଷ ଆକାଶକୁ ଛୁଁଇ ଛୁଇଁ ଦୂରରେ ହଜିଯିବା ହିଁ ବିପ୍ଳବର ଅନ୍ତିମ ଲକ୍ଷ୍ୟ ।"(୮୨)

ଶାନ୍ତିକାମୀ କବି ମନମୋହନଙ୍କ ଭାଷାରେ –

"ଶାନ୍ତିକାମୀ ମୁକ୍ତିକାମୀ ଏକହୁଅ ଏକହୁଅ
ତୋ ଫସଲ ଲକ୍ଷ୍ମୀ ଡାକେ ଏକହୁଅ ଏକହୁଅ ।
ତୋ ଖଣି ଖାଦାନ୍ ଡାକେ ଏକହୁଅ ଏକହୁଅ ।
ତୋ କୋଣାର୍କ ତାଜ୍ ଡାକେ ଏକହୁଅ ଏକହୁଅ ।
ତୋ ସ୍କୁଲ୍, କଲେଜ ଡାକେ ଏକହୁଅ ଏକହୁଅ ।
ତୋ ବଡ଼ ଦେଉଳ ଡାକେ ଏକହୁଅ ଏକହୁଅ ।" (୮୩)
('ଏକ୍ ହୁଅ' - 'ଆବାଜ୍')

ଜନସାଧାରଣଙ୍କ ହୃଦୟରେ 'ଏକତ୍ୱ' ପ୍ରତିଷ୍ଠା ପାଇଁ ହେଲେ ବ୍ୟକ୍ତି ତା'ର ଚିନ୍ତାଧାରା ମଧ୍ୟରୁ ପାଶବିକ, ସ୍ୱାର୍ଥ କୈନ୍ଦ୍ରିକ ପ୍ରବୃତ୍ତିକୁ ବାଦ୍ ଦେଇ ଗୋଷ୍ଠୀ କୈନ୍ଦ୍ରିକ ଚିନ୍ତାଧାରାକୁ ଗ୍ରହଣ କରିବାକୁ ହେବ । ଅତୀତରେ ଏ ପ୍ରକାର ଭାବଧାରା ଦେଖିବାକୁ ମିଳିଥିଲା ମଧୁସୂଦନଙ୍କର ଚିନ୍ତାଧାରାରେ । ଜାତିକୁ ଏକତ୍ରିତ କରିବା ପାଇଁ ମଧୁବାବୁ କହିଥିଲେ –

"ଜାତି ପ୍ରେମ ବହ୍ନି ପ୍ରଜ୍ୱଳିତ କର
  ସ୍ୱାର୍ଥକୁ ଦିଅ ଆହୁତି
ସ୍ୱାର୍ଥ ମେଧ ଯଜ୍ଞେ ଚାରିଆଡ଼େ ନାଚ
  ଛାତିକୁ ମିଶାଇ ଛାତି ।"

ଏହି ଚିନ୍ତାଧାରା ଦ୍ୱାରା ପ୍ରଭାବିତ କବି ମନମୋହନ, ଶ୍ରେଣୀସଂଘର୍ଷର ବିଲୋପ ପାଇଁ ଜାତୀୟ ଏକତାକୁ ମୁଖ୍ୟ ଅସ୍ତ୍ର ଭାବରେ ଗ୍ରହଣ କରିଛନ୍ତି । କବି ମନମୋହନ 'କୌମିନାରା' କବିତାରେ ଲେଖନ୍ତି –

"ମାଟି ତଳେ ସଞ୍ଚି ଅଫିଟା ଖଣି ଯେ ଦେଶ ମାଟି
ପାହାଡ଼ ଜଂଗଲ ଆକାଶ ପାଣି ଯେ ଦେଶ ମାଟି
ପ୍ରତି ପଦେ ଯା'ର ଭରିଛି ମହୁ ଓଡ଼ିଶା ଦେଶ
ପ୍ରତି ରୂମ ମୂଳେ ବୀରର ଲହୁ ଓଡ଼ିଶା ଦେଶ ।" (୮୪)
('କୌମିନାରା' 'ମନମୋହନ ଗ୍ରନ୍ଥାବଳୀ' ପୃ.୯)

କବିଙ୍କର କାବ୍ୟିକ ଦୃଷ୍ଟିଭଂଗୀ ବହୁବିଧ ଦିଗ୍‌ବଳୟକୁ ସ୍ପର୍ଶ କରିଛି କହିଲେ

ଅତ୍ୟୁକ୍ତି ହେବ ନାହିଁ । କବିଙ୍କର ଏତାଦୃଶ ବୈପ୍ଳବିକ ଉଚ୍ଛ୍ୱାସ କେତେବେଳେ ପୌରାଣିକ ମିଥ୍ ମାଧ୍ୟମରେ ବର୍ଣ୍ଣିତ ହୋଇଛି' ତ କେତେବେଳେ ଜାତୀୟତା ମାଧ୍ୟମରେ ପର୍ଯ୍ୟବେସିତ ହୋଇଛି, ପୁଣି କେତେବେଳେ ସାହୁ ମହାଜନର ଅତ୍ୟାଚାରରେ ରକ୍ତାକ୍ତ ହୋଇ ପେଟ ପାଇଁ ମୂଲ ଲାଗୁଥିବା ଓଡ଼ିଆର ଦୁଃଖ ପ୍ରତି ସମବେଦନା ବ୍ୟକ୍ତ କରୁଛି । ସାଂପ୍ରତିକ ସମାଜର ଯାବତୀୟ ଅବ୍ୟବସ୍ଥା ମଧ୍ୟ କବି ଦୃଷ୍ଟିରୁ ବାଦ୍ ପଡ଼ିନାହିଁ । ସାଂପ୍ରତିକ ପରିସ୍ଥିତି, ଗୋଟିଏ ପଟେ ପୁଂଜିପତିର ଶୋଷଣ, ଅପରପଟେ ସର୍ବହରାର ତଳି ତଳାନ୍ତ ଅବସ୍ଥା କବି ହୃଦୟକୁ ଆଘାତ ଦେଇଛି । ଏହିପରି ଏକ କ୍ଷତାକ୍ତ ଅବସ୍ଥା ମଧ୍ୟରୁ ମୁକ୍ତିଲାଭ ପାଇଁ କବି ରଚନା କରିଛନ୍ତି ମୁକ୍ତିକାମୀ କବିତା । 'ଆମ ହାତେ ଦେଇ ଭିକାରୀ ଥାଳ' କବିତାରେ କବି ଶୋଷଣକାରୀଙ୍କର ଆଖିବୁଜା ଶୋଷଣ ନୀତି ବିରୋଧରେ ବିଦ୍ରୋହ କରିବାକୁଯାଇ ଲେଖିବସନ୍ତି –

"ଆମେ ଫଳାଇଲୁ ସୁନାର ଫସଲ
ତୁମେ ନେଲ ତାହା କାଟି
ଆମ ପୁଅ ଝିଅ ଭୋକେ କଲବଲ
ମରନ୍ତି ପତର ଚାଟି
ଆମ ହାତେ ତୁମେ ପଲଙ୍କ ଗଢ଼ିଛ
ମାରୁଛ ସଉକ୍ ମଜା
ତୁମ ଲାଗି ନୁହଁ ସୁନା ଖଟୁଲୀ ହେ
ତୁମ ଲାଗି ବେଡ଼ି ସଜା ।" (୮୫)
(ଗୀତ : 'ଆମହାତେ ଦେଇ ଭିକାରୀଥାଳ')

କବିଙ୍କର ଉପରୋକ୍ତ କବିତାରେ କବି ଅନନ୍ତ ପଟ୍ଟନାୟକଙ୍କ 'ସର୍ବହରା' କବିତାର ପ୍ରଭାବ ସ୍ପଷ୍ଟ ଲକ୍ଷ୍ୟ କରିହୁଏ । କବି ଅନନ୍ତଙ୍କ କବିତାର ସ୍ୱର –

"ଜୀବନ ଧରି ହେ ଢାଳିଲୁ ରକ୍ତ ତୋଳିଲୁ ସଉଧ ମାଳା
ଆମରି ଲାଗିରେ ଶାସନ ଶକ୍ତ ଆମେଇ ସର୍ବହରା
ଝାଂଜି ପବନ ସହିରେ ସଘନ ଗହୀରେ ରୋଇଲୁ ଧାନ
ବରଷା କାଦୁଅ ଚକଟି କେତେରେ ଖିନ୍ନ କରିଲୁ ପ୍ରାଣ
X X X X X
ସନ୍ତାନ ଆମ ଆମରି ଆଗେରେ ଶମଶାନେ ପଡ଼େ ଟଳି
ମୂକ ପାଷାଣର ପରାଣ ବହିରେ ରହିଛୁ ସଭୟେ ଥରି ।"(୮୬)
('ଆଧୁନିକ' - ୧ମ ବର୍ଷ -୬ଷ୍ଠ ସଂଖ୍ୟା - ଅକ୍ଟୋବର - ୧୯୩୬)

ଶୋଷିତ ମାନବାତ୍ମାପାଇଁ ସତେଯେପରି କବି ମନମୋହନ ମଧ୍ୟ କବି ଅନନ୍ତଙ୍କ ପରି ସଦା ବ୍ୟଥିତ । ଶୋଷିତଜନତାଙ୍କ ଉଦ୍ଦେଶ୍ୟରେ ଆଶାବାଦର ଝଙ୍କାର ତୋଳିବା ପାଇଁ କବିତା ମାଧ୍ୟମରେ କବି ପ୍ରତିଶ୍ରୁତିବଦ୍ଧ । ଜମିଦାର, ମହାଜନର ଋଣ ଭାରରେ ସଦା ଆକ୍ରାନ୍ତ ଶ୍ରମିକ ଓ କୃଷକମାନଙ୍କର ଜୀବନରେ ସୁଖ ନଥାଏ । ଏମାନେ ସହଜରେ ଶୋଷକର ମାୟାଜାଲରେ ଧରା ଦିଅନ୍ତି । ନିଜେ ଫସଲ ଉପୁଜାଇଲେ ମଧ୍ୟମୁଠାଏ ଭାତ ପାଇଁ ଏମାନେ ଯେତେବେଳେ ମହାଜନର ଦ୍ୱାରସ୍ଥ ହୁଅନ୍ତି, ମହାଜନ ଭାତ ବଦଳରେ ଏମାନଙ୍କ ହସ୍ତରେଧରାଇ ଦିଅନ୍ତି ବିଷ । ଏମାନଙ୍କର ସ୍ୱରୂପ କବିଙ୍କର କବିତାରେ କିପରି ଆତ୍ମପ୍ରକାଶ ଲାଭକରିଛି ନିମ୍ନରେ ତାହା ପ୍ରଦତ୍ତ –

"ଭାତ ଉପୁଜାଇ ହାତ ପତାଇଲୁ ଧନ ଡକାୟତ ଦ୍ୱାରେ
ଲୁଗା କଳ ଗଢ଼ି ଲଂଗଳା ଛାତିରେ ଘେନିଲୁ ଗୁଳି ପ୍ରହାରେ
ତୋ ପିଠିରେ ବଜାଏ ବାଜା
ବିରଳା ସ୍ୱଦେଶୀ ରାଜା
ସେ ବିଲାତି ବଂଧୁକ ନେଇ ।" (୮୭)
(ଗୀତ ନଂ ୩ -ସଂଗୀତ - ଜୀବନର ଜୟଗାନ)

'କୋଟି କଣ୍ଠେ', 'ଜୀବନର ଜୟଗାନ' ପରେ କବିଙ୍କର ବହୁ ଚର୍ଚ୍ଚିତ କବିତା ସଂକଳନ 'ଆବାଜ୍' ପ୍ରକାଶ ପାଏ ୧୯୫୪ ମସିହାରେ । ସଂକଳନଟି ସ୍ୱାଧୀନତା ପରବର୍ତ୍ତୀ କାଳର ସ୍ୱପ୍ନଭଂଗ ଅବସ୍ଥାର ଚିତ୍ରକୁ ମୁଖ୍ୟତଃ ପ୍ରାଧାନ୍ୟ ଦେଇଛି । ସ୍ୱାଧୀନତା ପୂର୍ବରୁ ପରିକଳ୍ପିତ ହୋଇଥିବା ରାମରାଜ୍ୟ ସ୍ୱାଧୀନତା ପରବର୍ତ୍ତୀ କାଳରେମରୀଚିକା ପାଲଟି ଯାଇଛି । ସର୍ବତ୍ରହତ୍ୟା, ଅପରାଧ, ଅପହରଣର ଉଦ୍ୟମ । ଖାଇବାକୁ ମୁଠେ ଦାନାନାହିଁ କି ପିନ୍ଧିବାକୁ ବସ୍ତ୍ର ନାହିଁ । କେବଳ ସେତିକି ନୁହେଁ, ରାଜନୈତିକ କ୍ଷେତ୍ରରେ ଶଠତା, ବିଷମ ଅର୍ଥନୈତିକ ବ୍ୟବସ୍ଥା ବିରୋଧରେ ମଧ୍ୟ କବି ନିଜର ଉଗ୍ର ମତବାଦ ପୋଷଣ କରିଛନ୍ତି ।

"ଡାକେ ଝନ୍‌ଜା ଝଡ଼ ରାତି ପ୍ରଳୟର ତୋଫାନ୍
ବଦ୍ଧ ହାତ ମୁଠା ତୋଳି ଭୀମ ରୋଷେ ତୁ ହାଣ
ଜନତାରଭୟରେ
ମୁକ୍ତକରଶକ୍ତକର ପ୍ରଗତିର ଧାରରେ ।" (୮୮)
('ଚାଲରେ' 'ଆବାଜ୍' (ସଂ))

କଟକର ଅବହେଳିତ ବସ୍ତିବାଲାଙ୍କଠାରୁ ଆରମ୍ଭ କରି ଶ୍ରମିକ, କୃଷକ, ଦୀନ ମଜୁରିଆ, ସରକାରୀ କର୍ମଚାରୀଙ୍କ ପର୍ଯ୍ୟନ୍ତ ପ୍ରତିଟି ନିମ୍ନବର୍ଗର ଜନସାଧାରଣଙ୍କୁ କବି

ସମବେଦନା ଜ୍ଞାପନ କରିଛନ୍ତି । ସ୍ୱଦେଶ ମାଟିରେ ଜମିଦାରର ଋଣ ଶୁଝିନପାରିଓଡ଼ିଆ ଯୁବକଟିଏ ଅଧିକ ରୋଜଗାର ଆଶାରେ ଆସାମ୍ ଚାଲି ଯାଉଛି ଚାହା ବଗିଚାରେ କାର୍ଯ୍ୟ କରିବା ପାଇଁ । କିନ୍ତୁ ସେଠାରେ ମଧ୍ୟ ତା'ର ଦୁର୍ଦ୍ଦଶାର ଅନ୍ତ ହେଉ ନାହିଁ । ଏହି ଦୁଃସ୍ଥ, ଶୋଷିତ ଜନଗଣଙ୍କ ପାଇଁ କବି ମନମୋହନଙ୍କ ସ୍ୱରରେ ରହିଛି ଯେତିକି ଆନ୍ତରିକତା, ରହିଛି ମଧ୍ୟ ସେତିକି ବ୍ୟଗ୍ରତା । କବିଙ୍କ ବର୍ଣ୍ଣନାରେ –

"ପଚାରଇ ଥରେ ଚାହା ବାଗାନରେ
  ପରବାସୀ ମୋର ଜାତି
ପେଟଲାଗି ପରା ଛାଡ଼ିଲୁ ତୋ ଭାଷା
  ଛାଡ଼ିଲୁ ତୋ ଭିଟା ମାଟି,
ପାଞ୍ଚ ଅଣା ରୋଜେ ପୁରେ କି ପେଟରେ
  ମିଳେ କି ବାସୀ ତୋରାଣି ।" (୮୯)
('ଚା' ବଗିଚାରେ କୁଲି; ଆବାଜ୍)

ଏତଦ୍‌ବ୍ୟତୀତ କବିଙ୍କ ରଚିତ 'ନୂଆ ଗପଟିଏ ଲେଖ' 'ନୂଆ ରଘୁପତି ଓଡ଼ିଆ ଆସେ', 'କିଏ ସିଏ' ଇତ୍ୟାଦି ମାର୍କସ୍‌ବାଦୀ ଚିନ୍ତାଧାରାର ତିନୋଟି ସାର୍ଥକ କବିତା । ପ୍ରଥମ କବିତାରେ କବି ମନମୋହନ ଭଗବତୀ ଚରଣ ପାଣିଗ୍ରାହୀ ଓ ତାଙ୍କର ସାର୍ଥକ ସୃଷ୍ଟି 'ଶିକାର' ଗଳ୍ପର ନାୟକ 'ଘିନୁଆ' ଚରିତ୍ରକୁ ଜନମାନସରେ ପୁନର୍ଜୀବିତ କରାଇବାକୁ ଯଥାସମ୍ଭବ ପ୍ରଚେଷ୍ଟା କରିଛନ୍ତି । କବି ଦୃଷ୍ଟିରେ 'ଘିନୁଆ' ଅତ୍ୟାଚାରୀ ଜନମାନସ ବିରୋଧରେ ସଂଗ୍ରାମ କରିବାପାଇଁ ପ୍ରେରଣାର ଉତ୍ସ ପାଲଟିଛି । କବିଙ୍କ ଭାଷାରେ –

"ଭଗବତୀ ପ୍ରିୟସାଥୀ
  ଗପର ଘିନୁଆ ମଥାଟି ଲୋଟିଲା
  ଏ ପ୍ରିୟ ଜନମ ମାଟି ।
  x x x x
ଚାଳକ ନାୟକ ଦୁହେଁ କଥା ଭାଷା ହୋଇ
ନଅ ବର୍ଷ ହେଲା ଭାବିଛ ପଡ଼ିଛ ଶୋଇ ।
  ଗରଜିଛି ନିଶା ରାତି
ବାଘର ପାରିଧି ଆଉ ହୁଏ ନାହିଁ
  କାହାର ନ ପାଏ ଛାତି ।" (୯୦)
('ନୂଆ ଗପଟିଏ ଲେଖ' : ନବଯୁଗ ଗ୍ରନ୍ଥାଳୟ - ୧୯୫୧)

ସେହିପରି ଚମତ୍କାର ରୂପକଳ୍ପ ମାଧ୍ୟମରେ କବି ବ୍ୟକ୍ତ କରୁଛନ୍ତି ତାଙ୍କର ଚିନ୍ତାଦର୍ଶକୁ 'କିଏ ସିଏ' କବିତାରେ । କେନ୍ଦୁଝରର 'ଗୋ-ନାସିକା' ଓ କୋରାପୁଟର 'ଦେଓମାଳୀ' ସମଗ୍ର ଓଡ଼ିଶାର ପ୍ରତିନିଧିତ୍ୱ କରୁଛନ୍ତି । ଓଡ଼ିଶା ଖଣିଜ ସଂପଦରେ ଭରପୂର ହୋଇଥିଲେ ମଧ୍ୟ ସେ ସବୁର ସଦୁପଯୋଗ ହୋଇ ପାରୁନାହିଁ । ଓଡ଼ିଶାର ଏପ୍ରକାର ବିପର୍ଯ୍ୟସ୍ତ ରୂପ ଦେଖି ଗୋନାସିକା ଦେଓମାଳୀକୁ ପ୍ରବୋଧନା ଦେଉଛି । ପର୍ବତ ଦୁଇଟିର ଦୁଃଖ ମଧ୍ୟରେ କବି ସମଗ୍ର ଓଡ଼ିଶାର ଦୁଃଖକୁ ଅନୁଭବ କରି କବିତାରେ ପ୍ରକାଶ କରିଛନ୍ତି । ଏଠାରେ ଗୋଟିଏ କଥା ସୂଚିତ ହୁଏ ଯେ, ପ୍ରଗତିବାଦ କେବଳ ପୁଂଜିପତି, ଜମିଦାରର ଅତ୍ୟାଚାର ବିରୋଧରେ ମଥା ଟେକିଥିବା ସ୍ୱର ନୁହେଁ । ବରଂ ପ୍ରତ୍ୟେକ କ୍ଷେତ୍ରରେ ଶୋଷିତ ହେଉଥିବା ସାଧାରଣ ଜନତାର ସ୍ୱର କହିଲେ ଅତ୍ୟୁକ୍ତି ହେବନାହିଁ । ଏହି କବିତା ସଂପର୍କରେ ଆଲୋଚନା କରିବାକୁ ଯାଇ ଡଃ ବିଜୟ କୁମାର ଶତପଥୀ ମତବ୍ୟକ୍ତ କରନ୍ତି –

"ଗୋ-ନାସିକା ମାନବ ସଭ୍ୟତାର ଆରମ୍ଭରୁ ଅର୍ଥାତ୍ ଆଦିମ କମ୍ୟୁନିଷ୍ଟ ସମାଜଠାରୁ ଏ ପର୍ଯ୍ୟନ୍ତ ଭିନ୍ନଭିନ୍ନ ଶାସନ ବ୍ୟବସ୍ଥାମାନଙ୍କୁ ପ୍ରତ୍ୟକ୍ଷ କରିଛି । ଲକ୍ଷ୍ୟ କରିଛି ମଣିଷର ସ୍ୱାର୍ଥପରତା ଓ ଅର୍ଥଲୋଲୁପତା' । ସମଗ୍ର ମାନବ ସମାଜର ହିତ ଦୃଷ୍ଟିରୁ ତା' ଗର୍ଭରେ ସାଇତା ପ୍ରଚୁର ଧନ ସଂପତ୍ତିକୁ କେହି ବିନିଯୋଗ କରିନାହାନ୍ତି ।"(୯୧)

ରୂପକଳ୍ପ ମାଧ୍ୟମରେ କବିଙ୍କର ବିପ୍ଳବୀ ମନୋଭାବ ଯେପରି ରୂପ ଲାଭ କରିଛି, ପୌରାଣିକ ମିଥ୍ ମାଧ୍ୟମରେ ମଧ୍ୟ କବି ନିଜସ୍ୱ ଚିନ୍ତାଧାରାକୁ ସାର୍ଥକ ରୂପପ୍ରଦାନ କରିଛନ୍ତି 'ନୂଆ ରଘୁପତି ଓଡ଼ିଆ ଆସେ' କବିତାରେ । ପ୍ରତ୍ୟେକ ଓଡ଼ିଆଙ୍କୁ ଶ୍ରୀରାମଚନ୍ଦ୍ରଙ୍କର ଆଦର୍ଶ ବରଣ କରିବାକୁ ଆହ୍ୱାନ ପ୍ରଦାନ କରିଛନ୍ତି କବି ।

ଯୁଗଯୁଗ ଧରି ଅନ୍ୟାୟ, ଅତ୍ୟାଚାର, କଷଣ ଭୋଗୁଥିବା ପାଷାଣୀ ଅହଲ୍ୟା ରୂପୀ ଓଡ଼ିଶା ମାଟିର ମୋକ୍ଷ ପ୍ରାପ୍ତି ଘଟିବ ଶ୍ରୀରାମଚନ୍ଦ୍ରରୂପୀ ଜନସାଧାରଣଙ୍କ ଆଦର୍ଶବତ୍ତା ଦ୍ୱାରା ।ଏହା ଯେ ଦିନେ ସମ୍ଭବ ହେବ ଏଥିପାଇଁ କବି ଦୃଢ଼ ଆଶାପୋଷଣ କରିଛନ୍ତି ।

୧୯୬୦ ପୂର୍ବବର୍ତ୍ତୀ କବିତାରେ ପ୍ରତିଫଳିତ ବୈପ୍ଳବାତ୍ମକ ଚିନ୍ତାଦର୍ଶ ଷାଠିଏ ପରବର୍ତ୍ତୀ କବିତାରେ ଉଗ୍ରରୂପ ଧାରଣ କରିଛି । ନକ୍ସଲ୍ ଆନ୍ଦୋଳନ କବିଙ୍କ କବିତାରେ ଉଗ୍ରତା ଆଣି ଦେଇଛି । ଏହି ସମୟରେ କବି ବିଭିନ୍ନ ଶ୍ରମିକ ସଂଗଠନ, ବିଭିନ୍ନ ଟ୍ରେଡ୍ ୟୁନିୟନ୍‌ର ନେତୃତ୍ୱ ସଫଳତାର ସହିତ ତୁଲାଇଛନ୍ତି । ତତ୍କାଳୀନ ସମୟରେ ପ୍ରକାଶିତ ପତ୍ରିକା 'ଆଭା' 'ବେଳା' ଓ 'ଅଭିଯାତ୍ରୀ'ରେ ତାଙ୍କର ଲେଖା ପ୍ରକାଶିତ ହୋଇ ବହୁ ତରୁଣ କବିଙ୍କୁ ଆକୃଷ୍ଟ କରେ । 'ବେଳା' ପତ୍ରିକାରେ ପ୍ରକାଶିତ

ହୋଇଥିବା 'ଫାଶୀ ଦେବ ? ଦିଅ' କବିତା ପାଠକ ମହଲରେ ଖୁବ୍ ଆଦୃତି ଲାଭ କରିଥିଲା । କବିତାଟି ନକ୍ସାଲ୍‌ନେତା ନାଗଭୂଷଣଙ୍କ ଫାଶୀ ଦଣ୍ଡାଦେଶ ବିରୋଧରେ ଲିଖିତ ହୋଇଥିଲା । ଗୋଟିଏ ସଂଗ୍ରାମୀ ନେତାଙ୍କୁ ଫାଶୀ ଦେଲେ ସମସ୍ୟାର ସମାଧାନ ହୁଏ ନାହିଁ ବରଂ ଏହା କୋଟିକୋଟି ସଂଗ୍ରାମୀଙ୍କୁ ପ୍ରେରଣା ପ୍ରଦାନ କରେ । ବିଦ୍ରୋହୀ କବି, ଭାଷାରେ ବ୍ୟକ୍ତ କରିବାକୁଯାଇ କହନ୍ତି –

"ଗୋଟିଏ ନାଗରେ ତୁମେ ଫାଶୀ ଦେବ ? ଦିଅ

x x x x x

ଶୋଷିତ ପୃଥିର କାନ୍ଧେ ଥୋଇ ଅଗ୍ନିର ନଳୀ
ଶୋଷିତରେ ଦେଲ ବିଷାବଳୀ
ବର୍ତ୍ତିବାର ବାଟ ଆଉ କାହିଁ ? ଶେଷ ଚେଷ୍ଟା କରିନେବ ନିଅ ?
ଫାଶୀଦେବ ? ଦିଅ ।" (୯୨)

କବିଙ୍କ ରଚିତ କବିତାଗୁଡ଼ିକ ବହୁ ସଂଗଠନ ପାଇଁ ଥିଲା ପ୍ରେରଣାର ଉତ୍ସ । ପ୍ରାରମ୍ଭିକ ପର୍ଯ୍ୟାୟରେ ସାମ୍ୟବାଦର ଶାନ୍ତ, କାନ୍ତ, କମନୀୟ ରୂପ ପରିଲକ୍ଷିତ ହେଉଥିବାବେଳେ ଉତ୍ତର ଷାଠିଏ କାଳର କବିତାରେ ଏକ ଉଗ୍ରରୂପକୁ ଦେଖିବାକୁ ମିଳିଥାଏ । ବହୁ କବିତା ସଂଗୀତ ଉଦ୍ଦେଶ୍ୟରେ ରଚିତ ହୋଇଥିଲେ ମଧ୍ୟ ଏଥିରେ ବିପ୍ଳବୀ ଚିନ୍ତାଧାରା ପ୍ରକାଶିତ । କବିଙ୍କର ସୃଷ୍ଟି ସମ୍ଭାରକୁ ଲକ୍ଷ୍ୟ କଲେ, ପ୍ରତିପାଦିତ ହୁଏ ଯେ, ଏହା ପ୍ରାୟତଃ ମନୁଷ୍ୟ ସମାଜର ସକଳ ପ୍ରକାର ଅଭିପ୍ସା ପୂରଣ ସହିତ ଶାନ୍ତିପୂର୍ଣ୍ଣ ସହାବସ୍ଥାନ ଦିଗରେ ପ୍ରଧାବିତ ।

ବାସ୍ତବିକ୍ କବିଙ୍କର କବିତା ଯେ ଯୁଗ ଯୁଗ ପାଇଁ ଭାରତୀୟ ଜନତାଙ୍କୁ ସଂଗ୍ରାମର ମଇଦାନରେ ଏକ ହେବା ପାଇଁ ପ୍ରେରଣା ପ୍ରଦାନ କରୁଥିବ ଓ ଶୋଷଣମୁକ୍ତ ସମାଜ ଗଠନ ପାଇଁ ଉତ୍ସାହିତ କରୁଥିବ ଏଥିରେ ସଂନ୍ଦେହ ନାହିଁ ।

## କବି ସୁନନ୍ଦ କର

୧୯୪୭ ମସିହାରେ 'ଆଗାମୀ କାଲି' ସଂକଳନରେ ତେରଗୋଟି ପ୍ରଗତିବାଦୀ ଚିନ୍ତାଚେତନା ସମ୍ବଳିତ କବିତା ରଚନା କରି ଏହି କାବ୍ୟଧାରାର ଜଣେ ସଫଳ ସ୍ରଷ୍ଟାର ମାନ୍ୟତା ପାଆନ୍ତି କବି ସୁନନ୍ଦ କର । କବିତା ଗୁଡ଼ିକରେ ସେଇ ସାମ୍ୟବାଦୀ କବିର ସ୍ୱପ୍ନ – ଶୋଷଣ ବିହୀନ ସମାଜ ଗଠନର ପରିକଳ୍ପନା ସାଙ୍ଗକୁ ସମାଜରୁ ତାରତମ୍ୟର ପ୍ରାଚୀରକୁ ଭାଙ୍ଗି ଦେବାରଦୃଢ଼ ପ୍ରତିଜ୍ଞା । 'ପ୍ରସ୍ତାବନା'ଠାରୁ 'ଯବନିକା' ମଧ୍ୟରେ ତେଣୁ କବି ସ୍ୱୟଂ ଘୋଷଣା କରନ୍ତି –

"ସୈନିକ ଆମେ ଶପଥ ଘେନୁଛୁ ପ୍ରାଣେ
ଆଜିର ଏ ପ୍ରେତ ପିଶାଚ ଦଳେ ନିର୍ମୂଳ କରି ରଣେ
ମୂର୍ଦ୍ଧାରେ ତା'ର ଗଢ଼ିବୁ ନୂତନ ଧରା
ଅମ୍ଳାନ ଯହିଁ ସୁନୀଳ ଗଗନେ ଦୀପ୍ତ ପ୍ରଗତି ତାରା ।" (୯୩)

ବଜ୍ର ଶପଥ ନେଇଥିବା କବି ସିଧାସଳଖ ଭାବେ ସମାଜର ଶୋଷଣ ବିରୋଧରେ ଆହ୍ୱାନ ଦିଅନ୍ତି । ଶୋଷଣର ମୂଳ କାରଣ ଭାବେ ରାଜା, ଜମିଦାରମାନଙ୍କୁ ଦାୟୀ କରନ୍ତି । କବି ଦୃଷ୍ଟିରେ ଏମାନେ ଚୋର, ଖଣ୍ଟଠାରୁ ମଧ୍ୟ କୌଣସି ଗୁଣରେ କମ୍ ନୁହେଁ । କାହିଁକି ନା ଏମାନେ ସର୍ବହରା ଶ୍ରମିକର ଶ୍ରମ ମୂଲ୍ୟକୁ ଅପହରଣ କରନ୍ତି । ପରଧନ ଭୋଗୀ ଏହି ରାଜା ଜମିଦାରଙ୍କୁ କବି ସତର୍କ ବାଣୀ ଶୁଣାଇଛନ୍ତି । ବିପ୍ଳବର ବାର୍ତ୍ତା ପ୍ରଚାର କରିବାକୁ ଯାଇ କବି ଘୋଷଣା କରିଛନ୍ତି–

"ମୁକତି ମଶାଲେ ବିଦୀର୍ଣ୍ଣ କରି ମରଣ ଅଂଧକାର
ହୁସିଆର୍ ! ହୁସିଆର୍
ଦସ୍ୟୁ ପନ୍ଥୀ ମନୁଷ୍ୟଭୁକ୍ ଯେତେ ରାଜା ଜମିଦାର ।" (୯୪)

'କବିତା ନଂ ୫' ରେ ମଧ୍ୟ ଅନୁରୂପ ସ୍ୱର ଶୁଣିବାକୁ ମିଳିଥାଏ । ଏଦେଶର ଦିନ ମଜୁରିଆ ମୁଠାଏ ଅନ୍ନ ପାଇଁ ସଂଗ୍ରାମ କରୁଥିବା ବେଳେ ଧନର ଇମାରତ୍ ଉପରେ ବସିଥିବା ପୁଂଜିପତି ଅୟସ୍ ଆରାମ୍‌ରେ କାଳାତିପାତ କରୁଥାଏ । ଈଶ୍ୱରଙ୍କ ସୃଷ୍ଟିରେ ସଭିଏଁ ସମାନ ବୋଲି ନିୟମ ଥିଲେ ମଧ୍ୟ ଏ ପ୍ରକାର ବିଭିନ୍ନତା ସୃଷ୍ଟି ହୁଏ କାହିଁକି ? ଏହାର ଉତ୍ତର ଖୋଜିଛନ୍ତି କବି କବିତା ନଂ୫ ରେ । ପୁଂଜିପତି ବିରୋଧରେ ବଜ୍ରବାଣୀ ଶୁଣାଇବାକୁ ଯାଇ କହିଛନ୍ତି :–

"ତୁମ ଦେଶ କୋଟିଏ ମଜୁରିଆ ମରେ ଅନ୍ନ ମୁଠାଏ ପାଇଁ
ଲହୁ ଶୋଷି ତା'ର ପୁଂଜିପତି ସେ ଅଏସେ ମାରଇ ହାଇ ।" (୯୫)

କବିଙ୍କର କବିତାଗୁଡ଼ିକ ପାଠକମାନଙ୍କୁ ଆନନ୍ଦ ଦେବା ନିମନ୍ତେ ଉଦ୍ଦିଷ୍ଟ ନୁହେଁ । ଶ୍ରେଣୀସଂଗ୍ରାମର ତୀବ୍ରଧ୍ୱନିରେ ଏହା ଅନୁରଣିତ । ଯେଉଁମାନେ ପ୍ରଜାଗଣଙ୍କର ଉଦ୍‌ବୃତ୍ତ ଶ୍ରମମୂଲ୍ୟରେ ଧନର ପ୍ରାଚୁର୍ଯ୍ୟରୂପୀ ଇମାରତ୍ ନିର୍ମାଣ କରନ୍ତି, ଦିବାନିଶି ବସି କଳ୍ପନା ରାଜ୍ୟରେ ଭାସି ବୁଲନ୍ତି, ସେଇମାନଙ୍କ ପ୍ରତି ଘୃଣାବୋଧରେ କବିଙ୍କର ପ୍ରତ୍ୟେକଟି କବିତା ରଂଜିତ । ପ୍ରକୃତପକ୍ଷେ ଦେଖିବାକୁଗଲେ କବି ସୁନନ୍ଦ ବିପ୍ଳବ ମାଧ୍ୟମରେ ଯୁଗାନ୍ତକାରୀ ପରିବର୍ତ୍ତନ ଆଣିବା ପାଇଁ ନିବେଦନ କରିଛନ୍ତି ସାଧାରଣ ଶୋଷକବର୍ଗଙ୍କୁ । କବିଙ୍କର ଏହି ଆହ୍ୱାନରେ ସମକାଳର ଜନସାଧାରଣ ନିଜକୁ ଉଦ୍‌ବୁଦ୍ଧ କରନ୍ତି । ସାଧାରଣ ଜନତାର ଧମନୀରେ କବିଙ୍କର କବିତାଗୁଡ଼ିକ ପ୍ରବାହିତ ହୋଇ ସେମାନଙ୍କୁ

ଯୋଗାଏ ଅନ୍ୟାୟ, ଅତ୍ୟାଚାର ବିରୋଧରେ ସଂଗ୍ରାମ କରିବାର ଅସରନ୍ତି ପ୍ରେରଣା । ବିପ୍ଳବର ବାର୍ତ୍ତାକୁ ବହନ କରୁଥିବା କବିଙ୍କର ଅନ୍ୟ ଏକ କବିତା ହେଉଛି କବିତା ନଂ ୩୩ ।

"ତୁମ ଲହୁ ଶୋଷି ଗଢ଼ା ଯେତେ ଅଟ୍ଟାଳି
ଭିତ୍ତି ତାହାର କଂପାଅ ମାରି ତାଳି
ଗଗନ ପବନ ମଥି ତବ ଜୟ ଗିର
ସଜାଅ ଦଦରା ପର୍ଣ୍ଣ - କୁଟୀର ତୋର ।"(୯୬)

କବିଙ୍କର କବିତାଗୁଡ଼ିକ କେବଳ ଯେ ପୁଂଜିବାଦ ବିରୋଧୀ ସ୍ୱର ଉଦ୍‌ଘୋଷଣା କରିଛି ତାହା ନୁହେଁ, ଇଂରେଜମାନଙ୍କ ଅତ୍ୟାଚାର ବିରୋଧରେ ମଧ୍ୟ ବିଦ୍ରୋହ ଘୋଷଣା କରିଛି । ସତେଯେପରି ସ୍ୱାଧୀନତା ଓ ସାମ୍ୟବାଦ ଏକତ୍ର ଗୋଟିଏ ସୂତ୍ରରେ ଗୁନ୍ଥା ହୋଇଛନ୍ତି ତାଙ୍କ କବିତାରେ ।

"ସମ୍ମୁଖେ ଦିଶେ ମୁକ୍ତି ଜୁଆର
ଅର୍ଗଳ ଫିଟିନାଇ ଆଜି ଯାଏ ତୋର
ଶତ କଲିକତା ଶତ ନୂଆ ଖାଲି
ରୁନ୍ଧି ରଖିଛି ଦ୍ୱାର ତାହାରି
ଶତ ସ୍ୱାର୍ଥ ବାଦ
ଆଣେ ପରମାଦ
କାନ୍ଦି ଚରଣେ ତୋର ମାଗେ ଭାରତମାତା
ଏକ ଜାତି ଏକ ପ୍ରାଣ, ଏକତା ।" (୯୭)

ମାର୍କସ୍‌ବାଦୀ କବି କାୟମନୋବାକ୍ୟରେ ଜନଗଣର ସପକ୍ଷବାଦୀ ପାଲଟି ଥାଏ । ତା' ନିକଟରେ ପୁଂଜିବାଦ ବିରୋଧି ସ୍ୱର, ଇଂରେଜ ଅତ୍ୟାଚାର ବିରୋଧୀ ସ୍ୱର ମଧ୍ୟରେ କୌଣସି ତଫାତ୍ ନଥାଏ । ଶୋଷଣ, ଅତ୍ୟାଚାରକୁ ମୁକାବିଲା କରିବା ତା'ର ପ୍ରଧାନ ଲକ୍ଷ୍ୟ । ତେଣୁ କବିତା ନଂ ୨୩ରେ କବି ସୁନନ୍ଦ କହନ୍ତି –

"ସ୍ୱାଧୀନତା ଆଉ ସାମ୍ୟବାଦର ଦୁଆ ଧରି ନେତା ଦଳ
ଭାଇ ଭାଇ ବୁକେ ଜଳାଉଛନ୍ତି ବିଭେଦର ଦାବାନଳ
ସଭା ମଣ୍ଡପେ ହୁଙ୍କାର କରି ନୀତି ଉପଦେଶ ଦେଇ
ଘର କୋଣେ ନେତା କରନ୍ତି ଚୋରା ବଜାର, କିଳା ପୋତେଇ ।" (୯୮)

ରାଜତନ୍ତ୍ର ଦ୍ୱାରା ବର୍ଷବର୍ଷ ଧରି ଶୋଷିତ ଜନସାଧାରଣ ଭୋଟ୍ ଦେଇ ଯୋଗ୍ୟ ଦକ୍ଷଶାସକମାନଙ୍କୁ ନିର୍ବାଚିତ କରନ୍ତି । ଯେଉଁମାନେ କି ସଂକୁଚିତ ସ୍ୱାର୍ଥରୁ ଊର୍ଦ୍ଧ୍ୱକୁ ଉଠି

ବ୍ରତୀ ହୁଅନ୍ତି ସମୂହର କଲ୍ୟାଣ ପାଇଁ । କିନ୍ତୁ ସେମାନେ ସ୍ୱାଧୀନତା, ସାମ୍ୟବାଦର ଦ୍ୱାହି ଦେଇ ସାଧାରଣ ଜନତାକୁ ଶୋଷଣ କରନ୍ତି । ତେଣୁ ଏସୁବକୁ ଦୂର କରି ନୈତିକ ମୂଲ୍ୟବୋଧର ପ୍ରତିଷ୍ଠାପାଇଁ କବି ଆହ୍ୱାନ ଦିଅନ୍ତି ।

ଠିକ୍ ସେହିପରି ସାମ୍ୟବାଦର ବାର୍ତ୍ତାକୁ ବହନ କରିଛି କବିଙ୍କର 'କଳ୍ପନା' ସଂକଳନ । ଯାହାକି ୧୯୪୮ ମସିହାରେ ପ୍ରକାଶ ପାଇଥିଲା । ଏହା ପରେ କବିଙ୍କର 'ଉଦୟନ' ନାମକ ଏକ ସଂକଳନ ପ୍ରକାଶ ପାଏ । ସଂକଳନଟିରେ ରହସ୍ୟବାଦୀ ଚିନ୍ତାଧାରା ସାଙ୍ଗକୁ ପ୍ରଗତିବାଦୀ ଚିନ୍ତାଧାରାର ଏକ ରୂପ ମଧ୍ୟ ଦେଖିବାକୁ ମିଳେ । 'ମଇ ଦିବସରେ' 'କ୍ରାନ୍ତିର ଆହ୍ୱାନ', 'ଅଭିଯାନ ପଥେ', 'ବାଜିରାଉତ' ଇତ୍ୟାଦି କବିତା ଏହାର ପ୍ରକୃଷ୍ଟ ପ୍ରମାଣ । ଧୀରେଧୀରେ ରବୀନ୍ଦ୍ରନାଥଙ୍କ ଚିନ୍ତାଧାରା ଓ ରହସ୍ୟବାଦର ପ୍ରଭାବ ତାଙ୍କ ଉପରେ ପଡ଼ିଥିଲେ ମଧ୍ୟ ଚାଳିଶି ଦଶକରେ କବି ଯେଉଁ ମାର୍କସ୍‌ବାଦୀ ଚିନ୍ତାଚେତନା ସମ୍ବଳିତ କବିତା ରଚନା କରିଯାଇଥିଲେ, ତାହା ତାଙ୍କୁ ଚିରକାଳ ସ୍ମରଣୀୟ କରି ରଖିବ କହିଲେ ଅତ୍ୟୁକ୍ତି ହେବ ନାହିଁ ।

## ସ୍ୱାଧୀନତା ପୂର୍ବବର୍ତ୍ତୀ ପ୍ରଗତିବାଦୀ କବିତାର ବୈଶିଷ୍ଟ୍ୟ

ଜାତୀୟ ଜୀବନର ପୁରୁଣା ପ୍ରଥା ଉପରେ ନୂତନ ସ୍ତର ଫିଟାଇବା ଯଦି ପ୍ରଗତିବାଦର ମୁଖ୍ୟ ଉଦ୍ଦେଶ୍ୟ ହୁଏ, ତା'ହେଲେ ସ୍ୱାଧୀନତା ପୂର୍ବବର୍ତ୍ତୀ ସମୟର ପ୍ରଗତିବାଦୀ କବିତାର ଏହା ହିଁ ମୁଖ୍ୟ ବୈଶିଷ୍ଟ୍ୟ ଥିଲା । ସାହିତ୍ୟର ସାମ୍ରାଜ୍ୟ ଯେତେବେଳେ ରୋମାଣ୍ଟିକ୍ ପ୍ରେମ ପ୍ରଣୟ ଦ୍ୱାରା ସୀମାବଦ୍ଧ ଥିଲା, ଏହି ବଂଧନର ପ୍ରାଚୀରକୁ ଭଂଗ କରି ତା' ମଧ୍ୟକୁ ପ୍ରବେଶ କଲା ବୈଜ୍ଞାନିକ ଚିନ୍ତାସମ୍ମତ 'ପ୍ରଗତିବାଦ' ବା' ଯାହାର ଅନ୍ୟନାମ 'ମାର୍କସ୍‌ବାଦ' । ଓଡ଼ିଆ ସାହିତ୍ୟରେ ଏହି ଚିନ୍ତାଚେତନାର ଭଗୀରଥ ଥିଲେ କମ୍ରେଡ୍ ଭଗବତୀ ଚରଣ ପାଣିଗ୍ରାହୀ । ତାଂକ ସହ ତାଳ ମିଳାଇଥିଲେ କବି ସଚ୍ଚିଦାନନ୍ଦ ରାଉତରାୟ, କବି ଅନନ୍ତ ପଟ୍ଟନାୟକ, କବି ରଘୁନାଥ ଦାସ, କବି ମନମୋହନ ମିଶ୍ର, କବି ସୁନନ୍ଦକର ପ୍ରମୁଖ ସ୍ରଷ୍ଟାମାନେ ।

ପ୍ରଗତିବାଦର ଯେଉଁ ଆବାହାଓ୍ୱା ପ୍ରବାହିତ ହେଉଥିଲା ଓଡ଼ିଆ ସାହିତ୍ୟରେ ତା'ର ସ୍ପର୍ଶ ଦ୍ୱାରା ସବୁଜ କବିମାନେ ବେଶ୍ ପ୍ରଭାବିତ ହୋଇଥିଲେ । ସେମାନଂକ କବିତାରେ ଯେଉଁ ପଳାୟନବାଦୀ ଓ ରହସ୍ୟବାଦୀ ସ୍ୱର ଶୁଣାଯାଉଥିଲା, ସେମାନେ ଏହାକୁ ପରିହାର କରି ପ୍ରଗତିବାଦୀ ଦୃଷ୍ଟିଭଂଗୀକୁ ଗ୍ରହଣ କରିନେଇଥିଲେ । ଏ କ୍ଷେତ୍ରରେ ଅଗ୍ରଣୀ ଭୂମିକା ଗ୍ରହଣ କରିଥିଲେ କବି କାଳିନ୍ଦୀଚରଣ ପାଣିଗ୍ରାହୀ ଓ କବି ବୈକୁଣ୍ଠନାଥ ପଟ୍ଟନାୟକ ।

ଭଗବତୀ ଚରଣ, ସଚ୍ଚିଦାନନ୍ଦ, ଅନନ୍ତଙ୍କ ସହିତ ସବୁଜ କବିମାନଂକର ସତେଜ ଚିନ୍ତାଧାରା ପ୍ରଗତିବାଦକୁ ବଳିଷ୍ଠ ରୂପ ପ୍ରଦାନ କରିଥିଲା କହିଲେ ଅତ୍ୟୁକ୍ତି ହେବନାହିଁ । ସେମାନଂକ କବିତାର ମୁଖ୍ୟ ବୈଶିଷ୍ଟ୍ୟ ହେଲା ଦୃଢ଼ ବାସ୍ତବବାଦୀ ଦୃଷ୍ଟିଭଂଗୀ । ଧର୍ମବିଶ୍ୱାସ ଓ ଈଶ୍ୱରୀୟ ଅନୁଚିନ୍ତା ପ୍ରତି ଶାଣିତ ବ୍ୟାଖ୍ୟା ସ୍ୱାଧୀନତା ପୂର୍ବବର୍ତ୍ତୀ ପ୍ରଗତିବାଦୀ କବିତାରେ ଯେମିତି ସ୍ଥାନ ପାଇଲା, ଠିକ୍ ସେମିତି ଏହି କବିତା ଏକ ଶୋଷଣମୁକ୍ତ ସମାଜର ଇସ୍ତାହାର ଘୋଷଣା କଲା । ପ୍ରାୟ ଅଧିକାଂଶ କବିତାର ବିଷୟବସ୍ତୁ ହେଲା ଶ୍ରମିକ-ପୁଂଜିପତି, କୃଷକ-ଜମିଦାର ମଧ୍ୟରେ ଚାଲିଥିବା ସଂଘର୍ଷ । କବିମାନେ କବିତାରେ ସ୍ଥାନ-କାଳ-ପାତ୍ର ନିର୍ବିଶେଷରେ ସମସ୍ତ ଅତ୍ୟାଚାରିତ, ଶୋଷିତ ବର୍ଗଙ୍କୁ ଏକ୍‌ଜୁଟ୍ ହୋଇ ଏହାର ବିରୋଧାଚରଣ କରିବା ପାଇଁ ଆହ୍ୱାନ ଦେଲେ । କବି ଦୃଷ୍ଟିରେ ବିଶ୍ୱର ସମସ୍ତ ଶ୍ରମଜୀବୀ, ଅତ୍ୟାଚାରିତ ଗୋଷ୍ଠୀ ସମାନ ଅଟନ୍ତି । ଏମାନଙ୍କ ମଧ୍ୟରେ କୌଣସି ତାରତମ୍ୟ ନାହିଁ । ନିଜର ସର୍ବସ୍ୱ ହରାଇଦେଇ ଏମାନେ ଆଜି ସର୍ବହରା ।

ତେଣୁ ଏ ସମୟର ଏହି ଅସହାୟ ସର୍ବହରା ଗୋଷ୍ଠୀଙ୍କୁ ଆହ୍ୱାନ କରିବାକୁ ଯାଇ ଏ ସମୟର କବି ସଚ୍ଚିରାଉତରାୟ କହୁଛନ୍ତି:-

"ପୃଥିବୀର ସର୍ବତ୍ର ତୁମେ ରହିଛ
ତୁମରି ସତ୍ତା ସବୁ ଦେଶ, ସବୁ ଭୌଗୋଳିକ ସୀମାର ବାହାରେ ପରିବ୍ୟାପ୍ତ
ହେ ପୃଥିବୀର ସର୍ବହରା ଶ୍ରମିକ ।
ଏକଯୁଟ୍ ହୁଅ
ହେ ଆହତ ଆତ୍ମା, ସଚେତ ହୁଅ
ତୁମର ଶ୍ରେଣୀ ଚେତନା ତୁମକୁ ଅପେକ୍ଷା କରିଛି ।୯୯।

ସ୍ୱାଧୀନତା ପୂର୍ବବର୍ତ୍ତୀ ଓଡ଼ିଆ କବିତାରେ ପ୍ରଗତିବାଦୀ ଚେତନା କିପରି ବିଭିନ୍ନ କବିମାନଂକର ସୃଷ୍ଟି ମାଧ୍ୟମରେ ଏକ ସମୃଦ୍ଧ ରୂପ ପରିଗ୍ରହ କରିଛି ତାହାର ବିଷଦ୍ ଆଲୋଚନା କରାଯାଇଛି । ଏମାନଂକ ଦ୍ୱାରା ବାମପନ୍ଥୀ ଚେତନାର ଯେ ବିକାଶ ସମ୍ଭବ ହୋଇପାରିଛି ତାହାକୁ ନିର୍ବିବାଦରେ ଗ୍ରହଣ କରାଯାଇପାରେ । ଏକ ପ୍ରଭାବଶାଳୀ ସାମାଜିକ ରାଜନୈତିକ ଭାବଧାରାକୁ କବିମାନେ ନିଜ ନିଜର ସୃଷ୍ଟିରେ ଯେଭଳି ଆନ୍ତରିକତାର ସହ ସ୍ଥାନ ଦେଇଛନ୍ତି ଓ ଏହାର ମୂଳ ଲକ୍ଷ୍ୟକୁ ସାଦରେ ଗ୍ରହଣ କରିନେଇ ସମାଜର ପ୍ରଗତି ପାଇଁ ପଥ ପରିଷ୍କାର କରିଛନ୍ତି ତାହା ବାସ୍ତବିକ୍ ପ୍ରଶଂସନୀୟ ।

୧- ‘ସବୁଜ ଅକ୍ଷର’ ଭୂମିକା : ଅନ୍ନଦାଶଙ୍କର ରାୟ ।
୨- ‘ସବୁଜରୁ ସାଂପ୍ରତିକ’ : ଡଃ ନିତ୍ୟାନନ୍ଦ ଶତପଥୀ, ଗ୍ରନ୍ଥମନ୍ଦିର: ପଞ୍ଚମ ସଂସ୍କରଣ, ଜାନୁଆରୀ-୨୦୦୮, ପୃ - ୨୦
୩- ‘ପ୍ରତିମା’ ‘କ୍ଷତିକସତ୍ୟ’ - ଉତ୍କଳ ସାହିତ୍ୟ ୩୮ ଭାଗ, ପୃ-୩୬୩ ।
୪- ‘ଦେବତା ନାହିଁ ଭୂବନ ବନେ’ ନବ ଭାରତ, ବୃଷ-୧୩୪୨ ।
୫- ‘ଅରୂପର ଆହ୍ୱାନ’ : କ୍ଷଣିକ ସତ୍ୟ - ପୃ - ୮୮ ।
୬- ‘ଯାଦୁଘର’- ‘କ୍ଷଣିକ ସତ୍ୟ’ - (୬-୫-୩୮), ପୃ - ୯୧ ।
୭- ‘ଛୁରୀଟିଏ ଲୋଡ଼ା’ କାଳିନ୍ଦୀ ଚରଣ ରଚନାଚୟ, ପୃ -୨୭୫ ।
୮- ‘ବାଜିରାଉତ’ : କୃଷକ : ୧୯୩୮ (ବନ୍ଦୀ ସୈନିକ ଛଦ୍ମ ଭଣିତାରେ ପ୍ରକାଶିତ) ।
୯- ‘କିଏ ଶଳା ସଇତାନ’ (୧୯୪୪) ‘କ୍ଷଣିକ ସତ୍ୟ’ - ପୃ-୧୦୦, କାଳିନ୍ଦୀ ରଚନାଚୟ, ପୃ-୪୨୧ ।
୧୦- ‘ସବୁଜରୁ ସାଂପ୍ରତିକ’ : ପ୍ର: ନିତ୍ୟାନନ୍ଦ ଶତପଥୀ, ଗ୍ରନ୍ଥ ମନ୍ଦିର: ୫ମ ସଂସ୍କରଣ, ଜାନୁଆରୀ ୨୦୦୮, ପୃ-୨୩ ।
୧୧- ‘ଆଗାମୀ’- ‘ଛୁରୀଟିଏ ଲୋଡ଼ା’, ପୃ-୧୧୯, ‘କାଳିନ୍ଦୀ ରଚନାଚୟ’, ପୃ-୩୫୪ । ‘ସହକାର’ ୨୩ / ୯ମ ସଂଖ୍ୟା, ନଭେମ୍ବର ୧୯୪୨ ।
୧୨- ‘ବନ୍ୟା ବିପ୍ଳବ’ - ଉତ୍କଳ ସାହିତ୍ୟ ୩୭ ଭାଗ, ୪ର୍ଥ ସଂଖ୍ୟା, ଜୁଲାଇ ୧୯୩୩ ।
୧୩- ‘ଅଗଷ୍ଟ ବିପ୍ଳବ’ - (୬-୮-୪୯)- ‘କାବ୍ୟ ସଂଚୟନ’ ୧୯୫୩ ସଂସ୍କରଣ ପୃ ୮୫ ।
୧୪- ‘ସବୁଜରୁ ସାଂପ୍ରତିକ’ : ଡଃ ନିତ୍ୟାନନ୍ଦ ଶତପଥୀ, ଗ୍ରନ୍ଥମନ୍ଦିର- ଗ୍ରନ୍ଥମନ୍ଦିର-୫ମ ସଂ, ଜାନୁଆରୀ ୨୦୦୮, ପୃ - ୫୧ ।
୧୫- ‘ଗଡ଼ଜାତ କୃଷକ’ - ୧୯୩୯ : (ମୃତ୍ୟୁ ପରେ ପ୍ରକାଶିତ) : କୁନ୍ତଳା କୁମାରୀ ଗ୍ରନ୍ଥାବଳୀ - ପୃ ୩୦୪ ।
୧୬- ‘ଖଣ୍ଡିଏ ଚିଠି’ : ‘କାନ୍ତ ସାହିତ୍ୟମାଳା’ ୧ମ ଖଣ୍ଡ, ପୃ - ୫୦୦ ।
୧୭- ‘ଜମିଦାରର ମୃତ୍ୟୁ’ - ‘ଉଠକଂକାଳ’ - ୧୯୪୭- ପୃ ୩୬ ।
୧୮- ‘ଲେନିନ୍’ - ଜୁନ -୧୯୨୪ - ‘ଉଠ କଙ୍କାଳ’ (ସଂ) ପୃ ୧୧୨ ।
୧୯- ‘ବଂକା ଓ ସିଧା’ (ସଂ) : ମୁଖବଂଧ - କବି ଗୋଦାବରୀଶ ମହାପାତ୍ର ।
୨୦- ‘ଛବିଶ୍ ଜାନୁଆରୀ’ : ‘ବଂକା ଓ ସିଧା’, ୧୯୬୨, ପୃ - ୨୩୨ ।
୨୧- ‘ନିଆଁଖୁଣ୍ଟା’ ସ୍ମରଣିକା ସଂଖ୍ୟା - ‘ସେନିଆଁ ଲିଭେ ନାହିଁ’ ପ୍ରସଙ୍ଗ - କାଳିନ୍ଦୀ

ଚରଣ ପାଣିଗ୍ରାହୀ, ପୃ-୧୨ –୧୯୬୫

୨୨- 'ସୈନିକ ସମାଧି' - ଆହୁତି: ଗ୍ରନ୍ଥାବଳୀ ପୃ ୪୦୩ ।

୨୩- 'ଉତ୍ସ' : ମୁଖବଂଧ - କୃଷ୍ଣଚନ୍ଦ୍ର ଗ୍ରନ୍ଥାବଳୀ : ଡଃ ମାୟାଧର ମାନସିଂ ପୃ ୫୨୧ ।

୨୪- ଅଗ୍ନିଶଙ୍ଖ' : କୃଷ୍ଣଚନ୍ଦ୍ର ଗ୍ରନ୍ଥାବଳୀ ପୃ ୬୩୮ ।

୨୫- ବିପ୍ଳବ ଦିଗ୍‌ବଳୟ - ପୃ ୨୪୪ ।

୨୬- ସବୁଜରୁ ସାଂପ୍ରତିକ ଡଃ ନିତ୍ୟାନନ୍ଦ ଶତପଥି, ଗ୍ରନ୍ଥମନ୍ଦିର-୫ମ ସଂସ୍କରଣ-ଜାନୁଆରୀ ୨୦୦୮, ପୃ - ୧୪୩ ।

୨୭- ପାଥେୟ- କବି ସଚ୍ଚିଦାନନ୍ଦ ରାଉତରାୟ

୨୮- ପାଥେୟ- କବି ସଚ୍ଚିଦାନନ୍ଦ ରାଉତରାୟ

୨୯- ଛୋଟମୋର ଗାଆଁଟି- ପଲ୍ଲିଶ୍ରୀ, କବି ସଚ୍ଚିଦାନନ୍ଦ ରାଉତରାୟ

୩୦- ଆଧୁନିକ ଓଡ଼ିଆ ସାହିତ୍ୟରେ ବାଣିଜ୍ୟ ମୂଲ୍ୟ - କୃଷ୍ଣଚନ୍ଦ୍ର ପାଣିଗ୍ରାହୀ- ଶଙ୍ଖ ପ୍ରଥମ ବର୍ଷ, ୭ମ ସଂଖ୍ୟା ଜାନୁଆରୀ - ୧୯୪୫ ।

୩୧- ଭଗବାନ ଅଛ କାହିଁ- ଅଭିଯାନ - ସଚ୍ଚିଦାନନ୍ଦ ରାଉତରାୟ ।

୩୨- ବାଜି ରାଉତ - ପୃ. ୫୭୯ - ସଚ୍ଚିଦାନନ୍ଦ ରାଉତରାୟ ।

୩୩- କ୍ରାନ୍ତି ଓ ସଂକ୍ରାନ୍ତିର କାବ୍ୟକର୍ମୀ ସଚ୍ଚି ରାଉତରାୟ- ଗିରିଜା ବଳୀୟାରସିଂହ, ପ୍ରତିବେଶୀ -୨୦୦୪ ।

୩୪- ବନ୍ଦନା ମହାନ୍ତି - ପାଣ୍ଡୁଲିପି - କବି ସଚ୍ଚିଦାନନ୍ଦ ରାଉତରାୟ ।

୩୫- ଓଡ଼ିଆ କବିତାରେ ପ୍ରଗତିବାଦୀ ଧାରା - ଡଃ ବିଜୟ ଶତପଥୀ, ପୃ- ୨୭୧ ।

୩୬- କବିତା ୧୯୬୨ - ଦ୍ୱିତୀୟ ସଂକଳନ - ୧୯୭୧, ସଚ୍ଚିଦାନନ୍ଦ ରାଉତରାୟ, ପୃ. - ୧୦୯ ।

୩୭- ସାହିତ୍ୟ ସାଧକ ସଚ୍ଚି ରାଉତରାୟ ଏକ ଆକଳନ, ସହକାର, ଡଃ ତୀର୍ଥାନନ୍ଦ ମିଶ୍ର, ପୃ-୧୭ ।

୩୮- 'ସମାଧାନ' : କବି ଅନନ୍ତ ପଟ୍ଟନାୟକ:- ନବଭାରତ, ବିଛା ୧୩୪୧

୩୯- ଦେବତା ନାହିଁ ଭୁବନ ବନେ ନବ ଭାରତ, ବୃଷ - ୧୩୪୨ ।

୪୦- 'ଅଲୋଡ଼ା ଲୋଡ଼ା' କବି ଅନନ୍ତ ପଟ୍ଟନାୟକ, ପୃ ୪୪ ।

୪୧- 'ନବଭାରତ' - ଧନୁ - ୧୩୪୨ ।

୪୨- 'ପ୍ରଳୟର ଆବାହନ' : କବି ଅନନ୍ତ ପଟ୍ଟନାୟକ, ଆଧୁନିକ : ୧ମ ସଂଖ୍ୟା, ମେ -୧୯୩୬ ।

୪୩- 'ସର୍ବହରା : ଆଧୁନିକ -୧ମ ବର୍ଷ -୬ଷ୍ଠ ସଂଖ୍ୟା - ଅକ୍ଟୋବର -୧୯୩୬ ।

୪୪- 'ଆମେ ମୂଲିଆର ଜାତି ଜାଗିବୁ' ରକ୍ତଶିଖା ସଂକଳନ- ଅନନ୍ତ ପଟ୍ଟନାୟକ, ପୃ-୧୧ ।

୪୫- 'ମୁକ୍ତି ସଂଗୀତ : 'ରକ୍ତଶିଖା', କବି ଅନନ୍ତ ପଟ୍ଟନାୟକ - ୧୯୩୯ : ନବଯୁଗ ଗ୍ରନ୍ଥାଳୟ, ପୃ -୨ ।

୪୬- 'ଆଗେଚାଲ' - 'ରକ୍ତଶିଖା', କବି ଅନନ୍ତ ପଟ୍ଟନାୟକ, - ୧୯୩୯ : ନବଯୁଗ ଗ୍ରନ୍ଥାଳୟ, ପୃ - ୫ ।

୪୭- 'ଓଡ଼ିଆ ସାହିତ୍ୟରେ ପ୍ରଗତିବାଦୀ ଧାରା' : ବିଜୟ ଶତପଥୀ, ଓଡ଼ିଶା ବୁକ୍‌ଷ୍ଟୋର - ପୃ - ୨୮୫ ।

୪୮- 'ସ୍ୱପ୍ନ ଦେଖୁଚି' 'କିଞ୍ଚିତ' କବି ଅନନ୍ତ ପଟ୍ଟନାୟକ ।

୪୯- 'ମୁଠିଏ ବୋଲି ହସ' - କିଞ୍ଚିତ, କବି ଅନନ୍ତ ପଟ୍ଟନାୟକ ।

୫୦- ଧୂଳିର ଫୁଲ ମଉକ : ଡଃ ସୀତାକାନ୍ତ ମହାପାତ୍ର କବି ଅନନ୍ତ ପଟ୍ଟନାୟକ ସ୍ମରଣିକା - ଓଡ଼ିଶା ସାହିତ୍ୟ ଏକାଡେମୀ - ୧୯୮୭ ।

୫୧- 'ହଟାଅ ହଟାଅ' 'ଶାନ୍ତି ଶିଖା', କବି ଅନନ୍ତ ପଟ୍ଟନାୟକ, ପୃ - ୬ ।

୫୨- 'ଶାନ୍ତିର କପୋତ' 'ଶାନ୍ତି ଶିଖା', କବି ଅନନ୍ତ ପଟ୍ଟନାୟକ, ପୃ - ୧ ।

୫୩- 'ଆହେ ମହାଗଣକ' 'ଶାନ୍ତି ଶିଖା' କବି ଅନନ୍ତ ପଟ୍ଟନାୟକ, ପୃ - ୪୦ ।

୫୪- 'ଓଡ଼ିଆ ସାହିତ୍ୟରେ ମାର୍କସ୍‌ବାଦୀ ଚେତନାର ଅନ୍ୟ ଏକ ମୋଡ଼' ରଘୁନାଥ ଦାସ, ରବି ସିଂ- 'ଝଙ୍କାର'-୨୪ଶ ବର୍ଷ, ଦଶମ ସଂଖ୍ୟା - ଜାନୁଆରୀ-୧୯୭୩

୫୫- ରଘୁନାଥ ରଚନା ସମଗ୍ର - ଅଗଷ୍ଟ ପନ୍ଦର ଓ ଅନ୍ୟାନ୍ୟ କବିତା - ପୃ - ୪ ।

୫୬- ର.ଦାସ ରଚନା ସମଗ୍ର ଅଗଷ୍ଟ ପନ୍ଦର ଓ ଅନ୍ୟାନ୍ୟ କବିତା, ପୃ - ୫

୫୭- ଅଗଷ୍ଟପନ୍ଦର ଓ ଅନ୍ୟାନ୍ୟ କବିତା, ଅ.ପ. ୧୯୪୭, କବିତା ର ଦାସ ରଚନାସମଗ୍ର, ପୃ-୬

୫୮- 'ରଘୁ ବାବାଙ୍କୁ ମୁଁ ଯେମିତି ଦେଖିଚି: ବ୍ରଜନାଥ ରଥ ର. ଦାସ ପରିକ୍ରମା - ପୃ ୮୦ ।

୫୯- ଅଗଷ୍ଟ ପନ୍ଦର ୧୯୪୮ ର ଦାସ ରଚନା ସମଗ୍ର ।

୬୦- ଅଗଷ୍ଟ ପନ୍ଦର(୧୯୬୮) ଓ ଅନ୍ୟାନ୍ୟ କବିତା - ପୃ ୧୦)

୬୧- ବିସ୍ମୃତ ବିପ୍ଳବୀ କବି ରଗୁନାଥ ଦାସ ସବୁଜରୁ ସାଂପ୍ରତିକ ଡଃ ନିତ୍ୟାନନ୍ଦ ଶତପଥୀ ପୃ - ୩୧୦ ।

୬୨- ନୀରବ ସାଧକ ଓ ସଂଗଠକ ସାମ୍ୟବାଦୀ : ଡଃ ବାସୁଦେବ ସାହୁ : ରଘୁନାଥ ଦାସ ପରିକ୍ରମା ପୃ - ୧୨୦ ।

୬୩- ଅ.ଗ. ୧୯୪୯ କବିତା - ରଘୁନାଥ ଦାସ

୬୪- କବିତା ୧୯୪୯ ର. ଦାସ ରଚନା ସମଗ୍ର, ପୃ -୧୩ ।

୬୫- କ୍ରାନ୍ତିର କବିତା : କବି ରଘୁନାଥ, ଡଃ ଆଶୁତୋଷ ପରିଡ଼ା, ର. ଦାସ ପରିକ୍ରମା ପୃ - ୧୦୮ ।

୬୬- 'ଗଣପତି' ରଘୁନାଥ ଦାସ ରଚନା ସମଗ୍ର - ପୃ ୧୭ ।

୬୭- 'ନାଗଭୂଷଣ - ପୁନଶ୍ଚ (ସଂ) - ପୃ -୫୬
୬୮- 'କୋରିଆ' 'ରଘୁନାଥ ଦାସ ରଚନା ସମଗ୍ର' - ପୃ - ୨୦ ।
୬୯- 'ମୃତ୍ୟୁହୀନ' - ପୃ - ୨୩ - 'ରଘୁନାଥ ଦାସ ରଚନା ସମଗ୍ର' ।
୭୦- 'ସାଂଘାଇ' - 'ର.ଦାସ.ର.' ପୃ ୨୫ ।
୭୧- 'ରଘୁନାଥ ଦାସଙ୍କ କାବ୍ୟ ମାନସରେ ବିପ୍ଳବୀ ଚେତନାର ଏକ ନୂତନ ଶୃଙ୍ଗ ରଜନୀ କାନ୍ତ ମହାନ୍ତି : ର.ଦାସ. ପରିକ୍ରମା - ଗଣମୁକ୍ତି ପ୍ରକାଶନୀ ପୃ ୧୯୭ ।
୭୨- 'ଓଡ଼ିଆ ସାହିତ୍ୟରେ ମାର୍କସବାଦୀ ଚେତନାର ଅନ୍ୟ ଏକ ମୋଡ଼": ଝଙ୍କାର' ୨୪/ ୧୦ ସଂଖ୍ୟା, ଜାନୁଆରୀ ୧୯୭୩ ।
୭୩- 'ପୁନଶ୍ଚ' - ପୃ - ୬୭-୬୮ ।
୭୪- 'ଯେ ଚିତ୍ତ ଚିନ୍ତଇ ଯାହା' - 'ପୁନଶ୍ଚ' ମୁଖବଂଧ - ପୃ - ୬୫ - ର. ଦାସ. ର. ସମଗ୍ର ।
୭୫- 'ରାହୁଗ୍ରାସ' - ପୃ - ୫୨ ।
୭୬- 'ର. ଦାସ ରଚନା ସମଗ୍ର - ପୃ - ୧୦୪ ।
୭୭- 'ଶପଥ' 'ଉବାଚ' (ସଂ) ର. ଦାସ ରଚନା ସମଗ୍ର - ପୃ -୧୯୩ ।
୭୮- 'କୋଟି କଣ୍ଠେ'- ଚତୁର୍ଥ ସଂଗୀତ- ମନମୋହନ ମିଶ୍ର ।
୭୯- 'ନୀଳକଣ୍ଠ ଗ୍ରନ୍ଥାବଳୀ' - ୧ମ ଖଣ୍ଡ - ୨ୟ ସିଂ-୧୯୭, ପୃ: ୧୪୧ ।
୮୦- 'କୋଟି କଣ୍ଠେ'- ତୃତୀୟ ସଂଗୀତ- ମନମୋହନ ମିଶ୍ର ।
୮୧- 'କୋଟି କଣ୍ଠେ'- ନବମ ସଂଗୀତ- ମନମୋହନ ମିଶ୍ର ।
୮୨- 'ଧୂଳିର ଫୁଲ ମହକ' : ଡଃ ସୀତାକାନ୍ତ ମହାପାତ୍ର : କବି ଅନନ୍ତ ପଟ୍ଟନାୟକ : ଓଡ଼ିଶା ସାହିତ୍ୟ ଏକାଡ଼େମୀ, ୧୯୮୭ ।
୮୩- 'ଏକ ହୁଅ'- 'ଆବାଜ୍' - ମନମୋହନ ମିଶ୍ର ।
୮୪- 'କୌମିନାରା' - 'ମନମୋହନ ଗ୍ରନ୍ଥାବଳୀ', ପୃ - ୯ ।
୮୫- 'ଗୀତ' - 'ଆମ ହାତେଦେଇ ଭିକାରୀ ଥାଳ' - ମନମୋହନ ମିଶ୍ର ।
୮୬- 'ଆଧୁନିକ' - ପ୍ରଥମ ବର୍ଷ - ୬ଷ୍ଠ ସଂଖ୍ୟା, ଅକ୍ଟୋବର ୧୯୩୬ ।
୮୭- 'ଗୀତ ନଂ-୩' - 'ଜୀବନର ଜୟଗାନ' - ମନମୋହନ ମିଶ୍ର ।
୮୮- 'ଚାଲରେ'- 'ଆବାଜ୍' - ମନମୋହନ ମିଶ୍ର ।
୮୯- 'ଚା' ବଗିଚାରେ କୁଲି' - 'ଆବାଜ୍' - ମନମୋହନ ମିଶ୍ର ।
୯୦- 'ନୂଆ ଗପଟିଏ ଲେଖ'- ମନମୋହନ ମିଶ୍ର- ନବଯୁଗ ଗ୍ରନ୍ଥାଳୟ - ୧୯୫୧ ।
୯୧- 'ଓଡ଼ିଆ ସାହିତ୍ୟରେ ପ୍ରଗତିବାଦୀ ଧାରା' : ଡଃ ବିଜୟ କୁମାର ଶତପଥୀ : ପୃ ୩୦୪ ।
୯୨- 'ଫାଶୀ ଦେବ ଦିଅ' ବେଳା - ତୃତୀୟ ବର୍ଷ ତୃତୀୟ ସଂଖ୍ୟା - ୧୯୭୧ ।

୯୩- 'ପ୍ରସ୍ତାବନା' - 'ଆସନ୍ତା କାଲି' - ପୃ -୧, ଷ୍ଟୁଡେଣ୍ଟସ୍ ଷ୍ଟୋର, ବ୍ରହ୍ମପୁର - ୧୯୪୭

୯୪- 'କବିତା ନଂ-୭', 'ଆଗାମୀ କାଲି' - ପୃ -୧୧

୯୫- 'କବିତା ନଂ୫', 'ଆଗାମୀ କାଲି', ପୃ-୧୮

୯୬. 'କବିତା ନଂ - ୩୩' - 'ଆଗାମୀ କାଲି' ପୃ - ୫୨

୯୭- 'କବିତା ନଂ - ୧୭' - 'ଆଗାମୀ କାଲି' ପୃ -୨୬

୯୮- 'କବିତା ନଂ-୨୩': 'ଆଗାମୀ କାଲି', ପୃ-୩୪

୯୯- 'ମୂଲିଆ ଭାଇ'- ଉତ୍କଳ ସାହିତ୍ୟ, ୪୧ଭାଗ / ୧ମ ସଂଖ୍ୟା, ବୈଶାଖ ୧୩୪୪, ଏପ୍ରିଲ୍ ୧୯୩୭



## ଚତୁର୍ଥ ଅଧ୍ୟାୟ

# ସ୍ୱାଧୀନତା ପରବର୍ତ୍ତୀ ଓଡ଼ିଆ କବିତାରେ ପ୍ରଗତିବାଦୀ ଚେତନା

ସ୍ୱାଧୀନତା ପରବର୍ତ୍ତୀ କାଳରେ ପ୍ରଗତିବାଦୀ ଓଡ଼ିଆ କବିତା ବିଭିନ୍ନ ରୂପନେଇ ଆତ୍ମପ୍ରକାଶ କରିଛି । କେତେବେଳେ ଏହା ବ୍ୟକ୍ତିମୁଖୀ ଚେତନା ବିରୋଧରେ ବିରୋଧାଭାସ ପ୍ରକଟିତ କରିଛି ତ କେତେବେଳେ ପରମ୍ପରା ଓ କୁସଂସ୍କାର ବିରୋଧରେ, କେତେବେଳେ ଏଥିରେ ସାମାଜିକ ଅଙ୍ଗୀକାରବଦ୍ଧତା ମଧ୍ୟ ପ୍ରକାଶ ପାଇଛି । ଶେଷରେ ଏହି ଚିନ୍ତାଧାରା ସହିତ ନକ୍‌ସାଲ୍‌ବାଦୀ ଚିନ୍ତାଧାରା ମିଶି ଏହାକୁ ଏକ ନୂତନ ରୂପ ପ୍ରଦାନ କରିଛି । ତାହା ନିମ୍ନରେ ଆଲୋଚନା କରାଗଲା ।

## ସ୍ୱାଧୀନତା ପରବର୍ତ୍ତୀ କାଳରେ ଗଣତନ୍ତ୍ରର ବ୍ୟର୍ଥତା ଓ ସ୍ୱପ୍ନଭଂଗ

ନବଯୁଗ ସାହିତ୍ୟ ସଂସଦର ଗଠନ ଓ ଏହାର ମୁଖପତ୍ର 'ଆଧୁନିକ' ଓଡ଼ିଆ ସାହିତ୍ୟରେ ଏକ ଯୁଗାନ୍ତକାରୀ ପରିବର୍ତ୍ତନ ଆଣିବାକୁ ସକ୍ଷମ ହୋଇଥିଲା । ଏହାର ପ୍ରଭାବରେ ଓଡ଼ିଆ ସାହିତ୍ୟ ମଧ୍ୟକୁ ବିପ୍ଳବୀ ଚିନ୍ତାଧାରାର ଅନୁପ୍ରବେଶ ଘଟିଲା । କୃଷକ ଓ ଶ୍ରମିକକୁ ତା'ର ଅଧିକାର ସଂପର୍କରେ ସଚେତନ କରାଇବା ଥିଲା ଏହାର ମୁଖ୍ୟ ଉଦ୍ଦେଶ୍ୟ । ୧୯୪୭ ମସିହା ପର୍ଯ୍ୟନ୍ତ ଓଡ଼ିଆ ସାହିତ୍ୟରେ ଏହା ଅପରିବର୍ତ୍ତିତଥିଲା । ୧୯୪୭ମସିହା ପରେ ଏହି ଚିନ୍ତାଧାରାରେ ଦେଖାଦେଲା ପରିବର୍ତ୍ତନ । ଏହାର ପୃଷ୍ଠପଟ୍ଟରେ ଥିଲା ସ୍ୱାଧୀନତା ପରବର୍ତ୍ତୀ କାଳର ଗଣତନ୍ତ୍ରର ବ୍ୟର୍ଥତା ଓ ସ୍ୱପ୍ନଭଂଗ । ପ୍ରତ୍ୟେକ ଦେଶ ପାଇଁ ଶ୍ରେଷ୍ଠ ଦିନ ହେଉଛି ସେହିଦିନ, ଯେଉଁଦିନ ଦେଶ ପରାଧିନତାର କବଳରୁ ମୁକ୍ତିପାଏ । ଏହି ସ୍ୱାଧୀନତାକୁ ହାତ ମୁଠାରେ ପାଇବା ପାଇଁ ବହୁ ମହାମନୀଷୀମାନେ ସକଳ-ପ୍ରକାରର ବିଳାସ ବ୍ୟସନକୁ ତ୍ୟାଗ କରିଥିଲେ । ସ୍ୱପ୍ନ ଦେଖିଥିଲେ ଏକ ସୁନେଲୀ ସକାଳର । ଶେଷରେ ସମସ୍ତ ସମ୍ଭାବନାର ଅନ୍ତ ଘଟି ଦେଶ

ସ୍ୱାଧୀନତା ଲାଭ କଲା । ସ୍ୱାଧୀନତାର ସ୍ୱର୍ଣ୍ଣପ୍ରସୂ ଫଳପ୍ରାପ୍ତି ହେବା ପରିବର୍ତ୍ତେ ପରିଣତି କ'ଣ ହେଲା ତାହା ବର୍ତ୍ତମାନର ଅର୍ଥନୀତି, ସାମାଜିକ ବ୍ୟବସ୍ଥା ଓ କଳୁଷିତ ରାଜନୀତିକୁ ଦେଖିଲେ ସ୍ପଷ୍ଟ ଜାଣି ହୁଏ । ତେଣୁ ସାଂପ୍ରତିକ ସମାଜର ଏ ପ୍ରକାର ପରିସ୍ଥିତି ଲେଖକର ଚିନ୍ତାଧାରାକୁ ବହୁ ମାତ୍ରାରେ ପ୍ରଭାବିତ କରିଛି । ଫଳସ୍ୱରୂପ ୧୯୫୦ ମସିହା ପରେ ବିପ୍ଳବୀ ସ୍ରଷ୍ଟାମାନସ ଏକ ଭିନ୍ନପଥରେ ଗତିଶୀଳ ହୋଇଛି । ଏହାବ୍ୟତୀତ ଦ୍ୱିତୀୟ ବିଶ୍ୱଯୁଦ୍ଧର ଭୟାବହତା ସମଗ୍ର ବିଶ୍ୱବାସୀଙ୍କୁ ଗଭୀର ଭାବରେ ପ୍ରଭାବିତ କରିଛି । ଆଣବିକ ଯୁଦ୍ଧର ଭୟାବହତା ଯେ ସମଗ୍ର ସୃଷ୍ଟିକୁ ଧ୍ୱଂସ କରିଦେଇପାରେ ଏ ପ୍ରକାର ଅନୁଚିନ୍ତା ସମଗ୍ର ଜନମାନସକୁ ଦୋହଲାଇ ଦେଇଛି । ଏଥିରୁ ମଧ୍ୟ ସ୍ରଷ୍ଟାର ଚିନ୍ତାଚେତନା ବାଦ୍ ଯାଇ ନାହିଁ । ଜୀବନର ସହଜ ସରଳ ଦିଗକୁ ଉଦ୍‌ଘାଟିତ କରିବା ସହିତ ଶାନ୍ତି କାମନା ପାଲଟିଛି ସାହିତ୍ୟିକ ମାନଙ୍କର ମୁଖ୍ୟ ବର୍ଣ୍ଣନାର ବିଷୟବସ୍ତୁ । ସ୍ୱାଧୀନତା ପ୍ରାପ୍ତିର ପୂର୍ବାବସ୍ଥା ଏବଂ ପରବର୍ତ୍ତୀ କାଳୀନ ଅବ୍ୟବସ୍ଥା ସ୍ରଷ୍ଟାର ହୃଦୟରେ ଗଭୀର କ୍ଷୋଭ ଜାଗ୍ରତ କରାଇଛି । ତେଣୁ ୧୯୫୦ ପରବର୍ତ୍ତୀ ପ୍ରଗତିବାଦୀ କବିତାରେ ଏକ ଭିନ୍ନତା ପରିଲକ୍ଷିତ ହୋଇଛି । ପୁଂଜିବାଦୀ ଶୋଷଣ ବ୍ୟବସ୍ଥାର ଚିତ୍ର ରୂପାୟିତ ହେବା ପରିବର୍ତ୍ତେ ସ୍ୱାଧୀନତା ପରବର୍ତ୍ତୀ କାଳୀନ ଗଣତନ୍ତ୍ରିକ ବ୍ୟର୍ଥତାର ଚିତ୍ର ଓ ଏହାର ନିରାକରଣ ବିପ୍ଳବ ମାଧ୍ୟମରେ କପରି ସମ୍ଭବ ହୋଇପାରିଛି ତାହା ଏଠାରେ ପ୍ରତିପାଦିତ ହୋଇଛି ।

କବି ସଚ୍ଚିଦାନନ୍ଦ ରାଉତରାୟ ପ୍ରାଥମିକ ପର୍ଯ୍ୟାୟରେ ପୁଂଜିବାଦୀ ଶୋଷଣର କଥା କହିଥିଲା ବେଳେ ପରବର୍ତ୍ତୀ ସମୟରେ ତାଙ୍କ ସ୍ୱରରେ କିଞ୍ଚିତ ପରିବର୍ତ୍ତନର ଆଭାସ ଦେଖିବାକୁ ମିଳିଛି । ସେ ପରିବର୍ତ୍ତନ ସାମସମୟିକ ଅବ୍ୟବସ୍ଥାକୁ ନେଇ । ଇଂରେଜମାନଙ୍କ କବଳରୁ ଭାରତବର୍ଷ ମୁକ୍ତି ପାଇବା ପରେ ଏଠାରେ ଚଳି ଆସୁଛି ସ୍ୱ-ଶାସନ ବ୍ୟବସ୍ଥା । ସ୍ୱ-ଶାସନର ମୂଳ ଲକ୍ଷ୍ୟ 'ଲୋକ-ଶକ୍ତି' ନିର୍ମାଣ । ତାହା କିନ୍ତୁ ଆଜି ଆମ ପାଇଁ ସ୍ୱପ୍ନ ପାଲଟିଛି । ନିର୍ଦ୍ଧାରିତ ନୀତି, ନିଷ୍ପତ୍ତି କାର୍ଯ୍ୟରେ ରୂପାନ୍ତରିତ ହୋଇ ପାରୁନାହିଁ । ପ୍ରତ୍ୟହ ସମ୍ବାଦପତ୍ରର ପୃଷ୍ଠା ମଣ୍ଡନ କରୁଛି ଚୋର, ତସ୍କର, ଦଗାବାଜ୍‌ମାନଙ୍କର ନାନାଦି ବିଶୃଙ୍ଖଳାର ଘୃଣିତ ବିବରଣୀମାନ । ଏ ପ୍ରକାର ପରିସ୍ଥିତିକୁ ଦେଖି ବ୍ୟଥାତୁର କବି ସଚ୍ଚିଦାନନ୍ଦ କହୁଛନ୍ତି –

"ସବୁ ଦଗାବାଜ୍, ଦାଗୀ ଓ ମୁନାଫାଖୋର
ଧ୍ୱଂସର ଲାଗି ଦିଏ ମୁଁ ଆଦେଶ ନାମା
ଆଦେଶ ଦିଏ ମୁଁ ଆଦେଶ ଦିଏ ମୁଁ ଆଜି
ଦୂର କର ସବୁ ଜୁଲମ୍, ଶୋଷଣ ବାଜି

ସବୁ ଧଡ଼ି ବାଜ୍, ପଙ୍ଗପାଳର ଦଳେ
ଦୀପ୍ତ କ୍ରୋଧର ଦାବାନଳେ ପୋଡ଼ି ଖୋଜି
ଆଜି ସକାଳେ ମୁଁ ବନ୍ଦନା କରେ
ଜନତାର ଫଉଜରେ ।" (୧)

ସ୍ୱାଧୀନତାଲାଭ ପୂର୍ବରୁ ସଂଗ୍ରାମୀ ନେତୃବୃନ୍ଦମାନେ ସ୍ୱପ୍ନ ଦେଖିଥିଲେ ଗଣତନ୍ତ୍ର ଶାସନରେ ସାମାଜିକ ଆଦର୍ଶ, ସଂସ୍କୃତିର ସୁରକ୍ଷା, ଶୃଙ୍ଖଳିତ ଆର୍ଥିକ ବ୍ୟବସ୍ଥାରେ ଭାରତବର୍ଷର ଉନ୍ନତି । ଏଭଳି ଏକ ଆଦର୍ଶବାଦୀ ଚିନ୍ତାଧାରା ଉପରେ ଗଣତନ୍ତ୍ର ପ୍ରତିଷ୍ଠାର କଳ୍ପନା କରାଯାଇଥିଲା । କିନ୍ତୁ ଶାସନ ବ୍ୟବସ୍ଥା ହେଲା ଅସ୍ଥିର । ସୃଷ୍ଟି ହେଲା ନାନା ପ୍ରକାର ବିକୃତି । ଭ୍ରଷ୍ଟ ହୋଇଗଲା ସ୍ୱଭାବ ଓ ଚରିତ୍ର । ଏହାର ପ୍ରକୋପରେ ଗଣତନ୍ତ୍ର ହେଲା ବିପନ୍ନ । ଯେଉଁମାନଙ୍କ ପାଇଁ ଆଜି ଦେଶର ଏ ପ୍ରକାର ଅବସ୍ଥା ସେମାନଙ୍କର ସ୍ୱରୂପ ଉଦ୍‌ଘାଟନ କରିଛନ୍ତି କବି ଅନନ୍ତ ପଟ୍ଟନାୟକ ତାଙ୍କ କବିତା 'ଛବି'ରେ –

"ଆସେମ୍ବ୍ଲି ଭବନେ ବିକି ବକ୍ତୃତା ଝୁଡ଼ିଏ
ହେଇ ଫେରିଲେ କିଏ ? ଆହା ..... ମହର୍ଷିଏ ?
ଗୋଦାମ ଗୋହିରେ ଝଡ଼େ ସୁନାର ବୁଟକି ।
ସଚେତ ବିଜ୍ଞାନୀ ଗଢ଼େ ମୁଦ୍ରାର ମୋହର !
ମୁଁ କିରେ ଦଳୁନି ବସି ଦେଶର କପାଳ ।" (୨)

ଏହି ପ୍ରକାର ଚିନ୍ତାଚେତନାର ଏକ ପରିପୂର୍ଣ୍ଣ ରୂପ ଆମେ କବି ମନମୋହନ ମିଶ୍ରଙ୍କ କବିତାରେ ମଧ୍ୟ ଦେଖିବାକୁ ପାଇବା । ସ୍ୱାଧୀନତା ପରବର୍ତ୍ତୀ କାଳର ଅବସ୍ଥାକୁ ସଜାଡ଼ିବା ପାଇଁ କବି ମାର୍କସ୍‌ବାଦକୁ ମାଧ୍ୟମ ଭାବରେ ଗ୍ରହଣ କରିଛନ୍ତି । କବିଙ୍କ ଭାଷାରେ –

"ଡାକେ ଝନ୍‌ଜା ଝଡ଼୍.ରାତି ପ୍ରଳୟର ତୋଫାନ୍
ବନ୍ଧ ହାତ ମୁଠା ଟେକି ଭୀମ ରୋଷେ ତୁ ଭାଣ,
ଜନତାର ଭୟରେ
ମୁକ୍ତକର ଶକ୍ତକର ପ୍ରଗତିର ଧାରରେ ।"(୩)

କବିଙ୍କର ମାର୍କସ୍‌ବାଦୀ ଚିନ୍ତାଧାରା, ସ୍ଥାନ କାଳ ପାତ୍ର ନିର୍ବିଶେଷରେ ସର୍ବହରା ଗୋଷ୍ଠୀକୁ ଏକତ୍ର ହୋଇ ସଂଗ୍ରାମ କରିବା ଉଦ୍ଦେଶ୍ୟରେ ଉଦ୍ଦିଷ୍ଟ । ଏହି ଚିନ୍ତାଚେତନା ସଂପର୍କରେ ପ୍ରାବଂଧିକ ଡଃ ବିଜୟ ଶତପଥୀ ମତପ୍ରଦାନ କରନ୍ତି ଯେ,

"ବିନା ରକ୍ତାକ୍ତ ସଂଘର୍ଷରେ ଶୋଷଣର ଅବସାନ ଘଟେ ନାହିଁ କିମ୍ବା ମୁକ୍ତିର ଦ୍ୱାର ଉନ୍ମୋଚିତ ହୁଏ ନାହିଁ । ସେଥିପାଇଁ ତାଙ୍କର ସଂଗୀତ ଗୁଡ଼ିକରେ ଶ୍ରେଣୀହୀନ ସମାଜ ପ୍ରତିଷ୍ଠା ପାଇଁ ରକ୍ତାକ୍ତ ବିପ୍ଳବର ଡାକରା ଦିଆଯାଇଛି । ସ୍ୱାଧୀନତାପ୍ରାପ୍ତି ପରେ ବି ଦେଶବାସୀଙ୍କ ପାଇଁ ସଂପୂର୍ଣ୍ଣ ବିଜୟ ଆସି ନାହିଁ । ଏହା ଆସିବ ସେତେବେଳେ, ଯେବେ ଜାତି, ଧର୍ମ, ସଂପ୍ରଦାୟ ନିର୍ବିଶେଷରେ ସମସ୍ତେ ଏକଜୁଟ୍ ହୋଇ ଶୋଷକ ଗୋଷ୍ଠୀ ବିରୁଦ୍ଧରେ ସଂଗ୍ରାମ କରିବେ ।"(୪)

କ୍ରୂର, ଅତ୍ୟାଚାରୀ ଶାସକମାନଙ୍କ କବଳରୁ ସିନା ଦେଶ ମୁକ୍ତ ହୋଇଗଲା, କିନ୍ତୁ ଏତେ ବର୍ଷ ପରେ ମଧ୍ୟ ସେହି ଲୁଣ୍ଠନ, ସେହି ଅପହରଣ, ମର୍ଯ୍ୟାଦା-ହରଣରୂପୀ ଦୁଷ୍କର୍ମ ଲାଗିରହିଲା । ଦେଶର ଖଟିଖିଆ, ଦିନ ମଜୁରିଆଙ୍କ ପାଇଁ ସ୍ୱାଧୀନତା ଆଜି ମୂଲ୍ୟହୀନ ପାଲଟିଗଲା । ତେଣୁ ଆଜି ରାଜନୀତିଜ୍ଞମାନେ ପ୍ରଗତିର ଯେତେ ଡିଣ୍ଡିମ ପିଟିଲେ ମଧ୍ୟ ସେସବୁ କେବଳ ବାହାସ୍ଫୋଟ ମାତ୍ର । ସେମାନଙ୍କର ନଗ୍ନ ସ୍ୱରୂପ ସାଙ୍ଗକୁ ଗଣତନ୍ତ୍ରର ବିଭତ୍ସ ରୂପ କବି ରଘୁନାଥ ଦାସଙ୍କର ଅଗଷ୍ଟ ପନ୍ଦର ୧୯୪୭, ୧୯୪୮, ୧୯୪୯ କବିତାରେ ଯେପରି ସ୍ଥାନ ପାଇଛି ତାହା ବାସ୍ତବିକ୍ ଓଡ଼ିଆ କବିତାରେ ଅନନ୍ୟ । 'କବି ଅଗଷ୍ଟ ପନ୍ଦର ୧୯୪୭' କବିତାରେ ସ୍ୱାଧୀନତା ପାଇବା ପାଇଁ ସଂଗ୍ରାମୀ ମାନଙ୍କର ପ୍ରଚେଷ୍ଟା ସାଙ୍ଗକୁ ସେଦିନର ସ୍ମୃତିକୁ ଜୀବନ୍ତ କରିଛନ୍ତି ।

"ରହିଗଲା –
ତିନିଶହ ବର୍ଷ ବ୍ୟାପୀ
ମଣିଷର ଲହୁ ଆଉ ଲୁହ
ସତ୍ୟାଗ୍ରହୀ ମୁକ୍ତିକାମୀ ଜନତାର
ଆଗ୍ନେୟ ବିଦ୍ରୋହ.....
ରହିଗଲା –
ବିଲାତର ପ୍ରାଣହୀନ
ପୁଂଜିପତି ଲୁବ୍ଧକ କୌଶଳ ।"(୫)

ସ୍ୱାଧୀନତା ପ୍ରାପ୍ତିର ଠିକ୍ ବର୍ଷେ ପରେ ସମସ୍ତ ସ୍ୱପ୍ନ ଓ ଆଶା ଧୂଳିସାତ୍ ହୋଇଯାଇଛି । ନିର୍ବାଚନ ମାଧ୍ୟମରେ ସ୍ୱ-ଶାସନ ପ୍ରତିଷ୍ଠା କରିବାର ଆଶା ଅଯଥାର୍ଥ ପାଲଟିଛି । ପ୍ରଗତିର କଥାକହି ରାଜନୈତିକ ନେତୃବୃନ୍ଦ ଅପହୃତ କରୁଛନ୍ତି ଜନସାଧାରଣଙ୍କର ବିଶ୍ୱାସକୁ । ଯେଉଁ ଦିବସଟିକୁ କବି ଖୁବ୍ ଖୁସି ଆନନ୍ଦର ସହ ଅପେକ୍ଷା କରିଥିଲେ ଆଜି ସେହି ଦିବସ ଆସୁଛି ଘୋର ଦୁଃଖ ଓ ଅନୁଶୋଚନା ନେଇ । ବ୍ୟଥିତ କବିପ୍ରାଣ ମନେ ପକାଉଛି ଅତୀତର ସେହି ମଧୁର ଅନୁଭୂତିକୁ ।

"ମନେ ପଡ଼େ ସବୁଆଜି, ଆଉ ତୀବ୍ର ପ୍ରତିହିଂସା ଜାଗେ
ପ୍ରାଣ ମୋର ଦଗ୍‌ଧ ହୁଏ କ୍ଷୋଭରେ
ତିକ୍ତତମ ରାଗେ
ଇଚ୍ଛାହୁଏ - ଉଲ୍‌କା ସମ ଜଳିବି ମୁଁ, ଜାଳିଦେବି ଯେତେ ଅମଂଗଳ
ନିଶ୍ଚିହ୍ନ କରିବି କ୍ଳୀବ ମାରାତ୍ମକ ପଂଗପାଳ ଦଳ ।"(୬)

ଏ ପ୍ରକାର ଦୁଃଖ ଓ ଅନୁଶୋଚନାରୁ ଜନ୍ମ ଲଭିଛି ବିଦ୍ରୋହୀ ଭାବନା । ବିଦେଶୀ ଶାସନର ଲୁଣ୍ଠନ ଓ ଅପକର୍ମ ପାଇଁ ଯେଉଁ ଘୃଣାଥିଲା, ସ୍ୱ-ତନ୍ତ୍ର ଶାସନରେ ମଧ୍ୟ ତାର ପୁନରାବୃତ୍ତି ଘଟିଛି । ଜନଶକ୍ତିକୁ ଜାଗ୍ରତ କରିବା ପାଇଁ କବି କ୍ଷୋଭ ଜର୍ଜରିତ କଣ୍ଠରେ ଗାନ କରୁଛନ୍ତି –

"ଅଗଷ୍ଟ ପନ୍ଦର .....
କ୍ଷମା ତାର ନାହିଁ ..... ନାହିଁ ମିଥ୍ୟାବାଦୀ ବିଶ୍ୱାସ ଘାତକ
ମାରୀଚ ସେ, ମରୀଚିକା, ଛଦ୍ମବେଶୀ ଭଣ୍ଡ ପ୍ରତାରକ
ଆଜି ବୁଝେ ଅତୀତରେ ମୋର ଭୁଲ୍, ଭ୍ରମ ଆପଣାର
ଆପଣା ମୁକ୍ତିକୁ ମୁଁ ଯେ ମଣିଥିଲି ଦାନ ଉପହାର ।" (୭)

କବିଙ୍କ ରଚିତ ଉପରୋକ୍ତ କବିତାରୁ ସ୍ପଷ୍ଟ ପ୍ରତୀୟମାନ ହୁଏ ଯେ କବିଙ୍କୁ ସ୍ୱାଧୀନତା ପରବର୍ତ୍ତୀ କାଳୀନ ସ୍ୱପ୍ନଭଂଗ ଅବସ୍ଥା ଗଭୀର ଆଘାତ ଦେଇଛି । ସେ ଉପଲବଧି କରିଛନ୍ତି ସ୍ୱାଧୀନତାର ସେହି ସ୍ୱର୍ଣ୍ଣପ୍ରସୂଫଳ ଆଜି ଦେଶବାସୀଙ୍କ ପାଇଁ ଅପହଞ୍ଚ । କଷ୍ଟାର୍ଜିତ ସ୍ୱାଧୀନତାର ସୌନ୍ଦର୍ଯ୍ୟ ଓ ଗୌରବକୁ ପୁଣିଥରେ ଫେରାଇ ଆଣିବା ପାଇଁ କବି ରଘୁନାଥ ସଂକଳ୍ପବଦ୍ଧ । କବି ନିଜେ ଏହାକୁ ସ୍ୱୀକାର କରିବାକୁ ଯାଇ କହନ୍ତି –

"ମୋର ଆଶଙ୍କା ସତ୍ୟ ହେଲା, ଗଣ ସଂଗ୍ରାମ ଶିକାର ହେଲା, ନେତୃତ୍ୱର ଧୋକାବାଜ୍‌ରେ ବାରମ୍ବାର ମୁକ୍ତି ସ୍ୱପ୍ନ ପରାହତ ହେଲା । ଜନସାଧାରଣ 'ନେତୃତ୍ୱ' ଉପରୁ ଆସ୍ଥା ହରାଇ ବସିଲେ । ପ୍ରଗତି ପରିବର୍ତ୍ତେ ଦୁର୍ଗତି ସେମାନଙ୍କୁ ଗ୍ରାସ କଲା । ଦୁର୍ନୀତି, ଦୁରାଚାର, ଦୁଃଶାସନ, ଦୁଃଖ ଦୈନ୍ୟ ଭିତରେ ଜନଗଣ ଭାଙ୍ଗି ପଡ଼ିଛନ୍ତି । ଆଶ୍ରା କରିବାର ସଂଗଠିତ ଶକ୍ତି ନାହିଁ । ପ୍ରତିରୋଧ କରିବାକୁ ମନୋବଳ ନାହିଁ । ଏହି ଦୁଃସ୍ଥ ଜନତାକୁ ଉଦ୍ଧାର କରିବାର ସାମର୍ଥ୍ୟ ମୋର ନାହିଁ । କିନ୍ତୁ ସେମାନଙ୍କ ପ୍ରତି ଆନ୍ତରିକ ସହାନୁଭୂତି ତ' ପ୍ରକାଶ କରାଯାଇପାରେ । ହତାଶ ପ୍ରାଣରେ ଆଶାର ସଂଚାର କରିବା ପୁଣି ତ' ଏକ ବୈପ୍ଳବିକ ପଦକ୍ଷେପ ।" (୮)

ଏଥିରୁ ପ୍ରତୀୟମାନ ହୁଏ ଯେ, କବିଙ୍କର କବିତା ସ୍ୱାଧୀନତାର ସ୍ୱପ୍ନଭଂଗ ଅବସ୍ଥାକୁ ସଜାଡ଼ିବା ଉଦ୍ଦେଶ୍ୟରେ ଅଭିପ୍ରେତ । ଏ ପ୍ରକାର ଚିନ୍ତାଧାରାର ପ୍ରଭାବ ୧୯୫୦ ପରବର୍ତ୍ତୀ କବିତାକୁ ମଧ୍ୟ ପ୍ରଭାବିତ କରିଥିଲା । କବି ବ୍ରଜନାଥ ରଥ ଓ କବି ରବି ସିଂଙ୍କ କବିତାରେ ମଧ୍ୟ ଅନୁରୂପ ସ୍ୱର ଶୁଣିବାକୁ ମିଳିଥାଏ । ଯେଉଁଠାରେ ସମାଜ ଜୀବନ କଳୁଷିତ, ଉଚିତ୍ ପ୍ରତିଭାର ସମ୍ମାନ ନଥାଏ, ଦୁଃଖ, ଦୈନ୍ୟର ସାଗର ମଧ୍ୟରେ ସଭିଏଁ ଉବୁଟୁବୁ ହୁଅନ୍ତି, ଲକ୍ଷଲକ୍ଷ ଜୀବନ ହାହାକାର ମଧ୍ୟରେ କାଳାତିପାତ କରନ୍ତି ସେଭଳି ଦେଶର କଥା କହନ୍ତି କବି ବ୍ରଜନାଥ ତାଂକ କବିତା ସ୍ୱାଗତିକାରେ:

"ଯେ ଦେଶେ ନିତ୍ୟ ପ୍ରତିଭାର ଫୁଲ ଝରୁଛି
ଦୈନ୍ୟ ସାଗରେ କବିର ଲେଖନୀ ଥରୁଛି
କେତେ ବରବଧୂ, ପ୍ରିୟାରେ
ତନୁର ତନିମା ଜଳେ ନିରାଶାର ନିଆଁରେ
ଯେ ଦେଶେ ଲକ୍ଷ ଜୀବନ ଲୋଟୁଛି ନିରତ
ହାହାକାରେ ନିତି ବହୁଛି ବ୍ୟଥାର ସରିତ ।' (୯)

ଯେଉଁ ଶାସନ ବ୍ୟବସ୍ଥା ଅନ୍ୟାୟର ପ୍ରଶସ୍ତିଗାନ କରେ, ପ୍ରତିଭା ଓ ଯୋଗ୍ୟତାକୁ ସମ୍ମାନ ଦେଇ ଜାଣେ ନାହିଁ, ଯେଉଁମାନେ ଅପାରଗ, ଶାସନ ବ୍ୟବସ୍ଥା ସଂପର୍କରେ ସଂପୂର୍ଣ୍ଣ ଅଜ୍ଞ, ସେଇମାନେ ଆଜିର ଗଣତନ୍ତ୍ରରେ ଆଗଧାଡ଼ିର ନେତା । ସେଇମାନଙ୍କ ହାତରେ ଏ ଦେଶର ଶାସନ ବ୍ୟବସ୍ଥା ନ୍ୟସ୍ତ । ଏ ପ୍ରକାର ଶାସନ ବ୍ୟବସ୍ଥାରେ ପରିବର୍ତ୍ତନ ଆଣିବା ପାଇଁ କବି ରବି ସିଂ ମଧ୍ୟ ପ୍ରତିଜ୍ଞାବଦ୍ଧ 'ପଳାୟନ' କବିତାରେ:-

"ଶିକ୍ଷାନଥାଇ ଶିକ୍ଷକ ଦଳ ଗର୍ଜେ ଅନର୍ଗଳ
ଅକବିର ଦଳ ମଣ୍ଡନ କରେ କବିତାର ଦରବାର
ଜନ - ଶତ୍ରୁର ବନ୍ଦନା ଗାଏ ବସିଯାଏ ଦିବାରାତ୍ରି
ଫରଫର ଉଡ଼େ ତାହାରି ଦୁଆରେ ସାରସ୍ୱତର ଜୈତ୍ରୀ
ଦେଶ ସାରା ଆଜି ଭରିତ ଗଲେଣି ଭଣ୍ଡ
ନିରାପତ୍ତା ତା' ରକ୍ଷା କରୁଛି ଆଜିର ଶାସନ ଦଣ୍ଡ ।"(୧୦)

ଆଜିର ଭାରତବର୍ଷ ସ୍ୱାଧୀନ । କିନ୍ତୁ ଏଠାରେ ମଣିଷର ଚିନ୍ତା ଚେତନା ଓ ମାନସିକତା ପରାଧୀନ । ବେକାରୀ ସମସ୍ୟା, ଅର୍ଥନୈତିକ ଦୁର୍ଗତି, ରାଜନୈତିକ ନେତାମାନଙ୍କର ମିଥ୍ୟାଚାର ସାମସମୟିକ ସମାଜ ଜୀବନକୁ ନିମ୍ନଗାମୀ କରାଉଛି । ଦେଶ ସ୍ୱାଧୀନ ହେବାର ଅର୍ଦ୍ଧଶତାବ୍ଦୀ ଅତିକ୍ରାନ୍ତ । ତଥାପି ମଧ୍ୟ ସମାଜ ବ୍ୟବସ୍ଥାରେ ସୁଧାର ଅଣାଯାଇପାରୁନି । ଗାନ୍ଧିଜୀଙ୍କର ସ୍ୱପ୍ନ ଆଜି ଧୂଳିସାତ୍ । ଅବିଶ୍ୱାସ, ହିଂସା,

ଦ୍ୱେଷରେ ବର୍ତ୍ତମାନର ସମାଜ ଜୀବନ ଭାରାକ୍ରାନ୍ତ । ଏହିପରି ଏକ ରୁଗ୍‌ଣ ସମାଜର ଚିତ୍ର ସତୁରୀ ଦଶକର କବି ମାନଙ୍କର ଲେଖନୀରୁ ମଧ୍ୟ ବାଦ୍ ଯାଇ ନାହିଁ । କବି ପ୍ରସନ୍ନ ପାଟଶାଣୀ ଭାରତମାତାଙ୍କୁ ଅବକ୍ଷୟଗାମୀ ସଭ୍ୟତାର ବୈଦେହୀ ସୀତା ଭାବରେ ଅଭିହିତ କରିଥିଲା ବେଳେ କବି ସଦାଶିବ ଦାଶ ଭାରତବର୍ଷରେ ଶିବାଜୀ ସନ୍ତ୍ରାସବାଦୀ, ନାଥୁରାମ୍ ମାନେ ନେତା ସାଜନ୍ତି ବୋଲି ଅଭିହିତ କରନ୍ତି । କବିଙ୍କର ବର୍ଣ୍ଣନାଟି କିପରି ତାହା ନିମ୍ନୋକ୍ତ ପଂକ୍ତିରୁ ସୂଚିତ ହୁଏ ।

* "ଲୋ ଭାରତ ମାତା
ପଚମାନ ସଭ୍ୟତାର ଲୋ ବୈଦେହୀ ସୀତା
ତୋ ସତୀତ୍ୱ ଲୁଣ୍ଠିତ ଆଜି ବିଶ୍ୱ ଦରବାରେ
ତୋ ଯୌବନ ଧର୍ଷିତ ଆଜି କ୍ଷମତା ଯୁଦ୍ଧରେ ।" (୧୧-କ)

* "ପତାକାଟିର ରଂଗ ଏମିତି ବଦଳିଗଲା କିପରି ?
କିଏ ଏମିତି ଧର୍ମାନ୍ଧତାର ରଂଗରେ ରଂଗେଇ ଦେଲା ତାକୁ ।" (୧୧-ଖ)

ଏ ଦେଶର ଶାସନ ବ୍ୟବସ୍ଥା ବିଚିତ୍ର । ଏଠାରେ ଚୋର ମାନଙ୍କ ମଥାରେ ଟେକି ଦିଆଯାଏ ପାଟଛତା । ଯେଉଁ ପତାକା ଦିନେ ସାମ୍ୟ, ମୈତ୍ରୀ ଓ ଏକତାର ଜୟଗାନ କରୁଥିଲା, ତାହା ଆଜି ହିଂସା, ଦ୍ୱେଷ, ଧର୍ମାନ୍ଧତାରେ ପରିଣତ ହୋଇଛି । ପତାକାର ରଂଗ ବଦଳି ସାରିଛି ବର୍ତ୍ତମାନର ପରିସ୍ଥିତିରେ । ଠିକ୍ ସେହିପରି ସ୍ୱାଧୀନତା ପରବର୍ତ୍ତୀ ସ୍ୱପ୍ନଭଂଗ ଅବସ୍ଥା କବି ହୋସେନ୍‌ରବି ଗାନ୍ଧୀଙ୍କ ଦୃଷ୍ଟିରୁ ମଧ୍ୟ ବାଦ୍‌ଯାଇନି । ରାଜନୈତିକ ନେତୃବୃନ୍ଦଙ୍କର ଗତିବିଧିକୁ କବି 'କୁଆ' ପ୍ରତୀକ ମାଧ୍ୟମରେ ଚମତ୍କାର ଶୈଳୀରେ ରୂପାୟିତ କରିଛନ୍ତି । କବିଙ୍କ ଭାଷାରେ –

"ଏମନ୍ତ କୁଆ ଯଦି ନ ଦେଖିଛ,
ନିର୍ବାଚନ ମଂଚରେ ମଧୁର ବଚନ ଓ
ସ୍ୱପନିଳ ଆସନ୍ତା କାଲିର ପ୍ରତିଶ୍ରୁତି
ଦେଇ ଚାଲିଥିବା, ଡାକବାଜି ଯନ୍ତ୍ରରେ କଂପମାନ କରି
ଭାଷଣ ଦେଉଥିବା,
ବେଳେବେଳେ ଗୀତ ଗାଉଥିବା
ମଣିଷକୁ ଦେଖ, ସତରେ ଚମତ୍କାର
ଅତ୍ୟନ୍ତ ଚମତ୍କାର ! ଚମତ୍କାରୀ କୁଆ ।"(୧୨)

ଗଣତନ୍ତ୍ର ଶାସନ ବ୍ୟବସ୍ଥାରେ ଶାସନ ଡୋରି ରହିଲା ଜନତାଙ୍କ ହସ୍ତରେ । ଜନସାଧାରଣ ଭୋଟ୍ ଦେଇ ଶାସକ ନିର୍ବାଚନ କଲେ । କିନ୍ତୁ ଯେଉଁମାନେ ହେଲେ

ନିର୍ବାଚିତ ସେମାନେ ପ୍ରଥମେ ଜନସାଧାରଣଙ୍କୁ କଲେ ପ୍ରତାରିତ । ଏ ସଂପର୍କରେ ସମାଲୋଚକ ବନମାଳୀ ପାଣିଗ୍ରାହୀଙ୍କ ମତଟି ଏଠାରେ ପ୍ରଣିଧାନ ଯୋଗ୍ୟ ।

"ପଲ୍ଲୀଠାରୁ ଦିଲ୍ଲୀଯାଏ ସଭିଏଁ ଜାଣିଲେ ଯେ, ଦେଶର ଅଧାରୁ ଅଧିକ ସାଧାରଣ ନାଗରିକ ଅଶିକ୍ଷିତ ହେବା ଫଳରେ ସେମାନେ ନା ଜାଣିଲେ 'ଭୋଟ୍'ର ମୂଲ୍ୟ, ନା ବୁଝିଲେ 'ଗଣତନ୍ତ୍ର'ର ମର୍ମ । ଅଧିକାଂଶ ଭୋଟ୍‌ର ରାଜନୀତିର ଗୁପ୍ତ ମନ୍ତ୍ରଣା ଓ ପ୍ରଶାସନର ଶୋଷଣ କୌଶଳ ନ ବୁଝି ପାରିବା ଫଳରେ, ନିର୍ବାଚନୀ କୁତ୍ସିତ ବ୍ୟାପାରର ବ୍ୟାପକତା ବଢ଼ିବାରେ ଲାଗିଲା, ଲାଗିଛି ମଧ୍ୟ ।" (୧୩)

ସ୍ୱାଧୀନତା ପରବର୍ତ୍ତୀ କାଳୀନ ଗାଣତନ୍ତ୍ରିକ ଶାସନର ଅବ୍ୟବସ୍ଥା ମଧ୍ୟରୁ ଆଜିର ସମାଜ କିପରି ମୁକ୍ତି ପାଇ ପାରିବ ସେଥିପାଇଁ ଲେଖକର ଭୂମିକା ବେଶ୍ ଗୁରୁତ୍ୱପୂର୍ଣ୍ଣ । ସ୍ରଷ୍ଟା ହିଁ ତା'ର ସୃଷ୍ଟି ମାଧ୍ୟମରେ ଜନସଚେତନତା ସୃଷ୍ଟି କରିଥାଏ । ଭାରତବର୍ଷ ଯେଉଁ ଘଡ଼ିସନ୍ଧି ମୁହୂର୍ତ୍ତ ଦେଇ ଗତି କରୁଛି ସେଠାରେ ବଞ୍ଚିବା ଦୁର୍ବିସହ ହୋଇ ପଡ଼ିଲାଣି । ପ୍ରତିମୁହୂର୍ତ୍ତରେ ଘଟୁଛି ଲୋମହର୍ଷକ ମର୍ମନ୍ତୁଦ ଘଟଣା । ଯାହାକି ଲେଖକର ଚିତ୍ତକୁ ଆନ୍ଦୋଳିତ କରୁଛି । ତେଣୁ କବି ବିଜୟ ଉପାଧ୍ୟାୟ କହୁଛନ୍ତି –

"ଭାରତବର୍ଷ ଏମିତି ଏକ ଦେଶ
ଏଠି ପ୍ରତି ଘଣ୍ଟାରେ
ଜଣେ ଅଧେ ଧର୍ଷିତା ନ ହେଲେ
କି ଲୋମ ହର୍ଷକ ମର୍ମନ୍ତୁଦ
ମୃତ୍ୟୁ ନ ବରିଲେ
ନିତିଦିନ ସଶସ୍ତ୍ର ପୋଲିସ୍
ଗୋଟେ ଅଧେ ଏନ୍‌କାଉଣ୍ଟର୍
x x x
ସକାଳଟା ଜମାରୁ ଜମେନି ।" (୧୪)

ଉପରୋକ୍ତ ଆଲୋଚନାରୁ ସ୍ପଷ୍ଟ ହୁଏ, ୧୯୫୦ ମସିହାପରେ ପ୍ରଗତିବାଦୀ ଚିନ୍ତାଧାରା କେବଳ ଯେ ପୁଂଜିବାଦୀ ଶୋଷଣ ବ୍ୟବସ୍ଥାର ବିରୋଧାଚରଣ କରୁନାହିଁ, ବରଂ ସମାଜ ଜୀବନର ଯେ କୌଣସି ସ୍ତରରେ ପରିଦୃଷ୍ଟ ହେଉଥିବା ଅବ୍ୟବସ୍ଥା ବିରୋଧରେ ତୀବ୍ର ପ୍ରତିବାଦ କରିବା ସହିତ ଜନସମାଜକୁ ସଚେତନ କରାଇବାକୁ ପ୍ରେରଣା ପ୍ରଦାନ କରୁଅଛି ।

## ଓଡ଼ିଆ କବିତାରେ ବ୍ୟକ୍ତିମୁଖୀ ଚେତନାର ପ୍ରତିକ୍ରିୟା:-

ନବଯୁଗ ସାହିତ୍ୟ ସଂସଦର ପ୍ରତିଷ୍ଠା ଓ ଆଧୁନିକ ପତ୍ରିକାର ପ୍ରକାଶ ପରେପରେ ଯେଉଁ ନବ୍ୟ ଚେତନାର ଧାରା ଓଡ଼ିଆ ସାହିତ୍ୟରେ ପ୍ରବାହିତ ହେଲା, ୧୯୫୦ ପରେ ଏଥିରେ ଶିଥିଳତା ପରିଲକ୍ଷିତ ହେଲା । ଟି.ଏସ୍.ଏଲିୟଟ୍‌ଙ୍କ ପ୍ରଭାବ ଦ୍ୱାରା ଏହା ସମ୍ଭବ ହୋଇପାରିଥିଲା । ବହୁ କବି ଏହି ମାର୍ଗରେ କବିତା ରଚନା କରିବା ଆରମ୍ଭ କଲେ । ଭଗବତୀ ପାଣିଗ୍ରାହୀ, ସଚ୍ଚି ରାଉତରାୟ, ଅନନ୍ତ ପଟ୍ଟନାୟକ ଯେଉଁ ଚିନ୍ତାଦର୍ଶର ଆବାହନ କରି ତାକୁ ଏକ ପରିପୂର୍ଣ୍ଣ ରୂପ ପ୍ରଦାନ କରିଥିଲେ, ତାହା ଧୀରେଧୀରେ କ୍ଷୀଣ ହୋଇଗଲା । ପାଶ୍ଚାତ୍ୟ ଆଧୁନିକ ତତ୍ତ୍ୱ ପ୍ରାଚ୍ୟ ଜୀବନ ଧାରାକୁ ପ୍ରଭାବିତ କଲା । ଫଳରେ ଆଧୁନିକ ଯୁଗ ବା, ଆଧୁନିକ ସାହିତ୍ୟର ଉନ୍ମେଷ ଘଟିଲା ।

ଊନବିଂଶ ଶତାବ୍ଦୀର ମଧ୍ୟଭାଗରେ ବିଜ୍ଞାନର ଅଗ୍ରଗତି ମଣିଷର ଚିନ୍ତାରାଜ୍ୟରେ ଗଭୀର ଆଲୋଡ଼ନ ସୃଷ୍ଟି କଲା । ମଣିଷ ତା'ର ପାରଂପରିକ ମୂଲ୍ୟବୋଧକୁ ଭୁଲିଗଲା । ନୈତିକତାର ଅବକ୍ଷୟ ଘଟିଲା । ଯେଉଁ ମଣିଷ ଦିନେ ଗୋଷ୍ଠୀକୈନ୍ଦ୍ରିକ ବା ସମୂହ ଜୀବନ ବଞ୍ଚିବାକୁ ନିଜର ଗୌରବବୋଲି ମନେକରୁଥିଲା, ସେହି ମନୁଷ୍ୟ ଆଜି ଏକାକୀ ବା, ବ୍ୟକ୍ତିକୈନ୍ଦ୍ରିକ ଜୀବନ ବଞ୍ଚିବାକୁ ପସନ୍ଦ କଲା । ଏହି ଜୀବନଧାରାକୁ ଆଧୁନିକ ଜୀବନ ଶୈଳୀ ବୋଲି କୁହାଗଲା । ତେଣୁ ଯେଉଁ ସାହିତ୍ୟରେ ଏହି ବ୍ୟକ୍ତିମୁଖୀ ଚେତନା ପ୍ରକାଶ ପାଇଲା ତାହାକୁ ଆଧୁନିକ ସାହିତ୍ୟ କୁହାଗଲା । ଏଥି ମଧ୍ୟରୁ ଜନ୍ମଲାଭ କଲା ବିଚ୍ଛିନ୍ନତାବୋଧ, ନୈରାଶ୍ୟବୋଧ, ମୃତ୍ୟୁଚେତନା ଇତ୍ୟାଦି । କବିତା ମଧ୍ୟ ଏଥିରୁ ବାଦ୍ ପଡ଼ିଲା ନାହିଁ ! ଓଡ଼ିଆ କବିତାରେ ଏସବୁ ମୌଳ ଭାବନା ଅଧିକରୁ ଅଧିକ ଭାବରେ ପ୍ରୟୋଗ କରାଗଲା । ବିଜ୍ଞାନର ଅଗ୍ରଗତି, ଶିଳ୍ପ ବିପ୍ଳବ, ଉଦ୍ୟୋଗ କ୍ଷେତ୍ରରେ ବିକାଶ ଏସବୁ ମଣିଷକୁ ସହରୀ ସଭ୍ୟତା ଓ ସଂସ୍କୃତି ପ୍ରତି ଆକର୍ଷିତ କରାଇଲା । ପରିଣାମ ସ୍ୱରୂପ ଗ୍ରାମୀଣ ସଭ୍ୟତା, ସଂସ୍କୃତିର ବିଲୋପ ଘଟିଲା । ଜନସାଧାରଣଙ୍କ ମଧ୍ୟରେ ସଂପର୍କର ସେତୁବଂଧ ଭାଂଗିଗଲା । ଊନବିଂଶ ଶତାବ୍ଦୀରେ ଯେଉଁ ପୃଥିବୀ ଥିଲା ସ୍ନେହ, ପ୍ରୀତି, ମମତାରେ ଭରପୂର୍, ଶତାବ୍ଦୀର ଶେଷ ଭାଗରେ ସେସବୁ କେଉଁଆଡ଼େ ଲୁଚିଗଲା । ପୃଥିବୀ ଏକ ନୂତନ ରୂପଧାରଣ କଲା ଓ ନୂତନତାର ପୃଷ୍ଠଭୂମି ଉପରେ ଠିଆ ହୋଇ ପୁରାତନ ପୃଥିବୀକୁ ଏକ ସଂଶୟାତ୍ମକ ଦୃଷ୍ଟିରେ ଦେଖିଲା । ପାରିବାରିକ ସଂପର୍କ ଠାରୁ ଆରମ୍ଭ କରି ସାମାଜିକ ସଂପର୍କ, ରାଜନୀତି, ସାହିତ୍ୟ ମୋଟ୍ ଉପରେ କହିଲେ ସମଗ୍ର ପୃଥିବୀର ପାଣିପାଗ ବଦଳିଗଲା ।

ଟି.ଏସ୍.ଏଲିୟଟ୍‌ଙ୍କର The Waste Land, ରିଲ୍‌କେଙ୍କର Duineser Elegien ଓ Sonnets to orpheus, ଲରେନସ୍‌ଙ୍କର Aron's Rod ଉପନ୍ୟାସ, ଭର୍ଜିନିଆ

ଉଲଫଙ୍କର Jacob's Room ଉପନ୍ୟାସ, ଇତ୍ୟାଦି ପ୍ରକାଶ ପାଇ ବିଶ୍ୱ ସାହିତ୍ୟକୁ ପ୍ରଭାବିତ କଲା । ଇଂରାଜୀ ସାହିତ୍ୟରେ ସୃଷ୍ଟି ହୋଇଥିବା ଏ ପ୍ରକାର ଆଧୁନିକତା ଭାରତୀୟ ସାହିତ୍ୟ ଓ ସାମସମୟିକ ଓଡ଼ିଆ ସାହିତ୍ୟକୁ ମଧ୍ୟ ପ୍ରଭାବିତ କଲା । ଭାରତବର୍ଷକୁ ଏହା କିପରି ପ୍ରବେଶ କଲା ତାହା ଆଲୋଚନା କରିବା ଏକାନ୍ତ ଆବଶ୍ୟକ । ଏହି ଚିନ୍ତାଧାରା ଉନବିଂଶ ଶତାବ୍ଦୀରେ ଭାରତବର୍ଷରେ ଔପନିବେଶିକ ଆଧୁନିକତା ନାମରେ ଜନ୍ମ ନେଲା । ଓଡ଼ିଆ ସାହିତ୍ୟରେ ମଧ୍ୟ ଅନୁରୂପ ପ୍ରତିଫଳନ ଦେଖିବାକୁ ମିଳିଲା । ଏହାର ଅର୍ଥ ହେଉଛି ଆମର ଭାରତବର୍ଷରେ ସେତେବେଳେ ଇଂରେଜମାନଂକର ଔପନିବେଶିକ ଶାସନ ବ୍ୟବସ୍ଥା ଚାଲିଥାଏ । ଇଂରାଜୀ ଶିକ୍ଷାର ପ୍ରଚଳନ ଘଟିବା ଫଳରେ ଏକ ନୂତନ ଶିକ୍ଷିତ ଗୋଷ୍ଠୀର ଉନ୍ମେଷ ଘଟିଲା । ଏହି ଯେଉଁ ନବ୍ୟ ଇଂରାଜୀ ଶିକ୍ଷିତ ଯୁବଗୋଷ୍ଠୀର ଆବିର୍ଭାବ ହେଲା, ସେମାନେ ଇଂରାଜୀ ସାହିତ୍ୟ ପ୍ରଭାବରେ ନୂତନ ସାହିତ୍ୟ ରଚନା କଲେ । ଯେଉଁ ସାହିତ୍ୟ ଦିନେ ଜନସାଧାରଣଙ୍କର ହୃଦୟର ନିକଟବର୍ତ୍ତୀ ହୋଇପାରିଥିଲା, ତାହା କ୍ରମଶଃ ସେମାନଂକଠାରୁ ଦୂରେଇଗଲା । ଏକ ସୀମିତ ବୁଦ୍ଧିଜୀବୀ ପାଠକଗୋଷ୍ଠୀ ହିଁ ତାକୁ କେବଳ ହୃଦୟଙ୍ଗମ କରିପାରିଲେ । ସାହିତ୍ୟିକର ଚିନ୍ତାଧାରା କେଉଁ କେଉଁ ରାଜ୍ୟରେ ବିଚରଣ କଲା ଯେ ତାକୁ ବୁଝିବା ପାଇଁ ଏକ ସ୍ୱତନ୍ତ୍ର ଚାବିକାଠିର ପ୍ରୟୋଜନ ହେଲା । ଓଡ଼ିଆ କବିତାକୁ ଏହା ବହୁଳ ମାତ୍ରାରେ ପ୍ରଭାବିତ କରିଥିଲା ବୋଲି ପୂର୍ବରୁ ଉଲ୍ଲେଖ କରିଅଛୁଁ ।

୧୯୩୫-୩୬ରୁ ଆରମ୍ଭ ହୋଇଥିବା ପ୍ରଗତିବାଦୀ ଚେତନାର ସ୍ୱର ଏହାର ପ୍ରଭାବରେ ଧୀରେଧୀରେ କ୍ଷୀଣ ହୋଇଗଲା । ପ୍ରଗତିବାଦୀ ଧାରାର ଯେଉଁବିଶିଷ୍ଟ କବି ସଚ୍ଚିରାଉତରାୟ ଦିନେ ବୁର୍ଜୁଆ ବିଳାସ ପ୍ରତି କଠୋର ଶାଣିତ ବକ୍ତବ୍ୟ ଉପସ୍ଥାପନ କରୁଥିଲେ, ଶ୍ରମିକ ଓ କୃଷକର ଲହୁ ଲୁହରେ ଯାହାଙ୍କର ହୃଦୟ ମଥିତ ହୋଇଉଠୁଥିଲା, ଯିଏ କବିତା ମାଧ୍ୟମରେ ଝଡ଼ ଓ ବିଦ୍ରୋହର କଂପନକୁ ଅନୁଭବ କରାଇପାରୁଥିଲେ, ୧୯୫୦ ମସିହା ପରେ ସେ ମଧ୍ୟ ଏହି ଆଧୁନିକ ପଥର ପଥିକ ପାଲଟିଗଲେ । ବିଦ୍ରୋହ ପରିବର୍ତ୍ତେ ମଣିଷ ସମାଜର ଅର୍ଥନୈତିକ ସଂକଟ, ନୈରାଶ୍ୟବୋଧ, ବ୍ୟକ୍ତିମୁଖୀ ଚେତନା ତାଂକ କବିତାର ମୁଖ୍ୟସ୍ୱର ପାଲଟିଗଲା । 'ପାଣ୍ଡୁଲିପି' ସଂକଳନର ଅଧିକାଂଶ କବିତା, 'ସ୍ୱଗତ', 'କବିତା ୧୯୬୨', 'କବିତା ୧୯୬୯', 'କବିତା ୧୯୭୪', 'କବିତା ୧୯୮୫' ଇତ୍ୟାଦି ବ୍ୟକ୍ତିମୁଖୀ ଚେତନାର ପ୍ରଭାବର ଏକଏକ ଫଳଶ୍ରୁତି । କବିଙ୍କର ଏ ପ୍ରକାର ଚିତ୍ତ ପରିବର୍ତ୍ତନ ସଂପର୍କରେ କବି ନିଜେ କହନ୍ତି ଯେ-

"ଆଧୁନିକ ମଣିଷ ନାନା ଭାବରେ ଦ୍ୱିଧା ବିଭକ୍ତ, ଏକ ଖଣ୍ଡିତ ବ୍ୟକ୍ତିତ୍ୱ । ତା'ର ଚେତନା ତଥା ବ୍ୟକ୍ତିତ୍ୱର ବିଭାଜନ ପାଇଁ ଦାୟୀ ପ୍ରଚଳିତ ସାମାଜିକ ବ୍ୟବସ୍ଥା ।

ସମାଜର ସ୍ୱ ବିରୋଧ ଓ ଅନ୍ତର୍ଦ୍ୱନ୍ଦ୍ୱ ହିଁ ବ୍ୟକ୍ତିକୁ ସମାଜଠାରୁ ବିଚ୍ଛିନ୍ନ କରିଦେଇଛି । ତେଣୁ ଆଧୁନିକ ମଣିଷ ସବୁ ଆଡୁ ବିମୁଖ ହୋଇ, ହୋଇଛି ଏକ ଭୟଙ୍କର ନିଃସଂଗତାର ଶିକାର । x x x x । ଆଧୁନିକ ସାହିତ୍ୟରେ ନାୟକ ବୋଲି ଆମେ ଯାହାକୁ ଭେଟୁ, ସେ ଭୂମିରେ ବିଚ୍ଛିନ୍ନ ଓ ନିର୍ବାସିତ ଏକ ଅସଂଲଗ୍ନ ଏକକ- ଯାହାର ପୂର୍ବାପର ସଂଗତି ସ୍ମୃତି ପ୍ରାୟ ଲୋପ ପାଇଯାଇଛି । ଏହି man as Alien ବା ବିଚ୍ଛିନ୍ନ ମଣିଷଟି ହେଉଛି ତୁମେ, ମୁଁ ଓ ସମସ୍ତେ ।"(୧୫)

କବିଙ୍କର ଏହି ସ୍ୱୀକାରୋକ୍ତିରୁ ପ୍ରମାଣିତ ହୁଏ ଯେ, ସ୍ୱାଧୀନତା ପରବର୍ତ୍ତୀ ମଣିଷର ସ୍ଥିତି ହିଁ କବିଙ୍କର ପଥ ପରିବର୍ତ୍ତନ ପାଇଁ ମୁଖ୍ୟତଃ ଦାୟୀ ଅଟେ । ସାମସମୟିକ ସମାଜ ଓ ପରିବେଶର କ୍ଷୟିଷ୍ଣୁ ମୂଲ୍ୟବୋଧ କବିଙ୍କ ହୃଦୟରେ ବେଶ୍ ପ୍ରତିକ୍ରିୟା ସୃଷ୍ଟି କରିଛି । କବିଙ୍କ ଦୃଷ୍ଟିରେ ଯେଉଁ ନାରୀ ଦିନେ ବିଦ୍ରୋହ ଓ ବିପ୍ଳବର ପ୍ରତୀକ ଥିଲା, ଯେଉଁ ନାରୀର ଚକ୍ଷୁରୁ ବିପ୍ଳବର ବହ୍ନି ନିର୍ଗତ ହେଉଥିଲା ସେ ନାରୀର ମୁଖମଣ୍ଡଳକୁ ଆଜି ବ୍ୟର୍ଥତା ଗ୍ରାସ କରିଛି । ଶରୀର ତା'ର ରୋଗରେ ଜୀର୍ଣ୍ଣ ଶୀର୍ଣ୍ଣ ପାଲଟି ଯାଇଛି । କବିଙ୍କର ଏ ପ୍ରକାର ପରିବର୍ତ୍ତନ ଏଲିୟଟ୍‌ଙ୍କ ପ୍ରଭାବରୁ ହିଁ ସମ୍ଭବ ହୋଇପାରିଛି । ତେଣୁ 'ପ୍ରତିମା ନାୟକ' କବିତାର ଉତ୍ସକୁ ଆମେ 'ଦି ୱେଷ୍ଟଲ୍ୟାଣ୍ଡ'ର 'ଟାଇପିଷ୍ଟ ଗାର୍ଲ୍' ମଧ୍ୟରେ ଖୋଜିଲେ ପାଇପାରିବା । କବି 'ପ୍ରତିମା'ର ବର୍ଣ୍ଣନା ଏହିପରି କରନ୍ତି:-

"ମୁଖ ତା'ର ବ୍ରଣଦ୍ରଷ୍ଟ ହାତରେ ତା ଚମଡ଼ାର ବ୍ୟାଗ
ଶୀର୍ଣ୍ଣ ସାଧାଗାଲେ ଫୁଟେ ବ୍ୟର୍ଥତାର ଅକପଟ ଦାଗ
ତନୁ ତା'ର ରୋଗଜୀର୍ଣ୍ଣ, ବ୍ରଣେ ତା'ର ମ୍ଳାନ ମୁହଁ ଯାକ
ଶ୍ଳଥ ରଜୁ ଦେହ ଶିଖା ଢାଙ୍କି ଅଛି ଖାକୀର ପୋଷାକ ।"(୧୬)

'ପ୍ରତିମାନାୟକ' କବିତା ପରି 'ସହରତଳିର ଉଷା', 'ଅଭ୍ୟନ୍ତର', 'ଖରା, 'ନବାଗତା' ଇତ୍ୟାଦି ବହୁ କବିତାରେ ବ୍ୟକ୍ତିମୁଖୀ ଚେତନାର ପ୍ରତିକ୍ରିୟାରୁ ସମ୍ଭୁତ ନିଃସଂଗତା, ବିଷଣ୍ଣତା, ଅର୍ଥହୀନତା ଇତ୍ୟାଦି ରୂପ ଲାଭ କରିଛି । କବି ସଚ୍ଚିଦାନନ୍ଦଙ୍କ ପରି କବି ଗୁରୁପ୍ରସାଦ ମହାନ୍ତି ମଧ୍ୟ ଏହି ଧାରାର ଜଣେ ସଫଳ କାବ୍ୟିକ ପ୍ରତିଭା । ଗୁରୁପ୍ରସାଦଙ୍କର 'କାଳପୁରୁଷ'କୁ ଇଲିୟଟ୍‌ଙ୍କ The Waste Land ର କଟକୀ ସଂସ୍କରଣ କୁହାଯାଏ । କବିଙ୍କ ରଚିତ 'ସମୁଦ୍ର ସ୍ନାନ'ରେ ମଧ୍ୟ ମଣିଷ ଜୀବନର ଅସହାୟତା, ହତାଶ ଜର୍ଜରିତ ଆତ୍ମା, ଶୂନ୍ୟତାର ଅନୁଭବ ହିଁ ମୁଖ୍ୟ ସ୍ଥାନ ନେଇଛି । ଇଲିୟଟ୍‌ଙ୍କ ଅଣନାୟକ ପ୍ରୁଫକ୍ ଯେପରି କହୁଛି:-

"No I am not prince Hamlet, nor was meant to be
x x x x x x x
At times indeed, almost ridiculous

Almost at times, the Fool ।"(୧୭)

ସେହିପରି ଗୁରୁପ୍ରସାଦଙ୍କ ଗୋବର ଗଣେଶ କହେ:-

"ମୁଁ ନୁହେଁ ଧୂପର ହିରୋ, ଗାର୍ଲଫ୍ରେଣ୍ଡ ଚୁମ୍ବନ ବା ଚମ୍ପୂର ନାୟକ ।

ଚାରୁକଳା ଅଭାବ ମୋ ଠାରେ ।"(୧୮)

କବି ଗୁରୁପ୍ରସାଦଙ୍କ ସହିତ ଏ କାବ୍ୟଧାରାରେ ନିଜକୁ ସାମିଲ୍ କରିନେଇଛନ୍ତି କବି ଭାନୁଜୀ ରାଓ, ଜ୍ଞାନୀନ୍ଦ୍ର ବର୍ମା, ବେଣୁଧର ରାଉତ, ବିନୋଦ ନାୟକ, ଚିନ୍ତାମଣି ବେହେରା, ରମାକାନ୍ତ ରଥ, ସୀତାକାନ୍ତ ମହାପାତ୍ର, ରାଜେନ୍ଦ୍ର କିଶୋର ପଣ୍ଡା, ସୌଭାଗ୍ୟ ମିଶ୍ର, ଦୀପକ୍ ମିଶ୍ର ପ୍ରମୁଖ କବିମାନେ । ଏହି କବିମାନେ ମଧ୍ୟ ଏଲିୟଟ୍‌ଙ୍କ କାବ୍ୟିକ ପ୍ରଭାବ ଦ୍ୱାରା ବେଶ୍ ପ୍ରଭାବିତ ହୋଇଛନ୍ତି । ଏହି ଏଲିୟଟୀୟ ପ୍ରଭାବରେ ପ୍ରଭାବିତ ହୋଇଥିବା ଓଡ଼ିଆ କବିତା କେତେମାତ୍ରାରେ ସାଧାରଣ ଜନତାର ନିକଟବର୍ତ୍ତୀ ହୋଇପାରିଛି ତା'ର ଉତ୍ତର ସମୟ ହିଁ ଦେବ । ମାତ୍ର ପ୍ରଗତିବାଦୀ କବିମାନଂକର କବିତା ଯେ ଜନସାଧାରଣଙ୍କର ହୃଦୟକୁ ଛୁଇଁ ପାରୁଥିଲା ଏଥିରେ କୌଣସି ଭୁଲ୍ ନାହିଁ । ଏଲିୟଟୀୟ ଚିନ୍ତାଧାରା ଓଡ଼ିଆ କବିତାକୁ ଆସିବା ଫଳରେ ଓଡ଼ିଆ କବିତା ବିଶ୍ୱ ପ୍ରସାରୀ ହୋଇପାରିଛି ବୋଲି ବହୁ ସମାଲୋଚକ ମତବ୍ୟକ୍ତ କରନ୍ତି । କିନ୍ତୁ ଏଠାରେ ଗୋଟିଏ କଥା କୁହାଯାଇପାରେ ଯେ ମାର୍କସ୍‌ବାଦୀ ଚିନ୍ତାଧାରା ମଧ୍ୟ ସେହିପରି ପାଶ୍ଚାତ୍ୟ ରାଷ୍ଟ୍ରରୁ ସମ୍ଭୁତ । ଏହି ଚିନ୍ତାଧାରା ଜର୍ମାନୀ, ଋଷ୍, ଫ୍ରାନ୍‌ସ, ଚୀନ୍, ଚିଲି, ଭିଏତ୍‌ନାମ୍ ପ୍ରାୟ ବହୁ ପାଶ୍ଚାତ୍ୟ ରାଷ୍ଟ୍ରର କବି ଲେଖକମାନଂକୁ ପ୍ରଭାବିତ କରିଛି । ମାର୍କସିମ୍ ଗୋର୍କୀ, ମାୟୋକୋଭସ୍କିଙ୍କ ଠାରୁ ଆରମ୍ଭ କରି ମାଓ-ସେ-ତୁଙ୍ଗ, ଲେନିନ୍‌ଙ୍କ ପର୍ଯ୍ୟନ୍ତ ବହୁ କବି, ସାହିତ୍ୟିକମାନେ ଏହାକୁ ଆଧାର କରି ନିଜସ୍ୱ କୃତି ସୃଷ୍ଟି କରିଯାଇଛନ୍ତି । ଏହି ବିଶ୍ୱପ୍ରସାରୀ ଦୃଷ୍ଟିଭଂଗୀ ଦ୍ୱାରା ଯଦି ଓଡ଼ିଆକବିମାନେ ପ୍ରଭାବିତ ହୋଇ ମାର୍କସ୍‌ବାଦୀ ଚିନ୍ତାଧାରାର କାବ୍ୟକବିତା ରଚନା କରିଛନ୍ତି ତା'ହେଲେ ସେମାନେ ମଧ୍ୟ ଗୁରୁପ୍ରସାଦ ରମାକାନ୍ତ-ସୀତାକାନ୍ତ-ପ୍ରମୁଖ କବିମାନଂକ ପରି ଓଡ଼ିଆ କବିତାର ଭୂମିକୁ ସଂପ୍ରସାରିତ କରିପାରିଛନ୍ତି । ଏ ସଂପର୍କରେ ପ୍ର. ବୈଷ୍ଣବ ଚରଣ ସାମଲ୍ କହନ୍ତି:-

"ଆମେ ମନେକରୁଛୁ ଇଉରାକେନ୍ଦ୍ର ବା, ମାର୍କିନ୍ କେନ୍ଦ୍ରକୁ ନ'ଗଲେ ଆମର ମୁକ୍ତି ନାହିଁ ବା, ଆମ ସାହିତ୍ୟର ମୁକ୍ତି ନାହିଁ । ଯେତେଦିନ ପର୍ଯ୍ୟନ୍ତ ଆମ ସାହିତ୍ୟ ଆମ ମାଟି, ମଣିଷ, ପରଂପରାକୁ ଧରି ଗତି ନ କରିଛି ସେତେଦିନ ପର୍ଯ୍ୟନ୍ତ ଆମ ସାହିତ୍ୟର ସ୍ୱାତନ୍ତ୍ର୍ୟ ପ୍ରତିପାଦିତ ହେବ ନାହିଁ ।" (୧୯)

ପ୍ରତୀଚ୍ୟ ଆଦର୍ଶରେ ଅନୁପ୍ରାଣିତ ହୋଇ ପ୍ରଗତିବାଦୀ କବିମାନେ କାବ୍ୟ କବିତା

ରଚନା କରିଛନ୍ତି ସତ, ସେମାନେ ନିଜର ମାଟି ମଣିଷର କଥା ହିଁ କହିଛନ୍ତି । ଏ କବିତାରେ ବ୍ୟକ୍ତିମୁଖୀ ଚେତନା ରୂପ ପାଇନାହିଁ ବରଂ ସମଗ୍ର ମଣିଷ ସମାଜର କଥା ଏହାର ମୁଖ୍ୟ ଉପାଦାନ ପାଲଟିଛି । କୌଣସି ଏକ ନୂତନ ଚିନ୍ତାଦର୍ଶର ପ୍ରଭାବ ମନ୍ଦ ନୁହେଁ, ମାତ୍ର ତା' ଦ୍ୱାରା ଯଦି ଆମର ନିଜସ୍ୱ ଚିନ୍ତାଧାରା ଲୋପ ପାଇଯାଏ, ସେତେବେଳେ ତାହା ନିନ୍ଦନୀୟ ପାଲଟିଯାଏ । ଆମେ ଯଦି ଆନ୍ତର୍ଜାତିକ ହେବା ମୋହରେ ପାଶ୍ଚାତ୍ୟ ଜୀବନାଦର୍ଶକୁ କବିତାର କେନ୍ଦ୍ରବିନ୍ଦୁ କରିଦେବା ତା'ହେଲେ ଆମ ସାହିତ୍ୟ ଆମ ମଣିଷ ମାନଂକ ନିକଟରୁ ଖୁବ୍ ଦୂରକୁ ଚାଲିଯିବ । ପ୍ରଗତିବାଦୀ କବିତା ମଧ୍ୟ ଏକ ଆନ୍ତର୍ଜାତିକ ଦୃଷ୍ଟିଭଂଗୀ ହୋଇଥିଲେ ମଧ୍ୟ ତାହା ସାଧାରଣ ଜନତା ନିକଟରୁ ଦୂରେଇ ଯାଇ ନାହିଁ । ସେଇ ମାଟି, ସେଇ ମଣିଷକୁ ପ୍ରାଧାନ୍ୟ ଦେଇଛି । ସେଇଥିପାଇଁ ବୋଧହୁଏ ଆଜି ମଧ୍ୟ ପ୍ରଗତିବାଦୀ କବିର ଆହ୍ୱାନ ପାଠକର ହୃଦୟରେ ଅନୁରଣିତ ହେଉନି । ଉଚ୍ଚସ୍ୱରରେ ଦୃପ୍ତ ଆହ୍ୱାନ ଶୁଣାଯାଉଛି:-

"ପୁଂଜିତ ରୋଷେ ବଂଚିତ ଆମେ ଦୀପ୍ତ ଚେତନା ବହି
ନ ବୁଲିବୁ ଆଉ ଭିକ୍ଷୁକ ବେଶେ ଦୁଃଖ ବେଦନା ସହି
ପ୍ରାପ୍ୟ ଆମର ନେବୁରେ ମୁକର ଆମେ ଶ୍ରମିକର ଜାତି
ଫୁଟାଇବୁ ଆଜି ରକ୍ତ ପ୍ରଭାତ ଚିରି ଅଂଧାର ରାତି ।"
(ସର୍ବହରା-କବି ଅନନ୍ତ ପଟନାୟକ)

ଏଥିରୁ ପ୍ରମାଣିତ ହୁଏ ଯେ, ଯେତେଦିନ ପର୍ଯ୍ୟନ୍ତ ଓଡ଼ିଆ ସାହିତ୍ୟର ସ୍ଥିତିଥିବ ସେତେଦିନ ପର୍ଯ୍ୟନ୍ତ ଏହି ବଳିଷ୍ଠ କାବ୍ୟଧାରାର ନିଷ୍ଠାପର ଅଗ୍ରଦୂତମାନେ ଯେ ଉଚ୍ଚ ଆସନ ଲାଭ କରୁଥିବେ କହିଲେ ଅତ୍ୟୁକ୍ତି ହେବନାହିଁ ।

## କବିତାରେ ବୈପ୍ଳବିକ ସ୍ୱରଲିପି

ଓଡ଼ିଆ କବିତାରେ ବିଗତ ଶତାବ୍ଦୀର ଚତୁର୍ଥ ଦଶକ ବେଳକୁ ଦେଖାଦେଲା ଏକ ଯୁଗାନ୍ତକାରୀ ପରିବର୍ତ୍ତନ । କବିତାରେ ପ୍ରତିବାଦୀ କାବ୍ୟସ୍ୱର ପ୍ରକାଶ ପାଇଲା । ଜନସାଧାରଣଙ୍କୁ ନିଜର ଅଧିକାର ସଂପର୍କରେ ସଚେତନ କରାଇବା ପାଇଁ ଏହି କବିତା ବୈପ୍ଳବିକ ସ୍ୱର ଉତ୍ତୋଳନ କଲା । ଏହି ବିପ୍ଳବ ଥିଲା ସମାଜର ଧନୀ ଓ ପୁଂଜିପତି ଗୋଷ୍ଠୀ ବିରୋଧରେ । ଏହାର ପୃଷ୍ଠପଟ୍ଟରେ ରହିଥିଲା ମାର୍କସ୍‌ଙ୍କର ଦର୍ଶନ । ଯାହାକୁ କାର୍ଯ୍ୟରେ ପରିଣତ କରି ଅଶେଷ ସଫଳତା ଅର୍ଜନ କରିଥିଲେ ଋଷର ଜନସାଧାରଣ । ଅତ୍ୟାଚାରୀ ଜାର୍ ଶାସନର ପତନ ଘଟିବାରୁ ବିଶ୍ୱ ପ୍ରେକ୍ଷାପଟ୍ଟରେ ମାର୍କସୀୟ ତତ୍ତ୍ୱ ଦର୍ଶନକୁ ଯଥେଷ୍ଟ ଖ୍ୟାତି ମିଳିଲା । ଓଡ଼ିଆ ସାହିତ୍ୟରେ ମଧ୍ୟ ଏହାର ପ୍ରଭାବରେ ଅନ୍ୟାୟ, ଅତ୍ୟାଚାର, ଶୋଷଣ ବିରୋଧୀ ବିପ୍ଳବୀ ଲେଖାମାନ ପ୍ରକାଶ ପାଇ ଅବହେଳିତ

ବର୍ଗଙ୍କୁ ପ୍ରତିବାଦ କରିବାର ଇଂଧନ ଯୋଗାଇଲା । ଧନୀକ ଗୋଷ୍ଠୀର ହସ୍ତରୁ ସମସ୍ତପ୍ରକାରର ସୁଖସୁବିଧା ଛଡ଼ାଇ ଆଣି ଜନସାଧାରଣଙ୍କ ମଧ୍ୟରେ ସମବଣ୍ଟନ କରିବା ହେଲା ଏହି ବିପ୍ଳବୀ ସାହିତ୍ୟର ଲକ୍ଷ୍ୟ । କେବଳ ସେତିକି ନୁହେଁ ଯେଉଁ ପୁରାତନ ପ୍ରଥା, ପରଂପରା, ଧର୍ମ, ଅଂଧ ବିଶ୍ୱାସକୁ ସ୍ୱାର୍ଥବାଦୀ ପୁଂଜିପତି ଗୋଷ୍ଠୀ ଅତ୍ୟାଚାରର ମାଧ୍ୟମ ରୂପେ ଗ୍ରହଣ କରିଥାଏ, ସେ ସବୁକୁ ଭାଂଗି ଦେଇ ପୁଣି ଏକ ନୂତନ ପଦ୍ଧତିର ସର୍ଜନା କରିବା ମଧ୍ୟ ହେଲା ଏହାର ମୁଖ୍ୟ ଉଦ୍ଦେଶ୍ୟ । ତେଣୁ ସାମାଜିକ, ସାଂସ୍କୃତିକ, ରାଜନୈତିକ, ଅର୍ଥନୈତିକ ପ୍ରତ୍ୟେକ କ୍ଷେତ୍ରରେ ସାଧାରଣ ଜନତାଙ୍କୁ ନିଜର ଅଧିକାର ପାଇଁ ସଂଗ୍ରାମ କରିବାକୁ ପ୍ରେରଣା ଦେବା ପାଇଁ କ୍ଷେତ୍ର ପ୍ରସ୍ତୁତି କିପରି କରାଯାଇ ପାରିବ, ଚାଳିଶ ଦଶକର ଏହି ବିପ୍ଳବୀ କବିତା ଏଥିପାଇଁ ଉଲ୍ଲେଖନୀୟ ଭୂମିକା ଗ୍ରହଣ କଲା ।

ଅତଏବ ଏହି ପରିପ୍ରେକ୍ଷୀରେ ଓଡ଼ିଆ କବିତା କିପରି ବୈପ୍ଳବିକ ଆଭିମୁଖ୍ୟକୁ ବହନ କରିଛି ସେ ସଂପର୍କରେ ଆଲୋଚନା କରାଯାଇପାରେ । 'ନବଯୁଗ ସାହିତ୍ୟ ସଂସଦ' ଓ 'ଆଧୁନିକ' ପତ୍ରିକା ମାଧ୍ୟମରେ ଓଡ଼ିଆ କବିତାରେ ଏହାର ଉନ୍ମେଷ ହୋଇଥିଲା । ସଂସଦର ପ୍ରଥମ ଅଧିବେଶନ ୧୯୩୫ ମସିହା ନଭେମ୍ବର ୨୯ ତାରିଖ ଠାରୁ ଡିସେମ୍ବର ୪ ତାରିଖ ପର୍ଯ୍ୟନ୍ତ ଛ' ଦିନ ବ୍ୟାପୀ କଟକର ଶ୍ରୀରାମଚନ୍ଦ୍ର ଭବନଠାରେ ଅନୁଷ୍ଠିତ ହୋଇଥିଲା । ଚିନ୍ତା ଜଗତରେ ନୂତନ ଚେତନାର ଆବାହନ କରିବା ସଂଗେସଂଗେ ଯୁଗଯୁଗ ଧରି ଜମାଟ ବାଂଧିଥିବା ଆବର୍ଜନାକୁ ସମାଜ ଜୀବନରୁ ନିଷ୍କାସନ କରି ଏକ ସୁସ୍ଥ ସମାଜ ଗଠନ ପାଇଁ ଏହି ସାହିତ୍ୟ ସଂସଦ ଥିଲା ପ୍ରତିଜ୍ଞାବଦ୍ଧ । ନୂତନତାର ଆବାହନୀ ମନ୍ତ୍ରରେ ଏହା ଥିଲା ଦୀକ୍ଷିତ । ସାହିତ୍ୟ ସଂସଦର ଲକ୍ଷ୍ୟ ଓ ଉଦ୍ଦେଶ୍ୟ ସଂପର୍କରେ ପ. ନୀଳକଣ୍ଠ ମତ ପ୍ରଦାନ କରିବାକୁ ଯାଇ କହନ୍ତି:-

"ଜାତୀୟ ଜୀବନରେ ପୁରୁଣା ପ୍ରଥା ଉପରେ ନୂତନ ସ୍ତର ଫିଟାଇବା ଏହାର ଉଦ୍ଦେଶ୍ୟ, ଜୀବନର ଚିନ୍ତା ସାହିତ୍ୟରେ ପ୍ରକାଶପାଏ ଓ ଚିନ୍ତା ହିଁ କ୍ରିୟାର ମୂଳ । ତେଣୁ ସାହିତ୍ୟରେ ବିପ୍ଳବ ପ୍ରଚାର କରି ଜାତୀୟ ଜୀବନରେ ଚଞ୍ଚଳତାର ସୂଚନା ଦେବା ନିମନ୍ତେ ଏହା କରାଯାଇଥିଲା ।"(୨୦)

ଏହାର ନେତୃତ୍ୱ ନେଇଥିଲେ ଭଗବତୀ ଚରଣ ପାଣିଗ୍ରାହୀ । ଅଧିବେଶନରେ ଯେଉଁ ଉଦ୍‌ବୋଧନୀ ସଂଗୀତ ରଚନା କରାଯାଇଥିଲା, ତାହା କବି ଅନନ୍ତ ପଟ୍ଟନାୟକଙ୍କ ଦ୍ୱାରା ରଚିତ ହୋଇଥିଲା । ନୂତନ ଚିନ୍ତା ଚେତନାର ଆବାହନ କରିବା ସହିତ ଏକ ନୂତନ ସମୟକୁ ସ୍ୱାଗତ କରିବା ପାଇଁ ଏହା ଥିଲା ଉଦ୍ଦିଷ୍ଟ । ସଂଗୀତଟି ଥିଲା –

"ନବୀନ ଯୁଗର ତରୁଣ ଜାଗରେ
ଜାଗ ବଂଧନ ହରା
ଲକ୍ଷେ ଶୋଣିତ ବକ୍ଷେ ଜୀବନ
ଖେଳାଅ ଆଲୋକ ଧାରା ।"(୨୧)

ଭଗବତୀଙ୍କ ସହିତ ଯୋଗ ଦେଇଥିଲେ ଗୁରୁ ଚରଣ ପଟ୍ଟନାୟକ, ଅନନ୍ତ ପଟ୍ଟନାୟକ, ବିଶ୍ୱନାଥ ପଶାୟତ, ବୈଦ୍ୟନାଥ ରଥ ପ୍ରମୁଖ ବହୁ ସଂଗ୍ରାମୀ ସାହିତ୍ୟିକ । ନବଯୁଗର ବାର୍ତ୍ତାବହନକାରୀ 'ଆଧୁନିକ' ପତ୍ରିକାରେ ତତ୍‌କାଳୀନ ସମୟର ବହୁ ସାହିତ୍ୟିକମାନଙ୍କର ବିପ୍ଳବୀଚିନ୍ତା ସମ୍ୱଳିତ ଲେଖାମାନ ପ୍ରକାଶ ପାଇଥିଲା । ପ୍ରାକ୍ ସ୍ୱାଧୀନତା କାଳୀନ ଏହି ଚିନ୍ତାଧାରାକୁ ପାଥେୟ ଭାବେ ଗ୍ରହଣ କରି ଯୁଗାନ୍ତକାରୀ ପରିବର୍ତ୍ତନ ପାଇଁ ପ୍ରତିଶ୍ରୁତିବଦ୍ଧ ହୋଇ ବହୁ ସ୍ରଷ୍ଟା କାବ୍ୟ କବିତାରେ ବିପ୍ଳବର ସ୍ୱରକୁ ଶାଣିତ କଲେ । ସେମାନଙ୍କ ମଧ୍ୟରୁ କବି ସଚ୍ଚିରାଉତରାୟ, ଅନନ୍ତ ପଟ୍ଟନାୟକ, ମନମୋହନ ମିଶ୍ର, ରଘୁନାଥ ଦାସ ଅନ୍ୟତମ ।

ବିପ୍ଳବକୁ ଯଦି ନୂତନତାର ବାହକ ଭାବେ ଗ୍ରହଣ କରାଯାଏ, ତା' ହେଲେ ସେଥିରୁ ହିଂସା, ରକ୍ତପାତକୁ ବାଦ୍ ଦେବା ଉଚିତ୍ । ଆକ୍ଷରିକ ଦୃଷ୍ଟିକୋଣରୁ ଏହାର ଅର୍ଥ ଧନୀକ ଗୋଷ୍ଠୀ ନିକଟରୁ ସର୍ବହରା ଶ୍ରେଣୀ ନିଜର ନ୍ୟାର୍ଯ୍ୟ ଅଧିକାର ହାସଲ କରିବା ସହିତ ଶ୍ରେଣୀ ବିହୀନ ସମାଜ ଗଠନ କରିବା । ସେଇଥିପାଇଁ କବି ସଚ୍ଚିରାଉତରାୟ ସର୍ବହରାର ବିଜୟଗୀତି ଗାନ କରିବାକୁ ଯାଇ କହନ୍ତି –

"ଭାତ ଲାଗି ଆଜି ଉଠାରେ ହାତ
ମାଟିର ନିଆଁରେ ଘେନ ଶପଥ
ଭୁଲନା ତୋ ଅଧିକାର
ଦୁନିଆରେ ଗଢ଼ ଶ୍ରମିକ ରାଜ
ସେହି କୋଣାରକ ସେହି ତୋ ତାଜ୍
ଛାଡ଼ ଆଜି ଭୟ ଛାଡ଼ରେ ଲାଜ
ପଦେ ତୋର ନମସ୍କାର ।" (୨୨)

କବି ରାଉତରାୟଙ୍କ ବିପ୍ଳବୀ କବିତା ସର୍ବହରା ଶ୍ରେଣୀ ପାଇଁ ଉଦ୍ଦିଷ୍ଟ ଥିଲାବେଳେ, ସାମସମୟିକ କବି ଅନନ୍ତ ପଟ୍ଟନାୟକଙ୍କ ବିପ୍ଳବୀ କବିତା ଶାନ୍ତିର ସଂଧାନ ଉଦ୍ଦେଶ୍ୟରେ ଅଭିପ୍ରେତ ଥିଲା । ଧ୍ୱଂସର ଆବାହନ ନକରି ପରିବର୍ତ୍ତନ ପାଇଁ ହିଁ ଏହା ଉଦ୍ଦିଷ୍ଟ ଥିଲା । ସ୍ୱକୀୟ ଅନୁଚିନ୍ତା ସମ୍ୱନ୍ଧରେ କବି ସ୍ୱୟଂ ମତପ୍ରଦାନ କରନ୍ତି –

"କୌଣସି ଆଦର୍ଶ ସୃଷ୍ଟି ଓ ପରିବର୍ତ୍ତନ ପାଇଁ ତ ବିପ୍ଳବ ? ନାଳ ନର୍ଦ୍ଦମା ଓ

ପୂତିଗଂଧମୟ ଆବର୍ଜନାକୁ ଧ୍ୱଂସ କରି ପଦ୍ମର ସୌରଭ ତା' ମଧ୍ୟରେ କଳ୍ପନା କରିବା ଭୁଲ ନୁହେଁ । ଆଜିର ଯାହା କଳ୍ପନା ତାହା ଆସନ୍ତାକାଲି ବାସ୍ତବାୟିତ ହୋଇଥାଏ ।" (୨୩)

ସମାଜରୁ ଅନ୍ୟାୟ, ଅତ୍ୟାଚାରର ବିଲୋପ ଘଟାଇ ସାମ୍ୟ, ମୈତ୍ରୀ, ଶାନ୍ତିର ବାର୍ତ୍ତା ବହନ କରୁଥିବା କବିଙ୍କର କବିତା ମଧ୍ୟ ଭବିଷ୍ୟତର ନାଗରିକମାନଙ୍କୁ ଉଦ୍‌ବୋଧନ ଦିଏ ।

"ଚିର ଅତୀତର ଜୀର୍ଣ୍ଣ ଜୀବନ
 ଜାଗ ଆହେ ଭବିଷ୍ୟତ ।
ଚୂର୍ଣ୍ଣ କରୁରେ ସ୍ୟନ୍ଦନ ତବ
 ପୀଡ଼ନର ପରବତ
ଭାଜି ପଡୁ ଆଜି ଅର୍ଗଳ ରାଜି
 ଘେନ ବିଜୟର ମାଳା
 ଜାଗ ବଂଧନ ହରା ।" (୨୪)

କବିଙ୍କର କବିତା ସମାଜରୁ ଶୋଷଣର ପରିସମାପ୍ତି ଘଟାଇ ସାରା ଦୁନିଆକୁ ଏକ ପରିବାରଭୁକ୍ତ କରିବା ଉଦ୍ଦେଶ୍ୟରେ ଅଭିପ୍ରେତ । କେବଳ ଯେ ପୁଂଜିପତି ଗୋଷ୍ଠୀର ବିଲୟ ଓ ସର୍ବହରା ଶ୍ରମିକର ବିଜୟ ଘୋଷିତ ହେଲେ ଯେ ବିପ୍ଳବର ଲକ୍ଷ୍ୟ ସାଧିତ ହୋଇଥାଏ ତାହା ନୁହେଁ, ବରଂ ସମଗ୍ର ଦରିଦ୍ର ଗୋଷ୍ଠୀର ଉନ୍ନତି ଏହାର ମୂଳ ଲକ୍ଷ୍ୟ ହେବା ଉଚିତ୍ । ତେଣୁ ଆମର ବିପ୍ଳବୀ ସାହିତ୍ୟିକମାନେ ମଧ୍ୟ ଏହି ନିୟମରୁ ବାଦ୍ ନପଡ଼ି ଅବହେଳିତ କୃଷକ ଗୋଷ୍ଠୀର ଉନ୍ନତି ପାଇଁ ମଧ୍ୟ ବହୁ କବିତା ରଚନା କରିଛନ୍ତି । ନିଜେ ମଧ୍ୟ ନେତୃତ୍ୱ ନେଇ ବିପ୍ଳବୀ ପାର୍ଟି ଗଠନ ପାଇଁ ଅଣ୍ଟାଭିଡ଼ି ବାହାରି ପଡ଼ିଛନ୍ତି । ବିପ୍ଳବୀ କବି ମାନଙ୍କର ଏ ପ୍ରକାର ପଦକ୍ଷେପ ସଂପର୍କରେ କବି ଚାରୁ ମଜୁମ୍‌ଦାର କହନ୍ତି –

"ଜନ ଗନ ତାନ୍ତ୍ରିକ ବିପ୍ଳବେର ପଥ ହଲ୍, କୃଷକ ଓ ଶ୍ରମିକ ଶ୍ରେନୀର ନେତୃତ୍ୱେ କୃଷି ବିପ୍ଳବେର ପଥେ ଗ୍ରାମାଞ୍ଚଲେ ବିପ୍ଳବୀ ସଂଗ୍ରାମେର୍ ଏଲା କାକା ପ୍ରସାରିତ କରେ, ଶହରକେ ଘିରେ 'ଫେଲା' । x x x । ଏଇ ହଲ ଭାରତ ବର୍ଷେର ମୁକ୍ତିର ଏକମାତ୍ର ସଠିକ୍ ମାର୍କସ୍‌ବାଦୀ ଲେନିନ୍‌ବାଦୀ ପଥ୍ ।(୨୫)

ମଜୁମ୍‌ଦାର୍‌ଙ୍କ ଉକ୍ତିରୁ ଜଣାପଡେ ଯେ, ଶ୍ରମିକ, କୃଷକ ଗୋଷ୍ଠୀର ଉନ୍ନତି କଳ୍ପେ ନିଆଯାଉଥିବା ପଦକ୍ଷେପ ମଧ୍ୟ ବୈପ୍ଳବିକ ଚିନ୍ତାଚେତନା ମଧ୍ୟରୁ ସଂଜାତ । ଓଡ଼ିଶାର ସାହିତ୍ୟିକମାନଙ୍କ ମଧ୍ୟରୁ କବି ସଚ୍ଚିରାଉତରାୟ, ଅନନ୍ତ ପଟ୍ଟନାୟକ କୃଷକ ସଂଗଠନ

ସହିତ ଜଡ଼ିତ ରହି ସେମାନଙ୍କର ଉନ୍ନତି ନିମନ୍ତେ ଯଥାସମ୍ଭବ ପଦକ୍ଷେପମାନ ନେଇଥିଲେ । ସେମାନେ କିପରି ସଂଘବଦ୍ଧ ହୋଇ ନିଜର ଅଧିକାର ସାବ୍ୟସ୍ତ କରିବେ, ସେ ସଂପର୍କରେ କବି ଆହ୍ୱାନ ଦିଅନ୍ତି –

"ଚାଷୀ ଭାଇରେ
କେନିଆଁର କୋଣେ ଛୁଇଁ କ୍ଷେତେ ଆଜି
ରକତ ଧାର ଛୁଟାଇ
ଚାଷୀକୁ ଘଉଡ଼େ ଜହଲାଲଙ୍କ
  ଚର୍ଚ୍ଚିଲ ବିଲାତି ଭାଇ
ମାଲୟ ରବର ଜଙ୍ଗଲରେ ଆଉ
  ପାକିସ୍ତାନ ଝୋଟ କିଆରୀ
ଘଉଡ଼ାଇବାକୁ ନିରସ୍ତ୍ର ଚାଷୀରେ
  ସାମ୍ରାଜ୍ୟ ବାଦର ଚାଲେ ଜାରି ।" (୨୬)

'ପୁଂଜିପତି-ଶ୍ରମିକ', 'ଜମିଦାର-କୃଷକ' ମଧ୍ୟରେ ଘଟୁଥିବା ସଂଘର୍ଷ ବିପ୍ଳବୀ କବିତାରେ ସ୍ଥାନ ପାଇଲାପରି ସ୍ୱାଧୀନ ଭାରତବର୍ଷକୁ ଗ୍ରାସ କରିଥିବା ଦୁର୍ନୀତି, ବ୍ୟଭିଚାର ବିରୋଧି କାବ୍ୟସ୍ୱର ମଧ୍ୟ ବିପ୍ଳବୀ କବିତାକୁ ଆହୁରି ଶାଣିତ କରିଛି । ତେଣୁ କବି ଲକ୍ଷ୍ମୀଧର ନାୟକ ଦୁର୍ନୀତିଗ୍ରସ୍ତ, କ୍ଷମତାଲୋଭୀ ଶାସକମାନଙ୍କୁ ଆକ୍ଷେପ କରି କହିଛନ୍ତି –

"ଏ ସ୍ୱାଧୀନ ଦେଶେ ମୋର, ଆଜି ଯେଉଁମାନେ
ଦେଶ ଆଉ ଜାତି ନାମେ, ଗଣତନ୍ତ୍ର ନାମେ
ବହୁ ପ୍ରାଣ ହତ୍ୟା କରି ମନମୁଖୀ ଚଳାନ୍ତି ଶାସନ
ମୁଁ ତା'ର ପ୍ରତିବାଦ କରେ, ମୁଁ ତା'ର ପ୍ରତିକାର ଲୋଡ଼େ
ମୁଁ ଏକ ଲାଲ୍ ବିସ୍ଫୋରଣ ।" (୨୭)

ସ୍ୱାଧୀନତା ପୂର୍ବବର୍ତ୍ତୀ କାଳର ଓଡ଼ିଆ କବିତାରେ ବିପ୍ଳବର ସ୍ୱର ଥିଲା ମୁଖ୍ୟତଃ ପୁଂଜିପତି ଗୋଷ୍ଠୀର ଶୋଷଣ ବିରୋଧରେ ଉଦ୍ଦିଷ୍ଟ । କିନ୍ତୁ ପଚାଶ ଦଶକ ପରେ ଏହି ସ୍ୱର କ୍ରମଶଃ କ୍ଷୀଣ ହେବାକୁ ଲାଗିଲା । ପାଶ୍ଚାତ୍ୟ ଇଲିଅଟୀୟ କବିତାର ପ୍ରଭାବ ଓଡ଼ିଆ କବିମାନଙ୍କୁ ଏତେମାତ୍ରାରେ ଗ୍ରାସ କଲା ଯେ, କବିତାରୁ ବିପ୍ଳବର ସ୍ୱର ଧୀରେଧୀରେ ନରମି ଗଲା । ସାଧାରଣ ଜନଜୀବନର ଚିତ୍ର ମଧ୍ୟ ଏଥିରେ ଅସ୍ପଷ୍ଟ ହୋଇପଡ଼ିଲା । ଏ ପ୍ରକାର କାବ୍ୟିକ ପରଂପରାକୁ ଭାଂଗି ଶିଥିଳ ପଡ଼ିଯାଇଥିବା ବିପ୍ଳବୀ କାବ୍ୟ ସ୍ୱରକୁ ପୁର୍ନଜାଗ୍ରତ କରାଇଲେ କବି ବ୍ରଜନାଥ ରଥ ଓ କବି ରବି ସିଂ । କବି ବ୍ରଜନାଥ ଛାତ୍ରାବସ୍ଥାରୁ ସାମ୍ୟବାଦୀ ଆନ୍ଦୋଳନ ସହ ସଂପୃକ୍ତ ଥିଲେ । ତେଣୁ ତାଙ୍କ କବିତାରେ

ମଧ୍ୟ ଶୋଷଣ ବିରୋଧି ଚିତ୍ର ମୁଖ୍ୟସ୍ଥାନ ଲାଭ କରିଛି । ସମାଜରୁ ଅନ୍ୟାୟ, ଅତ୍ୟାଚାର, ବୈଷମ୍ୟକୁ ଦୂର କରି ଏକ ସୁସ୍ଥ ବାତାବରଣର ଆନୟନ ପାଇଁ କବି ବ୍ରଜନାଥ ତାଙ୍କ କବିତାରେ ବେଶ୍ ପ୍ରତିଜ୍ଞାବଦ୍ଧ ମନେ ହୁଅନ୍ତି । ଏତଦ୍‌ବ୍ୟତୀତ ଭାରତୀୟ ଗଣତାନ୍ତ୍ରିକ ବ୍ୟବସ୍ଥାରେ ପ୍ରତିଫଳିତ ଅବ୍ୟବସ୍ଥା ମଧ୍ୟ କବିଙ୍କ ବିପ୍ଳବୀ ଚେତନାକୁ ଖୋରାକ୍ ଯୋଗାଇଛି ।

ବର୍ତ୍ତମାନର ଭାରତବର୍ଷ ବିଦେଶୀ ଶାସନବ୍ୟବସ୍ଥାରୁ ମୁକ୍ତ । ପ୍ରକୃତ ପକ୍ଷେ ଦେଖିବାକୁ ଗଲେ ଏ ଦେଶର ଭୂମି ସ୍ୱାଧୀନ । କିନ୍ତୁ ଏ ଦେଶର ଜନସାଧାରଣ ଆଜି ମଧ୍ୟ ପରାଧୀନ । ସଂକୀର୍ଣ୍ଣ ମାନସିକତା ଦ୍ୱାରା ସେମାନେ ଆଜି ଆବଦ୍ଧ । ଏ ଦେଶର ଜନସାଧାରଣଙ୍କୁ ଯେଉଁମାନେ ଶାସନ କରନ୍ତି, ସେମାନଙ୍କର ସ୍ୱରୂପ କେତେ ଉଜ୍ଜ୍ୱଳ, କେତେ ମଳିନ ତାହା ଆଜି କାହାକୁ ଅଛପା ନୁହେଁ । ଏ ସବୁ ଅସମାହିତ ପ୍ରଶ୍ନ କବି ଚିତ୍ତକୁ ଆନ୍ଦୋଳିତ କରିଛି । ଅବ୍ୟବସ୍ଥା ବିରୋଧୀ ବିପ୍ଳବୀ କବି ତେଣୁ ଉଚ୍ଚାରଣ କରିଛନ୍ତି –

"ବଗଠାରୁ ଏ ଶତାବ୍ଦୀ ଶିଖିଅଛି ବହୁ ବର୍ଷ ପରେ
ବଞ୍ଚିବାକୁ ଚାହଁ ଯଦି ଖାଣ୍ଟି ଏକ ମଣିଷ ଭାବରେ
ଧର୍ମ ନାମେ ନରହତ୍ୟା, ଯେତେ ତୁମେ କରିବାର କର
ତେବେ ତ' ପାଇବ ଯାଇ ବଞ୍ଚିବାର ନ୍ୟାର୍ଯ୍ୟ ଅଧିକାର ।" (୨୮)

କବିତାରେ 'ବଗ'କୁ ପ୍ରତୀକ ଭାବେ ଗ୍ରହଣ କରାଯାଇ ଶାସକଗୋଷ୍ଠୀଙ୍କର ମୁଖା ଉନ୍ମୋଚନ କରାଯାଇଛି । କବିତାଟିରେ ବିପ୍ଳବୀ ଚିନ୍ତାଧାରାର ଯେଉଁ ତେଜ ତାହା ପରିଲକ୍ଷିତ ନ ହେଲେ ମଧ୍ୟ ସାମାଜିକ ଅବ୍ୟବସ୍ଥା ବିରୋଧରେ କବି ନିଜର ଚିନ୍ତାଧାରାକୁ ଅତ୍ୟନ୍ତ ଚମତ୍କାର ଶୈଳୀରେ ବର୍ଣ୍ଣନା କରିଛନ୍ତି । ଶାଣିତ ଭାଷାର ପ୍ରୟୋଗ ଦ୍ୱାରା ଯେ କବିତା ବିପ୍ଳବୀ କବିତାର ମାନ୍ୟତା ପାଇବ ତାହା ନୁହେଁ, ସରଳ ଭାଷାର ପ୍ରୟୋଗ ହିଁ ବିପ୍ଳବୀ କବିତାକୁ ଜନସାଧାରଣଙ୍କର ନିକଟବର୍ତ୍ତୀ କରାଇଥାଏ । ଏ ସଂପର୍କରେ କବି ରଘୁନାଥ ଦାସ' କହନ୍ତି –

"ଭାବର ପ୍ରଖରତା ଓ ଭାଷାର ତେଜସ୍ୱୀତା ବିପ୍ଳବୀ ସାହିତ୍ୟର ବହିରାବରଣ ହୋଇପାରେ କିନ୍ତୁ ବିପ୍ଳବୀ ସାହିତ୍ୟ କେବଳ ଧ୍ୱଂସ ତତ୍ତ୍ୱର ପ୍ରଚାର କରି ନପାରେ । ଏହି ଧ୍ୱଂସ ପରେ ନୂତନ ଦିନର ସୃଷ୍ଟି ପାଇଁ ଆହ୍ୱାନ ଦେଇଥାଏ ।" (୨୯)

କବି ବ୍ରଜନାଥଙ୍କ କବିତାରେ ବିପ୍ଳବର ଶାନ୍ତ, ସଲୀଳ ଫଲ୍‌ଗୁ ପ୍ରବାହିତ ହେଉଥିବାବେଳେ, ସାମସମୟିକ କବି ରବି ସିଂଙ୍କ କବିତାରେ ଭାବର ପ୍ରଖରତା ଓ ଭାଷାର ତେଜସ୍ୱୀତା ସାଙ୍ଗକୁ ବିପ୍ଳବର ଉଗ୍ରଉତ୍ତାପଧର୍ମୀ କଣ୍ଠସ୍ୱର ପରିଲକ୍ଷିତ ହୋଇଥାଏ ।

କବିଙ୍କର ଏ ପ୍ରକାର ଦୃଢ଼ ସଂକଳ୍ପବଦ୍ଧତାର ପୃଷ୍ଠପଟ୍ଟରେ ରହିଛି ପିତାଙ୍କର ନିର୍ମଳ ବ୍ୟକ୍ତିତ୍ୱ, ସାମ୍ରାଜ୍ୟବାଦ ବିରୋଧୀ ମନୋଭାବ ସାଙ୍ଗକୁ ଗାନ୍ଧିକ ସୁରେନ୍ଦ୍ର ମହାନ୍ତିଙ୍କ ସହ ଏକତ୍ର ସହାବସ୍ଥାନ ଓ ନିଆଁଖୁଣ୍ଟାର ସଂପାଦକ ଗୋଦାବରୀଶ ମହାପାତ୍ରଙ୍କ ସହିତ ଆତ୍ମୀୟତା । ଜୀବନରେ ପିତୃମାତୃହରା ହେବା ପରେ ନିଃସଂଗ ଜୀବନକୁ ନେଇ କବି ଆରମ୍ଭ କରନ୍ତି ସମାଜକୁ ଚିହ୍ନି ଅନ୍ୟକୁ ଚିହ୍ନାଇବାର ପ୍ରୟାସ । ଯେଉଁ କବିର ଜୀବନ ଯେତେ ଦୁଃଖ ଜର୍ଜରିତ, ତା'ର ସୃଷ୍ଟି ସେତିକି ହୃଦୟସ୍ପର୍ଶୀ । ମଣିଷର ଦୁଃଖ ଯନ୍ତ୍ରଣାକ୍ତ ମର୍ମବେଦନା ତାଙ୍କ କବିତାରେ ଯେତିକି ମାତ୍ରାରେ ପ୍ରକାଶିତ ସାମାଜିକ ଅବ୍ୟବସ୍ଥା ବିରୋଧୀ କାବ୍ୟସ୍ୱର ମଧ୍ୟ ତତୋଧିକ ମାତ୍ରାରେ ପ୍ରତିଫଳିତ । ଯାହାର ସ୍ୱାକ୍ଷର ବହନ କରେ ନିମ୍ନୋକ୍ତ ପଂକ୍ତି –

"ଚଲାପଥ .ମୋର ଦୁର୍ଗମ ଆଜି ବଂଧୁ ହେ, ତିମିର ପଥର ପାନ୍ଥ ମୁଁ
ନିଷ୍ପେଷଣ ଓ ଶୋଷଣ, କଷଣ ବେଦୀ ତଳେ ଆଗାମୀ ଯୁଗର ସନ୍ଥ ମୁଁ ।"(୩୦)

କବି ବ୍ରଜନାଥ ଓ କବି ରବି ସିଂ ଭଟ୍ଟା ପଡ଼ିଯାଇଥିବା ବିପ୍ଳବୀ ଚିନ୍ତାଚେତନା କ୍ଷେତ୍ରରେ ପୁନଃ ଜୁଆର ଆଣିବାକୁ ସକ୍ଷମ ହୋଇଥିଲା ବେଳେ ପରବର୍ତ୍ତୀ ପର୍ଯ୍ୟାୟରେ ଏମାନଙ୍କ ସହ ବହୁ ଯୁବ କବି ପାଦ ମିଳାଇଛନ୍ତି । 'ଆଭା', 'ବେଳା', ସ୍ଫୁଲିଙ୍ଗ', 'ଚେତାବନୀ', 'ଜ୍ୱାଳା', 'ସଂବିତ୍' ଇତ୍ୟାଦି ପତ୍ରପତ୍ରିକାର ପ୍ରକାଶନ ଏମାନଙ୍କର ଚିନ୍ତାଧାରାକୁ ସର୍ବସାଧାରଣରେ ପରିଚିତ କରାଇପାରିଛି । ସତୁରୀ ଦଶକର ଏହି ତରୁଣ ଯୁବକବିମାନଙ୍କର ବିପ୍ଳବୀ ସ୍ୱର ଯେତିକି ତେଜୋଦ୍ଦୀପ୍ତ, ସେତିକି ଆତ୍ମ ବିଶ୍ୱାସରେ ମଜଭୂତ୍ ହୋଇପାରିଛି । ଏମାନଙ୍କର ଲେଖନୀ ଗଣତନ୍ତ୍ର ନାମରେ ଚାଲିଥିବା ଅତ୍ୟାଚାର ବିରୋଧରେ ଦୃଢ଼ ପ୍ରତିବାଦ କରେ । ଯେତେ ବାଧାବିଘ୍ନ ଆସିଲେ ମଧ୍ୟ ଏମାନେ କଦାପି ମଥା ନୁଆଁଇ ନାହାନ୍ତି ଅନ୍ୟାୟ ନିକଟରେ । କଦାପି ସାଲିସ୍ କରିନାହାନ୍ତି ସମାଜର ନାଲିଆଖି ନିକଟରେ । ଖଟିଖିଆ ଶ୍ରେଣୀର ଦୁଃଖକୁ ହୃଦୟଙ୍ଗମ କରି ଏହା ବିରୋଧରେ କେବଳ ସଂଗ୍ରାମର ସ୍ୱର ଉଚ୍ଚାରଣ କରିନାହାନ୍ତି, ବରଂ ଏମାନଙ୍କ ସହ ହାତକୁ ହାତ ମିଳାଇ ସଂଗ୍ରାମର ମଇଦାନକୁ ଓହ୍ଲାଇଛନ୍ତି । ବଜ୍ରଗମ୍ଭୀର ସ୍ୱରରେ, ଶାଣିତ ଭାଷାର ପ୍ରୟୋଗକରି ଜୀବନ ସଂଗ୍ରାମର ଆବାହନ କରିଛନ୍ତି ବିପ୍ଳବୀ କବି ସଦାଶିବ ଦାଶ । ତାଙ୍କ ଲେଖନୀ ସାରା ଦୁନିଆକୁ ମୁକ୍ତିର କଥା କହୁଛି । କବିଙ୍କ ଭାଷାରେ –

"ମୁକ୍ତିର କଥା କହ,
ମାଟି ଆସେ ଫାଟି, ଆକାଶ ଜଳେରେ
ମନର ବେଦନାବୋଧ ମୋ ଜାଗେରେ

ଚାଲିରେ ଚାଲିରେ ନିଆଁର କୁହୁକ
ସଂଗ୍ରାମ କଥା କହ
ଜୀବନର କଥା କହ ଆରେ ସାଥୀ
ଜୀବନର କଥା କହ । (୩୧)

ସାମାଜିକ ବୈଷମ୍ୟକୁ ବିପ୍ଳବର ଅଗ୍ନିଶିଖା ଦ୍ୱାରା ପୋଡ଼ିଜାଳି ପାଉଁଶ କରିଦେବାକୁ ଚାହେଁ ବିପ୍ଳବୀ କବି । ଏଥିପାଇଁ ତାର ଲେଖନୀରୁ ବର୍ଷିଯାଏ ଅଗ୍ନିର ସ୍ଫୁଲିଙ୍ଗ । ଖଟିଖିଆ ମେହେନତି ମଣିଷର ଆଗାମୀ କାଲି ସ୍ୱର୍ଣ୍ଣାଭ ସକାଳର ନୂତନ ଇସ୍ତାହାର ନେଇ ଆସୁ ଏହା କାମନା କରେ ବିପ୍ଳବୀ ସ୍ରଷ୍ଟା । ଏଥିପାଇଁ କବି ପ୍ରସନ୍ନ ଘୋଷଣା କରନ୍ତି –

"ମୁଁ ଏକ ଅବଧୂତ
ଦୀର୍ଘ ମୋର ଚାଲିବାର ପଥ
ଆଗାମୀ ସ୍ୱର୍ଣ୍ଣ ସକାଳର ନବ ଇସ୍ତାହାର
ଜନ୍ମ ମୋର କରିବାକୁ ପୂର୍ବକୁ ଲୋହିତ
ଆକାଶର ଚଂଉହଦୀରେ ସତ୍ୟ ପାଇଁ ଜାଳିବି ମୁଁ
ପ୍ରଳୟ ମଶାଲ ।" (୩୨)

ବିପ୍ଳବୀ ସ୍ରଷ୍ଟା ସଦାସର୍ବଦା ପରିବର୍ତ୍ତନ ପାଇଁ ସଂଗ୍ରାମ କରେ । ଜନଗଣଙ୍କୁ ବିପ୍ଳବର ଦୀକ୍ଷା ଦେବାପାଇଁ ଅହରହ ପ୍ରଚେଷ୍ଟା କରୁଥାଏ । ସେଥିପାଇଁ ତାକୁ ବହୁ ପ୍ରତିବଂଧକର ସାମ୍ନା କରିବାକୁ ପଡ଼େ । ଏପରି ଜଣେ ସଂଗ୍ରାମୀ ବ୍ୟକ୍ତିତ୍ୱ ହେଉଛନ୍ତି କବି ଈଶ୍ୱର ନାୟକ । ଯିଏକି ବାମପନ୍ଥୀ ରାଜନୀତିର ସକ୍ରିୟ ସଦସ୍ୟ ହୋଇ ବିପ୍ଳବୀ କାର୍ଯ୍ୟକଳାପ ଚାଲୁ ରଖିଥିବାରୁ ତାଙ୍କୁ ଜେଲ୍‌ର କାଳକୋଠରୀ ଭିତରେ ଜୀବନ ବିତାଇବାକୁ ପଡ଼ିଥିଲା । ବିଭିନ୍ନ ସଂଗ୍ରାମୀ କାର୍ଯ୍ୟକଳାପ ସାଙ୍ଗକୁ କୃଷକ ସାମ୍ମୁଖ୍ୟର ନେତୃତ୍ୱ ପାଇଁ ତାଙ୍କୁ ଏସବୁ ଭୋଗ କରିବାକୁ ପଡ଼ିଥିଲା । ଆଜି ମଧ୍ୟ ଏଇ ବିପ୍ଳବୀ କବିଙ୍କର ସ୍ଲୋଗାନ ସମ୍ବଲପୁର, ବରଗଡ଼ର ରାସ୍ତାଘାଟରେ ଧ୍ୱନିତ ହେଉଅଛି । ପୃଥିବୀର ଦଳିତ ଜନତା ପାଇଁ ଝଡ଼ର ଗୀତ ଗାଇ ସେମାନଙ୍କୁ ବଞ୍ଚି, ବଞ୍ଚାଇବା ପାଇଁ ହେଲେ ସମାଜରେ ଦେଖାଯାଉଥିବା ଖାଲଢିପକୁ ସମତୁଲ କରିବା ଆବଶ୍ୟକ । ଦଳିତ ଜନତାର ଅଭିଳାଷ ପୂରଣ ଉଦ୍ଦେଶ୍ୟରେ କବି ଈଶ୍ୱରଙ୍କର ବିପ୍ଳବୀ କବିତା ଗୁଡ଼ିକ ଉଦ୍ଦିଷ୍ଟ । କବି କହନ୍ତି –

"ବେକାର୍ ଯୁବକଙ୍କୁ କାମ ଦେବାପାଇଁ
ବନଜ୍‌ର ମାଟିରେ ଜଳ ଦେବା ପାଇଁ

ଭୋକିଲା ପେଟରେ ରୁଟି ଦେବାପାଇଁ
ବୋମାଟିଏ ଦରକାର ନାହିଁ
ବାରୁଦ ତ ପୃଥିବୀକୁ ଶ୍ମଶାନ କରିବ
ମୁଁ ପଚାରିବି ତ ମୋର ହୃଦୟକୁ ପଚାରିବି
ସମୁଦ୍ରକୁ କହିବି ମୋତେ ତୁ ଛାଡ଼ନା
ଏହି ଖଣ୍ଡବିଖଣ୍ଡିତ ପୃଥିବୀରେ
ମୋତେ ଯୋଡ଼ି ଦେ ତୋର ନୀଳ ଲହରୀରେ
ଯୋଡ଼ି ଦେ ଖଣ୍ଡିତ ମଣିଷର ହୃଦୟକୁ
ଯେହେତୁ ପୃଥିବୀଟା ଏକ
ସାରା ମଣିଷ ଏକ
ଏବଂ ଏଇ ଆକାଶଟା ଏକ ।" (୩୩)

କବି ଈଶ୍ୱର ଶ୍ରେଣୀ ସଂଗ୍ରାମରେ ଦୃଢ଼ ଆସ୍ଥା ପ୍ରକଟ କରନ୍ତି । ତେଣୁ କବିଙ୍କର ବିପ୍ଳବୀ ଲେଖନୀ କହେ –

"ଛିଣ୍ଡାଇବି ମଣିଷ ହାତରୁ
ଅଗଣିତ ଯୁଗର ବଂଧନ
ଭାଂଗି ଦେବି ମଣିଷ ହାତରୁ
ଦାସତ୍ୱର ଅକୁହା ସ୍ପନ୍ଦନ ।" (୩୪)

ସତୁରୀ ପରବର୍ତ୍ତୀ ଓଡ଼ିଆ କବିତାର ଅନ୍ୟତମ କର୍ଣ୍ଣଧାର କବି ହୋସେନ୍ ରବିଗାନ୍ଧୀ ଯାହାଙ୍କର ବିପ୍ଳବୀ କବିତା ସଂପର୍କରେ ଆଲୋଚନା ନକଲେ ଆଲୋଚନାଟି ଅସଂପୂର୍ଣ୍ଣ ମନେ ହେବ । ସାଧାରଣ ମଣିଷର ମନୋବେଦନାକୁ ହୃଦୟଙ୍ଗମ କରି ପାରଂପରିକ ସମାଜବ୍ୟବସ୍ଥା ବିରୋଧରେ ଶ୍ରେଣୀ ସଂଗ୍ରାମକୁ ଆଗେଇ ନେବାପାଇଁ କବିଙ୍କର ବିପ୍ଳବୀ ବଜ୍ର ଗମ୍ଭୀର କଣ୍ଠସ୍ୱର ଉଦ୍‌ଘୋଷଣା କରେ –

"ଜାଗ୍ରତ ହୁଅ ଜାଗ୍ରତ ହୁଅ
ମଣିଷ ଯେତେରେ ମେହେନତକାରୀ
ଅତ୍ୟାଚାରୀର ବକ୍ଷକୁ ଦିଅ ବିଦାରୀ
ତାହାରି ମଧ୍ୟୁ ନୂତନ ଶିଶୁ
ଜନ୍ମ ହୋଇବ ମୁକ୍ତି ମଶାଲ୍ ଧରି ।" (୩୫)

ସତୁରୀ ଦଶକ ପରବର୍ତ୍ତୀ କାଳର କବିମାନଙ୍କ କବିତାରେ ପରିଲକ୍ଷିତ ହେଉଥିବା ବୈପ୍ଳବିକ ସ୍ୱର ଶ୍ରେଣୀ ସଂଗ୍ରାମକୁ ଆଗେଇ ନେବାରେ ପୂର୍ଣ୍ଣ ଭାବରେ ସମର୍ଥ ।

ପଚାଶ ଦଶକ ବେଳକୁ ବିପ୍ଳବୀ କାବ୍ୟ ସ୍ୱରରେ ଯେଉଁ ଶିଥିଳତା ପରିଲକ୍ଷିତ ହୋଇଥିଲା ତାହା ଏହି ଯୁବଗୋଷ୍ଠୀମାନଙ୍କର ବଜ୍ର ଗମ୍ଭୀର ସ୍ୱର ଦ୍ୱାରା ପୂର୍ଣ୍ଣ ହୋଇପାରିଛି । ସାମସ୍ମୟିକ କାଳର କିଛି ସାହିତ୍ୟିକ ଏହାକୁ ପ୍ରଚାରଧର୍ମୀ ସାହିତ୍ୟ ବୋଲି ମତ ପ୍ରଦାନ କରନ୍ତି । ଏହି ମତର ବିରୋଧାଚରଣ କରି ଏହାର ବୈଶିଷ୍ଟ୍ୟ ସଂପର୍କରେ କବି ହୋସେନ୍ ରବି ଗାନ୍ଧୀ କହନ୍ତି –

"ତେଣୁ ଏହି ବୈପ୍ଳବିକ ସ୍ୱରକୁ କେହି ପ୍ରଚାରଧର୍ମୀ କହୁ, କେହି ପାମ୍ଫଲେଟ୍ ସାହିତ୍ୟ କହୁ ବା, ଷ୍ଟେଟ୍‌ମେଣ୍ଟ କହୁ, ଯାଏ ଆସେନା । କିନ୍ତୁ ଆଗାମୀ ରକ୍ତିମ ସକାଳରେ ଏହା ହିଁ ବିବେଚିତ ହେବ ଓଡ଼ିଶାର ଶ୍ରେଷ୍ଠ ସାହିତ୍ୟ ରୂପରେ ।"(୩୬)

କବିତାରେ ବୈପ୍ଳବିକ ସ୍ୱର ସଂପର୍କରେ କରାଯାଇଥିବା ଆଲୋଚନାରୁ ଏହା ପ୍ରତୀୟମାନ ହୁଏ ଯେ, ଏହି ସ୍ୱର ଯନ୍ତ୍ରଣାକ୍ଲିଷ୍ଟ ଅଗଣିତ ଜନତାର । ହତାଶା, ନୈରାଶ୍ୟ, ଅତ୍ୟାଚାର ମଧ୍ୟରୁ ଯାହାର ସୃଷ୍ଟି । ଏହା ନୂତନତାର ଆବାହନ କରିବା ସଙ୍ଗେସଙ୍ଗେ ଆଗାମୀକାଲି ପାଇଁ ଏକ ନୂତନ ସମ୍ଭାବନା ଭରିଦିଏ । ଅତ୍ୟାଚାରର ଅଂଧାରୀ ରାଜ୍ୟକୁ ଚୂର୍‌ମାର୍ କରି ସମାଜ ଜୀବନରେ ଶାନ୍ତିପୂର୍ଣ୍ଣ ବାତାବରଣର ଆଗମନ ପାଇଁ ଗଣମାନସକୁ ବିପ୍ଳବର ମହାମନ୍ତ୍ରରେ ଦୀକ୍ଷିତ କରାଏ । ଏହି କାଳଜୟୀ ମହାମନ୍ତ୍ର ଏକ ସମୃଦ୍ଧ ସମାଜର ମାନଚିତ୍ର ଅଂକନ କରିବା ସହିତ ଆଗାମୀ କାଲିକୁ ସ୍ୱର୍ଣ୍ଣାଭ କରି ଗଢ଼ିତୋଳିଥାଏ ।

## କବିତାରେ ସାମାଜିକ ଅଙ୍ଗୀକାରବଦ୍ଧତା

କବିତାରେ ସାମାଜିକ ଅଂଗୀକାରବଦ୍ଧତା ସଂପର୍କରେ ଆଲୋଚନା କରିବା ଅବକାଶରେ ପ୍ରଥମେ ମନକୁ ପ୍ରଶ୍ନ ଆସେ ଏହି ସାମାଜିକ ଅଂଗୀକାରବଦ୍ଧତା କ'ଣ ? ସାହିତ୍ୟରେ ପ୍ରତିଫଳିତ ହେଉଥିବା ସମାଜର ପ୍ରତିବିମ୍ବ ସହିତ ଏ ଅଂଗୀକାରବଦ୍ଧତା କ'ଣ ସମାନ ? ଏମିତି ବହୁ ପ୍ରଶ୍ନ ଆନ୍ଦୋଳିତ ହୋଇଥାଏ । ଉତ୍ତରରେ କୁହାଯାଇପାରେ, ପ୍ରତ୍ୟହ ସମାଜରେ ଘଟୁଥିବା ବହୁବିଧ ଘଟଣାବଳୀ ସାହିତ୍ୟରେ ରୂପ ପାଇଥାଏ । ସମୟର ସ୍ରୋତରେ ସମାଜ ପରିବର୍ତ୍ତିତ ହେବା ସହିତ ସାହିତ୍ୟର ସ୍ୱର ମଧ୍ୟ ବଦଳିଥାଏ । ପ୍ରତ୍ୟେକ ସମୟର ଚିତ୍ରକୁ ସାହିତ୍ୟ ଉତ୍ତୋଳିତ କରିବା ସହିତ ସମାଜକୁ ନୂତନ ଦିଗ୍‌ଦର୍ଶନ ପ୍ରଦାନ କରିଥାଏ । ଅତୀତ, ବର୍ତ୍ତମାନ ଓ ଭବିଷ୍ୟତକୁ ଏକତ୍ର ଗୋଟିଏ ସୂତ୍ରରେ ଧରି ରଖି ସଠିକ୍ ମାର୍ଗ ନିର୍ଦ୍ଧାରଣ କରିଥାଏ ସାହିତ୍ୟ । ପ୍ରାଣନାଥ ପଟ୍ଟନାୟକଙ୍କ ମତରେ –

"ଏହାରି ଜରିଆରେ ସମାଜର ଅତୀତ ଜୀବନ ବହୁ ପରିମାଣରେ ପ୍ରତିବିମ୍ବିତ ହୁଏ । ବର୍ତ୍ତମାନ ଜୀବନ ପ୍ରତିଭାତ ହୁଏ ଏବଂ ଭବିଷ୍ୟତ ଜୀବନ ସ୍ପନ୍ଦିତ ହୁଏ ।"(୩୭)

ତା' ହେଲେ ଏଥିରୁ ପ୍ରତିପାଦିତ ହୁଏ ସାହିତ୍ୟ ସମାଜର ମୁକୁର । କିନ୍ତୁ ଏହି ଅଂଗୀକାରବଦ୍ଧତା କ'ଣ ? ଏହାର ମଧ୍ୟ ଏକ ନିର୍ଦ୍ଦିଷ୍ଟ ଅର୍ଥ ରହିଛି । ସାହିତ୍ୟ ସ୍ରଷ୍ଟା ସମାଜ ଓ ବ୍ୟକ୍ତି ଏ ତିନୋଟି ପରସ୍ପର ସହିତ ନିବିଡ଼ ଭାବରେ ସଂପୃକ୍ତ । ସମାଜ ମଧ୍ୟରୁ ଯେମିତି ବ୍ୟକ୍ତିର ସୃଷ୍ଟି, ଲେଖକ ମଧ୍ୟ ସେମିତି ଏକ ସାମାଜିକ ବ୍ୟକ୍ତିତ୍ୱ । ସମାଜ ମଧ୍ୟରେ ତା'ର ଜନ୍ମ ଓ ଦେହ ମନ ଆତ୍ମା ମଧ୍ୟ ସମାଜ ମଧ୍ୟରେ ପରିପୁଷ୍ଟ ହୋଇଥାଏ । ସମାଜକୁ ବାଦ୍ ଦେଇ ତା'ର ବ୍ୟକ୍ତିତ୍ୱ ଅସଂପୂର୍ଣ୍ଣ । ସମାଜର ଘଟଣା, ଅଘଟଣ ତାକୁ ଯେତେ ମାତ୍ରାରେ ପ୍ରଭାବିତ କରେ ସେଥିମଧ୍ୟରୁ ସେ ଯେଉଁ ଅଭିଜ୍ଞତା ଆହରଣ କରେ ତା'ର ଯଥାଯଥ ରୂପ ସାହିତ୍ୟରେ ପ୍ରକାଶ ପାଏ । ସମାଜରେ ଦେଖାଦେଉଥିବା ଏ ପ୍ରକାର ଅଘଟଣ ବା' ଘାତପ୍ରତିଘାତର ପ୍ରତିକାର ପାଇଁ ସେ ପ୍ରୟାସୀ ହୋଇଉଠେ । ଲେଖକର ଏ ପ୍ରକାର ପ୍ରତିକାର ଜିଜ୍ଞାସା ଯେତେ ଗଭୀର ହୁଏ ତା'ର ବ୍ୟକ୍ତିତ୍ୱ ସେତିକି ପରିମାଣରେ ହୋଇଉଠେ ସମାଜ ପ୍ରତି ଅଂଗୀକାରବଦ୍ଧ । ଏହି ଅଂଗୀକାରବଦ୍ଧତା ତାକୁ ଏପରି ସ୍ଥଳରେ ନେଇ ପହଞ୍ଚାଇଦିଏ ଯେ ଯଦ୍ୱାରା କି ତା'ର ସୃଷ୍ଟିରେ ସମାଜର ନିଛକ ସତ୍ୟ ସବୁ ଉଦ୍‌ଘାଟିତ ହୋଇଥାଏ । ପରିବର୍ତ୍ତନକାମୀ ସମାଜକୁ କିପରି ଅବକ୍ଷୟର ଗ୍ରାସରୁ ମୁକୁଳାଯାଇ ପାରିବ ସେଥିପାଇଁ ସେ ଯଥାସମ୍ଭବ ପ୍ରଚେଷ୍ଟା ଜାରିରଖେ । ଏ ସଂପର୍କରେ ଡଃ ଗଂଗାଧର ବଳଙ୍କ ମନ୍ତବ୍ୟକୁ ଏଠାରେ ଉପସ୍ଥାପନ କରାଯାଇପାରେ । ଡଃ ବଳଙ୍କ ମତରେ – "ମଣିଷ ଜୀବନ ଓ ସମାଜ ଅବଶ୍ୟ ପରିବର୍ତ୍ତନଶୀଳ । ପରିବର୍ତ୍ତନ ହୁଏତ ବିକାଶ ବା ଅବକ୍ଷୟର ସଂକେତ ବହନ କରେ । ଅଭାବ, ଅସନ୍ତୋଷ ଓ ଅବକ୍ଷୟ ଦେଖାଗଲେ ଲେଖକର ଗଠନ ତଥା ଉତ୍ତରଣ ଅଭିମୁଖୀ ପ୍ରାଣ ତା'ର ପ୍ରତିକାରର ଭାବନା ମନରେ ପୋଷି ତା'ର ଶିଳ୍ପକୁ ରୂପ ଦିଏ ।"(୩୮)

ଯେତେବେଳେ ସମାଜ ଜୀବନ ଅବକ୍ଷୟାଭିମୁଖୀ ହୋଇ ପଡ଼େ ସେତେବେଳେ ନ୍ୟସ୍ତସ୍ୱାର୍ଥଗୋଷ୍ଠୀମାନେ ସମାଜକୁ ନାନା ଦିଗରୁ ଲୁଣ୍ଠନ କରନ୍ତି । ରାଜନୀତି, ଅର୍ଥନୀତି, ଧର୍ମ, ସଂସ୍କୃତି ସବୁକିଛି ଏମାନଙ୍କର କବ୍‌ଜାକୁ ଚାଲିଯାଏ । ସାହିତ୍ୟ ମଧ୍ୟ ଏଥିରୁ ବାଦ୍ ପଡ଼େ ନାହିଁ । ଏ ପ୍ରକାର ପରିବେଶକୁ ଯେଉଁ ସ୍ରଷ୍ଟା ତାଙ୍କ ଲେଖନୀରେ ସ୍ଥାନ ଦିଅନ୍ତି ସେହି ସ୍ରଷ୍ଟାଙ୍କୁ ହିଁ ଅଂଗୀକାରବଦ୍ଧ ସ୍ରଷ୍ଟାର ମାନ୍ୟତା ମିଳେ । ସମାଜ ଜୀବନକୁ ନିଜେ ତନ୍ନତନ୍ନ ଭାବରେ ପରୀକ୍ଷା କରି ସାହିତ୍ୟରେ ତାକୁ ସ୍ଥାନ ଦେଇ ଜନସାଧାରଣଙ୍କ ଭିତରେ ଉଷ୍ଣତା ଭରିଦେଇ ଥାଏ ଏହି ଅଂଗୀକାରବଦ୍ଧସ୍ରଷ୍ଟା । ସମାଜ ଜୀବନର ବାସ୍ତବ ନିଖୁଣ ଚିତ୍ର ପାଲଟିଯାଏ ତା'ର ମୁଖ୍ୟ ବର୍ଣ୍ଣନାର ବସ୍ତୁ ।

ଏହି ସାମାଜିକ ଅଂଗୀକାରବଦ୍ଧତା ଋଷୀୟ ସାହିତ୍ୟିକ ମାର୍କସିମ୍ ଗୋର୍କୀ, ମାୟୋକୋଭସ୍କି, ଫରାସୀ ସାହିତ୍ୟିକ ଲୁଇ ଆରାଗଁ ଓ ଏଲୟାର୍ ପ୍ରମୁଖ ସାହିତ୍ୟିକମାନଙ୍କ ରଚନାବଳୀରେ ପ୍ରଥମେ ପରିଦୃଷ୍ଟ ହୋଇଥିଲା । ବର୍ତ୍ତମାନ ଆଲୋଚନାର ପରିସର ମଧ୍ୟକୁ ଆସେ ଯେ, ଏହି ସାମାଜିକ ଅଂଗୀକାରବଦ୍ଧତା ପ୍ରଗତିବାଦ ସହିତ କେତେଦୂର ସଂଶ୍ଳିଷ୍ଟ ? କହିବାକୁ ଗଲେ ଏହା ପ୍ରଗତିବାଦୀ ଚିନ୍ତାଧାରାର ଏକ ଅଂଶବିଶେଷ । ପ୍ରଗତିବାଦୀ ଚିନ୍ତାଧାରାର କେନ୍ଦ୍ରସ୍ଥଳୀ ଯେଉଁ ସମାଜ ଜୀବନକୁ ନେଇ ପର୍ଯ୍ୟବେସିତ ସାମାଜିକ ଅଂଗୀକାରବଦ୍ଧତା ମଧ୍ୟ ତାହାରି ଉପରେ ପର୍ଯ୍ୟବେସିତ । ସମାଜର ପ୍ରତ୍ୟେକ ସମୟ ଓ ଅବସ୍ଥାର ଚିତ୍ର ସାଂଗକୁ ପୁଂଜିବାଦୀ ବ୍ୟବସ୍ଥାର ଧ୍ୱଂସ ଏହାର ମୂଳଲକ୍ଷ୍ୟ । 'Marxist Literature an Anthology' ରେ କୁହାଯାଇଛି – "Therefore socialist realism must draw most heavily on the workers and peasant cultures if it is to rise to its historical task and make a new sort of art which is equal to evoking, what is takes to creat a new way of life." (39)

ଅର୍ଥାତ୍ ସମାଜବାଦୀ ବାସ୍ତବତା ସଦାସର୍ବଦା ଶ୍ରମିକ ଏବଂ କୃଷକମାନଙ୍କୁ ପ୍ରାଧାନ୍ୟ ଦେଇଥାଏ । ସେମାନଙ୍କର ସଂସ୍କୃତିକୁ ଦୃଷ୍ଟିସମ୍ମୁଖରେ ରଖି ସେମାନଙ୍କର କ୍ରିୟାକଳାପ ସଂପର୍କରେ ସଚେତନ କରାଇଥାଏ । ତେଣୁ ଏଥିରୁ ପ୍ରତିପାଦିତ ହୁଏ ସାମାଜିକ ଅଂଗୀକାରବଦ୍ଧତା ପ୍ରଗତିବାଦୀ ଚେତନା ସହିତ ନିବିଡ଼ ଭାବରେ ସଂଶ୍ଳିଷ୍ଟ । 'ପ୍ରଗତିବାଦ' ଯେମିତି ଶ୍ରମିକ ଓ କୃଷକ ଶ୍ରେଣୀକୁ ଗୁରୁତ୍ୱ ଦିଏ ସାମାଜିକ ବାସ୍ତବତା (ଅଂଗୀକାରବଦ୍ଧତା) ମଧ୍ୟ ସମାଜର ନିମ୍ନବର୍ଗର ଜନତାକୁ ପ୍ରାଧାନ୍ୟ ଦେବା ସହିତ ସେମାନଙ୍କର ସର୍ବାଙ୍ଗୀନ ଉନ୍ନତି ପାଇଁ ବୈପ୍ଳବିକ ପରିବର୍ତ୍ତନର ଆନୟନ କରିଥାଏ ।

ଭାରତୀୟ ସାହିତ୍ୟରେ ବିଂଶ ଶତାବ୍ଦୀର ତୃତୀୟ / ଚତୁର୍ଥ ଦଶକ ବେଳକୁ ସାମାଜିକ ପ୍ରତିବଦ୍ଧତାରୂପୀ ସ୍ୱରର ଶୁଭଶଙ୍ଖ ନିନାଦିତ ହୋଇଥିଲା ସର୍ବଭାରତୀୟ ସ୍ତରରେ ଗଢ଼ି ଉଠିଥିବା 'ପ୍ରଗତିବାଦୀ ଲେଖକ ସଂଘ' ମାଧ୍ୟମରେ । ଓଡ଼ିଆ ସାହିତ୍ୟରେ ମଧ୍ୟ ଏହି ଚିନ୍ତାଧାରାର ଉନ୍ମେଷ ଘଟିଥିଲା ୧୯୩୦ ମସିହା ବେଳକୁ । ପ୍ରଗତିବାଦୀ ଚିନ୍ତାଧାରା ଏକ ସାଂଗଠନିକ ରୂପ ପାଇବା ପୂର୍ବରୁ ଓଡ଼ିଶାର ସାମସମୟିକ ସାମାଜିକ ଜୀବନରେ ପରିବର୍ତ୍ତନ ଆଣିବା ପାଇଁ ଆତ୍ମପ୍ରକାଶ କରିଥିଲା 'ସାରଥି' ପତ୍ରିକା । ପତ୍ରିକାଟି ସାମସମୟିକ ସାମାଜିକ ଚିତ୍ରକୁ ଧରିରଖି ପ୍ରଗତିବାଦର ବାର୍ତ୍ତା ପ୍ରଚାର କ୍ଷେତ୍ରରେ ପ୍ରମୁଖ ଭୂମିକା ଗ୍ରହଣ କରିଥିଲା । ଏ ସଂପର୍କରେ ଡଃ ବିଜୟ ଶତପଥୀ ମତପ୍ରଦାନ କରନ୍ତି –

"ଓଡ଼ିଆ ସାହିତ୍ୟରେ ପ୍ରଗତିବାଦୀ ଚେତନା ଏକ ସାଂଗଠନିକ ରୂପ ନେବା ଆଗରୁ ଏବଂ କ୍ରାନ୍ତି ଆଣିବା ପୂର୍ବରୁ ଓଡ଼ିଶାର ରାଜନୈତିକ ଦିଗ୍‌ବଳୟ ଏହାର ଶୁଭ

ପଞ୍ଚଜନ୍ୟ ନିନାଦରେ ମୁଖରିତ ହୋଇ ସାରିଥିଲା । 'ସାରଥି' ଓଡ଼ିଶାର ତତ୍କାଳୀନ ସାମାଜିକ ଏବଂ ରାଜନୈତିକ ପ୍ରାଣସ୍ପନ୍ଦନକୁ ଯେପରି ଧରି ରଖିଛି ତାହା ଅନୁଶୀଳନ କଲେ ଜଣାପଡ଼େ ।"(୪୦)

'ସମାଜ'ର ସଂପାଦକୀୟରେ ଋଷ୍ ବିପ୍ଳବ, ଲେନିନ୍ ଓ କମ୍ୟୁନିଷ୍ଟ ପାର୍ଟି ସଂପର୍କରେ ପ୍ରକାଶ ପାଇଥିବା ଲେଖାମାନ ସମାଜବାଦୀ ଅଂଗୀକାରବଦ୍ଧତା ପ୍ରତି ପାଠକୀୟ ଚିନ୍ତା ଚେତନା ବଢ଼ାଇବାରେ ସହାୟକ ହୋଇଥିଲା । ଏତଦ୍‌ବ୍ୟତୀତ ନବଯୁଗ ସାହିତ୍ୟ ସଂସଦର ପ୍ରତିଷ୍ଠା ଓ ଏହାର ମୁଖପତ୍ର ଭାବେ 'ଆଧୁନିକ' ପତ୍ରିକାର ଆତ୍ମପ୍ରକାଶ ସାଙ୍ଗକୁ ଋଷ୍ ବିପ୍ଳବର ପ୍ରଭାବ ଓ ଦେଶବ୍ୟାପୀ ସ୍ୱାଧୀନତା ଆନ୍ଦୋଳନର ତୀବ୍ର ବହ୍ନି ସାମାଜିକ ଅଂଗୀକାରବଦ୍ଧ ସାହିତ୍ୟ ସର୍ଜନା କରିବା ପାଇଁ ପ୍ରେରଣା ପ୍ରଦାନ କରୁଥାଏ । ଯେଉଁ କବିଗଣ ଏହାକୁ ମୁଖ୍ୟ ବିଷୟ ଭାବେ ଗ୍ରହଣ କରି ନିଜସ୍ୱ ସୃଷ୍ଟିକୁ ସମୃଦ୍ଧ କରିପାରିଥିଲେ ସେମାନଙ୍କ ମଧ୍ୟରୁ ସଚ୍ଚିଦାନନ୍ଦ ରାଉତରାୟ, ଅନନ୍ତ ପଟ୍ଟନାୟକ, ମନମୋହନମିଶ୍ର, ରଘୁନାଥ ଦାସ, ଲକ୍ଷ୍ମୀଧର ନାୟକ, ସୁନନ୍ଦକର ପ୍ରମୁଖ ଅନ୍ୟତମ ।

ତିରିଶ ଦଶକରେ ଏକ ଯୁବ ସୁଲଭ ଉଦ୍ଦାମତା ଓ ବୈପ୍ଳବିକ ଅନୁଚିନ୍ତାକୁ ନେଇ କବି ସଚ୍ଚିଦାନନ୍ଦ ସାମାଜିକ ଅଙ୍ଗୀକାରବଦ୍ଧ କବିତା ରଚନା କରନ୍ତି । କବିଙ୍କର କବିତାଗୁଡ଼ିକ ବାସ୍ତବତାର ପଟ୍ଟଭୂମି ଉପରେ ରଚିତ । ସେଗୁଡ଼ିକ କଳ୍ପନା ବିଳାସିତାକୁ ପରିହାର କରି ଜୀବନର ଜୟଗାନ କରିବାକୁ ସମର୍ଥ । ତେଣୁ କବି ରାଉତରାୟ ଏ ସମାଜକୁ ଶୁଣାନ୍ତି ଜୀବନର ମୁକ୍ତିଗୀତିକା । କବିଙ୍କ ଭାଷାରେ –

"ସାହିତ୍ୟ ନୁହଁଇ ଖାଲି ଫୂର୍ତ୍ତି ଆଉ ବିଳାସର ଫୁଲ
ଜାତିକୁ ଦେବ ସେ ମୁକ୍ତି ତେବେ ଯାଇ ଚରମ ତା ମୂଲ୍ୟ ।
ଜୀବନର ମହାରଣେ ବିପ୍ଳବର ଜୟ ବେଦୀ ପରେ
ସାହିତ୍ୟର ଅଭିଷେକ ।" (୪୧)

ପୁଣି 'ରାଜଜେମା' କବିତାରେ କହିଲେ –

"ଯାହା ସତ୍ୟ ତାହା କବିତା
ମଣିଷର ଜୀବନ ବୋଧର ଛବିତା ।"(୪୨)

ଭାଗ୍ୟ ଭଗବାନ ଓ ଧର୍ମ ବିରୋଧୀ ସ୍ୱର ସାଙ୍ଗକୁ ନିରୀହ ଚାଷୀ ମୂଲିଆର ହୃଦୟର ବ୍ୟଥା କବିଙ୍କୁ ସାମାଜିକ ଅଂଗୀକାରବଦ୍ଧ ସ୍ରଷ୍ଟାରେ ପରିଣତ କରିଦିଏ । ଯେଉଁ ସବୁ କାରଣ ଗୁଡ଼ିକ ସମାଜକୁ ବିପର୍ଯ୍ୟସ୍ତ କରିଦେଇଛି ସେ ସବୁକୁ ସମୂଳେ ଉତ୍ପାଟିତ କରିବା ପାଇଁ କବି ସଚ୍ଚିଦାନନ୍ଦ ପ୍ରତିଜ୍ଞାବଦ୍ଧ ହୁଅନ୍ତି । କବିଙ୍କର ଏ ପ୍ରକାର ଚେତନାର ଦୀପ୍ତ ପରିପ୍ରକାଶ ଘଟିଛି 'ଅଭିଯାନ' ସଂକଳନସ୍ଥ କବିତା ଗୁଡ଼ିକରେ ।

ସଂକଳନର ଭୂମିକାରେ କବି କହନ୍ତି –

"ଏ ଯୁଗ ସର୍ବହରାର ଯୁଗ । ସମସ୍ତ ସାମ୍ରାଜ୍ୟବାଦ ବିରୋଧୀ ଓ ପ୍ରତିକ୍ରିୟା ପରିପନ୍ଥୀ ଶକ୍ତି ମାନଙ୍କୁ ଏକଜୁଟ କରି ଶ୍ରେଣୀହୀନ ସମାଜ ଗଠନ ଦିଗରେ ନିୟୋଜିତ କରିବା ହିଁ ଏ ଯୁଗର ବିଶେଷ ଐତିହାସିକ ଦାୟିତ୍ୱ । ସାହିତ୍ୟ ଯଦି ଏ ବିଶେଷ ଦାୟିତ୍ୱର ବାର୍ତ୍ତାବହ ହୋଇନପାରିଲା, ତେବେ ତାହା ଚିରଦିନ ମେରୁଦଣ୍ଡହୀନ ଏବଂ Escapist tendency ହାତରୁ ଉଦ୍ଧାର କରି ବିପ୍ଳବାତ୍ମକ ବିଚାରଧାରାର ବାହାନ କରିବା ଦିଗରେ 'ଅଭିଯାନ' ଯଦି କିୟତ୍ ପରିମାଣରେ ଅଗ୍ରସର ହୋଇ ପାରିଥାଏ, ତେବେ ଲେଖକ ନିଜକୁ କୃତାର୍ଥ ମଣିବ ।" (୪୩)

ଧନୀକ ଶ୍ରେଣୀର ହାତଗଢ଼ା ଧର୍ମ, ସମାଜରେ ଯାବତୀୟ ନୀତିନିୟମ, ସମାଜନୀତି ବିରୋଧରେ ଦୃଢ଼ ପ୍ରତିବାଦ କରନ୍ତି କବିରାଉତରାୟ । ନିମ୍ନ ବର୍ଗର ଜନସାଧାରଣଙ୍କର ଅଧିକାର ହାସଲ୍ କେବଳ ନୁହେଁ, ଶୋଷଣ ବିହୀନ ସମାଜ ଗଠନ କରିବା ପାଇଁ କବି ଆଶାୟୀ ହୋଇ ପଡ଼ନ୍ତି । କବିଙ୍କର ଏ ପ୍ରକାରର ସାମାଜିକ ଅଂଗୀକାର ବଦ୍ଧତାକୁ ନେଇ ତିରିଶ / ଚାଳିଶ ଦଶକର କବିତାଗୁଡ଼ିକ ଶାଣିତ । କବିଙ୍କର କବିତା ଶ୍ରମଜୀବୀ ମଣିଷର ଦୁଃଖ, ବ୍ୟଥା ଓ ବେଦନାକୁ ନେଇ ଗତିଶୀଳ । ପୁଂଜିବାଦୀ ସମାଜ ବ୍ୟବସ୍ଥାର ବିଲୋପ ସାଧନ କରିବା ପାଇଁ କବି କିପରି ଆହ୍ୱାନ ପ୍ରଦାନ କରୁଛନ୍ତି ତାହା ନିମ୍ନୋକ୍ତ ପଂକ୍ତିରୁ ପ୍ରତୀୟମାନ ହୁଏ,

"ଆରେ ରେ ଶ୍ରମିକ, ଚାଷୀ ଓ ମୂଲିଆ, ଆରେ ବୁଭୁକ୍ଷୁ ଦଳ
ତୁମେ ତ' ଗଢ଼ିଛ ତୁମରି ପାଇଁ କି, ତୋପ ଓ ବାରୁଦ କଳ
ତୁମେ ତ' ଗଢ଼ିଛ ଜୀବନକୁ ନାଶି, ବଂଧୁକ ଆଉ ନଳୀ
ତୁମରି ହାଡ଼ରେ ରେଖ ତାହାର, ସଂଗିନ ଯାଏ ଗଳି
ତୁମେ ବନାଇଛ ଦେହେ ଝାଳ ମାରି, ବିରାଟ କାରଖାନା
ସେ ଅତିଥି ଶାଳୁ ଆସ ତୁମ ପାଇଁ ତେଣୁ ସଦା ପରବାନା ।"(୪୪)

କବି ରାଉତରାୟ ମୁକ୍ତିକାମୀ କବି । ତେଣୁ ସକଳ ପ୍ରକାର ଶୋଷଣ ଅତ୍ୟାଚାରର କିପରି ବିନାଶ ଘଟି, ଶ୍ରମିକ, ଚାଷୀ, ମୂଲିଆ ସୁସ୍ଥ ଜୀବନ ଯାପନ କରିପାରିବେ, ତାହା ତାଙ୍କର ଏକମାତ୍ର ଲକ୍ଷ୍ୟ । ଯେଉଁମାନେ ସମାଜରେ ସକଳ ଉନ୍ନତି ବିଧାନ କରନ୍ତି, ସେମାନଙ୍କୁ ଅବହେଳିତ ଜୀବନ ଯାପନ ପ୍ରଣାଳୀରୁ ମୁକ୍ତି ଦେବା ପାଇଁ ଅଂଗୀକାରବଦ୍ଧ କବି ଦୃପ୍ତ ଆହ୍ୱାନ ଦିଅନ୍ତି –

"ଆଜି ସକାଳେ ମୁଁ ପ୍ରଣାମ କରୁଛି
ପ୍ରଗତିର ପତାକାରେ

ଶୋଷଣର ଲାଗି ଶାଣିତ କରୁଛି ଘୃଣା
ସବୁ ଦଗାବାଜ୍, ଦାଗୀ ଓ ମୁନାଫାଖୋର୍
ଧ୍ୱଂସର ଲାଗି ଦିଏ ମୁଁ ଆଦେଶ ନାମା
ଆଦେଶ ଦିଏ ମୁଁ ଆଦେଶ ଦିଏ ମୁଁ ଆଜି
ଦୂରକର ସବୁ ଜୁଲମ୍, ଶୋଷଣ ବାଜି
ସବୁ ଧଡ଼ିବାଜ ପଙ୍ଗପାଳର ଦଳେ
ଦୀପ୍ତ କ୍ରୋଧର ଦାବାନଳେ ପୋଡ଼ ଖୋଜି
ଆଜି ସକାଳେ ମୁଁ ବନ୍ଦନା କରେ
ଜନତାର ଫଉଜରେ ।" (୪୫)

କବିଙ୍କର ସାମାଜିକ ଅଂଗୀକାରବଦ୍ଧ କାବ୍ୟସ୍ୱର କେବଳ ସାଧାରଣ ମଣିଷ ସମାଜର କଥା ହିଁ କହିଛି । ସେମାନଙ୍କର ଉନ୍ନତି କବିତାର ଚରମ ଲକ୍ଷ୍ୟ ପାଲଟିଛି । ତେଣୁ କୋଣାର୍କର କଳା କାରିଗରୀରେ କବି ରାଜାଙ୍କର କୃତିତ୍ୱକୁ ଦେଖି ନାହାନ୍ତି । ଲକ୍ଷ ଲକ୍ଷ ସାଧାରଣ ମଣିଷର ଲହୁଲୁହକୁ ହୃଦୟଙ୍ଗମ କରିଛନ୍ତି । ସେମାନଙ୍କର ମହିମାଗାନ କରିଛନ୍ତି । କବିଙ୍କ କବିତାରେ ଦେଖାଦେଇଥିବା ଅଂଗୀକାରବଦ୍ଧତାର ଜୁଆରରେ ଭଟ୍ଟା ପଡ଼ିଆସେ ଷାଠିଏ ଦଶକ ବେଳକୁ । ସାମସମୟିକ କବି ଅନନ୍ତ ପଟ୍ଟନାୟକ ମଧ୍ୟ ସାମାଜିକ ଅଂଗୀକାରବଦ୍ଧତାର ସ୍ରୋତରେ ନିଜକୁ ସାମିଲ୍ କରି ନିଅନ୍ତି । ଶୋଷଣମୁକ୍ତ ସମାଜ ଗଠନ ପାଇଁ ପ୍ରଚେଷ୍ଟା ତାଙ୍କ କବିତାରୁ ସହଜରେ ବାରି ହୋଇପଡ଼େ । ସାଧାରଣ ମଣିଷର ଶକ୍ତି ଉପରେ ତାଙ୍କର ଅଖଣ୍ଡ ଆସ୍ଥା ଓ ବିଶ୍ୱାସ । ଏ ପ୍ରକାର ଅମୋଘ ଅସ୍ତ୍ର ମାଧ୍ୟମରେ କବି ସମାଜ ବ୍ୟବସ୍ଥାରେ ପରିବର୍ତ୍ତନ ଆଣିବା ପାଇଁ ପ୍ରତିଶ୍ରୁତିବଦ୍ଧ । ଏ ସଂପର୍କରେ ଡଃ ବୈଷ୍ଣବ ଚରଣ ସାମଲ ମତପ୍ରଦାନ କରନ୍ତି ଯେ–

"ସମାଜ ପରିବର୍ତ୍ତନର ଏକ ଅସ୍ତ୍ୟାତ୍ମକ ଆଶାବାଦ ତାଙ୍କ କବିତାର ଛତ୍ରେ ଛତ୍ରେ ଝଙ୍କୃତ । ମୃତ୍ୟୁର କାତରତା ନାହିଁ, ଅସହାୟ ଆତ୍ମାର ବିଳାପ ନାହିଁ । ଅତିନ୍ଦ୍ରୀୟ ଚେତନା ପ୍ରତି ଆଗ୍ରହ ନାହିଁ । ଅଛି ମଣିଷର ଶକ୍ତି ଓ ବିଶ୍ୱାସର ଆବିଷ୍କାର ପାଇଁ ଅଭୀପ୍‌ସା ଓ ସମାଜର କ୍ରାନ୍ତି ପାଇଁ ଦୁର୍ବାର ପ୍ରେରଣା ।" (୪୬)

କବିଙ୍କର ଅଂଗୀକାରବଦ୍ଧ ଆତ୍ମା ମଣିଷ ସମାଜର ଜୟଗାନ କରିଛି । ସମାଜନୀତି ଓ ଅର୍ଥନୀତି ପ୍ରତ୍ୟେକ କ୍ଷେତ୍ରରେ ସେ ମଣିଷର ଅଧିକାର ସାବ୍ୟସ୍ତ କରିଛନ୍ତି । ସମାଜ ମଧ୍ୟରେ ସାମ୍ୟବାଦୀ ଶୋଷଣମୁକ୍ତ ସମାଜ ଗଠନ ପାଇଁ ଶାନ୍ତିର ଶିଖା ପ୍ରଜ୍ୱଳିତ କରିଛନ୍ତି କବି ଅନନ୍ତ । ବିଶ୍ୱଶାନ୍ତିର ଆବାହକ ଭାବରେ ଗାନ କରିଛନ୍ତି –

"ଶାନ୍ତି ଆମ ତରୁଣ ସାଧନାରେ ସୃଜନର ବିଳାସ
ବୃଦ୍ଧ ମନେ ତାରୁଣ୍ୟର ଦ୍ୟୋତନା ।
ଶାନ୍ତି ଆମ ଶ୍ୱେତ ମଲ୍ଲୀ ଶୋଣିତାଶା-ପଳାଶ
ସୀମାହୀନ ଜୀବନର ନବନବ ଚେତନା ।" (୪୭)

ସାମସମୟିକ କବି ମନମୋହନ ମିଶ୍ର, ରଘୁନାଥ ଦାସ, ସୁନନ୍ଦକର ମଧ୍ୟ ସାମାଜିକ ଅଙ୍ଗୀକାରବଦ୍ଧତାର ସ୍ରୋତ୍ରୁ ନିଜକୁ ଦୂରେଇ ରଖିପାରିନାହାନ୍ତି । କବି ମନମୋହନଙ୍କର ଅଂଗୀକାରବଦ୍ଧତାର ପରିଚୟ ମିଳେ ସେତିକିବେଳେ ଯେତେବେଳେ କବି ଜାତି, ବର୍ଣ୍ଣ, ଧର୍ମ ନିର୍ବିଶେଷରେ ଏକଜୁଟ୍ ହୋଇ ଶୋଷଣ ବିରୋଧୀସ୍ୱର ଉତ୍ତୋଳନ କରନ୍ତି:-

"ଆସ ଭାଇ ହିନ୍ଦୁ ମୁସଲ୍‌ମାନ
ଆସ ମଜଦୁର୍ ଲିଗ୍ ଯବ୍‌ାନ୍
ମୁକତି ମିଳିଛି କାହିଁ ବିନା କୁର୍ବାନ୍
ବିନା ରକତେ କି ବାନ୍ଧେ ଦ୍ରୌପଦୀ ଜୁଡ଼ା
ଗୋରା ପଲଟଣ ମାରୁଅଛି ମଉଜ
ତା'ରକତେ ରଂଗା ତୋର ନିଶାଣ ଉଡ଼ା ।" (୪୮)

କବି ରଘୁନାଥ ଦାସଙ୍କର ଅଂଗୀକାରବଦ୍ଧତାର ପ୍ରମାଣ ମିଳେ 'ଅଗଷ୍ଟ ପନ୍ଦର ୧୯୪୭', '୧୯୪୮', '୧୯୪୯' ନାମକ ତିନୋଟି କବିତାରୁ । ଗାନ୍ଧିଜୀଙ୍କର ଆପ୍ରାଣ ଉଦ୍ୟମ ଏ ଦେଶବାସୀଙ୍କୁ ସ୍ୱାଧୀନତାର ସ୍ୱାଦ ଚଖାଏ । କିନ୍ତୁ ଏ ଦେଶର ଜନସାଧାରଣଙ୍କର ମାନସିକତାରେ କୌଣସି ପରିବର୍ତ୍ତନ ଘଟେ ନାହିଁ । ହତ୍ୟା, ଧର୍ଷଣ, ଲୁଣ୍ଠନ ବେଳକୁବେଳ ବଢ଼ିଚାଲେ । ତେଣୁ ଜଣେ ସାର୍ଥକ ସମାଜ ସଚେତନ ସ୍ରଷ୍ଟା ଭାବେ କବି ରଘୁନାଥ ଏ ଦେଶର ଜନସାଧାରଣଙ୍କୁ ଆହ୍ୱାନ ଦିଅନ୍ତି- "ଏ ସଂଗ୍ରାମ ଅନ୍ତିମ ନୁହେଁ, ଆମକୁ ଆହୁତି ଆଗକୁ ଯିବାକୁ ଅଛି ।" ଆମ ଦେଶକୁ ଯାବତୀୟ ଅବ୍ୟବସ୍ଥା ମଧ୍ୟରୁ ମୁକୁଳାଇବାକୁ ପଡ଼ିବ । ଏଥିପାଇଁ ସଂଗ୍ରାମ ଏକାନ୍ତ ଆବଶ୍ୟକ । ତେଣୁ କବି ଦୃପ୍ତ କଣ୍ଠରେ ଆହ୍ୱାନ କରନ୍ତି –

"ଯାତ୍ରୀ ସାବଧାନ !
ତୋର ଏହି ଯାତ୍ରା ପଥେ ନୁହେ, ଏ ଯେ ଅନ୍ତିମ ସୋପାନ
ସଂଗ୍ରାମ ତୋ ସରିନି ଏବେ ବି,
ଏବେ ମଧ୍ୟ ଉର୍ଦ୍ଧ୍ୱେ ତୋର ଜନତାର ରକ୍ତ ମାଂସଲୋଭୀ
ଗୃଧ ପଲ ଚକ୍ର ମାରେ; ଝାମ୍ପିନିଏ ଶ୍ରମିକର ଆୟୁ
ଏବେ ମଧ୍ୟ ଭାତ ଥାଳି ଭାଗ କରେ ମାଲିକ ଓ ସାହୁ ।" (୪୯)

ସେହିପରି ସାମସମୟିକ କବି ଯୁଗନନ୍ଦଙ୍କର ମଧ୍ୟ ଅନୁରୂପ ଆଶା ପୋଷଣ କରନ୍ତି । ତାଙ୍କର ସାମାଜିକ ଅଂଗୀକାରବଦ୍ଧ ଦୃଷ୍ଟି କେନ୍ଦ୍ରୀଭୂତ ହୋଇଛି ଅନ୍ୟାୟ ଓ ଶୋଷଣ ନିକଟରେ । ସେ ଏହାର ବିଲୋପ ଘଟାଇ ଆଗାମୀ କାଲିକୁ ସୁସ୍ଥ, ସୁନ୍ଦର କରିବା ପାଇଁ ପ୍ରତ୍ୟେକ ମନୁଷ୍ୟର ଅନ୍ତରରେ ଆଗ୍ନେୟ ଆହ୍ୱାନର ତୀବ୍ର ବହ୍ନିଜାଳି ଦେଇଛନ୍ତି ।

ଉପରୋକ୍ତ କବିମାନଙ୍କର କବିତାରୁ ସ୍ପଷ୍ଟ ହୁଏ ଯେ, ୧୯୩୫ ମସିହା ପରବର୍ତ୍ତୀ ସମୟଠାରୁ ଓଡ଼ିଆ କବିତାରେ ଯେଉଁ ସାମାଜିକ ଅଂଗୀକାରବଦ୍ଧତା ପ୍ରକାଶ ପାଇଥିଲା, ତାହା ମୁଖ୍ୟତଃ ପୁଂଜିପତି ଓ ସର୍ବହରା ଗୋଷ୍ଠୀ ଉପରେ ଆଧାରିତ ଥିଲା ୧୯୫୦ ମସିହା ବେଳକୁ ସାମସମୟିକ ପରିବେଶ ଓ ପରିସ୍ଥିତି ଏହାକୁ ବଦଳାଇଦେଲା । ଦେଶ ସ୍ୱାଧୀନତା ଲାଭ କଲା ସତ, କିନ୍ତୁ ରାଜନୀତିକ ବାତାବରଣ କଳୁଷିତ ହୋଇ ପଡ଼ିଲା । ରାଜନୀତି ପାଲଟିଲା ଭୋଟ୍‌ସର୍ବସ୍ୱ । ଉଚ୍ଚ କଣ୍ଠ ସ୍ୱରର ସ୍ଲୋଗାନ୍ ସାଙ୍ଗକୁ ମିଛ ଇସ୍ତାହାର ପାଲଟିଲା ରାଜନୀତିର ମୁଖ୍ୟ ଧର୍ମ ସାମାଜିକ ମୂଲ୍ୟବୋଧ ହେଲା ଅବକ୍ଷୟଗାମୀ । ପାଶ୍ଚାତ୍ୟ ସଭ୍ୟତା, ସଂସ୍କୃତି, ସାହିତ୍ୟ ଆମକୁ ଏତେ ମାତ୍ରାରେ ପ୍ରଭାବିତ କଲା ଯେ, ସାହିତ୍ୟ ମଧ୍ୟକୁ ବ୍ୟକ୍ତିକୈନ୍ଦ୍ରିକତା, ଏଲିୟଟୀୟ ଚିନ୍ତାଧାରାର ଅନୁପ୍ରବେଶ ଘଟି ସାହିତ୍ୟକୁ ଭାରାକ୍ରାନ୍ତ କରିଦେଲା । ଏହି ସମୟରେ ସାମାଜିକ ଅଂଗୀକାରବଦ୍ଧ କାବ୍ୟ କବିତା ରଚନା ଧାରାକୁ ଆଗେଇ ନେବାକୁ ଅଣ୍ଟାଭିଡ଼ି ବାହାରିଲେ ବିପ୍ଳବୀ କବି ରବି ସିଂ ଏବଂ କବି ବ୍ରଜନାଥ ରଥ । ସାମ୍ୟବାଦୀ କାବ୍ୟ ଚେତନାର ସଂଗ୍ରାମୀ ସବ୍ୟସାଚୀ କବି ରବି ସିଂ ଯାହାଙ୍କର କବିତାର ଛତ୍ରେ ଛତ୍ରେ ଫୁଟି ଉଠେ ବିଦ୍ରୋହର ଝଙ୍କାର । ଚତୁର୍ଦ୍ଦିଗରେ ଘଟୁଥିବା ଘଟଣା ଗୁଡ଼ିକ, ଯାହାକି ଆମ ସମାଜ ବ୍ୟବସ୍ଥା ପାଇଁ କ୍ଷତିକାରକ ସେଗୁଡ଼ିକୁ ତନ୍ନତନ୍ନ ଭାବେ ଲକ୍ଷ୍ୟ କରି ତା'ର ପ୍ରତିକାର ପାଇଁ ଯେଉଁ ବ୍ୟବସ୍ଥା କରିଛନ୍ତି ତାହା ବାସ୍ତବିକ୍ ସମାଜବାଦୀ ବିପ୍ଳବୀ ସାହିତ୍ୟରେ ଅନନ୍ୟ । ଶ୍ରେଣୀହୀନ ସମାଜ ଗଠନ କ୍ଷେତ୍ରରେ ଈଶ୍ୱର ଯଦି ପ୍ରତିବଂଧକ ସୃଷ୍ଟି କରନ୍ତି ତା' ହେଲେ ସେ ମଧ୍ୟ ଅଂଗୀକାରବଦ୍ଧ ସ୍ରଷ୍ଟାଙ୍କ ଲେଖନୀରୁ ବାଦ୍ ପଡ଼ନ୍ତି ନାହିଁ । ଜଣେ ନିଷ୍ଠାବାନ୍ ସାରସ୍ୱତ ସାଧକ ଭାବେ କବିଙ୍କର ଈଶ୍ୱର ବିରୋଧୀ ପ୍ରତିକ୍ରିୟା କିପରି ପ୍ରକଟିତ ହୋଇଛି ତାହା ନିମ୍ନୋକ୍ତ ପଂକ୍ତିରୁ ସ୍ପଷ୍ଟ ପ୍ରତିପାଦିତ ହୁଏ ।

"ଚରମ ପତ୍ର ଦେଲି ଭଗବାନ, ଚରମପତ୍ରଘେନ,
ଆଗାମୀ ଚବିଶ ଘଣ୍ଟା ଭିତରେ
ଆଗାମୀ କାଲିର ଏଇ ପ୍ରଭାତରେ
ଯେବେ ନ ଛାଡ଼ିବ ଗୋଲୋକ ସିଂହାସନ ।"(୫୦)

ଜଣେ ଅଂଗୀକାରବଦ୍ଧ ସ୍ରଷ୍ଟା ଭାବରେ, କବି ସମାଜର ପରିବର୍ତ୍ତନ ପାଇଁ ପ୍ରଚେଷ୍ଟାରତ । ଏ ଦୃଷ୍ଟିରୁ ଦେଖିଲେ କବିଙ୍କର କବିତା ଗୁଡ଼ିକ ଏହାର ଗୋଟିଏ ଗୋଟିଏ ଜ୍ୱଳନ୍ତ ଉଦାହରଣ । ନିଜ ହୃଦୟର ଅଭିବ୍ୟକ୍ତିକୁ କବି ଏପରି ପ୍ରକାଶ କରନ୍ତି:-

"ରୁଦ୍ର ତାପସ କବି
ମରାଳ ହ୍ରଦର ତୀର ତରୁ ତଳେ ଦେଖୁଛି ଧ୍ୱଂସ ଛବି
ଆଘାତ ଉପରେ ଆଘାତ "ହାଣିଛି ଅକଲ୍ୟାଣର ଶିରେ"
ସଉନ୍ଦର୍ଯ୍ୟ ମୋ କାନ୍ଦିଛି ସଦା ବେଦନା ସିନ୍ଧୁ ତୀରେ ।(୫୧)

କବି ବ୍ରଜନାଥଙ୍କ କବିତା ମଧ୍ୟ ସାମୟମୟିକ ସାମାଜିକ ସମସ୍ୟା, ଅବ୍ୟବସ୍ଥା, ଅର୍ଥନୈତିକ ଭ୍ରଷ୍ଟାଚାର ବିରୋଧରେ ପ୍ରତିକ୍ରିୟା ପ୍ରକାଶ କରିଛି । ସମାଧାନର ସୂତ୍ର ଖୋଜିବାକୁ ଯାଇ କବି ଲେଖିଛନ୍ତି –

"ଇତିହାସ ଗଢ଼ନ୍ତି ସେମାନେ
ଶତ ଶତ ସିଂହାସନ - ଉତ୍‌ଥାନେ - ପତନେ
ଅବିଚଳ ରହି ଯେଉଁମାନେ
ଧରିଥାନ୍ତି ଧରଣୀର ଉତ୍ପାଦନ ପଦ୍ଧତିର ଡୋରି
ସେମାନେ ହିଁ ତାହାର କାଣ୍ଡାରୀ ।" (୫୨)

କବିଙ୍କର କବିତା ସ୍ଥାନେ ସ୍ଥାନେ ସାମାଜିକ ଅଂଗୀକାରବଦ୍ଧ ଆଭିମୁଖ୍ୟକୁ ଗ୍ରହଣ କରିଥିଲେ ମଧ୍ୟ ବିଶେଷକରି ମାର୍କ୍ସବାଦୀ ଦୃଷ୍ଟିଭଂଗୀ ତାଙ୍କ କବିତାର ମୁଖ୍ୟ ସ୍ୱର ଅଟେ । କବି ବ୍ରଜନାଥ ଓ କବି ରବି ସିଂଙ୍କ ପ୍ରଭାବରେ ପ୍ରଭାବିତ ହୋଇ ବହୁ ସ୍ରଷ୍ଟା ସାମାଜିକ ଅଂଗୀକାରବଦ୍ଧତାକୁ ତାଙ୍କ କବିତାରେ ପ୍ରମୁଖ ସ୍ଥାନ ଦେଇଛନ୍ତି । ସେମାନଙ୍କ ମଧ୍ୟରୁ ଦୁର୍ଗାଚରଣ ସାମନ୍ତ, ଶଶିଭୂଷଣ ପଟ୍ଟନାୟକ, ଯଦୁନନ୍ଦନ ବିଶ୍ୱାଳ, ଯଦୁନାଥ ଷଡ଼ଙ୍ଗୀ ପ୍ରମୁଖ ଅନ୍ୟତମ ।

ଓଡ଼ିଆ ସାମ୍ୟବାଦୀ କାବ୍ୟ ଆନ୍ଦୋଳନ କ୍ଷେତ୍ରରେ ୧୯୬୯-୭୦ ବେଳକୁ ଏକ ନୂତନ ଗୋଷ୍ଠୀର ଆବିର୍ଭାବ ଘଟିଲା । ୧୯୬୭ ମସିହାରେ ଉତ୍ତର ବଂଗର ତରାଇ ଅଂଚଳର ପାଦ ଦେଶରେ ନକ୍‌ସାଲ୍‌ବାଡ଼ିରେ ଆରମ୍ଭ ହୋଇଥିବା ବିପ୍ଳବ ବିହାର, ଆନ୍ଧ୍ର, ଓଡ଼ିଶାକୁ ପ୍ରଭାବିତ କଲା । ଚାଷୀ, ମୂଲିଆ ମାନଙ୍କର ସଶସ୍ତ୍ର ସଂଗ୍ରାମରେ ସମଗ୍ର ଭାରତ ବର୍ଷ ଥରହର ହୋଇ ଉଠିଲା ।

ଏହି ଆନ୍ଦୋଳନର ନେତୃତ୍ୱ ନେଇଥିଲେ ଆନ୍ଧ୍ର ବିଧାନ ସଭାର ବିରୋଧୀ ଦଳ ନେତା ସି.ପି.ଏମ୍‌ର ନାଗି ରେଡ୍ଡି, ବଂଗଳାର ଚାରୁ ମଜୁମ୍‌ଦାର, କାହ୍ନୁ ସାନ୍ୟାଲ୍,

ସୁଶୀତଳ ରାୟ ଚୌଧୁରୀ ପ୍ରମୁଖ । ଆନ୍ଦୋଳନର ପୃଷ୍ଠଭୂମିରେ ଥିଲେ ବହୁ ସଂଖ୍ୟକ ଶିକ୍ଷିତ ଯୁବକ । ଲକ୍ଷ୍ୟଥିଲା ଗୋଟିଏ । ତାହା ହେଉଛି ସାମାଜିକ କ୍ଷେତ୍ରରେ ପରିବର୍ତ୍ତନ । ଚାରୁ ମଜୁମ୍‌ଦାର୍ ଏହି ଆନ୍ଦୋଳନ ସଂପର୍କରେ ଯେଉଁ ମନ୍ତବ୍ୟ ପ୍ରଦାନ କରିଥିଲେ ସେଥିରୁ ଏହାର ଆବଶ୍ୟକତା ସଂପର୍କରେ ହୃଦୟଙ୍ଗମ କରିହୁଏ । "ଅର୍ଥନୈତିକ କ୍ଷମତା ହାସଲ ପାଇଁ ଆବଶ୍ୟକ ଦରିଦ୍ର ଖଟିଖିଆ ଚାଷୀ ମୂଲିଆ ବିପ୍ଳବର ଉପଯୋଗିତାକୁ ସହଜରେ ହୃଦୟଙ୍ଗମ କରିପାରିବେ ନାହିଁ । ସେମାନଙ୍କୁ ଟ୍ରେଡ୍ ୟୁନିଅନ୍ ମାଧ୍ୟମରେ ଶିକ୍ଷା ଦେବାକୁ ପଡ଼ିବ ଏବଂ ସେଥିପାଇଁ ରାଜନୈତିକ ଚିନ୍ତାଧାରା ଦ୍ୱାରା ତାଲିମ୍‌ପ୍ରାପ୍ତ ଏକ ବିପ୍ଳବୀ ସଂଗଠନର ଆବଶ୍ୟକତା ରହିଛି ।" (୫୩)

ଓଡ଼ିଶାର ଗୁଣୁପୁର୍ ଥିଲା ଏହି କ୍ରାନ୍ତିର ଜନ୍ମସ୍ଥଳୀ । ନକ୍‌ସାଲ୍‌ନେତା ନାଗଭୂଷଣ ପଟ୍ଟନାୟକଙ୍କ ସହିତ ତତ୍‌କାଳୀନ ସମୟର କବି ମନମୋହନ ମିଶ୍ର, କବି ରବି ସିଂ, 'ଆଭା', ବେଳା' ଗୋଷ୍ଠୀର କବିଗଣ ଗଭୀର ଭାବେ ପ୍ରଭାବିତ ହୋଇ ଉଗ୍ର ବୈପ୍ଳବିକ ଚିନ୍ତାଧାରାର କବିତା ମାନ ରଚନା କରିବାରେ ଲାଗିଲେ । ବଂଗଳାର ମାର୍କସ୍‌ବାଦୀ ଯୁବ ସଂପ୍ରଦାୟ ଏବଂ ଆନ୍ଧ୍ରର ଦିଗମ୍ବର ଗୋଷ୍ଠୀ ଥିଲେ ଏମାନଙ୍କର ଆଦର୍ଶ । କବି ସଦାଶିବ ଦାଶ, କବି ପ୍ରସନ୍ନ ପାଟ୍ଟଶାଣୀ, ନବୀନ ସୁନ୍ଦର ସୁବୁଦ୍ଧି, ଦେବେନ୍ଦ୍ର ମାନସିଂହ, ରତ୍ନାକର ଚଇନି ପ୍ରମୁଖ ଏହି 'ଆଭା', 'ବେଳା' ଗୋଷ୍ଠୀର ଅନ୍ତର୍ଭୁକ୍ତ ଥିଲେ । ଏମାନଙ୍କ କବିତାରେ ମଧ୍ୟ ଆମେ ସାମାଜିକ ଅଂଗୀକାରବଦ୍ଧତାର ପ୍ରତିଛବି ଦେଖିବାକୁ ପାଇବା । ଓଡ଼ିଆ କବିତାରେ ଯେତେବେଳେ ଏଲିୟଟୀୟ ଚିନ୍ତାଦର୍ଶର ପ୍ରାଧାନ୍ୟ ଅନୁଭୂତ ହେଉଥାଏ, ଠିକ୍ ସେହି ସମୟରେ ତଥାକଥିତ ଚିନ୍ତାଦର୍ଶରୁ ଯଥାସମ୍ଭବ ନିଜକୁ ଦୂରେଇ ରଖି ଏମାନେ ସାମାଜିକ ଅଂଗୀକାରବଦ୍ଧତାକୁ ପ୍ରାଧାନ୍ୟ ଦେଇ ବିପ୍ଳବର ମହାମନ୍ତ୍ର ଉଚ୍ଚାରଣ କରୁଥିଲେ । ସ୍ରଷ୍ଟା ସେତିକିବେଳେ ମହାନ୍ ପାଲଟେ, ଯେତେବେଳେ ସାମସମୟିକ ପରିବେଶ ଓ ପରିସ୍ଥିତି ଅଲଗାଥିବ । ଭିନ୍ନ ସମୟ ମଧ୍ୟରେ ଏକ ସୁଦୃଢ଼ ଚିନ୍ତାଦର୍ଶକୁ ସାହିତ୍ୟରେ ଉପସ୍ଥାପିତ କରାଯାଇପାରୁଥିବ । ତେଣୁ ଏ ଦୃଷ୍ଟିରୁ କବି ସଦାଶିବ ଓ କବି ପ୍ରସନ୍ନ ଏମାନଙ୍କର ଉଦ୍ୟମ ପ୍ରଶଂସନୀୟ । ଏମାନଂକ ସଂପର୍କରେ ସମାଲୋଚକ 'ବାଞ୍ଛାନିଧି ଦାସ' ମତ ପ୍ରଦାନ କରନ୍ତି –

"ଏହାକୁ ବିପ୍ଳବୀ ସାହିତ୍ୟର ପୁନର୍ଜୀବନ୍ୟାସର ଯୁଗ ବୋଲି କହିଲେ ବରଂ ଯଥାର୍ଥ ହେବ । ସ୍ତିମିତ ନବଯୁଗର ଆଲୋକ ଶିଖାକୁ ନୂତନ ଅମ୍ଳଜାନ ଦେଇ ଉତ୍କଳର ଗଗନ ତଳେ ଯେଉଁ ତରୁଣ ଗୋଷ୍ଠୀ ଯୌଥ ଉଦ୍ୟମରେ ସମୁଜ୍ଜ୍ୱଳ କରି ଜଳାଇଥିଲେ, ସେଇ ଗୋଷ୍ଠୀର ଅଗ୍ରଣୀ ସାଥୀ ଥିଲେ ପ୍ରସନ୍ନ ପାଟ୍ଟଶାଣୀ ଓ ସଦାଶିବ ଦାଶ ।" (୫୪)

'ଏମାନଙ୍କ କବିତାର ଆତ୍ମା ଭାରତବର୍ଷ ତଥା ଓଡ଼ିଶାର ପରିସ୍ଥିତି ବର୍ଣ୍ଣନାରେରଂଜିତ । କବି ସଦାଶିବଙ୍କର 'ଷଷ୍ଠ ଚେତନା', 'ଅକ୍ଷାଂଶ ଦ୍ରାଘିମା', 'ଅବଧୂତ କ୍ରାନ୍ତି' ଇତ୍ୟାଦିରେ ସାମାଜିକ ଅଂଗୀକାରବଦ୍ଧତାର ଚିତ୍ର ବେଶ୍ ସୁସ୍ପଷ୍ଟ । ସମାଜରେ ପରିଲକ୍ଷିତ ହେଉଥିବା ସାମାଜିକ ଅସଂଗତି ଓ ତାହାର ପ୍ରତିକାର ଉଦ୍ଦେଶ୍ୟରେ କବିତା ଗୁଡ଼ିକ ସମର୍ପିତ । ବିଂଶ ଶତାବ୍ଦୀ ଭାରତବର୍ଷର କରୁଣ ଚିତ୍ର କିପରି କବିଙ୍କ କବିତାରେ ରୂପ ଲାଭ କରିଛି ନିମ୍ନୋକ୍ତ ପଂକ୍ତିରୁ ତାହା ଅନୁମିତ ହୁଏ ।

"ଭୋକର ବନସ୍ତରେ ଛାଗଳ ଶିଶୁର ଭୟ
ଅନ୍ୟ ନାମ ତାର ଜରାଜୀର୍ଣ୍ଣ ବିଂଶ ଶତାବ୍ଦୀ
ତମେ ନିଜ ଭୟରେ କାକୁସ୍ଥ ସିପାହୀ ଭାରତବର୍ଷ
ତମେ କ'ଣ କିଛି ପାଇବ ନାହିଁ ?
ତମେ କ'ଣ ଥରେ ଉଠିବ ନାହିଁ ?
ତମେ କ'ଣ ଥରେ ବଞ୍ଚିବ ନାହିଁ ?
ନାହିଁ ନାହିଁ ନାହିଁ ..... ।" (୫୫)

ଦେଶ ସ୍ୱାଧୀନ ହେବାର ବହୁବର୍ଷ ଅତିକ୍ରାନ୍ତ ହେଲାଣି । ତଥାପି ମଧ୍ୟ ସମାଜ ବ୍ୟବସ୍ଥାରେ ସୁଧାର ଅଣାଯାଇପାରିଲା ନାହିଁ । ହିଂସା, ଦ୍ୱେଷରେ ବର୍ତ୍ତମାନ ସମାଜଜୀବନ ଭାରାକ୍ରାନ୍ତ । ସ୍ୱାଧୀନତା ପରବର୍ତ୍ତୀ ଭାରତବର୍ଷର ଦୁର୍ଗତି କବି ପ୍ରସନ୍ନଙ୍କ ଲେଖନୀରୁ ମଧ୍ୟ ବାଦ୍ ଯାଇନାହିଁ । କବି ଜଣେ ସଫଳ ଅଂଗୀକାରବଦ୍ଧ ସ୍ରଷ୍ଟା ଭାବରେ ସାମସମୟିକ ପରିସ୍ଥିତି ବିରୋଧରେ ତୀବ୍ର ବିରୋଧାଭାସ ପ୍ରକଟିତ କରିଛନ୍ତି ।

"ଲୋ ଭାରତ ମାତା
ପଚମାନ ସଭ୍ୟତାର ଲୋ ବୈଦେହୀ ସୀତା
ତୋ ସତୀତ୍ୱ ଲୁଣ୍ଠିତ ଆଜି ବିଶ୍ୱ ଦରବାରେ
ତୋ ଯୌବନ ଧର୍ଷିତ ଆଜି କ୍ଷମତା ଯୁଦ୍ଧରେ ।" (୫୬)

କବି ହୋସେନ୍‌ରବିଗାନ୍ଧୀଙ୍କ କବିତା ମଧ୍ୟ ସାମାଜିକ ଅଂଗୀକାରବଦ୍ଧତାର, ସଫଳ ଉଦାହରଣ । ବର୍ତ୍ତମାନର ଶାସକନେତାମାନଙ୍କର କୁତ୍ସିତ ମନୋବୃତ୍ତି ଉଦ୍‌ଘାଟନ ତାଙ୍କ କବିତାରେ ପ୍ରତିଫଳିତ । କବି ଦୃଢ଼ କଣ୍ଠରେ ଘୋଷଣା କରନ୍ତି –

"ଏମନ୍ତ କୁଆ ଯଦି ନ ଦେଖିଛ
ନିର୍ବାଚନ ମଂଚରେ ମଧୁର ବଚନ ଓ
ସ୍ୱପ୍ନ ନିଜ ଆସନ୍ତା କାଲିର ପ୍ରତିଶ୍ରୁତି
ଦେଇ ଚାଲିଥିବା, ଡାକ ବାଜି ଯନ୍ତ୍ରରେ କଂପମାନ କରି

ଭାଷଣ ଦେଉଥିବା,
ବେଳେବେଳେ ଗୀତ ଗାଉଥିବା
ମଣିଷକୁ ଦେଖ, ସତରେ ଚମତ୍କାର
ଅତ୍ୟନ୍ତ ଚମତ୍କାର ! ଚମତ୍କାରୀ କୁଆ ।"(୫୭)

କବି ସଚ୍ଚିଦାନନ୍ଦଙ୍କ ଠାରୁ ଆରମ୍ଭ କରି କବି ହୋସେନ୍‌ରବିଗାନ୍ଧୀଙ୍କ ପର୍ଯ୍ୟନ୍ତ ରଚିତ ହୋଇଥିବା କବିତା ଗୁଡ଼ିକୁ ଲକ୍ଷ୍ୟ କଲେ ଜଣାଯାଏ ଯେ ଏମାନଙ୍କ ରଚନା ଦରିଦ୍ର କୃଷକ ଓ ଶ୍ରମିକମାନଙ୍କ ପାଇଁ ଉଦ୍ଦିଷ୍ଟ । ସମାଜର ସାଂପ୍ରତିକ ପରିସ୍ଥିତି ଇତ୍ୟାଦିକୁ ନେଇ ଏ ଅଂଗୀକାରବଦ୍ଧତା ପ୍ରକାଶ ପାଇଥିଲା । କିନ୍ତୁ ସାମସମୟିକ କବି ସମରେନ୍ଦ୍ର ନାୟକଙ୍କ କବିତାରେ ଅଂଗୀକାରବଦ୍ଧତାର ଏକ ଭିନ୍ନ ରୂପ ଦେଖିବାକୁ ମିଳେ । ତାହା ହେଉଛି ତାଙ୍କ କବିତାରେ ପ୍ରତିଫଳିତ ହୋଇଥିବା ସରଳ ନିରୀହ ଆଦିବାସୀ ଜୀବନ ଚିତ୍ର । ଯେଉଁମାନେ କି ଶୋଷଣର ବହ୍ନିରେ ପ୍ରତି ମୁହୂର୍ତ୍ତରେ ପତଂଗ ପରି ଝାସ ଦେଉଛନ୍ତି । ପ୍ରତ୍ୟକ୍ଷଦର୍ଶୀ ଦ୍ରଷ୍ଟା ଭାବରେ କବି ସମରେନ୍ଦ୍ର ଏହାର ତୀବ୍ର ବିରୋଧ କରି ଜଣେ ସଫଳ ଅଂଗୀକାରବଦ୍ଧ ସ୍ରଷ୍ଟାର ଦାୟିତ୍ୱ ତୁଲାଇଛନ୍ତି । କବି କହୁଛନ୍ତି –

" ସାହୁକାରୀ- ସରକାର ତୋର ଚିର ଶତ୍ରୁ
ବଂଧୁ ଯେ ଦୁନିଆର ମେହେନତି ମଣିଷ
ଆହେ ଗିରିଜନ - ହରିଜନ ପାଦତଳ ବର୍ଗ
କେହି ତୋର ସାହା ନାହିଁ
ନିଜ ପାଇଁ ନିଜେ ତୁହି
ଏକାକାର କୋଟି ମୁଠା

x x x

ଆଜି ମୁକ୍ତି ହୋ ଏକ ପଥ
ଶକ୍ତି ହୋ ସଂଗ୍ରାମୀ ଏକତା
ପ୍ରତି 'ବିଘା' ଭୂମି ତୋର
ହିମାଳୟ କୁମାରୀକା ଏଇ ମହାଭାରତ ।"(୫୮)

ଆଦିବାସୀମାନେ ପ୍ରକୃତିରସନ୍ତାନ । ପ୍ରକୃତି କୋଳରେ ତା'ର ଜନ୍ମ, ଲାଳନ ପାଳନ ଓ ଶେଷ ଆଶ୍ରୟ । ଏଇ ହେଉଛି ତା'ର ଜୀବନ । ତେଣୁ ତା'ର ଜୀବନରୁ ପ୍ରକୃତିକୁ ବାଦ୍ ଦେଲେ ସମାଜର ଉନ୍ନତି ସାଧିତ ହେବ ନାହିଁ । ଆଜିର ସରକାର ଡଲାରର ମୋହରେ ଆକୃଷ୍ଟ । ତେଣୁ ଆମ ଦେଶର ପ୍ରାକୃତିକ ସଂପଦ ଶାଗ ମାଛ ଦରରେ ବିକ୍ରୀ ହୋଇ ଯାଉଛି । ରତ୍ନଗର୍ଭା ଓଡ଼ିଶା ଆଜି ବିଦେଶୀ ମାନଙ୍କ ଦ୍ୱାରା

ଭୂଲୁଣ୍ଠିତା । ସରକାରଙ୍କ ତରଫରୁ ଆଦିବାସୀ ମାନଙ୍କୁ 'ଜଙ୍ଗଲଧ୍ୱଂସକାରୀ' ଆଖ୍ୟା ଦିଆଯାଉଛି । ଜଣେ ସମାଜ ସଚେତନ ସ୍ରଷ୍ଟା ଭାବରେ କବି ସମରେନ୍ଦ୍ର ଏହାର ଦୃଢ଼ ପ୍ରତିବାଦ କରିଛନ୍ତି । ସାମସମୟିକ କାଳର ବହୁ ସ୍ରଷ୍ଟା ସେମାନଙ୍କ କବିତାରେ ଆଦିବାସୀ ଜନଜୀବନକୁ ମାଧମ ଭାବରେ ଗ୍ରହଣ କରିଛନ୍ତି । ସେହିପରି କବି ପ୍ରଶାନ୍ତ ମିଶ୍ର ଆଜିର ସମାଜରେ ଦୁର୍ଦ୍ଦଶା ଭୋଗୁଥିବା ଏହି ଅବହେଳିତ ଜନଜାତି ମାନଙ୍କର ଜୀବନର କରୁଣ ସତ୍ୟକୁ ତାଙ୍କ କବିତା ମାଧମରେ ଉଦ୍‌ଘାଟିତ କରିଛନ୍ତି । କବିଙ୍କ ଭାଷାରେ–

"ପ୍ରଜାକୋର୍ଟ ହବ କାଲିକି ଗାଁରେ
ହାତକୁ ଆସିବ ନିଜାମତ୍ ଆଉ ନ୍ୟାୟ
ବଳିଷ୍ଠ ହବ ପ୍ରଜାର ହୁକୁମ୍
ପ୍ରଜାରାଜପଣ, ରାୟ
ସଜା ପାଇବେ ସାହୁ ମହାଜନ
ମାମଲତକାର ଜବର ଦଖଲକାରୀ
କାନ୍ଦିବ ପ୍ରଜାକୋର୍ଟ – ଦରବାରେ
କନ୍ଦାଉଥିବ ସଇତାନ୍ ପାପାଚାରୀ ।"(୫୯)

କବି ମାନଙ୍କ କବିତାରେ ବର୍ଣ୍ଣିତ ସାମାଜିକ ଅଂଗୀକାରବଦ୍ଧତା କେବଳ ଯେ ମାର୍କସ୍‌ବାଦୀ ତତ୍ତ୍ୱ ଦର୍ଶନକୁ ଆଧାରକରି ରଚିତ ହୋଇଛି ତାହା ନୁହେଁ । ସମାଜର ପ୍ରତ୍ୟେକ ସ୍ତରରେ ଯେଉଁ ବୈଷମ୍ୟ ଦେଖାଯାଉଛି ତା'ର ଉଦ୍‌ଘାଟନ କରିବା ସହିତ ଜନସଚେତନତା ସୃଷ୍ଟି କରିବା ସାମାଜିକ ଅଂଗୀକାରବଦ୍ଧ କବିତାର ମୂଳ ଲକ୍ଷ୍ୟ ହେବା ଉଚିତ୍ । ସଂକୀର୍ଣ୍ଣତାର ବଳୟ ମଧ୍ୟରୁ ଜନସାଧାରଣଙ୍କୁ ବାହାର କରିଆଣି ଏକ ବ୍ୟାପକ ଚିନ୍ତା ଚେତନାର ଅଭିମୁଖେ ବାଟ କଢ଼ାଇ ନେବା ଏହାର ମର୍ମବାଣୀ ହେବା ଉଚିତ୍ । ଏ ସଂପର୍କରେ ପ୍ରାବନ୍ଧିକ ଡଃ ବୈଷ୍ଣବ ଚରଣ ସାମଲ ମତବ୍ୟକ୍ତ କରନ୍ତି – "ମନେରଖିବାକୁ ହେବ ଯେ, ସ୍ଲୋଗାନ ଧର୍ମୀ ଉଚ୍ଚାରଣ ଓ ମାର୍କସୀୟ ତତ୍ତ୍ୱକୁ ଆଧାର ଭୂତ କରି କିଛି ଶବ୍ଦର ସମାହାର କରିଦେଲେ ତାହା ଦାୟବଦ୍ଧ କବିତା ହୋଇଯାଏ ନାହିଁ, ସମାଜ ଆତ୍ମା ସହିତ ବ୍ୟକ୍ତି ଆତ୍ମାର ମିଳନରେ ଓ ନୂତନ ଜୀବନ ସ୍ପନ୍ଦନ ସୃଷ୍ଟି କରିବାରେ, ମଣିଷକୁ ତା'ର ଶକ୍ତି ଆବିଷ୍କାର କରିବା ପାଇଁ ପ୍ରେରଣା ଦେବାରେ ସାହିତ୍ୟ ହୁଏ ଦାୟବଦ୍ଧ । (୬୦)

ଉପରୋକ୍ତ ଆଲୋଚନାରୁ ପ୍ରତିପନ୍ନ ହୁଏ ଯେ, ଦାୟବଦ୍ଧ କବିତା ସାମୟିକ ଉତ୍ତେଜନାର ଉଚ୍ଚାରଣ ନୁହେଁ । ଏହା କାଳକାଳ ପାଇଁ ଉଦ୍ଦିଷ୍ଟ । ସମାଜର ପ୍ରତ୍ୟେକ ସ୍ତରରେ ପରିବର୍ତ୍ତନ ପାଇଁ ଏହା ପ୍ରତିଶ୍ରୁତିବଦ୍ଧ । ଓଡ଼ିଆ ସାହିତ୍ୟରେ ତିରିଶ ଦଶକଠାରୁ

ଅଦ୍ୟାବଧି ବହୁ ସ୍ରଷ୍ଟା ଏପରି ସାମାଜିକ ଅଂଗୀକାରବଦ୍ଧ କବିତା ରଚନା କରି ସ୍ୱକୀୟ ସୃଷ୍ଟିକୁ ସମୃଦ୍ଧ କରିଛନ୍ତି କହିଲେ ଅତ୍ୟୁକ୍ତି ହେବ ନାହିଁ ।

## ପ୍ରଗତିବାଦୀ କବିତାରେ କୁସଂସ୍କାର ଓ ପରଂପରା ବିରୋଧରେ ସ୍ୱର ଉତ୍ତୋଳନ

ସାହିତ୍ୟରେ ପ୍ରଗତିବାଦୀ ଚେତନା ସଂପର୍କରେ ପୂର୍ବ ପୃଷ୍ଠାରେ ବହୁତ କିଛି ଆଲୋଚନା କରାଯାଇଛି । ତନ୍ମଧ୍ୟରୁ ଯାହା ଜଣାଯାଏ, ଏଲିୟଟୀୟ ପରଂପରାର ଅନୁଧାବନ ନ କରି ଓଡ଼ିଆ କବିତାରେ ପ୍ରଥମେ ପ୍ରଗତିବାଦୀ ଚେତନାର ଯେଉଁ ସ୍ୱର ଶୁଭିଥିଲା, ସେ ସମୟରେ ସେ ସ୍ୱର ଏତେ ବଳିଷ୍ଠ ନଥିଲା । ଏଲିୟଟୀୟ ପରଂପରାର ଅନୁଧାବନ କରୁଥିବା କବିଗଣଙ୍କସଙ୍ଗେ ପ୍ରଗତିବାଦୀ ଚେତନାର କବିମାନେ ମୁକାବିଲା କରିବା ପାଇଁ ଯଥେଷ୍ଟ ଶକ୍ତି ବା ସାହସ ପାଇ ନ ଥିଲେ । ମାତ୍ର ଯେଉଁଦିନଠାରୁ 'ଆଭା', 'ବେଳା', 'ସ୍ଫୁଲିଙ୍ଗ', 'ଚେତାବନୀ' ଆଦି ପତ୍ରିକା ପ୍ରଗତିବାଦର ବାର୍ତ୍ତା ବହନ କରି ପ୍ରକାଶିତ ହେଲା ସେହିଦିନଠାରୁ ସାଂପ୍ରତିକ ଓଡ଼ିଆ କବିତାରେ ନବପ୍ରଗତିବାଦୀ ଚେତନାର ସ୍ୱର ଘନୀଭୂତ ହେବାକୁ ଲାଗିଲା । ଏଥିରେ ପରମ୍ପରା ଓ କୁସଂସ୍କାର ବିରୋଧରେ ମଧ୍ୟ ବିରୋଧାଭାସ ପ୍ରକାଶ ପାଇଲା । ନିମ୍ନୋକ୍ତ କବିମାନଙ୍କ କବିତାରୁ ତାହା ପ୍ରତିପାଦିତ ହୋଇଥାଏ ।

ପ୍ରଗତିବାଦୀ କବିମାନେ ସମାଜରୁ ଅତ୍ୟାଚାରର ପରିସମାପ୍ତି ଘଟାଇ ପୃଥିବୀ ବକ୍ଷରେ ନୂତନ ସୂର୍ଯ୍ୟୋଦୟ ଦେଖାଦେବ ବୋଲି ଆଶା ପୋଷଣ କରନ୍ତି । ଏ ପୃଥିବୀରେ ଜାତି, ଧର୍ମ ମଧ୍ୟରେ ପାର୍ଥକ୍ୟ ନଥିବ । ତେଣୁ କବି ସଦାଶିବ ଦାଶଙ୍କ କବିତା ଜାତିଧର୍ମ ଇତ୍ୟାଦି କୁସଂସ୍କାର ବିରୋଧି କାବ୍ୟସ୍ୱରକୁ ନେଇ ସମୃଦ୍ଧ । ଭାରତୀୟ ସମାଜ ଜାତିଧର୍ମରୂପୀ ସଂକୀର୍ଣ୍ଣତାର ଗଣ୍ଡି ମଧ୍ୟରେ ସଦା ଆବଦ୍ଧ । ତେଣୁ ଏହି ଖୋଳପାକୁ ପରିତ୍ୟାଗ କରି ପ୍ରଗତିର ବୀଜ ବପନ କରିବାପାଇଁ କବିଙ୍କ କଣ୍ଠ ଦୃଢ଼ ଓ ଗମ୍ଭୀର ହୋଇ ଉଠିଛି । କବିଙ୍କ ଭାଷାରେ-

"ଆଉ କେବେ ଖୋଲନାହିଁ ମସ୍‌ଜିଦ୍
ଚର୍ଚ୍ଚ ଏବଂ ମନ୍ଦିର ଅଗଣା
X X X
ନଦୀର ନିର୍ମଳ ତୁଠେ ଗାଅବନ୍ଧୁ ଜୀବନର
ସ୍ୱପ୍ନିଳ ଭୂମିକା ।" (୬୧)

କବି ହୋସେନ୍ ରବିଗାନ୍ଧୀ ମଧ୍ୟ ସମାଜର ଅନ୍ଧବିଶ୍ୱାସ ଓ ପରମ୍ପରା ବିରୋଧରେ ସ୍ୱର ଉତ୍ତୋଳନ କରିଛନ୍ତି । କବିଙ୍କ ଭାଷାରେ-

"ଧନ ଓ ଧନୀକ
ଶସ୍ୟ କ୍ଷେତରେ ବାଲୁଙ୍ଗା ସମାନ ବଢ଼ିଛନ୍ତି
ମନଭରି ବାଛିଦେଇପାର
ସୁନାର ଫସଲ ଖେଳାଇବା ପାଇଁ
ତୁମେ ଆସିଅଛ ଖଟିଖିଆ ନର
ହାତରେ ଅସ୍ତ୍ର ହୋଇ ।(୬୨)

ସେହିପରି କବି ସମରେନ୍ଦ୍ରଙ୍କ କବିତା ମଧ୍ୟ ପରମ୍ପରା ବିରୋଧରେ ସ୍ୱର ଉତ୍ତୋଳନ କରିଛି । କବି ଶାନ୍ତିର ଆବାହନ କରିବାକୁ ଯାଇ ଲେଖିଛନ୍ତି-

"ଏ ଶାନ୍ତି ରୋପିଛି ଚାରା ଜୀବନର ସାହାରା ବାଲିରେ
ଏଇ ସେହି ବିଜୟୀ ପୌରୁଷ
ହଲାଣ୍ଡର ଛେନାହାଟ ଫୁଲର ପାଚେରୀ
ଯେ ଶାନ୍ତି କରିଲା ଶାନ୍ତ ।"(୬୩)

ଉପରୋକ୍ତ ପ୍ରଗତିବାଦୀ କବିମାନେ ସେମାନଙ୍କ କବିତାରେ ବିଦ୍ରୋହ ଓ ବିପ୍ଳବର ସ୍ୱର ଉଚ୍ଚାରଣ କରିବା ସଙ୍ଗେ ସଙ୍ଗେ ପରମ୍ପରା ଓ କୁସଂସ୍କାର ବିରୋଧରେ ମଧ୍ୟ କାବ୍ୟିକ ସ୍ୱର ଉତ୍ତୋଳନ କରି ସମାଜ ବ୍ୟବସ୍ଥାକୁ ସୁଧାରିବା ପାଇଁ ଯଥା ସମ୍ଭବ ଉଦ୍ୟମ କରିଛନ୍ତି ।

## କବିତାରେ ମାନବ ବନ୍ଦନା

ସୃଷ୍ଟିର ଅୟମାରମ୍ଭ କାଳରୁ ମାନବବାଦୀ ଚିନ୍ତାଧାରା ବା, ମାନବବନ୍ଦନା ସ୍ରଷ୍ଟାଙ୍କୁ ଅନୁପ୍ରାଣିତ କରିଆସିଛି । ମନୁଷ୍ୟ ମଧ୍ୟରେ କବି ଏବଂ କବିର ହୃଦୟରେ ଜମାଟ ବାନ୍ଧି ରହିଥାଏ ଅସରନ୍ତି ବ୍ୟଥା ବେଦନା । ତେଣୁ କବିର ହୃଦୟ ହେଉଛି ଦରଦୀ ହୃଦୟ । ସାଧାରଣ ମଣିଷର ଦୁଃଖଯାତନା ଓ ତନ୍ମଧ୍ୟରୁ ଜନ୍ମଲାଭ କରିଥାଏ ଅସନ୍ତୋଷ । ଏହି ଅସନ୍ତୋଷରୁ ଜନ୍ମଲାଭ କରେ କବିତା । ତେଣୁ କବିତା ଆତ୍ମା ସହିତ ଆତ୍ମାର, ହୃଦୟ ସହିତ ହୃଦୟର, ଦୁଃଖ ସହିତ ଦୁଃଖକୁ ମିଶାଇ ଦେଇ ବ୍ୟକ୍ତି-ବିଶ୍ୱ ଚେତନାରେ ରୂପାନ୍ତରିତ ହୋଇଯାଏ । ସାର୍ବଜନୀନ ଦୃଷ୍ଟିକୋଣରୁ କବି ଯେତେବେଳେ ମନୁଷ୍ୟ ସମାଜର ଦୁଃଖକୁ ରୂପାୟିତ କରନ୍ତି ସେତେବେଳେ ତାହା ବିଶ୍ୱ ଚେତନାରେ ରୂପାନ୍ତରିତ ହୋଇଯାଏ । ଦରଦୀ କବି ହୃଦୟଟି ମଣିଷ ସମାଜକୁ କିପରି ଯାତନାର ଗହ୍ୱରରୁ ମୁକ୍ତି ଦେଇ ପାରିବ ସେଥିପାଇଁ ଅହରହ ବ୍ୟାକୁଳ ହେଉଥାଏ । ସମଗ୍ର ପୃଥିବୀର ଦୁଃଖକୁ

ନିଜ କାନ୍ଧରେ ବହନ କରିବାର କ୍ଷମତା କେବଳ ଥାଏ କବିର । ଏ ପ୍ରକାର ବିଶ୍ୱଚେତନାର ପରିପ୍ରକାଶ ମୂଳରେ ରହିଛି ମାନବବାଦୀ ଚିନ୍ତାଧାରା । ସେଇଥିପାଇଁ ବୋଧହୁଏ ଦିନେ ଆଦିକବି ବାଲ୍ମୀକି ଶରବିଦ୍ଧ କ୍ରୌଞ୍ଚ ଦଂପତିଙ୍କ ଦୁଃଖରେ ମ୍ରିୟମାଣ ହୋଇ ଗାଇଥିଲେ ସୃଷ୍ଟିର ଆଦ୍ୟ ଶ୍ଳୋକ –

"ମା ନିଷାଦ ପ୍ରତିଷ୍ଠାଂ ତ୍ୱମଗମ୍ ଶାଶ୍ୱତି ସମା
ଯତ୍ କ୍ରୌଞ୍ଚ ମିଥୁନା ଦେକମ୍‌ବଧିତ କାମ ମୋହିତମ୍ ।"

କବିର ସମ୍ବେଦନଶୀଳ ହୃଦୟରୁ ଉତୁରି ପଡ଼ିଥିବା କବିତା କୋଟିକୋଟି ହୃଦୟକୁ ଅଭିଭୂତ କରେ । ଏ ସଂପର୍କରେ ଡଃ ବେଣୁଧର ପାଢ଼ୀ ମତବ୍ୟକ୍ତ କରନ୍ତି – "ମଝି ଦରିଆର ମଣିଷଟି ହେଉଛି କବି; ଯେ ସାରା ମଣିଷର ଯାତନା ଲୁହକୁ ଆଦରି ନିଏ – ଆପଣା ବାଆଁ କାନ୍ଧରେ ଓ ଡାହାଣ ହାତ ଲମ୍ବେଇ ଦିଏ ନର୍କ ଆଡ଼କୁ । ଶୋଷକ ଶାସକମାନଙ୍କ ଦ୍ୱାରା ବିଛା ଯାଇଥିବା କଣ୍ଟା ସବୁକୁ ପୋଛି ସଫା କରିଦେବା ପାଇଁ ! ଦୁର୍ଦ୍ଧାନ୍ତ ଶୋଷଣକାରୀର ତଣ୍ଟି ଚିପି ଧରିବା..... ଆଉ ଟାଙ୍ଗରା ମାଟି ଫଟେଇ.... ଅରମା ଭୂଇଁ ଅରାକରେ ସୁଖ, ଶାନ୍ତି ଓ ସ୍ୱପ୍ନର ଚାରା ରୋପିବା ପାଇଁ ଲମ୍ବିଯାଏ କବିର ଡେବିରୀ ହାତ ! ଆତ୍ମା ସହ ଆତ୍ମାକୁ ..... ଦୁଃଖ ସହିତ ଦୁଃଖ ଓ ହୃଦୟ ମାନଙ୍କୁ ପୁଣି ଏକାଠି କରିଦିଏ, ଯୋଡ଼ି ବାନ୍ଧି ଏକାକାର କରିଦିଏ ଆତ୍ମୀୟତାର ଏ ନିବିଡ଼ ହାତ !!" (୬୪)

ସେଇଥିପାଇଁ କୁହାଯାଏ ସାହିତ୍ୟ କେବଳ କଳ୍ପନା, ସ୍ୱପ୍ନଚାରୀ ଐନ୍ଦ୍ରଜାଲିକତା ସୃଷ୍ଟି କରେ ନାହିଁ । ଏହା କବି ହୃଦୟର ଭାବନା ମଧ୍ୟ ଦେଇ ମଣିଷ ସମାଜ ସହିତ ଏକ ଯୋଗସୂତ୍ର ସ୍ଥାପନ କରେ । ଏହି ଯୋଗାଯୋଗ ଯେତିକି ନିବିଡ଼ ହୁଏ କାବ୍ୟକବିତା ସେତିକି ପରିମାଣରେ ହୁଏ ହୃଦୟଗ୍ରାହୀ, ଶାଶ୍ୱତ ଓ ଚିରନ୍ତନ । ତେଣୁ କୁହାଯାଇଛି– "କଳା ଓ ସାହିତ୍ୟ ମନୁଷ୍ୟ-ମନୁଷ୍ୟ ମଧ୍ୟରେ ଯେଉଁ ପରିମାଣରେ ଭାବ-ସଂଯୋଗ କରିପାରନ୍ତି, ସେହି ପରିମାଣରେ ସେମାନେ ଉନ୍ନତ ଓ ସମୃଦ୍ଧ ହୁଅନ୍ତି ।"(୬୫)

ସାହିତ୍ୟ ସୃଷ୍ଟିର ଆରମ୍ଭରୁ ଯେଉଁ ମାନବବାଦୀ ଚିନ୍ତାଧାରା ରହିଥିଲା, ତାହା ସମୟର ପରିବର୍ତ୍ତନ ହେବା ସଙ୍ଗେ ସଙ୍ଗେ ଧିରେଧିରେ ପରିବର୍ତ୍ତିତ ହୋଇ ବର୍ତ୍ତମାନ ଆସି ଏକ ଭିନ୍ନ ଅବସ୍ଥାରେ ପହଞ୍ଚିଛି । ବିଜ୍ଞାନର ବିକାଶ ଓ ଅଗ୍ରଗତି ଧର୍ମୀୟ ଚିନ୍ତାଚେତନାକୁ ଯେତେବେଳେ ଖୋଲାଖୋଲି ଚ୍ୟାଲେଂଜ୍ କରିଛି ସେତେବେଳେ ଥିବା ପାରଂପରିକ ମାନବବାଦ ପରିବର୍ତ୍ତିତ ହୋଇଛି ବୈପ୍ଳବିକ ମାନବବାଦରେ । ସମୟକ୍ରମେ ଏହି ମାନବବାଦୀ ଚିନ୍ତାଧାରା ମଧ୍ୟରେ ସ୍ୱଦେଶପ୍ରେମ, ଜାତୀୟତା, ସମ୍ବେଦନାତ୍ମକ ମାନବବାଦ ଆତ୍ମପ୍ରକାଶ କରିଛି । କାଳକ୍ରମେ ଏହା ଅର୍ଥନୀତି ଦ୍ୱାରା

ନିୟନ୍ତ୍ରିତ ହୋଇଛି । ହଜାର ହଜାର ବର୍ଷ ଧରି ଧର୍ମ ଓ ଈଶ୍ୱର ବିଶ୍ୱାସକୁ କେନ୍ଦ୍ରକରି ଯେଉଁ ମାନବବାଦୀ ଚିନ୍ତାଧାରା ମୁଣ୍ଡ ଟେକିଥିଲା ବିଜ୍ଞାନ ସମ୍ମତ ଯୁକ୍ତିବାଦ ହିଁ ଏଥିରେ ପୂର୍ଣ୍ଣଚ୍ଛେଦ ପକାଇ ଦେଇଛି । ସମଗ୍ର ବିଶ୍ୱ ସାହିତ୍ୟରେ ମାନବବାଦ ଆଜି ଅର୍ଥାନୁମୋଦିତ ଚିନ୍ତାଧାରାଦ୍ୱାରା ନିୟନ୍ତ୍ରିତ । ତେଣୁ ଏହି ପରିବର୍ତ୍ତିତ ଚିନ୍ତାଧାରାର ପ୍ରଭାବ ଦ୍ୱାରା ତିରିଶ / ଚାଳିଶ ଦଶକର ପ୍ରଗତିବାଦୀ ଓଡ଼ିଆ କବିତା ମଧ୍ୟ ବହୁଳ ଭାବରେ ପ୍ରଭାବିତ ହୋଇଛି ।

ଊନବିଂଶ ଶତାବ୍ଦୀର ଶେଷଭାଗକୁ ଓଡ଼ିଆ ସାହିତ୍ୟରେ ନବଜାଗରଣର ବାର୍ତ୍ତା ପ୍ରଚାରିତ ହୋଇଛି ଓ ଏହାର ବାହକ ସାଜିଥିଲେ କବିବର ରାଧାନାଥ ରାୟ, ମଧୁସୂଦନ ରାଓ, ଫକୀର ମୋହନ ସେନାପତି, ଗଂଗାଧର ମେହେର୍ ପ୍ରମୁଖ । ରାଧାନାଥ, ଗଂଗାଧରଙ୍କର ମାନବବାଦ ଥିଲା ଈଶ୍ୱର ଚିନ୍ତାନୁମୋଦିତ ପାରଂପରିକ ମାନବବାଦ । କିନ୍ତୁ ମଧୁସୂଦନ ଥିଲେ ଆଧ୍ୟାତ୍ମଭାବ ଜନିତ ମାନବବାଦର ସ୍ରଷ୍ଟା । ଫକୀରମୋହନଙ୍କ ସାହିତ୍ୟ କୃତିରେ ଦେଖିବାକୁ ମିଳିଥିବା ସଂସ୍କାରମୂଳକ ଚିନ୍ତାଧାରା ସଂସ୍କାରମୁଖୀ ମାନବବାଦର ଉଦାହରଣ । ଯାହାର ଏକ ପରିଚ୍ଛନ୍ନ ରୂପ ଦେଖିବାକୁ ମିଳେ ପରବର୍ତ୍ତୀ କାଳରେ । ବିଂଶ ଶତାବ୍ଦୀର ଆଦ୍ୟ ଭାଗରେ ଜାତୀୟତାର ମନ୍ଦ୍ର ଧ୍ୱନି ନିନାଦିତ ହେଲା ଓ ଏକ ଭିନ୍ନ ପ୍ରକାର ମାନବବାଦର ଆଗମନ ଘଟିଲା । ତାହାଥିଲା ଜାତୀୟବାଦୀ ମାନବବାଦ । ଏହାର ପୁରୋଧା ସାଜିଲେ ପଣ୍ଡିତ ଗୋପବଂଧୁ ଦାସ ଓ ପଣ୍ଡିତ ନୀଳକଣ୍ଠ । ତାଙ୍କ ଆଦର୍ଶରେ ଅନୁପ୍ରାଣିତ ହୋଇ ଯେଉଁମାନେ କାବ୍ୟ କବିତା ରଚନା କଲେ, ସେମାନେ ହେଲେ, କବି ପଦ୍ମ ଚରଣ, କବି କୁନ୍ତଳା କୁମାରୀ । ଏମାନଙ୍କ କବିତାରେ ଦେଖିବାକୁ ମିଳିଲା ମାନବବାଦର ଏକ ସମ୍ବେଦନାତ୍ମକ ରୂପ । କବି ହୃଦୟରୁ ନିଃସୃତ ହେଲା:-

"ନିଜ ସୁଖ ଲାଗି ଜାତ ନୁହେଁ ହିନ୍ଦୁ
ବିଶ୍ୱ ହିତେ ହିନ୍ଦୁ ପ୍ରତିରକ୍ତେ ବିନ୍ଦୁ ।"

(ଜାତୀୟତାବାଦୀ ମାନବବାଦର ଦୃଷ୍ଟାନ୍ତ)

"ନିରିଦୟ ହାତେ ଭିଡ଼ି ଯେଉଁ କ୍ରୂର ପ୍ରାଣୀ
ଛାଡ଼ିଲା ଏ ଅପନ୍ତରା ଦ୍ୱୀପେ ତୋତେ ଆଣି
ତା' ମରୁ କୋଟରେ ଶିଶୁ ଜନମି କି ନାହିଁ
ସ୍ନେହ, ପ୍ରୀତି ବିନ୍ଦୁ ହୃଦେ ନାହିଁ କି ସେ ପାଇ ?"

(ସମ୍ବେଦନାତ୍ମକ ମାନବବାଦର ଦୃଷ୍ଟାନ୍ତ)

ବିଂଶ ଶତାବ୍ଦୀର ତୃତୀୟ ଦଶକରେ ଯେତେବେଳେ ସବୁଜ ଯୁଗର ଅଭ୍ୟୁଦୟ ହେଲା ସେତେବେଳେ ଓଡ଼ିଆ କବିତା ରାଜ୍ୟକୁ ରୋମାଣ୍ଟିକ୍ ଭାବପ୍ରବଣତାର ଅନୁପ୍ରବେଶ ଘଟିଲା । ସ୍ଥଳବିଶେଷରେ ସେମାନଙ୍କ କବିତା ମଧ୍ୟ ସମ୍ବେଦନାତ୍ମକ ମାନବବାଦର ବନ୍ଦନା ଗାନ କଲା । ମାନବିକତାର ପ୍ରତିଷ୍ଠା ପାଇଁ ସେମାନେ ଯେ କେତେ ବ୍ୟାକୁଳ ଥିଲେ ତାହା କାଳିନ୍ଦୀ ଚରଣଙ୍କ 'ମହାଦୀପ', 'ପୁରୀ ମନ୍ଦିର', 'ପାଶୋରି ଦେଲିରେ ଶିମୁଳିପାଳ', ବୈକୁଣ୍ଠ ନାଥଙ୍କ 'ରିକ୍ସାବାଲା', ହରିଜନ, ଉମା, ମେହେନ୍ତର ଆଦି କବିତାରୁ ଏହାର ପ୍ରମାଣ ମିଳେ । "ମାନବିକତାର ପ୍ରତିଷ୍ଠା ପାଇଁ ସବୁଜ କବିମାନେ ଏକ ଆଦର୍ଶବାଦୀ ଭୂମିକାରେ ଉପନୀତ ହୋଇଥିଲେ । ଦରିଦ୍ର, ଦୁଃଖୀ, ରଂକୀଙ୍କ ଦୁଃଖରେ ସେମାନଙ୍କ କବିତାରେ ସହାନୁଭୂତିର ସ୍ୱର ପ୍ରକାଶିତ ହେଉଥିଲା । ମଣିଷର ଦୁଃଖ ଓ ଅଶ୍ରୁରେ ସେମାନେ ଯେତିକି ମ୍ରିୟମାଣ, ତା'ର ଗୌରବ ପାଇଁ ସେମାନେ ସେତିକି ଆକାଂକ୍ଷିତ । ପୁଣି ମଣିଷର ଦୁଃଖ ଓ ଯନ୍ତ୍ରଣାର ସ୍ତର ଭେଦ କରି ସବୁଜ କବିମାନେ ସାମୂହିକ ଭାବେ ସମାଜ ଆଡ଼କୁ ଦୃଷ୍ଟିପାତ କରିଛନ୍ତି । (୬୬)

ସବୁଜ ଯୁଗୀୟ ମାନବବାଦୀ ଚିନ୍ତାଧାରା ପରେପରେ ଓଡ଼ିଆ କବିତା କ୍ଷେତ୍ରରେ ୧୯୩୬ ମସିହା ବେଳକୁ ଅନ୍ୟ ଏକ ନୂତନ ମାନବବାଦୀ ଚିନ୍ତାଧାରାର ଅନୁପ୍ରବେଶ ଘଟିଲା । ତାହା ହେଉଛି ବୈପ୍ଲବିକ ମାନବବାଦ । ଏହି ମାନବବାଦ ଦୁଃଖ, ଯନ୍ତ୍ରଣାର ଜୟଗାନ କଲା ନାହିଁ, ବରଂ ଏ ସବୁର ପରିସମାପ୍ତି ପାଇଁ ପାରଂପରିକ ରକ୍ଷଣଶୀଳ ସମାଜ ବ୍ୟବସ୍ଥା ବିରୋଧରେ ପ୍ରତିବାଦ କଲା । ଧର୍ମ, ଈଶ୍ୱର ବିଶ୍ୱାସ, ଭାଗ୍ୟ, ଭଗବାନଙ୍କ ବିରୋଧରେ ଖୋଲାଖୋଲି ସ୍ୱର ଉତ୍ତୋଳନ କଲା । ସମଗ୍ର ମାନବ ଜାତିକୁ ସ୍ଥାଣୁ, ଜଡ଼ କରି ଦେଉଥିବା ତଥାକଥିତ ଧର୍ମ ଧ୍ୱଜାଧାରୀ ମାନଙ୍କୁ ସିଧାସଳଖ ଆଘାତ ଦେବା ସହିତ ଏହା ସାମ୍ୟ, ମୈତ୍ରୀର ବାର୍ତ୍ତା ପ୍ରଚାର କଲା । ତେଣୁ କୁହାଗଲା, "ଏ ମାନବବାଦ ସହନଶୀଳତା ପରିବର୍ତ୍ତେ ଶକ୍ତିର ପରୀକ୍ଷା ଚାହେଁ । ରକ୍ତ ବୁହାଇ ଅଶୁଚି ପୃଥିବୀକୁ ଶୁଚିମନ୍ତ କରିବାକୁ ଏହା ପ୍ରେରଣା ଦିଏ ।" (୬୭)

ତେଣୁ ଏଥିରୁ ସ୍ପଷ୍ଟ ପ୍ରତିପାଦିତ ହୁଏ ଯେ, ବିପ୍ଳବୀ ଚିନ୍ତାଚେତନା ମଧ୍ୟରେ ମାନବବାଦୀ ଚିନ୍ତାଧାରାର ଅନୁପ୍ରବେଶ ଘଟି ବିପ୍ଳବୀ ମାନବବାଦର ଆଖ୍ୟା ଅର୍ଜନ କଲା ୧୯୩୬ ମସିହା ପରବର୍ତ୍ତୀ କବିତା । ଏହି କବିତା ସମାଜର ଶୋଷକ ପୁଂଜିପତି ଗୋଷ୍ଠୀ ବିରୋଧରେ ଯେତିକି ବିଦ୍ରୋହ କଲା ଶ୍ରମିକ, କୃଷକ ପ୍ରଭୃତି ଅବହେଳିତ ଗୋଷ୍ଠୀଙ୍କ ପ୍ରତି ସେତିକି ସମବେଦନା ବ୍ୟକ୍ତ କଲା । ମଣିଷକୁ ନିଜର ଅଧିକାର ସଂପର୍କରେ ସଚେତନ କରାଇବା ହେଲା ଏହାର ମୂଳ ଲକ୍ଷ୍ୟ । ସକଳ ପ୍ରକାରର ଅନ୍ୟାୟ, ଅତ୍ୟାଚାରର ପରିସମାପ୍ତି ଘଟାଇବା ସହିତ, ଅତ୍ୟାଚାରିତ ପୀଡ଼ିତ

ମାନଙ୍କ ହୃଦୟରେ ଅଯୁତ ଶକ୍ତିର ପରାକ୍ରମ ଭରିଦେବା ପାଇଁ ମାନବବାଦ ବୈପ୍ଲବିକ ପନ୍ଥା ଅବଲମ୍ବନ କଲା । ଆଲୋଚକ ଆଶିଷ୍ ମହାପାତ୍ରଙ୍କ ମତରେ – "ସମାଜରେ ଐଶ୍ୱର୍ଯ୍ୟର ଗଜଦନ୍ତ ମୀନାର୍‌ରେ ଶୋଇରହି ଦୁଗ୍ଧ ମୃଣାଳ ଖାଉଥିବା ଶୋଷକ ମଣିଷଠାରୁ ନିଜର ଅର୍ଥନୈତିକ, ସାମାଜିକ ଓ ରାଜନୈତିକ ଅଧିକାର ଛଡ଼େଇ ଆଣିବା ପାଇଁ ଶ୍ରେଣୀ ସଂଗ୍ରାମର ଆବଶ୍ୟକତା ପଡ଼େ । ତେଣୁ ସାମାଜିକ, ଅର୍ଥନୈତିକ ଓ ରାଜନୈତିକ ଅଧିକାର ପାଇଁ ବିପ୍ଳବମାନ ସଂଗଠିତ ହୋଇଛି ଆବହମାନ କାଳରୁ ।" (୬୮)

ସାମାଜିକ, ରାଜନୈତିକ, ଅର୍ଥନୈତିକ ଅଧିକାର ପାଇଁ ଯେଉଁ ବୈପ୍ଲବିକ ମାନବବାଦୀ ଚିନ୍ତାଧାରା ଋଷିଆରେ ମାର୍କ୍‌ସିମ୍ ଗୋର୍କୀ, ମାୟୋକୋଭସ୍କି, ସ୍ପେନ୍‌ର ନେରୁଦାଙ୍କ ରଚନାରେ ପରିଲକ୍ଷିତ ହୋଇଥିଲା, ତାହା ଓଡ଼ିଆ ସାହିତ୍ୟକୁ ବହୁଳ ମାତ୍ରାରେ ପ୍ରଭାବିତ କଲା । ଯାହାର ପ୍ରଭାବରେ କବି ସଚ୍ଚି ରାଉତରାୟ, ଅନନ୍ତ ପଟ୍ଟନାୟକଙ୍କଠାରୁ ଆରମ୍ଭ କରି ସାମସମୟିକ କାଳର ବହୁ କବି ଏହାକୁ ସେମାନଙ୍କର ସୃଷ୍ଟିରେ ଅଗ୍ରାଧିକାର ଦେଲେ । ମାନବତାବାଦକୁ ସ୍ୱାଗତ ଜଣାଇବାକୁ ଯାଇ କବି ରାଉତରାୟ ଲେଖି ବସିଲେ –

"ଆଜି ମୁଁ ଆସିଚି ପଶୁ, ନିଶାଚର ମଣିଷର ଦାବି ଲାଗି
ମଣିଷ କବରୁ ଜନ୍ମ ମୋହର, ଧ୍ୱଂସେ ମୁଁ ଅନୁରାଗୀ ।"(୬୯)

କବିଙ୍କର ମାନବବାଦୀ ଚେତନା ଆତ୍ମପ୍ରକାଶ କରିଛି କୋଣାର୍କର ଅଭିଜାତ କଳା ଭାସ୍କର୍ଯ୍ୟରେ ଲୁଚି ରହିଥିବା ହଜାର ହଜାର ଶ୍ରମଜୀବୀର ଲହୁଲୁହ ମଧ୍ୟରେ । ବିଳାସୀ ରାଜାର ଇଚ୍ଛା ପୂରଣ ପାଇଁ କେତେ କାରିଗର ସେଠାରେ ଜୀଅନ୍ତା ସମାଧି ନେଲେ । କେତେ ଶିଳ୍ପୀ ଯୋଷମୋଷ ରକ୍ତ ଢାଳି ଦେଲେ । ତେଣୁ ସମବେଦନାରେ ଜର୍ଜରିତ କବି ପ୍ରାଣ ଗାଉଛି –

"ଅମର ହୋଇବ କାଳର କବଳେ
ଯେଣୁ ଜଣକର ନାମ
ଲକ୍ଷ ବେନାମୀ ଜୀବନରେ ତେଣୁ
ଗଢ଼ା ହେଲା ଶମଶାନ ।" (୭୦)

କବି ରାଉତରାୟଙ୍କ ପରି କବି ଅନନ୍ତଙ୍କ ଚିନ୍ତାଧାରା ଧୀରେଧୀରେ ଜୀବନର ବ୍ୟାପକତାକୁ ରୂପାୟିତ କରିଛି । କବିତା ଗଣଧର୍ମୀ ମାନବବାଦୀ ଚିନ୍ତାଧାରାକୁ ପ୍ରକାଶ କରିବା ସହିତ ଏକ ଶୋଷଣମୁକ୍ତ ସମାଜ ବ୍ୟବସ୍ଥାର ଆଗମନ ପାଇଁ ଆଶା ପୋଷଣ କରିଛି । ମଣିଷ ସମାଜର ସର୍ବକୁଶଳ କାମନା କରୁଥିବା କବି ଅନନ୍ତଙ୍କର କବିତା ଆଜି ମଧ୍ୟ ଅଗଣିତ ପାଠକପାଠିକାଙ୍କର ହୃଦୟ ଜିଣି ନେଉଛି କହିଲେ ଅତ୍ୟୁକ୍ତି ହେବ

ନାହିଁ । କବି ସେଇମାନଙ୍କର ଦୁଃଖ, ଯନ୍ତ୍ରଣା ପ୍ରତି ସମବେଦନା ଜ୍ଞାପନ କରୁଛନ୍ତି ଯେଉଁମାନେ –

"ଜୀବନ ଦେଇରେ ଢାଳିଲୁ ରକ୍ତ, ତୋଳିଲୁ ସଉଧ ମାଳା
ଆମରି ଲାଗିରେ ଶାସନ ଶକ୍ତ, ଆମେ ହିଁ ସର୍ବହରା ।

x x x x x

ପଉଷ ପ୍ରଭାତେ କାଟିଲୁ ଶସ୍ୟ ହସିଲେ ନିଖିଳ ବାସୀ
ଅତ୍ୟାଚାରୀର କରାଳ କବଳେ ନେଲାରେ ସକଳ ଗ୍ରାସୀ ।" (୭୧)

ସମାଜବାଦୀ ମାନବବାଦର ବନ୍ଦନାଗାନ କରୁଥିବା କବି ଅନନ୍ତ ସେଇ ମାନଙ୍କ ପାଇଁ ସ୍ୱପ୍ନ ଦେଖନ୍ତି ।

"ସ୍ୱପନ ଦେଖୁଚି - ହିଂସା ପରଶ ନାହିଁ,
ଜାଣେନା ଜାତି ମୋ' ମାଲିକ ମୂଲିଆ କଥା,
ଦସ୍ୟୁ ବଣିକ ଯାଇଚି କାହିଁ
ସମାନ ସକଳେ ଉଚ୍ଚ ମଣିଷ ମଥା ।" (୭୨)

ଯନ୍ତ୍ରଣା ଜର୍ଜରିତ ଜୀବନ ମଧ୍ୟଦେଇ ଯୁଗମାନସକୁ ବ୍ୟକ୍ତ କରନ୍ତି କବି ତାଙ୍କର କବିତାରେ । ଏଇ ଚେତନା ଆତ୍ମକୈନ୍ଦ୍ରିକତା ପରିହାର କରି ଜୀବନର ବ୍ୟାପକତାକୁ ପ୍ରକାଶ କରିଥାଏ । ଏହି ଚିନ୍ତାଧାରା କୌଣସି ସୀମା ମଧ୍ୟରେ ଆବଦ୍ଧ ନୁହେଁ । ମୁକ୍ତି ଓ ସ୍ୱାଧୀନତା କାମନା କରୁଥିବା ଏହି ମାନବତାବାଦ କୌଣସି ପ୍ରତିବଂଧକ ମାନେ ନାହିଁ । ତେଣୁ "କବି ସ୍ୱପ୍ନ ଦେଖିଛନ୍ତି ଏକ ଶୋଷଣମୁକ୍ତ ସମାଜ ବ୍ୟବସ୍ଥା ପାଇଁ, ସେଠାରେ ଜୀବନ ମୁକ୍ତ ଓ ସ୍ୱାଧୀନ । କୁଟୀରଠାରୁ ଆରମ୍ଭ କରି ସହର ତଳି ପର୍ଯ୍ୟନ୍ତ ପୁଣି କମାରଶାଳର 'ଅନଳ ଦୋଳି' ଠାରୁ ଗହଳ ବିଲରେ ପ୍ରାଣ ଉଛୁଳା ସଂଗୀତ ପର୍ଯ୍ୟନ୍ତ ସର୍ବତ୍ର ସେଇ ନୂଆ ଜୀବନ ରୀତିର ବନ୍ଦନା । ସେଠାରେ ହିଂସା, ଦ୍ୱେଷର ସ୍ଥାନ ନାହିଁ । ମଣିଷ ସେଠି ମସ୍ତକ ଉନ୍ନତ କରି ବଞ୍ଚିବାକୁ ଶିଖିଛି ।" (୭୩)

ଶୋଷିତ ମାନବାତ୍ମାପାଇଁ କବି ଅନନ୍ତଙ୍କ ପରି କବି ମନମୋହନ ମିଶ୍ରଙ୍କ କବି ଆତ୍ମା ମଧ୍ୟ ସଦାବ୍ୟଥିତ । ସେମାନଙ୍କ ପାଇଁ ଆଶ୍ୱାସନାର ବାର୍ତ୍ତା ପ୍ରଚାର କରିବା ସହିତ, ସେମାନଙ୍କୁ ସଚେତନ କରିବା ପାଇଁ କବି ପ୍ରତିଶ୍ରୁତିବଦ୍ଧ । ମହାଜନର ଋଣଭାରରେ ଶ୍ରମିକ ଓ କୃଷକ ସଦା ଋଣଗ୍ରସ୍ତ । ନିଜେ ଉପାର୍ଜନ କଲେ ମଧ୍ୟ ଏସବୁ ଚାଲିଯାଏ ମହାଜନର ହାତକୁ । ମହାଜନ କିନ୍ତୁ ଏମାନଙ୍କ ହାତରେ ଭାତଥାଳି ବଦଳରେ ଧରାଇ ଦିଅନ୍ତି ବିଷପାତ୍ର । ସମାଜତାନ୍ତ୍ରିକ ବ୍ୟବସ୍ଥାର ଏ ପ୍ରକାର ରୂପ ସମ୍ବେଦନଶୀଳ କବି ଦୃଷ୍ଟିରୁ ବାଦ୍ ଯାଇ ନାହିଁ । ତେଣୁ କବି ଲେଖିଛନ୍ତି –

"ଭାତ ଉପୁଜାଇ ହାତ ପତାଇଲୁ ଧନ ତକାୟତ ଦ୍ୱାରେ
ଲୁଗାକଳ ଗଢ଼ି ଲଂଗଳା ଛାତିରେ ଘେନିଲୁ ଗୁଳି ପ୍ରହାରେ
ତୋ ପିଠିରେ ବଜାଏ ବାଜା
ବିରଳା ସ୍ୱଦେଶୀ ରାଜା
ସେ ବିଲାତି ବଂଧୁକ ନେଇ ।"(୭୪)

ସଚ୍ଚି ରାଉତରାୟ, ଅନନ୍ତ ପଟ୍ଟନାୟକ ଓ ମନମୋହନ ମିଶ୍ରଙ୍କ କବିତାରେ ଯେଉଁ ପ୍ରକାର ବିପ୍ଳବାତ୍ମକ ସମ୍ବେଦନଶୀଳ ମାନବବାଦୀ ଚିନ୍ତାଧାରା ପ୍ରକାଶ ପାଇଥିଲା, ସ୍ୱାଧୀନତା ପରବର୍ତ୍ତୀ କାଳରେ ଏହି ସ୍ୱର ଧୀରେଧୀରେ ଶିଥିଳ ହୋଇପଡ଼ିଲା । କାରଣ ସ୍ୱରୂପ ଦୁଇଦୁଇଟା ବିଶ୍ୱଯୁଦ୍ଧର ପ୍ରଭାବକୁ ଗ୍ରହଣ କରାଯାଇଥାଏ । ଜନ ମାନସରେ ଏହା ଯେଉଁ ଅସହାୟତା, ଅନ୍ତଃସାରଶୂନ୍ୟତା ସୃଷ୍ଟି କଲା ତାହା ପାଶ୍ଚାତ୍ୟ କବି ମାନସକୁ ଗଭୀର ଭାବେ ପ୍ରଭାବିତ କଲା । ପାଶ୍ଚାତ୍ୟ କବିମାନେ ଏହି ଭାବକୁ ଯେପରି କାବ୍ୟ କବିତାରେ ଚିତ୍ରିତ କଲେ ତାହାକୁ ଓଡ଼ିଆ କବିତା ସାଦରେ ଗ୍ରହଣ କରିନେଲା । 'neither living nor dead' ଅର୍ଥାତ୍ ଏକପ୍ରକାର ଜୀବନ୍ମୃତ ଅବସ୍ଥା ସେମାନଙ୍କ କବିତାରେ ମୁଖ୍ୟ ସ୍ଥାନ ଲାଭ କଲା । କବି ଗୁରୁପ୍ରସାଦ ମହାନ୍ତି, ରମାକାନ୍ତ ରଥ, ସୀତାକାନ୍ତ ମହାପାତ୍ର, ବେଣୁଧର ରାଉତ, ଚିନ୍ତାମଣି ବେହେରା ପ୍ରମୁଖ ଏହି ଭାବଧାରାକୁ ତାଙ୍କ କାବ୍ୟକବିତାରେ ପ୍ରକାଶ କଲେ । ୧୯୩୬ ମସିହାରେ ଦେଖା ଦେଇଥିବା ବୈପ୍ଳବିକ ମାନବବାଦ ଇଲିଅଟ୍‌ଙ୍କ ପ୍ରଭାବ ହେତୁ ମଳିନ ପଡ଼ିଗଲା ୧୯୫୦ ମସିହା ବେଳକୁ । ଏହା ଅପ୍ରତିହତ ରହିଲା ୧୯୬୦ ପର୍ଯ୍ୟନ୍ତ । ୧୯୬୦ ମସିହାରେ କବି ବ୍ରଜନାଥ ରଥଙ୍କର 'ମରୁ ଗୋଲାପ' ସଂକଳନ ଓଡ଼ିଆ କବିତା ରାଜ୍ୟରେ ବୈପ୍ଳବିକ ମାନବବାଦର ପୁନରାଗମନ ଘଟାଇଲା । ଏହି ବୈପ୍ଳବିକ ମାନବବାଦ କବି ରବି ସିଂଙ୍କ କବିତା ଦ୍ୱାରା ନିଜର ଭିତ୍ତିକୁ ସୁଦୃଢ଼ କରିପାରିଲା । କବି ବ୍ରଜନାଥଙ୍କ କବିତା ମାନବ ଜାତିର ଜୈତ୍ରୀଗାନ କରିବା ସହିତ ବିଶ୍ୱରେ ମାନବବାଦର ପ୍ରତିଷ୍ଠା କ୍ଷେତ୍ରରେ ପ୍ରଧାନ ପ୍ରତିବଂଧକ ସାଜିଥିବା ସମାଜ ବ୍ୟବସ୍ଥା ପ୍ରତି କାବ୍ୟିକ ଘୃଣା ପ୍ରକଟ କଲା । କବିଙ୍କର ନିଜସ୍ୱ ମନ୍ତବ୍ୟରୁ ଏହା ପ୍ରମାଣିତ ହୁଏ । 'ହେ ମହାଜୀବନ'ର ମୁଖବଂଧରେ କବି କହନ୍ତି –

"ଜୀବନ ପ୍ରତି, ମଣିଷ ପ୍ରତି ଓ ଏଦେଶର ମାଟି-ପାଣି-ପବନ ପ୍ରତି ଗଭୀର ମମତ୍ୱ ବୋଧକୁ ତାଙ୍କ କାବ୍ୟ ଚେତନାର 'ନାଭି-ପଦ୍ମ' ବା 'ପ୍ରାଣ କେନ୍ଦ୍ର' ବୋଲି କହିଛନ୍ତି ।" (୭୫)

କବିଙ୍କର କବିତା ଜୀବନର ଚଳମାନତା, ଦୁଃଖ, ଯନ୍ତ୍ରଣାକୁ ଅତିକ୍ରମ କରାଇ ମଣିଷକୁ ବଞ୍ଚିବାକୁ ପ୍ରେରଣା ଦିଏ । ଯାହା ସୁସ୍ଥ ଜୀବନ ଧାରାରେ ପ୍ରତିକୂଳ ପ୍ରଭାବ ପକାଏ ତାହା ବିରୋଧରେ ଲଢ଼ିବାର ମାନସିକତା ସୃଷ୍ଟି କରେ । ତେଣୁ କବି ଜୀବନର କରୁଣ ଗାଥା ଗାନ କରିବାକୁ ଯାଇ ଘୋଷଣା କରିଛନ୍ତି –

"ରକ୍ତର କାଳିରେ ଜୀବନର ମହାକାବ୍ୟ ଲେଖା ହେଉ
ଅସ୍ତ୍ର ସବୁ ତୂଳୀ ହେଉ, ହୃଦୟର ଦୀପ୍ତ ଚିତ୍ରପଟ ଆଙ୍କି ଯାଉ" (୭୬)

ଏକ ବୃହତ୍ତର ମାନବିକ ସମ୍ବେଦନା ସୃଷ୍ଟି କରିବା ସହିତ ବୈପ୍ଳବିକ ମାନବବାଦର ମହାମନ୍ତ୍ର ଉଚ୍ଚାରଣ କରି ଷାଠିଏ ଦଶକରେ ଏହି ଚିନ୍ତାଚେତନାକୁ ଉଜ୍ଜୀବିତ କରିବାରେ ସମର୍ଥ ହୋଇଥିଲା କବି ବଜ୍ରନାଥଙ୍କର କବିତା । ବୈପ୍ଳବିକ ମାନବବାଦୀ କବିର କବିତା କଳ୍ପନା ରାଜ୍ୟରେ ଉଡ଼ି ବୁଲିବାର ମୋହ ସୃଷ୍ଟି କରେ ନାହିଁ । ସମାଜର ପାଶବିକତା ବିରୋଧରେ ସାଲିସ୍ ବିହୀନ ସଂଗ୍ରାମ କରିବାକୁ ଏହା ଆହ୍ୱାନ ଦିଏ । ସମାଜ ବ୍ୟବସ୍ଥାରେ ପରିବର୍ତ୍ତନ ପାଇଁ ଦୃଢ଼ ଆଶାପୋଷଣ କରୁଥିବା କବି ନିଜ ଜୀବନକୁ ମଧ୍ୟ ଉତ୍ସର୍ଗୀକୃତ କରିଦିଏ । ନିଜ ହୃଦୟରୁ ଲହୁ ନିଗାଡ଼ି ଦିଏ ମଣିଷ ସମାଜ ପାଇଁ । ହେଲେ ପାଏ କ'ଣ ? କେତେ ଦୂର ସେ ଏଥିରେ ସଫଳ ହୁଏ ? ବ୍ୟଥିତ ବିମର୍ଷ କବି ହୃଦୟରୁ ଝରିପଡ଼େ ମାନବବାଦର ମହାମନ୍ତ୍ର ।

"ମାନବ ଭିତରୁ ମାନବିକତାଟା ଭିନ୍ନ
ସେଥିପାଇଁ ଆଜି ମୁଁ ଏକ ମସ୍ତ ନାସ୍ତିବାଚକ ଚିହ୍ନ ।" (୭୭)

ଷଷ୍ଠ ଦଶକରେ ଏହି ମାନବବାଦୀ ଚିନ୍ତାଧାରାର ଆଦର୍ଶରେ ବହୁ କବି ଅନୁପ୍ରାଣିତ ହୋଇଛନ୍ତି । ସେମାନଙ୍କ ମଧ୍ୟରୁ କବି ସଦାଶିବ ଦାଶ, କବି ପ୍ରସନ୍ନ ପାଟଶାଣୀ, କବି ସମରେନ୍ଦ୍ର ନାୟକ, କବି ହୋସେନ୍ ରବି ଗାନ୍ଧୀ ପ୍ରମୁଖ ଅନ୍ୟତମ । ଷଷ୍ଠ ଦଶକ ଓଡ଼ିଆ କବିତା ଯେଉଁ ଥଟ୍‌ଫୁଲ୍ ଚିନ୍ତାଧାରାକୁ ବହନ କରି ଭାରାକ୍ରାନ୍ତ ହୋଇ ପଡ଼ିଥିଲା, ସାଧାରଣ ପାଠକର ବିଚାର ଶକ୍ତି ଏହାକୁ ସ୍ପର୍ଶ କରିବାକୁ ଥିଲା ଅକ୍ଷମ । ସେ ସମୟରେ ଏହି ଯୁବପୀଢ଼ି ଓଡ଼ିଆ କବିତାରେ ବୈପ୍ଳବିକ ମାନବବାଦର ପୁରୋଧା ସାଜି ଏହାକୁ ଉଜ୍ଜୀବିତ କରିରଖିବାରେ ସକ୍ଷମ ହୋଇଥିଲେ । ସେମାନଙ୍କର କବିତା ବିଳାସବ୍ୟସନ ଜୀବନଚର୍ଯ୍ୟାଠାରୁ ଦୂରେଇ ଆସି ମାଟିମଣିଷର କଥା କହିଲା । ସେମାନଙ୍କର କବିତା ଗୁଡ଼ିକ କେତେଦୂର ମାଟିମଣିଷର ଅନ୍ତରର ସ୍ୱରଲିପି ଥିଲା ଜଣି ସଦାଶିବ ଦାଶଙ୍କର ବକ୍ତବ୍ୟରୁ ତାହା ଜଣାପଡ଼େ । କବି କହନ୍ତି, "ମୋ କବିତାଟି ପଢ଼ି ମାଲାକାନଗିରିର ଘଞ୍ଚ ଜଂଗଲରେ ରହୁଥିବା ସାଧାରଣ ପାଠକ, ରାୟଗଡ଼ା, ଲାଂଜିଗଡ଼, କରଂଜିଆ, ଯୁଯୁମୋରା କିମ୍ବା ଶିମିଳିପାଳର ଆଗ୍ରହୀ ପାଠକ ଯେତେ ବେଳେ ଲେଖେ

'କବି ତୁମେ ଆମ ଜୀବନର କଥା କହିଛ' ସେତେବେଳେ ମହାକବି ମାନଙ୍କର ଜ୍ଞାନପୀଠ, ସରସ୍ୱତୀ, ଶାରଳା, ସାହିତ୍ୟ ଏକାଡ଼େମୀ, ଲକ୍ଷଲକ୍ଷ ଟଙ୍କା, ଉପଢ଼ୌକନ ଓ ସ୍ତୁତିଗାନମାନ ମୋତେ ଅସାର ଓ କ୍ଷଣିକ ମନେ ହୁଅନ୍ତି ।"(୭୮)

ବୈପ୍ଳବିକ ମାନବବାଦର ମହାମନ୍ତ୍ରରେ ଷାଠିଏ ସତୁରୀ ଦଶକର କବିମାନେ ଏପରି ଅଭିମନ୍ତ୍ରିତ ହୋଇଛନ୍ତି ଯେ ଏଥିରୁ ସେମାନଙ୍କୁ କେହି ବିଚ୍ୟୁତ କରିପାରି ନାହାନ୍ତି । ସ୍ୱୀକୃତି, ପ୍ରତିଷ୍ଠା ପଛରେ ନ ଗୋଡ଼ାଇ ଏଇ ମାଟିର ଦୁଃଖ, ଶୋକ, କ୍ଷୁଧା, ଯନ୍ତ୍ରଣାକୁ ଏମାନେ ଆତ୍ମସ୍ଥ କରିଦେଇଛନ୍ତି । ଦୁଃଖର ଅଂଗାର ମଧ୍ୟରୁ ତ୍ରାହି ତ୍ରାହି ଚିତ୍କାର କରୁଥିବା ସନ୍ତାପିତ ପ୍ରାଣକୁ ଏଥିରୁ ମୁକୁଳାଇବା ପାଇଁ ଗଣଯୁଦ୍ଧକୁ ହିଁ ଏମାନେ ଏକମାତ୍ର ପନ୍ଥା ବୋଲି ଗ୍ରହଣ କରିନେଇଛନ୍ତି । ସେଥିପାଇଁ କବି ପ୍ରସନ୍ନ ପାଟ୍ଟଶାଣୀ ଓ କବି ସଦାଶିବ ଦାଶ ଲେଖନ୍ତି –

"ମୁଁ ଦେଖୁଛି ନିବିଡ଼ ଅରଣ୍ୟର ତଳେ
ଅନାହାର ଶ୍ମଶାନରେ ଦୁଃଖର ଅଂଗାର ଜଳେ
ମୁଁ ଦେଖୁଛି ସବୁଜ ଶସ୍ୟର ପଣତରେ
ସଢ଼ିଯାଏ ଆନନ୍ଦର ଫଳନ୍ତି ମାଉଁସ
ଶୋଷଣ ବିଷ ଶୋକର କେନାଲ୍‌ରେ
ଭାସେ ଫଲିଡଲ୍ ବିଲେ ଦଗ୍ଧ କୃଷକର ପ୍ରାଣ ।" (୭୯)

"ମାଟିକୁ ଫଟାଏ ଯିଏ ସେ ଜାଣଇ ଭୋକର ବେଦନା
ପଥର ଭାଂଗଇ ଯିଏ ସେ ଜାଣିଛି ତା' ହାତର ଶକ୍ତି ।
ଖାଦାନେ ଯେ କାମ କରେ ସେ ଜାଣିଛି ଅଭାବର କଥା
ଶୋଷିତ ସମାଜ ଜାଣେ ଗଣଯୁଦ୍ଧ ଏକ ନ୍ୟାୟ ପନ୍ଥା ।" (୮୦)

ମାନବିକ ସମ୍ବେଦନା ପ୍ରଗତିବାଦର ଗୋଟିଏ ପାର୍ଶ୍ୱ କହିଲେ ଭୁଲ୍ ହେବ ନାହିଁ । କବି ସାଧାରଣ ମଣିଷର ଦୁଃଖ, ଯନ୍ତ୍ରଣାକୁ ହୃଦୟଙ୍ଗମ କରି, ସମାଜକୁ ଜଣାଇବାକୁ ଚେଷ୍ଟା କରେ, ଯାହା ପ୍ରତିପାଦିତ ହୁଏ ଉପରୋକ୍ତ ଦୁଇଟି କବିତାରୁ । କବି ପ୍ରସନ୍ନ ଓ କବି ସଦାଶିବ ନିର୍ଯ୍ୟାତନାର ଚିତ୍ର ଅଂକନ କରିବା ସହିତ ଅନ୍ୟମାନଙ୍କୁ ମଧ୍ୟ ଏହାକୁ ଅନୁଭବ କରିବାକୁ ପର୍ଯ୍ୟାପ୍ତ ସୁଯୋଗ ଦେଇଛନ୍ତି । ବିପ୍ଳବୀ ସାହିତ୍ୟ ବ୍ୟକ୍ତିଜୀବନ ଓ ସମାଜଜୀବନ ମଧ୍ୟରେ ଏକ ସଂଯୋଗ ରକ୍ଷା କରିଥାଏ । ମଣିଷର ସର୍ବନିମ୍ନ ଆବଶ୍ୟକତା ହାସଲ୍ କରିବା ପାଇଁ ଏହା ସମ୍ଭ୍ରାନ୍ତ ମାନଙ୍କ ବିରୋଧରେ ସଂଗ୍ରାମ କରୁଥିବାରୁ ଏହା ମାନବବାଦୀ ହେବାକୁ ବାଧ୍ୟ । କାହିଁକି ନା 'ଜୀବନ ପାଇଁ କଳା' ହେଉଛି ଏହାର ଅନ୍ତଃସ୍ୱର । ସମାଜ ଓ ଗଣଜୀବନକୁ ସ୍ପର୍ଶ କରିବା ଏହାର

ପ୍ରମୁଖ ଦାୟିତ୍ୱ । ପ୍ରତ୍ୟେକ ମାନବବାଦୀ ସ୍ରଷ୍ଟାଙ୍କ କବିତାରେ ଏହା ଲକ୍ଷ୍ୟ କରାଯାଏ । ମଣିଷକୁ ତା'ର ସର୍ବନିମ୍ନ ଆବଶ୍ୟକତା ନିକଟରୁ ଦୂରେଇ ରଖିବା, ଦାରିଦ୍ର୍ୟ ଓ ଦୁଃଖ ତା'ର ପାଖ ନଛାଡ଼ିବା ଇତ୍ୟାଦି ଅସନ୍ତୋଷକୁ ନେଇ ବୈପ୍ଳବିକ ମାନବବାଦୀ ସାହିତ୍ୟ ସୃଷ୍ଟି ହୋଇଥାଏ । ଏ କ୍ଷେତ୍ରରେ କବି ଆଶୁତୋଷ ପରିଡ଼ାଙ୍କ 'ଚଣ୍ଡାଳ' ଓ କବି ପ୍ରସନ୍ନ ମିଶ୍ରଙ୍କ 'ଟ୍ରକ୍ ଡାଲାରେ ସନାତନ' ଏକ ମାଇଲ୍‌ଖୁଣ୍ଟ ଅଟେ ।

" ଯଦି ସେ ବୁଝିବ ସବୁରି ମୂଳରେ ଅଛି ନିରନ୍ନ ସନାତନ
ଦୁର୍ଭିକ୍ଷର ଆଁରୁ ଖସି
ମରୁଡ଼ିର ଭସ୍ମରୁ ଉଠି ପୁରାଣର ଫେନିକସ୍ ପକ୍ଷୀ ପରି
ଯିଏ ଦାବୀ କରି ଆସୁଛି ଅନ୍ନ-ବସ୍ତ୍ର ।" (୮୧)

"ମତେ ଗୋଇଠା ମାରିଲେ
ଗଛରୁ ଖସି ପଡ଼େ ପତ୍ର
ଆକାଶରୁ ଖସି ପଡ଼େ ତାରା
ମୋ ଛାତି ଫାଡ଼ି ଦେଲେ ବାହାରି ଆସେ ମଣିଷ
ସାତତାଳ ପାଣି ଆଉ ଆଠତାଳ ପଂକ ତଳେ (୮୨)
ମୋର ପ୍ରତିବିମ୍ବ ।"

ଏପରି ଦୁଃଖାର୍ତ୍ତ ଆତ୍ମାର ଚିତ୍ର ଆଙ୍କେ ମାନବବାଦୀ ଚେତନା ଓ ଗୁରୁତ୍ୱାରୋପ କରେ ମଣିଷର ସର୍ବନିମ୍ନ ଆବଶ୍ୟକତା ଉପରେ ।

ଆଲୋଚନାରୁ ସ୍ପଷ୍ଟ ହୁଏ ଯେ ଓଡ଼ିଆ କବିତାରେ ମାନବବାଦୀ ଚିନ୍ତାଧାରା ବିଭିନ୍ନ ପର୍ଯ୍ୟାୟ ମଧ୍ୟ ଦେଇ ଗତି କରି ଆଜି ଶୀର୍ଷ ସ୍ଥାନରେ ଉପନୀତ ହୋଇପାରିଛି । 'ପ୍ରଗତିବାଦ' ବିପ୍ଳବକୁ ମୁଖ୍ୟ ସ୍ଥାନ ପ୍ରଦାନ କରିଥିଲା ବେଳେ ମାନବବାଦ ବିପ୍ଳବ ମାଧ୍ୟମରେ ଶାନ୍ତି-ମୈତ୍ରୀର ଆବାହନ କରିଥାଏ । କିନ୍ତୁ ଉଭୟ ଗୋଟିଏ ସୂତ୍ରରେ ମିଳିତ ହୋଇ ରୂପାନ୍ତରିତ ହୁଅନ୍ତି ବୈପ୍ଳବିକ ମାନବବାଦରେ । ମନୁଷ୍ୟ ସମାଜର ସର୍ବାଙ୍ଗୀନ ଉନ୍ନତିକୁ ମୂଳମନ୍ତ୍ର ଭାବରେ ଗ୍ରହଣ କରିନିଏ ବୈପ୍ଳବିକ ମାନବବାଦ । କବିତାରେ ମାନବବାଦୀ ସ୍ୱର ପ୍ରଗତିବାଦର ବିକାଶ ଓ ପ୍ରସାର ମଧ୍ୟରେ ହିଁ ସଂଗଠିତ ହୋଇଛି କହିଲେ ଅତ୍ୟୁକ୍ତି ହେବ ନାହିଁ । ସାଧାରଣ ଜନତାର ଉନ୍ନତି ନ' ହେଲେ ଜାତିର ଉନ୍ନତି ଅସମ୍ଭବ । ତେଣୁ ପ୍ରତ୍ୟେକ ମଣିଷକୁ ସଚେତନଶୀଳ କରାଇବାପାଇଁ ବୈପ୍ଳବିକ ମାନବବାଦ ଆଜି ପ୍ରତିଜ୍ଞାବଦ୍ଧ । ମଣିଷର ହୃଦୟରେ ଭଲପାଇବାର ବୀଜବପନ କରିବା ଉଦ୍ଦେଶ୍ୟରେ ମାନବବାଦ ଆହ୍ୱାନ ଦିଏ – "ସାହିତ୍ୟ କହିବ ସେହି ଏକ ମଣିଷ ପରିବାରର କଥା, ହତ୍ୟା, ଲୁଣ୍ଠନ, ଧର୍ଷଣ ଓ ବର୍ବରତା ସାହିତ୍ୟର

ପୁଂଜି ହେବ ନାହିଁ । ହେବ ମଣିଷ ପଣିଆ । ମଣିଷକୁ ମଣିଷର ଭଲପାଇବା ହୋଇଯିବ ସାହିତ୍ୟର ମୋହନ ବଂଶୀ । ମୃତ୍ୟୁ ନୁହେଁ ଅମୃତ ହେବ ଉଦାମ ଆକାଂକ୍ଷା । ଏକ ଆଧ୍ୟାତ୍ମ ଉଦ୍ଦୀପିତ ଭାବଧାରା ସାହିତ୍ୟକୁ ରସାପ୍ଲୁତ କରିଦେବ ।"(୮୩)

ମନୁଷ୍ୟ ସମାଜର ଉନ୍ନତି ଯଦି ସ୍ରଷ୍ଟାର ମୂଳଲକ୍ଷ୍ୟ ତେବେ ଏହାକୁ ବାଦ୍ ଦେଇ ସୃଷ୍ଟିର ପରିକଳ୍ପନା କରାଯାଇନପାରେ । ମନେପଡ଼େ ଚଣ୍ଡୀ ଦାସଙ୍କର ଉକ୍ତି –

"ସବାର୍ ଉପରେ ମାନୁଷ୍ ସତ୍ୟ, ତାର ଉପରେ ନାହିଁ ।"

ତେଣୁ ସଂସାରର ଶ୍ରେଷ୍ଠ ଜୀବ ମନୁଷ୍ୟର ଦୟନୀୟ ଅବସ୍ଥାର ଚିତ୍ର ପ୍ରତ୍ୟେକ ଲେଖକର କର୍ତ୍ତବ୍ୟ ହେବା ଉଚିତ୍ । ଜୀବନର ତୂର୍ଯ୍ୟନାଦ ଶୁଣାଇବା ସହିତ ଏପରି ଏକ ସମାଜର ପରିକଳ୍ପନା କରିବା ଉଚିତ୍ ଯେଉଁଠାରେ ସଭିଏଁ ସୁଖ, ଶାନ୍ତିରେ କାଳାତିପାତ କରୁଥିବେ । ଧନୀ, ଦରିଦ୍ର ମଧ୍ୟରେ କୌଣସି ତାରତମ୍ୟ ନଥିବ । ନଥିବ ମଧ୍ୟ ଅନ୍ୟାୟ, ଅତ୍ୟାଚାର । ସେଇଥିପାଇଁ ବୋଧହୁଏ କବି କାଳିନ୍ଦୀଚରଣଙ୍କ ଲେଖନୀରୁ ନିସୃତ ହୋଇଥିଲା ସେଇ ଆଶାଆଶ୍ୱାସନାର ସ୍ୱର –

"କବିତା ଗଢ଼େ ଏକ ବିରାଟ ସମାଜର
ସବୁରି ପାଇଁ ଅଛି ଯହିଁ ବଖୁରେ ହେଲେ ଘର
ସକଳେ ଲଭିବାକୁ ମୁଠାଏ ଦୁଧ ଭାତ
ଯୋଗ୍ୟ ଯେତେ ଯହିଁ ବାଳକ ବାଳିକାତ ।
ଦୁଇଟି ଲୁଗା ଜାମା ସବୁରି ପାଇଁ ମିଳେ
ପଢ଼ିବା ପାଇଁ ବାଧା କାହାରି ନାହିଁ ତିଳେ ।
ବେକାର୍ ରହିବାକୁ ନାହିଁ ଟି ଅଧିକାର
ସବୁରି ପାଇଁ କାମ ଯୋଗାଏ ସରକାର ।"(୮୪)

ଦୁଃଖଯନ୍ତ୍ରଣାକୁ ଦୂର କରି, ସାମାଜିକ ବୈଷମ୍ୟ ଏବଂ ବୈସାଦୃଶ୍ୟକୁ ବିଲୋପ କରି ସାମ୍ୟ, ମୈତ୍ରୀର ବାର୍ତ୍ତା ପ୍ରଚାର କରିବା ସହିତ ଆଗାମୀ କାଲିକୁ ସ୍ୱର୍ଣ୍ଣାଭ, ସତେଜ କରିବା ପାଇଁ ଏହି ମାନବବାଦୀ ଚିନ୍ତାଧାରା ପ୍ରେରଣା ପ୍ରଦାନ କରିଥାଏ କହିଲେ ଅତ୍ୟୁକ୍ତି ହେବ ନାହିଁ ।

## ନକ୍ସାଲବାଦୀ ଆନ୍ଦୋଳନ ଓ ପ୍ରଗତିବାଦୀ କବିତାର ଭିନ୍ନ ମୋଡ଼ଃ-

୧୯୩୫-୧୯୬୫ ଦୀର୍ଘ ତିନିଦଶନ୍ଧି ମଧ୍ୟରେ ପ୍ରଗତିବାଦ କହିଲେ ବୁଝାଯାଉଥିଲା ଅନ୍ୟାୟ ଅତ୍ୟାଚାର ବିରୋଧରେ ସଂଗ୍ରାମ । ମାତ୍ର ୧୯୬୫ ମସିହା ପରେ ଏଥିରେ କିଛି ନୂତନତା ଦେଖାଦେଲା । ଯଦିଓ ଅତ୍ୟାଚାର ବିରୋଧରେ ସଂଗ୍ରାମ ଏହାର ମୂଳମନ୍ତ୍ର ହେଲା, କିନ୍ତୁ କବି ଦୃଷ୍ଟିରେ କେବଳ ପୁଂଜିପତିର ଶ୍ରମିକ

ପ୍ରତି ବା ଜମିଦାରର କୃଷକ ପ୍ରତି ଅତ୍ୟାଚାର ପ୍ରକାଶପାଇଲା ନାହିଁ । ସମାଜର ଯେକୌଣସି ବର୍ଗ ଉପରେ କରାଯାଉଥିବା ଅତ୍ୟାଚାର ଏହାର କେନ୍ଦ୍ରବିନ୍ଦୁ ପାଲଟିଲା । ଏଇ ତିନିଦଶନ୍ଧି ମଧ୍ୟରେ ପ୍ରଗତିବାଦ ଯେଉଁ ରୂପରେ ପ୍ରକାଶ ପାଇଥିଲା, ତିନି ଦଶନ୍ଧି ପରେଯେଉଁ ନୂତନ ରୂପରେ ପ୍ରକାଶ ପାଇଲା ସେଥିରେ ସେହି ପ୍ରକାରର ବିପ୍ଳବୀ ଆଭିମୁଖ୍ୟ ପ୍ରକାଶ ପାଇଲା ନା ବିପ୍ଳବୀ କାବ୍ୟସ୍ୱର ଶିଥିଳ ପଡ଼ିଗଲା, ନା ତାହା ଉଗ୍ରରୂପ ପ୍ରକାଶ କଲା ତାହା ହିଁ ଦେଖିବାର କଥା ।

ସମାଜରେ ଘଟୁଥିବା ପ୍ରତ୍ୟେକ ଘଟଣା ଓ ଅଘଟଣର ଇସ୍ତାହାର ଯଦି ସାହିତ୍ୟ ହୁଏ ତା'ହେଲେ ବର୍ତ୍ତମାନ ସମାଜରେ ଦେଖା ଦେଇଥିବା ନକ୍ସାଲ୍ ଆନ୍ଦୋଳନ ମଧ୍ଯ ବହୁ ପରିମାଣରେ ଓଡ଼ିଆ ସାହିତ୍ୟିକମାନଙ୍କୁ ପ୍ରଭାବିତ କରିଛି । ଓଡ଼ିଆ କବିତାରେ ଏହି ଚିନ୍ତାଧାରା କିପରି ପ୍ରତିଫଳିତ ହୋଇଛି ତାହା ବର୍ତ୍ତମାନ ଆଲୋଚନାର ମୁଖ୍ୟ ପ୍ରସଂଗ । ଭାରତବର୍ଷ ସ୍ୱାଧୀନତା ଲାଭ କରିବାର ୨୦ ବର୍ଷ ପରେ ଅର୍ଥାତ୍ ୧୯୬୭ ମସିହାରେ ଉତ୍ତର ବଂଗର ତରାଇ ଅଂଚଳର ନକ୍ସାଲବାଡ଼ିରେ ଭୂମିହୀନ କୃଷକମାନେ ସଂଗ୍ରାମ ଆରମ୍ଭ କରିଥିଲେ ଧନୀ ସାହୁକାର, ଗାଁ ମହାଜନମାନଂକ ବିରୋଧରେ । ସେତେବେଳେ ସେମାନଂକୁ ସାହାଯ୍ୟ କରିବା ପାଇଁ ମାର୍କସ୍‌ବାଦୀ କମ୍ୟୁନିଷ୍ଟ ପାର୍ଟି ଆଗେଇ ଆସିଥିଲା । କ୍ଷମତାକୁ ଆସିଲେ ଲଂଗଳ ଯାହାର ଜମି ତାହାର ନ୍ୟାୟରେ ଭୂମିହୀନ କୃଷକମାନଙ୍କୁ ଜମି ବାଣ୍ଟି ଦେବ ବୋଲି ପ୍ରତିଶ୍ରୁତି ଦେଇଥିଲା । ନକ୍ସାଲ୍‌ବାଡ଼ି ନାମକ ସ୍ଥାନରୁ ଏହି ଆନ୍ଦୋଳନ ସୃଷ୍ଟି ହୋଇଥିବାରୁ ଏହାକୁ ନକ୍ସାଲ୍ ଆନ୍ଦୋଳନ ନାମରେ ଅଭିହିତ କରାଗଲା । ତରାଇରୁ ସୃଷ୍ଟି ହୋଇଥିବା ଏହି ଆନ୍ଦୋଳନ ଆଜି ଆନ୍ଧ୍ର, ଓଡ଼ିଶା, ଛତିଶଗଡ଼, ବିହାର ପର୍ଯ୍ୟନ୍ତ ପ୍ରସାରିତ ହୋଇ ଜନମାନସରେ ଖୁବ୍ ଆଲୋଡ଼ନ ସୃଷ୍ଟି କରିଛି । ୧୯୫୨ ମସିହାରେ ଆନ୍ଧ୍ର ପ୍ରଦେଶରେ ଦେଖାଦେଇଥିବା ଚାଷୀ ଆନ୍ଦୋଳନ ମଧ୍ଯ ଦାନାବାନ୍ଧି ନକ୍ସାଲ୍ ଆନ୍ଦୋଳନର ରୂପ ନେଇଛି । ଷାଠିଏ ଦଶକରେ ସୃଷ୍ଟି ହୋଇଥିବା ଏହି ଆନ୍ଦୋଳନ କୁହୁଳି କୁହୁଳି ଆଜି ଭୀଷଣ ଆକାରରେ ଜଳି ଉଠିଛି । ଆଜି ମଧ୍ଯ ତା'ର ଲେଲିହାନ୍ ଶିଖା ପ୍ରଶମିତ ହୋଇନାହିଁ ।

ବର୍ତ୍ତମାନ ପ୍ରଶ୍ନ ଉଠେ ଏହି ଆନ୍ଦୋଳନ ଓଡ଼ିଶାକୁ ପ୍ରଭାବିତ କଲା କିପରି ? କିଏ ଏହାର କର୍ଣ୍ଣଧାର ଥିଲେ ? ଇତ୍ୟାଦି । ବଂଗଳାର ନକ୍ସାଲବାଡ଼ି ଅଂଚଳରେ ଯେଉଁ ଆନ୍ଦୋଳନ ଆରମ୍ଭ ହୋଇଥିଲା ତା'ର ନେତୃତ୍ୱ ନେଇଥିଲେ ୰ଚାରୁ ମଜୁମ୍‌ଦାର ଓ ୰କାହ୍ନୁ ସାନ୍ୟାଲ୍‌ଙ୍କ ପରି ବିପ୍ଳବୀ ମହାନାୟକମାନେ । ପଡ଼ୋଶୀ ରାଷ୍ଟ୍ରର ପ୍ରଭାବ ଆମ ଓଡ଼ିଶା ପ୍ରଦେଶ ଉପରେ ମଧ୍ଯ ପଡ଼ୁଥାଏ । ଓଡ଼ିଶାରେ ମଧ୍ଯ ନକ୍ସାଲ୍‌ବାଦୀ ଆନ୍ଦୋଳନ ସୃଷ୍ଟି ହୋଇ ଏକ ପ୍ରଚଣ୍ଡ ବିସ୍ଫୋରକ ପରିସ୍ଥିତି ସୃଷ୍ଟି କରିବାକୁ ପ୍ରସ୍ତୁତ

ହୋଇଥାଏ । ଓଡ଼ିଶାରେ ଏହାର ନେତୃତ୍ୱ ନେଉଥାଆନ୍ତି ନାଗଭୂଷଣ ପଟ୍ଟନାୟକ, ଡି. ଭୁବନମୋହନ ପଟ୍ଟନାୟକ, ୪ରମେଶଚନ୍ଦ୍ର ସାହୁ, ଗଣନାଥ ପାତ୍ର, ରବି ଦାସ, ବିବେକାନନ୍ଦ ନାୟକ, ରମେଶ ଅଲ୍ଲୀ ଦେସାଇ, ପରମାନନ୍ଦ ମୁଦୁଲି ପ୍ରମୁଖ ବ୍ୟକ୍ତିବିଶେଷମାନେ । ଏଇ ଚିନ୍ତାଧାରାକୁ ସାହିତ୍ୟରେ ରୂପ ଦେଉଥାଆନ୍ତି କବି ରବି ସିଂ, କବି ବ୍ରଜନାଥ ରଥ, କବି ସଦାଶିବ ଦାଶ, କବି ପ୍ରସନ୍ନ ପାଟଶାଣୀ ପ୍ରମୁଖ ସ୍ରଷ୍ଟାମାନେ । ଏ ସମ୍ପର୍କରେ କବି ସଦାଶିବ ଦାଶ ସ୍ୱୟଂ ମତବ୍ୟକ୍ତ କରନ୍ତି ଯେ :-

"ରବି ସିଂଙ୍କ ଗୃହରେ ନାଗଭୂଷଣ ପଟ୍ଟନାୟକ ତଥା ଚାରୁ ମଜୁମ୍ଦାରଙ୍କ ସଂଗେ ବୈପ୍ଳବିକ ସାନ୍ନିଧ ହେବା ଏଇ ଲେଖକ ବ୍ୟତୀତ ଆଉ କାହାର ହୋଇଥିବାର ମୋର ସ୍ମରଣ ହେଉ ନାହିଁ । ରବି ବାବୁ ଯେ କେବଳ କବି ଥିଲେ ତାହା ନୁହେଁ ସେ ଥିଲେ ସେ ସମୟର ପୂର୍ଣ୍ଣାଙ୍ଗ ଏକ ବୈପ୍ଳବିକ ମୂଲ୍ୟବୋଧର ସର୍ଜନାକର୍ମର ଅଗ୍ରଗାମୀ ସାରଥୀ । ସେତୁବନ୍ଧ ସ୍ୱରୂପ ଥିଲା ତାଙ୍କର ଭୂମିକା । କହିବାକୁ ଗଲେ ଏଇ ବୈପ୍ଳବିକ ସାରସ୍ୱତ ଜୟଯାତ୍ରାର ସେ ଥିଲେ ଓଡ଼ିଶା ପାଇଁ ଅନ୍ୟତମ ପ୍ରାରମ୍ଭକାରୀ । ତଥାପି ଆମେ କେଇଜଣ ସି/୩ ରାଜା ବଗିଚା ଭିତର କଲୋନୀରୁ ଆରମ୍ଭ କଲୁ ଅବଧୂତ କବିତାର ଆଦ୍ୟଧାରା ।"(୮୫)

କବିଙ୍କର ଏହି ଉକ୍ତିରୁ ପ୍ରତୀୟମାନ ହୁଏ ଯେ କବି ରବି ସିଂ, କବି ବ୍ରଜନାଥ, କବି ସଦାଶିବ ଏମାନେ ନକ୍ସାଲ୍‌ବାଦୀ ଆନ୍ଦୋଳନକୁ ଆଧାର କରି ପ୍ରଥମେ କାବ୍ୟ କବିତା ରଚନା କରିଥିଲେ । ଏଥିରୁ ଆଉ ଗୋଟିଏ କଥା ସୂଚିତ ହୁଏ ଯେ, ନକସାଲ୍‌ବାଦୀ ଚିନ୍ତାଚେତନାକୁ ଆଧାର କରି କିପରି ସାହିତ୍ୟ ସୃଷ୍ଟି କରାଯିବ ଏ ସମ୍ପର୍କରେ ରାଜାବଗିଚା ଭିତର କଲୋନୀରୁ ଆରମ୍ଭ ହୋଇଥିବା ପ୍ରଚେଷ୍ଟାରୁ ଜନ୍ମ ଲାଭ କଲା 'ଅବଧୂତ ଗୋଷ୍ଠୀ' । ଗାଳ୍ପିକ ନାଟ୍ୟକାର ରତ୍ନାକର ଚଇନି ଓ କବି ସଦାଶିବ ଦାଶ ସେଠାରେ ଏକତ୍ର ସହାବସ୍ଥାନ କରୁଥିଲେ । ସେଇଠାରୁ କବି ସଦାଶିବଙ୍କ ଉଦ୍ୟମରେ 'ଆଭା' ପ୍ରତିକା ଓ ନାଟ୍ୟକାର ରତ୍ନାକରଙ୍କ ଉଦ୍ୟମରେ 'ଶିଖା' ପତ୍ରିକା ପ୍ରକାଶ ପାଏ । ଏହାର କେତେ ମାସ ପରେ ବାଲୁଗାଁରୁ 'ବେଳା' ପତ୍ରିକା ପ୍ରସନ୍ନ ପାଟଶାଣୀଙ୍କ ସଂପାଦନାରେ ପ୍ରକାଶ ପାଏ । ଯୁବକବିମାନଙ୍କର ଏ ପ୍ରକାର ପ୍ରଚେଷ୍ଟା ଓ ମାର୍କ୍ସବାଦୀ ଆଭିମୁଖ୍ୟକୁ ଆହୁରି ଆଗକୁ ନେବା ପାଇଁ ସେମାନଙ୍କର ସଂକଳ୍ପବଦ୍ଧତା ସଚ୍ଚିଦାନନ୍ଦ ରାଉତରାୟ ଓ କବି ରବି ସିଂଙ୍କୁ ଉତ୍ସାହିତ କରୁଥାଏ । ୧୯୫୦ ମସିହା ପରେ ଏଲିୟଟୀୟ ପ୍ରଭାବ ହେତୁ ଯେଉଁ ଚିନ୍ତାଦର୍ଶର ବିଲୟ ଭଳିକିଆ ଭଳି ଅବସ୍ଥା ଥିଲା ତାହାକୁ ଏମାନେ ଯେ ଏତେ ଆଗକୁ ନେଇପାରିବେ ତାହା ବୋଧହୁଏ ସେମାନଙ୍କର କଳ୍ପନାର ବାହାରେ ଥିଲା । କବି ସଚ୍ଚିଦାନନ୍ଦ ଏବଂ କବି ରବି ସିଂ

ପଡ଼ୋଶୀ ବଂଗଳା ଓ ଆନ୍ଧ୍ର ପ୍ରଦେଶର ବହୁ ମାର୍କସ୍‌ବାଦୀ କବିମାନଙ୍କ ସହ ଯୁବକବି ସଦାଶିବଙ୍କୁ ପରିଚିତ କରାଇବାରେ ପ୍ରମୁଖ ଭୂମିକା ଗ୍ରହଣ କରିଥିଲେ ।

୧୯୬୮ ମସିହାରେ ସମ୍ବଲପୁର ଠାରେ ଅନୁଷ୍ଠିତ ହୋଇଥିବା ଯୁବଲେଖକ ସମ୍ମେଳନରେ କବି ପ୍ରସନ୍ନ ପାଟଶାଣୀଙ୍କ ସହ କବି ସଦାଶିବଙ୍କର ସାକ୍ଷାତ ହୁଏ । ଧୀରେଧୀରେ ଆତ୍ମୀୟତା ବଢ଼େ । ପରିଣାମ ସ୍ୱରୂପ 'ଆଭା' ଓ 'ବେଳା' ପ୍ରତିକା ଏକ ହୁଏ । ସେତେବେଳକୁ କବି ସଦାଶିବଙ୍କର ଶତାଧିକ କବିତା ପ୍ରକାଶିତ ହୋଇ ସାରିଥାଏ । କବି ସଦାଶିବ, ନାଟ୍ୟକାର ରତ୍ନାକରଙ୍କ ସହିତ ହାତ ମିଳାନ୍ତି କବି ପ୍ରସନ୍ନ । ଏହି ତିନିଜଣଙ୍କ ସହିତ ପରେ ସାମିଲ୍ ହୁଅନ୍ତି ଗାଳ୍ପିକ ଦେବେନ୍ଦ୍ର ନାଥ ମାନସିଂହ ଓ ନବୀନ ସୁନ୍ଦର ସୁବୁଦ୍ଧି । ଏଇ ପାଞ୍ଚଜଣ ଯୁବକଙ୍କ ଉଦ୍ୟମରେ ଗଠନ କରାଯାଏ 'ଅବଧୂତ ଗୋଷ୍ଠୀ' । ଏଇ ଗୋଷ୍ଠୀର ମୂଳଲକ୍ଷ୍ୟ ପ୍ରସ୍ତୁତ କରନ୍ତି କବି ସଦାଶିବ ଦାଶ । ଏ ସମ୍ପର୍କରେ 'ଅବଧୂତ କ୍ରାନ୍ତି'ରେ କୁହାଯାଇଛି :-

"ତାର ମୂଳ ଲେଖା ପ୍ରସ୍ତୁତ ହେବା ପରେ ମୁଁ, ପ୍ରସନ୍ନ ପାଟଶାଣୀ, ନବୀନ ସୁନ୍ଦର ସୁବୁଦ୍ଧି ଓ ଦେବେନ୍ଦ୍ର ମାନସିଂ ଏକତ୍ର ବସି ପାଠ କରିଥିଲୁ ୰ପ୍ରଦ୍ୟୁମ୍ନ ଉପେନ୍ଦ୍ର ମହାରଥୀଙ୍କ କଳି ଯୁଗେଶ୍ୱର ଆଶ୍ରମରେ (ଚିଲିକା କୂଳ ଦୀପ ମୁଣ୍ଡିଆ ପାହାଡ଼ ଢାଲୁ) XXX ଯେଉଁଠିକାର ସାତ୍ତ୍ୱିକ ନୀରବ ପରିବେଶ ପରେ ଆମ ସମସ୍ତଙ୍କୁ ସେଠାରେ ବିଶ୍ୱ ମୁକ୍ତି ଲେଖକ ବସତି ନିର୍ମାଣ ନିମନ୍ତେ ପ୍ରଚୋଦିତ କରିଥିଲା ।(୮୬)

ଏହି ଆଲୋଚନାରୁ ପ୍ରତୀୟମାନ ହୁଏ ଯେ ୧୯୬୭ ମସିହାରେ ଯେଉଁ ନକ୍‌ସାଲ୍‌ବାଦୀ ଆନ୍ଦୋଳନର ଆରମ୍ଭ ହୋଇଥିଲା ତାହା କବି ରବି ସିଂ, କବି ସଦାଶିବ ଓ କବି ପ୍ରସନ୍ନଙ୍କୁ ବହୁଳ ଭାବରେ ପ୍ରଭାବିତ କରିଥିଲା । ନକ୍‌ସାଲ୍ ଆନ୍ଦୋଳନ ଏମାନଙ୍କ କବିତାକୁ ଇନ୍ଧନ ଯୋଗାଇଥିଲା କହିଲେ ଅତ୍ୟୁକ୍ତି ହେବ ନାହିଁ । ପ୍ରଗତିବାଦର ଯେପରି ମୂଳ ଲକ୍ଷ୍ୟ ଥିଲା ଶୋଷଣ ବିହୀନ ସମାଜ ଗଠନ ନକ୍‌ସାଲ୍ ବାଦ ମଧ୍ୟ ଏହି ଲକ୍ଷ୍ୟ ଉପରେ ପର୍ଯ୍ୟବେସିତ ଥିଲା । ପ୍ରଗତିବାଦୀ ଓ ନକସାଲ୍‌ବାଦୀ ଚିନ୍ତାଧାର ପରସ୍ପର ଠାରୁ ବିଚ୍ଛିନ୍ନ ନୁହଁନ୍ତି । କେବଳ ତଫାତ୍ ଏତିକି ଯେ ଦୁଇ ଚିନ୍ତାଦର୍ଶର ନାମ ଅଲଗା । ନକ୍‌ସାଲ ନେତା ନାଗଭୂଷଣ ପଟ୍ଟନାୟକଙ୍କ ସହିତ ବହୁ ତରୁଣ ଯୁବ କବି ଯୋଗଦେଲେ । କବି ମନମୋହନ ମିଶ୍ର, କବି ରବି ସିଂ ଅବଧୂତ ଗୋଷ୍ଠୀର କବିମାନେ ନକ୍‌ସାଲବାଦୀ ଆନ୍ଦୋଳନଦ୍ୱାରା ପ୍ରଭାବିତ ହୋଇ ଉଗ୍ର ବୈପ୍ଳବିକ ଚେତନାର କବିତା ମାନ ରଚନା କରିବାରେ ଲାଗିଲେ । ଏହି ଅବଧୂତ ଗୋଷ୍ଠୀର କବିମାନଙ୍କ ଦ୍ୱାରା ପ୍ରଭାବିତ ହୋଇ ତତ୍‌କାଳୀନ ସମୟରେ ବହୁ ଯୁବକବି ଏହି ଆଦର୍ଶକୁ ପାଥେୟ କରି କାବ୍ୟ କବିତା ରଚନା କଲେ ।

୧୯୩୫ ମସିହାରେ ଓଡ଼ିଶାରେ ଜନ୍ମ ହୋଇଥିଲା "ନବଯୁଗ" ୧୯୬୮-୬୯ ମସିହା ବେଳକୁ ଏହି ନବଯୁଗ ଜନ୍ମ ଦେଲା ଅବଧୂତ ଯୁଗକୁ । ନବଯୁଗ ସାହିତ୍ୟ ସଂସଦର ଗଠନ ପରେ ଯେଉଁ ପ୍ରଗତିବାଦୀ ଆଭିମୁଖ୍ୟ ପ୍ରକାଶ ପାଇଥିଲା, ତାର ଏକ ଉଗ୍ରରୂପ ଆମେ ଦେଖିବାକୁ ପାଇବା ଅବଧୂତ ଯୁଗର କବିତାରେ । ଜନ ସଂଗ୍ରାମକୁ ଉତ୍ସାହିତ କରିବା ପାଇଁ ଏଥିରେ ଭରପୁର୍ ଉପାଦାନ ରହିଛି । ସାମାଜିକ ଅଂଗୀକାରର ଦୃଢ଼ ସ୍ୱର ଏହାକୁ ଆହୁରି ଶକ୍ତ ଓ ମଜ୍‌ଭୁତ କରିଦେଇଛି । କେବଳ ତଫାତ୍ ଗୋଟିଏ କଥାରେ ଲକ୍ଷ୍ୟ କରାଯାଏ ତାହା ହେଉଛି ପ୍ରଗତିବାଦୀ ଚିନ୍ତାଧାରା ସମ୍ବଳିତ କବିତା ପୁଂଜିପତି, ଜମିଦାର ଗୋଷ୍ଠୀର ଶୋଷଣର ଚିତ୍ରକୁ ବହନ କରୁଥିଲା । କିନ୍ତୁ ନକ୍‌ସାଲବାଦୀ ଚିନ୍ତାଧାରାର ଅନୁପ୍ରବେଶ ଫଳରେ ଶୋଷଣର ଚିତ୍ରତ ରହିଲା ତା ସହିତ ଆଉ କିଛି ମଧ୍ଯ ଯୋଡ଼ି ହୋଇଗଲା । ତାହା ହେଉଛି ବର୍ତ୍ତମାନ ସମାଜରେ ପ୍ରତ୍ୟେକ ସ୍ତରରେ ପରିଲକ୍ଷିତ ହେଉଥିବା ଅନ୍ୟାୟ, ଶୋଷଣ । କିନ୍ତୁ ସାମଗ୍ରୀକ ଦୃଷ୍ଟିକୋଣରୁ ଦେଖିବାକୁ ଗଲେ ଉଭୟର ମୂଳ କିନ୍ତୁ ଗୋଟିଏ । ତାହା ହେଉଛି ଶୋଷଣର ମୂଳୋତ୍ପାଟନ । ନକ୍‌ସାଲ୍‌ବାଦୀ ଚିନ୍ତାଧାରା ସମ୍ବଳିତ କାବ୍ୟ କବିତା ରଚନା କରୁଥିବା ଓଡ଼ିଶାର ଯୁବକବିମାନଙ୍କ ସହ ସାମିଲ ହୋଇଛନ୍ତି ଆହୁରି ଅନେକ ତରୁଣ କବି । କବି ହୋସେନ୍ ରବି ଗାନ୍ଧୀ, କବି ସମରେନ୍ଦ୍ର ନାୟକ, କବି ଈଶ୍ୱର ନାୟକ ପ୍ରମୁଖ ।

ତେଣୁ ଷାଠିଏ ଦଶକର ଶେଷ ଭାଗରେ ମୁଣ୍ଡ ଟେକିଥିବା ଏହି ନକ୍‌ସାଲବାଦୀ ଆନ୍ଦୋଳନ ଆଜି ମଧ୍ୟ ସାରା ରାଜ୍ୟରେ ଚାଞ୍ଚଲ୍ୟ ସୃଷ୍ଟି କରିଛି ଓ ସମଗ୍ର ଜାତିର ମେରୁଦଣ୍ଡକୁ ଦୋହଲାଇ ଦେଇଛି । ଏଥିରେ ମିଶିଯାଇଛି ଦଳିତ ଆଦିବାସୀମାନଙ୍କ ପ୍ରତି ଧନୀ ସାହୁକାରମାନେ କରୁଥିବା ଅତ୍ୟାଚାର । ଏ ଶୋଷଣର ପରିସମାପ୍ତି ପାଇଁ ଓ ଦଳିତ ଜନଜାତିମାନଙ୍କୁ ସୁନେଲୀ ଭବିଷ୍ୟତର ସ୍ୱପ୍ନ ଦେଖାଇବା ପାଇଁ ନକ୍‌ସାଲ୍‌ବାଦୀ କବିମାନେ ସତତ ପ୍ରତିଶ୍ରୁତିବଦ୍ଧ । ତେଣୁ ବର୍ତ୍ତମାନ ପରିସ୍ଥିତିରେ ମାର୍କ୍ସବାଦୀ କବିତା ନକ୍‌ସାଲବାଦୀ ଚିନ୍ତାଧାରାକୁ ଜନ୍ମ ଦେବା ପରେ ଏହା ଆହୁରି ଜଟିଳତର ହୋଇଛି । ବହୁ କବିଙ୍କର ପୃଥକ୍ ଚିନ୍ତାଧାରାର ସମାବେଶ ଦ୍ୱାରା ଏହା ପରିପୁଷ୍ଟ ହୋଇଛି, ଏହାକୁ ନିର୍ବିବାଦରେ ଗ୍ରହଣ କରାଯାଇପାରେ ।

---

୧- 'ସ୍ୱାଧୀନ ଦେଶର ଜନ୍ମ ଦିନେ' - 'ସଚ୍ଚି ରାଉତରାୟ ଗ୍ରନ୍ଥାବଳୀ', ପୃ-୫୦୫ ।
୨- 'ଛବି' - 'ଅବାନ୍ତର' (ସଂ) କବି ଅନନ୍ତ ପଟ୍ଟନାୟକ - ପୃ - ୩୪ ।
୩- 'ଚାଲରେ' - 'ଆବାଜ' କବି ଅନନ୍ତ ପଟ୍ଟନାୟକ ।

୪- 'ଓଡ଼ିଆ ସାହିତ୍ୟରେ ପ୍ରଗତିବାଦୀ ଧାରା' ଡଃ: ବିଜୟ ଶତପଥୀ, ଓଡ଼ିଶା ବୁକ୍‌ଷ୍ଟୋର, - ପୃ - ୨୯୮ ।
୫- 'ଅଗଷ୍ଟ ପନ୍ଦର - ୧୯୪୭' - କବି ରଘୁନାଥ ଦାସ 'ଶତାବ୍ଦୀ' ୧ମ ବର୍ଷ - ଅଷ୍ଟମ ସଂଖ୍ୟା ।
୬- 'ଅଗଷ୍ଟ ପନ୍ଦର - ୧୯୪୮' - କବି ରଘୁନାଥ ଦାସ, ପୃ - ୯ ।
୭- 'ଅଗଷ୍ଟ ପନ୍ଦର - ୧୯୪୯' କବି ରଘୁନାଥ ଦାସ - ପୃ-୧୦ ।
୮- 'ପୁନଶ୍ଚ' - ମୁଖବଂଧ - କବି ରଘୁନାଥ ଦାସ ।
୯- 'ସ୍ୱାଗତିକା' - 'ମରୁ ଗୋଲାପ' - କବି ବ୍ରଜନାଥ ରଥ, ପୃ - ୬୩ ।
୧୦- 'ପଳାୟନ; ଶିଥିଳ ବଲ୍‌ଗା- କବି ରବି ସିଂ ।
୧୧(କ)-'ରକ୍ତ ପଥ' - ପ୍ରସନ୍ନ ପାଟଶାଣୀ - ପୃ - ୫୫ ।
୧୧(ଖ)- 'ପତାକାର ତିନୋଟି ରଂଗ' 'ନିର୍ତ୍ୟ ପଦ୍ମତୋଳା' ସଦାଶିବ ଦାଶ, ପୃ - ୯୧ ।
୧୨- 'କୁଆ'; 'ନିଅଁଟ ରାତିର ସ୍ୱପନ୍'; କବି ହୋସେନ୍ ରବି ଗାନ୍ଧୀ, ପୃ - ୩୨ ।
୧୩- 'କିଛି ଆଲୋଚନା 'କିଛି ସମାଲୋଚନା' ବନମାଳୀ ପାଣିଗ୍ରାହୀ, ପ୍ରକାଶକ- ବିଭୁଦତ୍ତ ପାଣିଗ୍ରାହୀ, ବୌଦ-ପୃ - ୩୫ ।
୧୪- 'ଭାରତ ବର୍ଷ - ୧' - 'ବସୁନ୍ଧରା ମାଟି'; ବିଜୟ ଉପାଧ୍ୟାୟ ପୃ - ୩୪ ।
୧୫- 'ସଚ୍ଚିରାଉତରାୟ- ଆଧୁନିକ ସାହିତ୍ୟର କେତେକ ଦିଗ, ଦିଗନ୍ତ ପ୍ରକାଶନୀ, କଟକ (୧ମ ସଂ) ୧୯୮୩, ପୃ ୨୫/୨୬ ।
୧୬- 'ପ୍ରତିମା ନାୟକ'- 'ଶଙ୍ଖ' ୧ମ ବର୍ଷ / ୫ମ ସଂଖ୍ୟା- ନଭେମ୍ବର ୧୯୪୫ ।
୧୭- 'The Love Songs of J. Alfred prufrock', 'The wasteland and other poems', page-14.
୧୮- 'ଗୁରୁପ୍ରସାଦ ମହାନ୍ତି, 'ସମୁଦ୍ରସ୍ନାନ', ଗୋବର ଗଣେଶ, ୧୯୨୭, ପୃ-୫ ।
୧୯- 'ଆଧୁନିକ ଓଡ଼ିଆ କବିତାରେ ଟି.ଏସ୍.ଇଲିୟଟ୍‌ଙ୍କ ପ୍ରଭାବ: ପ୍ର.ବୈ.ଚ.ସାମଲ୍ ଶାରଦୀୟ ସଂଖ୍ୟା- ସହକାର ଅକ୍ଟୋବର୍-୨୦୦୪ ।
୨୦- 'ନବ ଭାରତ' - ସଂପାଦକ - ପ. ନୀଳକଣ୍ଠ ଦାସ - ଧନୁ ୧୩୪୨ । ୨ୟ ବର୍ଷ, ୬ଷ୍ଠ ଓ ୭ମ ସଂଖ୍ୟା । ଜାନୁଆରୀ - ୧୯୩୬ ।
୨୧- 'ଉଦ୍‌ବୋଧନୀ' - 'ନବଭାରତ', ଧନୁ-୧୩୪୨ ।
୨୨- 'ସର୍ବହରାର ଉଡ଼େ ନିଶାଣ' - ରକ୍ତ ଶିଖା ।
୨୩- 'ସାକ୍ଷାତକାର ଡଃ ବିଜୟ ଶତପଥୀ' : ଓଡ଼ିଆ କବିତାରେ ପ୍ରଗତିବାଦୀ ଧାରା - ପୃ-୨୭୭ ।
୨୪- 'ଉଦ୍‌ବୋଧନୀ' - 'ନବଭାରତ', - ଧନୁ - ୧୩୪୨ ।
୨୫- 'ବିପ୍ଲବୀ ପାର୍ଟି ଗଢ଼ାର କାଜ ଅଭିଳମ୍ବେ ସୁରୁ କରତେ ଭବେ' ଚାରୁ ମଜୁମଦାର

- 'ଦେଶ ବ୍ରତୀ ପତ୍ରିକା - ୧୯୭୧- ଅକ୍ଟୋବର -୨୬ ସଂଖ୍ୟା ।

୨୬- 'ମୋଷ୍ଟୋର କର ନାହିଁ ଢିଲା' - କବି ମନମୋହନ ମିଶ୍ର, 'ନୂଆ ଦୁନିଆଁ' - ୧୯।୧୧।୫୪ ।

୨୭- 'ଆଗନ୍ତୁକ' - 'ଖୋଲାଝର୍କା' : ଲକ୍ଷ୍ମୀଧର ନାୟକ, ପୃ - ୬୯ ।

୨୮- 'ବଗ' - ନିଜସ୍ୱ ସଂଳାପ' - ବ୍ରଜନାଥ ରଥ, ପୃ - ୪ ।

୨୯- ଦ୍ରଷ୍ଟବ୍ୟ : 'ପୁନଶ୍ଚ' କବିତା - ମୁଖବଂଧ - କବି ରଘୁନାଥ ଦାସ ।

୩୦- 'ଦିଅ ମୋତେ ନୂଆ ଛନ୍ଦନ' - 'ପଥପ୍ରାନ୍ତର କବିତା' : (୨ୟ ସଂ) କବି ରବି ସିଂ, ପୃ ୧୪ ।

୩୧- 'ମୁକ୍ତିର କଥା କହ' - 'ଅବଧୂତ କ୍ରାନ୍ତି' : ସଦାଶିବ ଦାଶ, ପୃ - ୧୯ ।

୩୨- 'ଜନ୍ମ ନେଲି ଏକ ଅବଧୂତ' - 'ଆଭା'- ପ୍ରସନ୍ନ ପାଟଶାଣୀ, ୨ୟ ବର୍ଷ ୬। ୭ ସଂଖ୍ୟା ।

୩୩- 'ବୋମାନ୍ତୁହେଁ' କବିତା - ଈଶ୍ୱର ନାୟକ ।

୩୪- 'ହାସଲ୍' କବିତା - ଈଶ୍ୱର ନାୟକ ।

୩୫- 'କ୍ରାନ୍ତିକାରୀର ଇସ୍ତାହାର' - ହୋସେନ୍‌ରବି ଗାନ୍ଧୀ, 'ବେଳା' - ୩।୨ ସଂଖ୍ୟା ।

୩୬- 'ମୋ ଦୃଷ୍ଟିରେ ସାଂପ୍ରତିକ ଓଡ଼ିଆ କବିତାରେ ବିପ୍ଳବର ସ୍ୱର : ମୋ ଦୃଷ୍ଟିରେ ସାଂପ୍ରତିକ ସାହିତ୍ୟ : ହୋସେନ୍ ରବିଗାନ୍ଧୀ - ପୃ ୪୧୩ ।

୩୭. 'ଆସନ୍ତାକାଲିର ସାହିତ୍ୟ' : ପ୍ରାଣନାଥ ପଟ୍ଟନାୟକ : ନବଯୁଗ ଗ୍ରନ୍ଥାଳୟ- ପୃ-୪ ।

୩୮. 'ସାହିତ୍ୟରେ ସାମାଜିକ ପ୍ରତିବଦ୍ଧତା' - ଡଃ ଗଂଗାଧର ବଳ ଗୋକର୍ଣ୍ଣିକା ଶାରଦୀୟା ସଂଖ୍ୟା-ପୃ- ୧ ।

୩୯. 'Marxist literature An Anthology' : penguin Books, 1975 : page-14.

୪୦. 'ଓଡ଼ିଆ ସାହିତ୍ୟରେ ପ୍ରଗତିବାଦୀ ଧାରା' : ଡଃ ବିଜୟ ଶତପଥି, ଓଡ଼ିଶା ବୁକ୍‌ଷ୍ଟୋର - ପୃ ୯୧ ।

୪୧- 'ସ୍ଫୁଲିଂଗର କବି ଆଜି କାହିଁ' 'ପାଣ୍ଡୁଲିପି' (ସଂ)କବି ସଚ୍ଚିଦାନନ୍ଦ ରାଉତରାୟ ।

୪୨- 'ରାଜଜେମା'- ପାଣ୍ଡୁଲିପି (ସଂ)କବି ସଚ୍ଚିଦାନନ୍ଦ ରାଉତରାୟ ।

୪୩. 'ଅଭିଯାନ' - ଭୂମିକା - ସଚ୍ଚିରାଉତରାୟ ।

୪୪- ଅଭିଯାନ - (ସଂ) କବି ସଚ୍ଚିଦାନନ୍ଦ ରାଉତରାୟ, ପୃ - ୪୮ ।

୪୫- 'ସ୍ୱାଧୀନ ଦେଶର ଜନ୍ମ ଦିନେ', କବିତା - କବି ସଚ୍ଚିଦାନନ୍ଦ ରାଉତରାୟ, ସଚ୍ଚିଦାନନ୍ଦ ରାଉତରାୟ ଗ୍ରନ୍ଥାବଳୀ, ପୃ-୫୦୫ ।

୪୬. 'ସାହିତ୍ୟରେ ସାମାଜିକ ଅଂଗୀକାର ବଦ୍ଧତା' : ଡଃ ବୈଷ୍ଣବ ଚରଣ ସାମଲ, 'ବର୍ତ୍ତିକା', - ୩ୟ ବର୍ଷ ୨ୟ ସଂଖ୍ୟା, ବିଷୁବ ବିଶେଷାଙ୍କ ୧୯୯୯ ।

୪୭- 'ଆରେ ମହାଗଣକ' - 'ଶାନ୍ତି ଶିଖା' - କବି ଅନନ୍ତ ପଟ୍ଟନାୟକ, ପୃ - ୪୦ ।

୪୮- 'କୋଟିକଣ୍ଠେ' - ୩ୟ ସଂଗୀତ, କବି ମନମୋହନ ମିଶ୍ର ।

୪୯- 'ଅଗଷ୍ଟପନ୍ଦର-୧୯୪୭' କବି ରଘୁନାଥ ଦାସ, ରଘୁନାଥ ଦାସ ରଚନା ସମଗ୍ର, ପୃ-୩ ।

୫୦- 'ଚରମ ପତ୍ର' କବି ରବି ସିଂ, 'ଡଗର' ୨୩/୫ ନଭେମ୍ବର ୧୯୫୯ ।

୫୧- 'ଲାଲ୍ ଫଲଗୁ', 'ଅଗ୍ନିବୀଣା' - ଜୁନ୍ - ୧୯୭୩ ।

୫୨- 'ନିଃଶବ୍ଦ ପ୍ରତିବାଦ' - କବି ବ୍ରଜନାଥ ରଥ, ପୃ - ୩୪ ।

୫୩- 'Naxlbari and Indian Revolution' : Pramod Das Gupta - Research Indian Publications calculta - 1983, P-46.

୫୪. 'ଅବଧୂତଙ୍କୁ ଅଭିଯାତ୍ରୀ' : ବାଞ୍ଛାନିଧି ଦାସ ଜେନିଥ୍ ପବ୍ଲିକେସନ୍ସ - ଜୁଲାଇ - ୨୦୦୪ ପୃ - ୬୮ ।

୫୫- 'ଭାରତବର୍ଷ (୧)'... 'ଉତ୍ତର ପର୍ବ' - 'ସଦାଶିବ ଦାଶ' ଟିନ୍ତ୍ରୋପଲ୍ସ ପବ୍ଲିକେସନ୍ସ, ପୃ - ୧୦୭ ।

୫୬ 'ରକ୍ତ ପଥ'- କବି ପ୍ରସନ୍ନ ପାଟଶାଣୀ, ପୃ- ୫୫ ।

୫୭- 'କୁଆ' - 'ନିଅଁଟ ରାତିର ସ୍ୱପନ' - 'କବି ହୋସେନ୍‌ରବିଗାନ୍ଧୀ', ପୃ ୩୨ ।

୫୮- 'ଲାଲ୍‌ପତ୍ର ଓ ନୂତନ ପୃଥିବୀ' କବି ସମରେନ୍ଦ୍ର ନାୟକ, ପୃ-୨୧ / ୨୨ ।

୫୯- 'ଆନ୍ନା ଆସିଛି' - 'ଶିଖା ସ୍ୱାକ୍ଷର', କବି ପ୍ରଶାନ୍ତ ମିଶ୍ର, ପୃ - ୮୫ ।

୬୦. 'ସାହିତ୍ୟରେ ସାମାଜିକ ଅଂଗୀକାର ବଦ୍ଧତା' : ପ୍ର- ବୈଷ୍ଣବ ଚରଣ ସାମଲ : ବର୍ତ୍ତିକା ୩ୟ ବର୍ଷ - ୨ୟ ସଂଖ୍ୟା - ବିଷୁବ ବିଶେଷାଙ୍କ - ୧୯୯୯ ।

୬୧- 'କିଏ ସେ ଆସୁଛ'- ଉତ୍ତର ପର୍ବ, କବି, ସଦାଶିବ ଦାଶ, ପୃ- ୨୦୧ ।

୬୨- 'କଳକୀର ଅବତାର-ମୁକ୍ତ ପୂର୍ବାଶା', କବି ହୁସେନ୍ ରବି ଗାନ୍ଧୀ ।

୬୩- 'ଅଠେଇଶି ସକାଳର ଶାନ୍ତ କବିତା'- କବି ସମରେନ୍ଦ୍ର ନାୟକ ।

୬୪- 'ମାନବୀୟ ଆକାଂକ୍ଷାର ଚର୍ଯ୍ୟାପଦ : 'ଚଣ୍ଡାଳ' : ସମୀକ୍ଷା - ଡଃ ବେଣୁଧର ପାଢ଼ୀ, ଉପାହାର : ଏପ୍ରିଲ, ଜୁନ୍-୧୯୯୨, ପୃ - ୧୫୩ ।

୬୫- 'ଝଙ୍କାର' ସଂପାଦକୀୟ - ଡଃ ହରେକୃଷ୍ଣ ମହତାବ୍, ୨୧ ଶ ବର୍ଷ ବିଷୁବ ସଂଖ୍ୟା ।

୬୬- 'ସବୁଜରୁ ସାଂପ୍ରତିକ : ଡଃ ନିତ୍ୟାନନ୍ଦ ଶତପଥୀ, ଗ୍ରନ୍ଥମନ୍ଦିର, ପୃ - ୫୧ ।

୬୭- 'ମୋ ଦୃଷ୍ଟିରେ ସାଂପ୍ରତିକ ଓଡ଼ିଆ କବିତାରେ ମାନବବାଦୀ ଚିନ୍ତାଧାରା' - ଡ. ବୈଷ୍ଣବ ଚରଣ ସାମଲ - ମୋ. ଦୃଷ୍ଟିରେ ସାଂପ୍ରତିକ. ସାହିତ୍ୟ - ପୃ - ୪୩୯ ।

୬୮- 'ସମାଜବାଦୀ ସାହିତ୍ୟର ନାନ୍ଦନିକ ମୂଲ୍ୟବୋଧ' : ସାହିତ୍ୟର ଆତ୍ମା ଓ ଅନ୍ୟାନ୍ୟ ନିବଂଧ : ଆଶିଷ ମହାପାତ୍ର, କାହାଣୀ ପ୍ରକାଶନୀ, - ପୃ - ୧୯ ।

୬୯- 'ପଶୁ'- 'ସହକାର' ୧୮/୧ ସଂଖ୍ୟା, ଜାନୁଆରୀ ୧୯୩୭ ।

୭୦- 'କୋଣାର୍କ' - ପାଣ୍ଡୁଲିପି, ପୃ - ୩୫ ।

୭୧- 'ସର୍ବହରା' କବି ଅନନ୍ତ ପଟ୍ଟନାୟକ, - ଆଧୁନିକ - ୧ମ ବର୍ଷ - ୬ଷ୍ଠ ସଂଖ୍ୟା - ଅକ୍ଟୋବର-୧୯୩୬ ।
୭୨- 'ସ୍ୱପ୍ନ ଦେଖୁଚି' କବି ଅନନ୍ତ ପଟ୍ଟନାୟକ - 'କିଣ୍ଣିତ' ।
୭୩- 'ଓଡ଼ିଆ କବିତାରେ ପ୍ରଗତିବାଦୀ ଧାରା' : ଡଃ ବିଜୟ ଶତପଥି, ଓଡ଼ିଶା ବୁକ୍ ଷ୍ଟୋର, ପୃ - ୨୮୫ ।
୭୪- 'ଗୀତ ନଂ' - ୩, ସଂ- 'ଜୀବନର ଜୟଗାନ'- କବି ମନମୋହନ ମିଶ୍ର ।
୭୫- 'ହେ ମହାଜୀବନ' - ମୁଖବଂଧ : କବି ବ୍ରଜନାଥ ରଥ ।
୭୬- 'ହେ - ମହାଜୀବନ' କବି ବ୍ରଜନାଥ ରଥ- ପୃ - ୨୮ ।
୭୭- 'ଧୂମ୍ର କେତୁ' - 'ବିଦୀର୍ଣ୍ଣ' - କବି ରବି ସିଂ ।
୭୮- 'ଶବ୍ଦ ବ୍ରହ୍ମ' : ମୁଖବଂଧ, ଚିତ୍ରୋତ୍ପଳା ପବ୍ଲିକେସନ୍ସ୍ - କବି ସଦାଶିବ ଦାଶ ।
୭୯- 'ଦୁଃଖର ଅଂଗାର ତଳେ' – 'ବାଘ ଆଁ ଭିତରେ ପିକ୍‌ନିକ୍', କବି ପ୍ରସନ୍ନ ପାଟଶାଣୀ - ପୃ ୧୫
୮୦- 'ନିର୍ଦ୍ଦେଶନାମା' - 'ଉତ୍ତରପର୍ବ' : କବି ସଦାଶିବ ଦାଶ, ପୃ -୨୦ ।
୮୧- 'ପଂଜାବୀ ପକେଟ୍‌ରେ ଦିଆସିଲି' - 'ଟ୍ରକ୍ ଡାଲାରେ ସନାତନ' - କବି ପ୍ରସନ୍ନ ମିଶ୍ର, ପୃ -୨୫ ।
୮୨- 'ଚଣ୍ଡାଳ'-କବି ଆଶୁତୋଷ ପରିଡ଼ା ।
୮୩- 'ଏକବିଂଶ ଶତାବ୍ଦୀର ସାହିତ୍ୟ' : ଡଃ ବୈଷ୍ଣବ ଚରଣ ସାମଲ । ଇସ୍ତାହାର, ପୃ - ୫୯/୬୦।
୮୪- 'ଆଗାମୀ' - 'ଛୁରୀଟିଏଲୋଡ଼ା', କାଳିନ୍ଦୀ ଚରଣ ପାଣିଗ୍ରାହୀ, ପୃ-୧୧୯ ।
୮୫- 'ଅବଧୂତ ସାହିତ୍ୟ ପୃଷ୍ଠ ଭୂମିକା' - ଅବଧୂତ କ୍ରାନ୍ତି - ସଦାଶିବ ଦାଶ - ଚିତ୍ରୋତ୍ପଳା ପବ୍ଲିକେସନ୍ସ-୧୯୯୫ ପୃ-୧୧୦ ।
୮୬- 'ଅବଧୂତ କ୍ରାନ୍ତି'- କବି ସଦାଶିବ ଦାଶ, ପୃ.-୧୩୦ ।



## ପଞ୍ଚମ ଅଧ୍ୟାୟ

# ସ୍ୱାଧୀନତା ପରବର୍ତ୍ତୀ ପ୍ରଗତିବାଦୀ କବି ଓ କବିତା

### ପୂର୍ବସୂରୀମାନଂକର ପ୍ରଗତିବାଦୀ ଆଭିମୁଖ୍ୟ :-
### (ସଚ୍ଚିଦାନନ୍ଦ ରାଉତରାୟ, ଅନନ୍ତ ପଟ୍ଟନାୟକ, ରଘୁନାଥ ଦାସ ପ୍ରମୁଖ)

ସବୁଜ ଯୁଗର ରୋମାଣ୍ଟିକ୍ କଳ୍ପନା ବିଳାସିତାର ବନ୍ଧନୀ ମଧ୍ୟରୁ ମୁକ୍ତି ପାଇ ଓଡ଼ିଆ କବିତା ୧୯୩୫-୩୬ ମସିହା ବେଳକୁ ପ୍ରଗତିବାଦର ପ୍ରସ୍ତର ପ୍ରାସାଦ ମଧ୍ୟକୁ ପ୍ରବେଶ କଲା । ପ୍ରବେଶ କରାଇବାରେ ଯେଉଁମାନେ ପ୍ରମୁଖ ଭୂମିକା ଗ୍ରହଣ କରିଥିଲେ ସେମାନେ ହେଲେ ଭଗବତୀ ଚରଣ ପାଣିଗ୍ରାହୀ, ସଚ୍ଚିଦାନନ୍ଦ ରାଉତରାୟ, ଅନନ୍ତ ପଟ୍ଟନାୟକ, ମନମୋହନ ମିଶ୍ର, ରଘୁନାଥ ଦାସ ପ୍ରମୁଖ ସଂଗ୍ରାମୀ ବ୍ୟକ୍ତିତ୍ୱମାନେ । ଏହି ଅଗ୍ରଗାମୀ ଜନନାୟକ ମାନଂକର ଚିନ୍ତାଚେତନାକୁ ରୂପ ଦେବାରେ ସାହାଯ୍ୟ କଲା ନବଯୁଗ ସାହିତ୍ୟ ସଂସଦ ଓ ତାର ମୁଖପତ୍ର "ଆଧୁନିକ" ।

ଏହି ସ୍ରଷ୍ଟାମାନେ ପ୍ରଗତିବାଦୀ ସାହିତ୍ୟକୁ ଜନସାଧାରଣଙ୍କର ନିକଟବର୍ତ୍ତୀ କରାଇବାକୁ ଯେତିକି ପ୍ରଚେଷ୍ଟା କରିଥିଲେ, ସେମାନଙ୍କର ବୋଧଗମ୍ୟ ହେବାପାଇଁ ସେତିକି ପ୍ରଯତ୍ନ କରିଥିଲେ । ସେମାନେ କେବଳ ଯେ 'ପୁଂଜିପତି-ଶ୍ରମିକ' ଓ 'ଜମିଦାର-କୃଷକ' ମଧ୍ୟରେ ଚାଲିଥିବା ସଂଘର୍ଷକୁ କବିତାରେ ରୂପ ଦେଇଥିଲେ ତାହା ନୁହେଁ, ବରଂ ଭାରତୀୟ ଜନସାଧାରଣଙ୍କୁ ସ୍ୱାଧୀନତା ପ୍ରାପ୍ତି ପୂର୍ବରୁ ଆନ୍ଦୋଳନରୁ ବିଚ୍ୟୁତ ନହେବା ପାଇଁ ପ୍ରେରଣା ପ୍ରଦାନ କରିଥିଲେ । ସେମାନଙ୍କର ଉଦାତ୍ତ ବୈପ୍ଳବିକ ବାଣୀ ସଂଗ୍ରାମୀ ଜନସାଧାରଣଙ୍କ ରକ୍ତ ତତାଇ ଦେଉଥିଲା । ଦେଶ ମାତୃକାକୁ ଅତ୍ୟାଚାରୀ ଇଂରେଜ ଶାସନ କବଳରୁ ମୁକ୍ତ କରାଇ ଏକ ସୁସ୍ଥ ସମାଜ ଗଠନ ଦିଗରେ ପ୍ରେରଣା ପ୍ରଦାନ କରୁଥିଲା ଏମାନଙ୍କ କବିତା । ଏ ପ୍ରସଙ୍ଗରେ ତିନିଜଣ ମାର୍କସ୍‌ବାଦୀ କବି ଆମ ଦୃଷ୍ଟିରେ ବନ୍ଦନୀୟ । ସେମାନେ ହେଲେ କବି ସଚ୍ଚିଦାନନ୍ଦ ରାଉତରାୟ, କବି ଅନନ୍ତ ପଟ୍ଟନାୟକ, କବି ରଘୁନାଥ ଦାସ ।

ଏହି ସ୍ରଷ୍ଟା ତ୍ରୟୀଙ୍କ ପ୍ରଗତିବାଦୀ ଆଭିମୁଖ୍ୟ ସମ୍ପର୍କରେ ଡ଼. ବାସୁଦେବ ସାହୁ ମତବ୍ୟକ୍ତ କରିବାକୁ ଯାଇ କହନ୍ତି :-

"ମନେହୁଏ ସେମାନଙ୍କର ଜୀବନର ଈପ୍‌ସିତ ଲକ୍ଷ୍ୟ, ଉଚ୍ଚ ଆଦର୍ଶ ଭିତ୍ତିକ ସମାଜ ଗଠନ ଏବଂ ତା ପାଇଁ ତ୍ୟାଗପୂତ ସଂଗ୍ରାମ ସେମାନଙ୍କ କବିତାରେ ପ୍ରତିଭାତ ହୋଇଛି । ଜନତାର ବୋଧଗମ୍ୟ ଭାଷା ଓ ରୂପକ ପ୍ରତୀକ ମାଧ୍ୟମରେ ଛନ୍ଦୋବଦ୍ଧ ଭାବରେ ବା ମୁକ୍ତ ଛନ୍ଦରେ ନିଜ ହୃଦୟର କଥା କରିଆରେ ସମାଜ ଓ ବିଶ୍ୱର ଅଗଣିତ ଦଳିତ-ପତିତ ଜନତାର ହୃଦୟାବେଗର ସାର୍ଥକ ରୂପାୟନ କରିଛନ୍ତି । XXX । ଏହା ହିଁ ଘଟିଛି ରାଉତରାୟ, ପଟ୍ଟନାୟକ ଓ ଦାସଙ୍କ ଲେଖାରେ ।" (୧)

କବି ସଚ୍ଚିଦାନନ୍ଦଙ୍କ କାବ୍ୟିକ ଚେତନା ସମ୍ପର୍କରେ ପ୍ରାବନ୍ଧିକ ବୈଷ୍ଣବ ଚରଣ ସାମଲ୍ କହନ୍ତି :-

"ଅଭିଯାନ କବିତା ପୁସ୍ତକରେ ଗଣ ଚେତନା ହୋଇଛି ଶାଣିତ ଓ ବିପ୍ଳବ ଉଦ୍ଦୀପ୍ତ । 'ପାଣ୍ଡୁଲିପି' ବେଳକୁ ଗଣଚେତନା ଆହୁରି ସୁତୀବ୍ର । ଧୂମ୍ର ଧୂସର ଜୀବନ ଚିତ୍ରରେ ପାଣ୍ଡୁଲିପି ଚିତ୍ରିତ ।"(୨କ)

କବି ଅନନ୍ତ ପଟ୍ଟନାୟକଙ୍କ ସଂପର୍କରେ ମଧ୍ୟ ପ୍ରାବନ୍ଧିକ ବୈଷ୍ଣବ ଚରଣ ସାମଲ କୁହନ୍ତି :- "କବି ସର୍ବହାରମାନଙ୍କୁ ଉଦ୍‌ବୋଧନ ଦେଇଛନ୍ତି କାରାଗାରର ଜଂଜିରକୁ ଛିନ୍ନ କରିବାପାଇଁ, ଦୁଃଖ ଓ ଶୋଷଣର ଅବସାନ କରି ସାମ୍ୟରେ ଦେଶକୁ ପୂର୍ଣ୍ଣ କରିଦେବା ପାଇଁ । ଏସବୁ କବିତାରେ ଗଣ, ଗଣର ସମସ୍ୟା, ଗଣଭାବ କବିମାନଙ୍କ ଚିତ୍ତ ବୃତ୍ତିରେ କଂପନ ସୃଷ୍ଟି କରିଛି ସତ, ମାତ୍ର ତା' ଯେପରି ହୋଇଛି କବିମାନଙ୍କର ସମ୍ବେଦନଶୀଳ ହୃଦୟର ସାନ୍ତ୍ୱନା ମାତ୍ର ।"(୨ଖ)

ଏହି କବିତ୍ରୟ ଜନଜୀବନର ଦୁଃଖ ଯନ୍ତ୍ରଣା ଠାରୁ ଆରମ୍ଭ କରି ସମାଜ ଜୀବନର ଶୋଷଣ, କଷଣ, ଅନ୍ୟାୟ, ଅତ୍ୟାଚାରର ବାସ୍ତବ ଚିତ୍ର ସେମାନଙ୍କ କବିତାରେ ଉତ୍ତୋଳିତ କରିଛନ୍ତି । ପ୍ରଚଳିତ ପ୍ରଥା ପରଂପରା ଅବସ୍ଥାର ପରିବର୍ତ୍ତନ ପାଇଁ ସେମାନଙ୍କ କବିତା ଯଥା ସମ୍ଭବ ପ୍ରଚେଷ୍ଟା କରିଛି । ପାଠକର ଚିତ୍ତ ଆଲୋଡ଼ନ କରିବା ସହିତ ସର୍ବହରାର ପ୍ରାଣରେ ଅଗ୍ନିର ସ୍ଫୁଲିଂଗ ଜାଳି ଦେଇ ସାମ୍ୟବାଦୀ ବିପ୍ଳବର ବାଣୀ ପ୍ରଚାର କରିଛି ଏହି କବି ତ୍ରୟୀଙ୍କର କବିତା । ଏମାନଙ୍କର କବିତା ପରବର୍ତ୍ତୀ ପର୍ଯ୍ୟାୟରେ ବହୁ ସାମ୍ୟବାଦୀ କବିଙ୍କୁ ଅନୁପ୍ରେରିତ କରିଛି । ତନ୍ମଧ୍ୟରୁ କବି ରବି ସିଂ, କବି ବ୍ରଜନାଥ ରଥ, କବି ସଦାଶିବ ଦାଶ, କବି ପ୍ରସନ୍ନ ପାଟଶାଣୀ, କବି ହୋସେନ୍ ରବି ଗାନ୍ଧୀ ପ୍ରମୁଖ ସ୍ରଷ୍ଟାମାନେ ଅନ୍ୟତମ । ଏହି ପ୍ରଗତିବାଦୀ ସ୍ରଷ୍ଟାମାନଙ୍କ ସମ୍ପର୍କରେ ଏତିକି କୁହାଯାଇପାରେ ଯେ, ପ୍ରଗତିବାଦୀ ଚିନ୍ତାଦର୍ଶକୁ ଏମାନେ ଅସ୍ଥିମଜ୍ଜାଗତ କରି ନିଜର

ସତ୍ତାକୁ ଜନ ମାନସର ସତ୍ତା ସହିତ ସାମିଲ କରିଦେଇଛନ୍ତି । ସେମାନଙ୍କର ଲେଖନୀ ସଦାସର୍ବଦା କହିଛି ମଣିଷର କଥା । ସେମାନଙ୍କର ନିରବଚ୍ଛିନ୍ନ ସାଧନା ଧ୍ୱଂସ ସ୍ତୁପ ଉପରେ ନୂତନ ସୃଷ୍ଟିର ସୌଧ ନିର୍ମାଣ କରିବାକୁ ପ୍ରେରଣା ପ୍ରଦାନ କରିଛି ।

## କବିବ୍ରଜନାଥ ରଥ

ଓଡ଼ିଆ ସାହିତ୍ୟରେ ଭଗବତୀ ଚରଣ ପାଣିଗ୍ରାହୀ ପ୍ରବର୍ତ୍ତିତ ପ୍ରଗତିଶୀଳ ମାର୍ଗକୁ ଯେଉଁମାନେ କାବ୍ୟକବିତା କ୍ଷେତ୍ରରେ ପ୍ରବର୍ତ୍ତନ କରିଥିଲେ ସେମାନଙ୍କ ମଧ୍ୟରୁ ଅନନ୍ତ ପଟ୍ଟନାୟକ, ସଚ୍ଚିଦାନନ୍ଦ ରାଉତରାୟ, ରଘୁନାଥ ଦାସ, ମନମୋହନ ମିଶ୍ର ପ୍ରମୁଖଙ୍କ ନାମ ଉଲ୍ଲେଖଯୋଗ୍ୟ । ଏହି ଅଗ୍ରଗାମୀ ସ୍ରଷ୍ଟାମାନଙ୍କର କାବ୍ୟ ସୃଷ୍ଟି ବହୁସମୟ ପର୍ଯ୍ୟନ୍ତ ଓଡ଼ିଆ ସାହିତ୍ୟାକାଶକୁ ଆଚ୍ଛାଦିତ କଲା । ଏହାପରେ ବହୁ ପ୍ରତୀକ୍ଷିତ ସ୍ୱାଧୀନତାର ଆଗମନ ଘଟିଲା । ସ୍ୱାଧୀନତା ପ୍ରାପ୍ତି ପୂର୍ବର ଅସୁମାରୀ ଆଶାଆକାଂକ୍ଷା ସ୍ୱାଧୀନତା ପ୍ରାପ୍ତି ପରେ ହତାଶା ଓ ନିରାଶାରେ ପରିଣତ ହେଲା । ଏହା ମଧ୍ୟ ସାହିତ୍ୟିକର ମାନସିକତାକୁ ଗଭୀର ଭାବରେ ପ୍ରଭାବିତ କଲା । ସାହିତ୍ୟ ଜଗତର ସବୁ ରଥୀ, ମହାରଥୀ ଆତ୍ମଗ୍ଲାନିବୋଧରେ ବିବଶ ହୋଇପଡ଼ିଲେ । ତିରିଶ / ଚାଳିଶ ଦଶକର ସେହି କୂଳପ୍ଲାବିନୀ ସ୍ରୋତସ୍ୱିନୀଟି ଉପତ୍ୟକା ସ୍ପର୍ଶ କରୁ-ନକରୁଣୁ ପଞ୍ଚମ, ଷଷ୍ଠ ଦଶକ ବେଳକୁ ହଠାତ୍ କେଉଁ ଏକ ବାଲୁକା ସ୍ତୁପ ମଧ୍ୟରେ ନିଜକୁ ହଜାଇ ଦେଲା । ପ୍ରଗତିବାଦର କାବ୍ୟିକ ଅଭିଯାନକୁ ହତାଶା ଗ୍ରାସ କଲା । 'ଆସିଛି ମୁଁ ଆସିଛି'ର ସକଳ ପ୍ରତିଶ୍ରୁତି କେଉଁଆଡ଼େ ଅନ୍ତର୍ଦ୍ଧାନ ହୋଇଗଲା । ଏହିପରି ଏକ ସନ୍ଧିକ୍ଷଣରେ ଅବିଚଳିତ ଓ ଅବିଶ୍ରାନ୍ତ ଭାବରେ ଯେଉଁ ମହାନ୍ ସ୍ରଷ୍ଟାଙ୍କର କାବ୍ୟିକ ପ୍ରତିଭାର ଉନ୍ମେଷ ଘଟିଲା ସେ ସମାଜ, ରାଷ୍ଟ୍ର ସର୍ବୋପରି ସମଗ୍ର ମାନବଜାତିର ଜୀବନ ଗାଥାକୁ ଆଦରି ନେଇ କବିତା ପରେ କବିତା ସୃଷ୍ଟି କରି ଚାଲିଲେ । ସେ ହେଉଛନ୍ତି ପ୍ରଗତିଶୀଳ ଚିନ୍ତାଧାରାର ଅନନ୍ୟ ସ୍ରଷ୍ଟା କବି ବ୍ରଜନାଥ ରଥ ।

'ମରୁ ଗୋଲାପ', 'ନିଃଶବ୍ଦ ପ୍ରତିବାଦ', 'ସଭ୍ୟତାର ମୁହଁ', 'ନିଜସ୍ୱ ସଂଳାପ', 'ମନର ମାନଚିତ୍ର', 'ହେ-ମହାଜୀବନ', 'ଲଘୁଶତକ'ର କବି ବ୍ରଜନାଥ ମାଟି ଓ ମଣିଷର କବି । ମଣିଷର ଆତ୍ମାର ଉଚ୍ଚାରଣ ତାଙ୍କ କାବ୍ୟକବିତାର ମୁଖ୍ୟ ଉପଜୀବ୍ୟ ବିଷୟବସ୍ତୁ । ଏହି ମହାନ୍ ସ୍ରଷ୍ଟା ୧୯୩୬ ମସିହା ଜାନୁୟାରୀ ମାସ ୧୨ ତାରିଖରେ ବାଲେଶ୍ୱର ଜିଲ୍ଲାର 'ସୁନହଟ' ଗ୍ରାମରେ ଜନ୍ମ ଗ୍ରହଣ କରିଥିଲେ । ପୂଜ୍ୟ ପିତା ଆଦର୍ଶ ଶିକ୍ଷକ ୰ ବିଶ୍ୱନାଥ ରଥଙ୍କର ପ୍ରେରଣା କବିଙ୍କୁ ସାହିତ୍ୟ ପ୍ରତି ଯଥେଷ୍ଟ ଅନୁରାଗଜାତ କରାଇଥିଲା । ପ୍ରତିଭାର ଆଦ୍ୟ ସ୍ଫୁରଣ ଘଟେ ମାତ୍ର ବାରବର୍ଷ ବୟସରେ । ସେତେବେଳେ କବି ମାଇନର୍ ଶ୍ରେଣୀର ଛାତ୍ର । ଯେଉଁ ସମୟକି ଦେଶ ସ୍ୱାଧୀନତା

ପ୍ରାପ୍ତିର ସମୟ । ସ୍ୱାଧୀନତାର ପ୍ରକୃତ ଅର୍ଥ ବୁଝିପାରିନଥିବା କିଶୋର ବାଳକଟି ହଠାତ୍ ଦେଶ ସ୍ୱାଧୀନ ହେବାର କିଛିଦିନ ଆଗରୁ କବିତାଟିଏ ଲେଖିବସେ । କବି ସ୍ୱୟଂ ଅତୀତର ସ୍ମୃତିଚାରଣ କରିବାକୁ ଯାଇ କହନ୍ତି–

"ମୋର ସେତେବେଳେ ବୟସ ମାତ୍ର ବାର । ମୁଁ ସପ୍ତମ ଶ୍ରେଣୀର ଛାତ୍ର । ଆମ ଦେଶ ଭାରତ ସ୍ୱାଧୀନ ହେବ ବୋଲି ପ୍ରଚାରିତ ହେଲା । ଯେତେବେଳେ ସ୍ୱାଧୀନତାର ପ୍ରକୃତ ଅର୍ଥ କ'ଣ ବୁଝି ନଥିଲି, ସେତେବେଳେ କେଉଁ ଏକ ଅଜଣା ଆନନ୍ଦରେ ମନ କୁରୁଳି ଉଠିଲା । ୧୫ ଅଗଷ୍ଟ ୧୯୪୭ ର ୩ / ୪ ଦିନ ଆଗରୁ କବିତାଟିଏ ଲେଖି ପକାଇଲି ଏବଂ ପ୍ରଥମ ସ୍ୱାଧୀନତା ଦିବସ ଦିନ ମାତ୍ର ଗୋଟିଏ ଟଙ୍କାରେ କିଣିଥିବା ଜାତୀୟ ପତାକା ସହ ସେହି କବିତା ଲେଖା କାଗଜଟିକୁ ଯୋଡ଼ି ଘର ଆଗରେ ଉଡ଼ାଉଥିଲି । ବିଦେଶୀ ଶାସନର ବଂଧନରୁ ଭାରତର ମୁକ୍ତି ସହିତ ମୋର ପ୍ରଥମ କବିତାର ଶୁଭ ମୁକ୍ତିର ଲଗ୍ନ ଜଡ଼ିତ ।" (୩)

ସେ ଦିନର ସେହି କିଶୋର ବାଳକ ୧୯୫୨ ମସିହା ବେଳକୁ ବିଭିନ୍ନ ପତ୍ରପତ୍ରିକାରେ ଧାରାବାହିକ ଭାବେ ବିଭିନ୍ନ କବିତାମାନ ପ୍ରକାଶ କରନ୍ତି । କବିଙ୍କର କବିତାରେ ମାର୍କସ୍‌ବାଦର ଉତପ୍ତ ଉତାପ ଖୋଜିଲେ ପାଠକକୁ ନିରାଶ ହେବାକୁ ପଡ଼ିବ । ବରଂ ତାଙ୍କ କବିତା ଏକ ବୃହତ୍ତର ମାନବିକ ସଂବେଦନା ଉପରେ ପର୍ଯ୍ୟବେସିତ । କେବଳ ସେତିକି ନୁହେଁ, ତାଙ୍କର କବିତା ମନୁଷ୍ୟକୁ ସକଳ ଦୁଃଖ, କଷ୍ଟ, ଯନ୍ତ୍ରଣାର ବଳୟ ମଧ୍ୟରୁ ମୁକ୍ତି ପ୍ରଦାନ କରିବାର ପଥ ଉନ୍ମୋଚନ କରେ । ଏ ପ୍ରକାର ମାନବିକ ସଂବେଦନା ପ୍ରଗତିବାଦର ଅଂଶବିଶେଷ ହୋଇଥିବାରୁ କବିଙ୍କର ସୃଷ୍ଟି ସମ୍ଭାରକୁ ଆମେ ଏହି ପର୍ଯ୍ୟାୟଭୁକ୍ତକରି ଆଲୋଚନା କରିବା । ସମକାଳୀନ ସ୍ରଷ୍ଟା ରବି ସିଂଙ୍କ କବିତାରେ ପ୍ରଗତିବାଦର ଯେଉଁ ଆଗ୍ନେୟ ଉଚ୍ଛ୍ୱାସ ଦୃଷ୍ଟିଗୋଚର ହୁଏ ବ୍ରଜନାଥଙ୍କ କବିତାରେ ତାହା ଖୋଜିଲେ ଆମକୁ ନିରାଶ ହେବାକୁ ପଡ଼ିବ । କବିଙ୍କର ପ୍ରଥମ ସଂକଳନ 'ମରୁ-ଗୋଲାପ'ରେ ଯୁଦ୍ଧ ଓ ଶାନ୍ତିର ଏକ ମିଶ୍ରିତ ରୂପ ଦେଖିବାକୁ ମିଳେ । ଯେମିତି ମରୁଭୂମିରେ ଗୋଲାପ ପରିକଳ୍ପନା ଅବାସ୍ତବ ହେଲେ ମଧ୍ୟ ତାଙ୍କୁ କବି ଗୋଟିଏ ସୂତ୍ରରେ ଗୁନ୍ଥି ଦେଇଛନ୍ତି ଠିକ୍ ସେମିତି ଯୁଦ୍ଧ ଓ ଶାନ୍ତି ପରସ୍ପର ବିପରୀତ ଚିନ୍ତାଦର୍ଶକୁ କବି କବିତାରେ ଏକତ୍ର କରି ପ୍ରତିଫଳିତ କରାଇଛନ୍ତି । କିନ୍ତୁ ଏହାର ଅନ୍ତରାଳରେ ରହିଛି ମାର୍କସ୍‌ବାଦୀ ଚିନ୍ତାଦର୍ଶ । ସଂକଳନଟି ଦୁଇ ଭାଗରେ ବିଭକ୍ତ । ପ୍ରଥମ ଭାଗରେ କବି ହୃଦୟର ରୋମାଣ୍ଟିକ୍‌ଭାବନା ବାରି ହୋଇପଡୁଥିବା ବେଳେ, ଦ୍ୱିତୀୟ ଭାଗରେ ଦୃଷ୍ଟିଗୋଚର ହୁଏ ପ୍ରଗତିଶୀଳ ଦୃଷ୍ଟିଭଂଗୀର ଏକ ବାସ୍ତବରୂପ । କିନ୍ତୁ ଏହି ରୋମାଣ୍ଟିକ୍ ଭାବନାର ଅନ୍ତରାଳରେ ମଧ୍ୟ ସମକାଳୀନ ସମାଜ ଜୀବନର ଚିତ୍ର

ସ୍ଥାନେସ୍ଥାନେ ପ୍ରକାଶ ପାଇଛି । ଦୃଷ୍ଟାନ୍ତ ସ୍ୱରୂପ :–

"ପ୍ରିୟା ପାଦରୁ ମୋ ଅଳତା ଯାଏ ଲିଭି
ପଣ୍ୟ ଶାଳେ ଆଜି ମୁଲ୍ୟ ତା'ର ନୀବି
ନୂପୁର ଧରଣୀରେ ଝଡୁଛି ଖସି ତା'ର
କାହାକୁ କହିବି ମୋ ମରମ କଥା,
କା' ଆଗେ ବାଢ଼ିଦିଏ ମରମ ବ୍ୟଥା ।"(୪)

କବିତାର ଅନ୍ତଃରୂପ ସାଂପ୍ରତିକ ସମାଜରେ ଅବହେଳିତା ନାରୀ ଜାତିର ସ୍ଥାନ ନିରୂପଣ କରୁଥିଲାବେଳେ, ବାହ୍ୟରୂପ ସତେଯେପରି ଏକ ରୋମାଣ୍ଟିକ୍ ବର୍ଣ୍ଣନା ମାଧ୍ୟମରେ ଆବଦ୍ଧ ହୋଇଛି । ସାଂପ୍ରତିକ ସମାଜରେ ନାରୀ ଜାତି ଆଜି ଅବହେଳିତା । ନାରୀ ପ୍ରତି ପୁରୁଷର ହୃଦୟରେ ସମ୍ମାନବୋଧ ନାହିଁ । ତେଣୁ ବଧୂହତ୍ୟାପରି କୁତ୍ସିତ ଜଘନ୍ୟ କର୍ମ ମଧ୍ୟ ଆଜିର ମନୁଷ୍ୟ କରିବାକୁ ପଶ୍ଚାତ୍‌ପଦ ହୁଏ ନାହିଁ । ତେଣୁ ଯେଉଁ ସମାଜରେ ନାରୀ ଅସହାୟା, ଲାଞ୍ଛିତା ସେ ସମାଜ କଦାପି ଆଗକୁ ଯାଇପାରେ ନାହିଁ । ପ୍ରଗତିର ଆଶା ସେଠାରେ ହିଁ ଧୂଳିସାତ୍ ହୁଏ । ସମାଜରୁ କେବଳ ଯେ ପୁଂଜିପତି ଓ ଜମିଦାର ଶ୍ରମିକ ଓ କୃଷକ ଗୋଷ୍ଠୀ ଉପରେ କରୁଥିବା ଶୋଷଣ, ଅତ୍ୟାଚାରର ବିଲୋପ ଘଟିଲେ ଯେ ପ୍ରଗତିବାଦର ସ୍ୱପ୍ନ ସାକାର ହୋଇପାରିବ ତାହାନୁହେଁ, ବରଂ ସମାଜର ପ୍ରତ୍ୟେକଟି ସ୍ତରରେ ଏହାର ଆବଶ୍ୟକତା ରହିଛି । ନାରୀର ଏ ପ୍ରକାର ଅସହାୟତା ବର୍ଣ୍ଣନାର ଅନ୍ତରାଳରେ କବିଙ୍କର ନୀରବ ବିଦ୍ରୋହକୁ ଏଠାରେ ଲକ୍ଷ୍ୟ କରାଯାଇପାରେ । ଠିକ୍ ସେହିପରି ଅନ୍ୟଏକ କବିତା ହେଉଛି 'ସ୍ୱାଗତିକା' । କବିତାଟିରେ ସମକାଳୀନ ସମାଜବ୍ୟବସ୍ଥାରେ ନାରୀର ସ୍ଥିତି ସଂପର୍କରେ ବର୍ଣ୍ଣନା ପରିଲକ୍ଷିତ ହୁଏ । କବିଙ୍କ ଭାଷାରେ –

"ଯେ ଦେଶେ ନିତ୍ୟ ପ୍ରତିଭାର ଫୁଲ ଝରୁଛି
ଦୈନ୍ୟ ସାଗରେ କବିର ଲେଖନୀ ଥରୁଛି
କେତେ ବର ବଧୂ ପ୍ରିୟାରେ
ତନୁର ତନିମା ଜଳେ ନିରାଶାର ନିଆଁରେ
ଯେ ଦେଶେ ଲକ୍ଷ ଜୀବନ ଲୋଟୁଛି ନିରତ
ହାହାକାରେ ନିତି ବହୁଛି ବ୍ୟଥାର ସରିତ ।" (୫)

ସାଂପ୍ରତିକ ସମାଜ ବ୍ୟବସ୍ଥା ଏତେ ବ୍ୟଭିଚାରିତ ଯେ ଏଠାରେ ପ୍ରତିଭାର ସମ୍ମାନ ନଥାଏ । ଦୁଃଖ, ଦୈନ୍ୟର ସାଗର ମଧ୍ୟରେ ସଭିଏଁ ଉବୁଟୁବୁ ହେଉଛନ୍ତି ପ୍ରତିମୁହୂର୍ତ୍ତରେ । ଲକ୍ଷଲକ୍ଷ ଜୀବନ ହାହାକାର ମଧ୍ୟରେ କାଳାତିପାତ କରୁଥିବାବେଳେ କବିଟିଏ ଏଠାରେ

ଶାନ୍ତି କାମନା କରୁଅଛି । 'ପ୍ରଗତିବାଦ' ସକଳପ୍ରକାର ନୈରାଶ୍ୟ, ଶୋଷଣ ନିଷ୍ପେଷଣର ନିରସନ ଘଟାଇ ମଣିଷଙ୍କୁ ବଞ୍ଚିବାର ପ୍ରେରଣା ପ୍ରଦାନ କରେ । ହତାଶାର ବଳୟ ମଧ୍ୟରୁ କ୍ଷୀଣ ଆଲୋକ ରେଖାର ସନ୍ଧାନ ଘଟାଇଥାଏ । କବି ବ୍ରଜନାଥ ଅନୁରୂପ ଆଶାର ପରିକଳ୍ପନା କରିଛନ୍ତି 'ମରୁ ଗୋଲାପ' ସଂକଳନରେ । ମରୁଭୂମିରେ ଯାତାୟାତ କରୁଥିବା ବାଟୋଇଟିର ହୃଦୟରେ ଯେମିତି ସୁଦୂରରୁ ଦୃଷ୍ଟିଗୋଚର ହେଉଥିବା ମରୁଦ୍ୟାନ ସକଳତୃଷ୍ଣାକୁ ମେଣ୍ଟାଇ ଦିଏ, ଠିକ୍ ସେମିତି ନୈରାଶ୍ୟ ଜର୍ଜରିତ ସମୟ ମଧ୍ୟ ଆଶା ରୂପକ ବୀଜବପନ କରିଥାଏ । ତେଣୁ ଆଗାମୀ କାଲିର ଏକ ସମ୍ଭାବନାମୟ ଭବିଷ୍ୟତର ଅଜସ୍ର ପ୍ରତିଶ୍ରୁତିକୁ ବହନ କରି କବିଙ୍କର କବିତା କହେ:-

"ପ୍ରଗତି ଶସ୍ୟେ ସବୁଜିତ ହେଲା ବଂଧୁ ଏ ମୋର ଜୀବନ
ମରୁର ଗୋଲାପ ଦେଲା ଆଗାମୀର ନୂତନ ଆହ୍ୱାନ ।" (୬)

କବି ଅନୁଭବ କରୁଛନ୍ତି ଯେ ସମାଜରେ ଉପଭୋଗୀ ଗୋଷ୍ଠୀର ଶୋଷଣର ମାୟାଜାଲ । ଏହା ସତ୍ତ୍ୱେ ମଧ୍ୟ ମାନବବାଦୀ କବିର ହୃଦୟରେ ଫୁଟିଉଠିଛି ସାମ୍ୟ, ମୈତ୍ରୀର କବିତା । ଯେଉଁଥିରେ ଭରି ରହିଛି ଆଗାମୀକାଲି ପାଇଁ ଅଜସ୍ର ପ୍ରତିଶ୍ରୁତି । ପ୍ରଗତିବାଦ ଯେପରି ଏକ ବିଶ୍ୱବନ୍ଦିତ ଚିନ୍ତାଧାରା, ସେହିପରି ପ୍ରଗତିବାଦୀ ସ୍ରଷ୍ଟାମାନସ ମଧ୍ୟ କୌଣସି ସୀମା ମଧ୍ୟରେ ଆବଦ୍ଧ ନୁହେଁ । ଭାରତବର୍ଷର ସାଂପ୍ରତିକ ପରିସ୍ଥିତି କେବଳ ଯେ କବିଙ୍କୁ ବ୍ୟଥିତ କରିଛି ତାହାନୁହେଁ, ଫରାସୀ ସାମ୍ରାଜ୍ୟବାଦୀମାନଙ୍କର ଜଘନ୍ୟ କାର୍ଯ୍ୟକଳାପ ମଧ୍ୟ କବିଙ୍କୁ ଆଘାତ ଦେଇଛି । ଆଫ୍ରିକାର ନାଇଜେରିଆର 'ଜେମିଲା' ନାମ୍ନୀ ବିପ୍ଳବୀଣୀ ମହିଳାର ଫାଶୀ ଦଣ୍ଡାଦେଶ ବିରୋଧରେ କବି ନିଜର ପ୍ରତିକ୍ରିୟା ବ୍ୟକ୍ତ କରିଛନ୍ତି । ନାରୀ ଚରିତ୍ରମାନଙ୍କୁ ବିପ୍ଳବୀଣୀ କରି ସଜାଇବା ପଛରେ ଥିବା ଯୁକ୍ତାତ୍ମକ ପ୍ରତିକ୍ରିୟାଟି ହେଉଛି- ଏହା ସମାଜ ଉପରେ ଗଭୀର ପ୍ରଭାବ ବିସ୍ତାର କରିଥାଏ । କବି ଯେମିତି ଜେମିଲା'ଠାରେ ସଂଗ୍ରାମୀ ଭାବକୁ ଉଦ୍‌ଘାଟିତ କରିଛନ୍ତି, ଠିକ୍ ସେମିତି ପୂର୍ବରୁ କବି ସଚ୍ଚିଦାନନ୍ଦ 'ରୋସନ୍ନାରା' ଏବଂ ପରବର୍ତ୍ତୀ ସମୟରେ କବି ସଦାଶିବ ମଧ୍ୟ ରୋସନ୍ନାରା" ଓ ମୁନ୍ନାତନ୍ନ୍ ବିବି'ଙ୍କ ସଂଗ୍ରାମୀ ମନୋବୃତ୍ତି ଦ୍ୱାରା ପ୍ରଭାବିତ ହୋଇ କାବ୍ୟକବିତାରେ ସେମାନଙ୍କୁ ଉଚିତ୍ ମର୍ଯ୍ୟାଦା ପ୍ରଦାନ କରିଛନ୍ତି । କବି ବ୍ରଜନାଥ କିନ୍ତୁ ଏହି କବିଦ୍ୱୟଙ୍କ ପରି ବିଦ୍ରୋହୀ ତରୁଣୀର ଆଗ୍ନେୟ ଆହ୍ୱାନକୁ ବର୍ଣ୍ଣନା କରିବା ପରିବର୍ତ୍ତେ 'ଜେମିଲା' ପ୍ରତି କବି ସମବେଦନା ଜ୍ଞାପନ କରିଛନ୍ତି ! କବିତାଟିରେ କବିଙ୍କର ପ୍ରକାଶ ଭଙ୍ଗୀରୁ ଏହା ପ୍ରତିପନ୍ନ ହୁଏ ।

"ତୁମେ ଯଦି ଆଜି ବନ୍ଧ କରିବ
ଗୋଟିଏ ଭଗ୍ନୀ ବକ୍ଷ ଦେଶ,

ନଶୁଣିବ ଯଦି କୋଟି ଜନତାର
   ମର୍ମବେଦନା, ଆକୁଳବାଣୀ
ଅନାଗତ ଏକ ଲୋହିତ ଭାଷାରେ
   ଦେଖିବ ତୁମେ
ପାରିବ ନିଶ୍ଚେ ପାରିବ ଜାଣି ।" (୭)

ସାମ୍ୟବାଦୀ ସ୍ରଷ୍ଟା କବି ବ୍ରଜନାଥ ବିଶ୍ୱରେ ମାନବବାଦର ପ୍ରତିଷ୍ଠା କ୍ଷେତ୍ରରେ ପ୍ରଧାନ ପ୍ରତିବଂଧକ ସାଜିଥିବା ପୁଂଜିବାଦୀ ସମାଜବ୍ୟବସ୍ଥା ପ୍ରତି ସ୍ୱକୀୟ କାବ୍ୟିକ ଘୃଣା ପ୍ରକଟ କରିଛନ୍ତି । ପାଶ୍ଚାତ୍ୟ ରାଷ୍ଟ୍ରସମୂହ ସମୃଦ୍ଧଶାଳୀ ହୋଇପାରେ ସତ, କିନ୍ତୁ ଏକ କ୍ଷୟଶୀଳ ସଂସ୍କୃତିର ଦାୟାଦ । ଆଜି ଭାରତବର୍ଷ ସେହି ଅବକ୍ଷୟଗାମୀ ସଂସ୍କୃତିର ଧାଡ଼କେ ସାଜିଛି । ତେଣୁ ପ୍ରଗତିର ପଥରେ କେବଳ ଶୋଷଣ ଯେ ଏକମାତ୍ର ପ୍ରତିବଂଧକ ତାହା ନୁହେଁ ଅବକ୍ଷୟଗାମୀ ଅପସଂସ୍କୃତି ମଧ୍ୟ ପ୍ରଗତିର ପଥରୋଧ କରେ । ସେଥିପାଇଁ ବୋଧହୁଏ କବି ସଚ୍ଚିରାଉତରାୟ 'ରକ୍ତଶିଖା' ସଂକଳନରେ ଆହ୍ୱାନ ପ୍ରଦାନ କରନ୍ତି:-

"ମୁକତି ପଥେ ଯେତେକ କଣ୍ଟା
ଉପାଡ଼ି ଦିଅ ଭିଡ଼ରେ ଅଣ୍ଟା
ଶୋଣିତ ରାଗେ ଖେଳାରେ ହୋରି
   ଭରମ ଭୀତି ମନରୁ ହଜା ।"
         (ରକ୍ତ ଶିଖା)

ତେଣୁ ଯାହା ମୁକ୍ତିର ପଥରୋଧ କରୁଛି, ସେ ସବୁକୁ ସାମ୍ନା କରିବା ପାଇଁ ପ୍ରତ୍ୟେକ ସଚେତନ ନାଗରିକ ଅଣ୍ଟାଭିଡ଼ି ବାହାରିବା ଉଚିତ୍ । ଏ ପ୍ରକାର ଏକ ନିଛକ ସତ୍ୟକୁ ବହନ କରିଛି କବି ବ୍ରଜନାଥଙ୍କର 'ମେ' ପହିଲାର କବିତା' । କବିତାରେ କବି କହନ୍ତି –

"ପଶ୍ଚିମେ ଯେଉଁ ଶିବିର ରହିଛି ଅସ୍ତସୂର୍ଯ୍ୟ ଶେଷ ରଶ୍ମିର ଭଳି
ଉଦ୍ଧତ ତା'ର ମସ୍ତକେ ଆଜିକ୍ଷୟଶୀଳ ଏକ ପ୍ରଦୀପ
ମରଣ ରାଗରେ ନାଗିନୀର ସମଦୁନିଆ ଯାଉଛି ଜଳି
   ବୁକେ ସେ ଉଦ୍‌ଗାରୁ ଅଛି ବିଷ
ଭିତରୁ ତାହାର ଜବାବ୍ ଦିଏ କେ ରାମ ନୁହେଁ ସେ ତ
ରାବଣ ଛଦ୍ମ ବେଶ ।"(୮)

ବ୍ରଜନାଥଙ୍କ କବିତାକୁ ନିରୀକ୍ଷଣ କଲେ, ସ୍ପଷ୍ଟ ଜଣାପଡ଼େ ଯେ କବିଙ୍କର କବିତା ଗୁଡ଼ିକ ମାନବବାଦର ବନ୍ଦନା ଗାନ କରିଛି । 'ମାନବବାଦ' ମଧ୍ୟ 'ପ୍ରଗତିବାଦ'ର

ଏକ ଭିନ୍ନ ରୂପ । ଉଭୟର ଆତ୍ମା ଏକ କହିଲେ ଅତ୍ୟୁକ୍ତି ହେବ ନାହିଁ । କାହିଁକି ନା, ଉଭୟ 'ବାଦ'ର ମୂଳରେ ରହୁଛି ମନୁଷ୍ୟ ସମାଜର ଉନ୍ନତି । ତେଣୁ ଯେଉଁଠାରେ ମନୁଷ୍ୟ ଜାତି ଉପରେ ଶୋଷଣ ଚାଲିଛି, ବ୍ୟଭିଚାର ଚାଲିଛି ସେଠାରେ କବି ବ୍ରଜନାଥଙ୍କର କାବ୍ୟସ୍ୱର ବିଦ୍ରୋହ କରିଉଠିଛି । ମଣିଷମଣିଷ ମଧ୍ୟରେ ତାରତମ୍ୟ ନଥାଏ । ସବୁ ମଣିଷ ସମାନ । ସଭିଏଁ ଗୋଟିଏ ପରିବାରର ସନ୍ତାନ । ନାରୀପୁରୁଷ, ଧନୀଦରିଦ୍ର ମଧ୍ୟରେ ପାର୍ଥକ୍ୟ ନଥାଏ । ମାଟି, ପ୍ରକୃତି, ନାରୀ ସମସ୍ତେ ସୃଷ୍ଟିଶୀଳା । କିନ୍ତୁ ଯେଉଁମାନେ ଏ ସୃଷ୍ଟିକୁ ସର୍ଜନା କରନ୍ତି ସେମାନେ ଏଠାରେ ହୁଅନ୍ତି ଅବହେଳିତ । ତେଣୁ କବି ହୃଦୟରୁ ସେମାନଙ୍କ ପ୍ରତି ଝରିପଡ଼ିଛି ଆନ୍ତରିକ ସମବେଦନା । କବିଙ୍କର ଦାଂପତ୍ୟପ୍ରେମ ମଧ୍ୟ ମାନବପ୍ରେମରେ ରୂପାନ୍ତରିତ ହୋଇଛି । ତେଣୁ କବି ନିଜର ପ୍ରିୟତମାକୁ ମଧ୍ୟ ମାନବଜାତିର ଦୁର୍ଦ୍ଦଶାରେ ସମବେଦନା ଜଣାଇବା ପାଇଁ ଆହ୍ୱାନ କରିଛନ୍ତି । ନାରୀ-ପୁରୁଷର ଚିରନ୍ତନ ଶାଶ୍ୱତ ପ୍ରେମ ଯଦି ଏ ଜୀବନକୁ ଚିର ସୁନ୍ଦର କରେ ତା' ହେଲେ ନାରୀ-ପୁରୁଷର ମିଳିତ ସମବେଦନା ହିଁ ଏ ପ୍ରକାର ତାରତମ୍ୟକୁ ଦୂର କରିପାରିବ । କବିଙ୍କର ଏହି ବାର୍ତ୍ତା ବହନ କରେ "ଚିର ସୁନ୍ଦର କରେ ଏ ଜୀବନ" କବିତା ।

ପ୍ରଥମ ସଂକଳନରେ ମାନବିକ ସମ୍ବେଦନାର ଜୀବନ୍ତ ପ୍ରତିଛବି ଉତ୍ତୋଳିତ ହୋଇଥିବାବେଳେ ପରବର୍ତ୍ତୀ ସଂକଳନ ସମକାଳୀନ ସମାଜର ନିଛକ ପ୍ରତିଛବି ଉଦ୍‌ଘାଟିତ କରୁଅଛି । ଏ ସଂପର୍କରେ ଆଲୋଚକ 'ବାଞ୍ଛାନିଧି ଦାସ'ଙ୍କ ମନ୍ତବ୍ୟକୁ ଏଠାରେ ଉଦ୍ଧାର କରାଯାଇପାରେ –

"ଆଲୋଚ୍ୟ କବିଙ୍କର ପ୍ରତିଭା ବହୁମୁଖୀ । କବି ନିଜ ଚତୁଃପାର୍ଶ୍ୱର ସମାଜକୁ ଶୋଷଣ, ଅନ୍ୟାୟ, ନିର୍ଯ୍ୟାତନା ବିରୁଦ୍ଧରେ ଆନ୍ଦୋଳନ ନିମନ୍ତେ କାବ୍ୟିକ ଆବେଦନ, ପ୍ରଚୋଦନା ଦେବାସାଙ୍ଗକୁ ପ୍ରଚଳିତ ସାମାଜିକ ଧାରାକୁ ବିଶ୍ଳେଷଣ କରିବାରେ ପ୍ରୟାସୀ ହୋଇଛନ୍ତି । (୯)

'ମରୁ ଗୋଲାପ' ସଂକଳନ ବିପୁଳ ଆଦୃତି ଲାଭକରିବା ପରେପରେ, କବିଙ୍କର 'ନିଜସ୍ୱ ସଂଳାପ', 'ସଭ୍ୟତାର ମୁହଁ', 'ମନର ମାନଚିତ୍ର' ପ୍ରକାଶ ପାଏ । 'ମରୁ ଗୋଲାପ'ରେ ପ୍ରତିଫଳିତ ହୋଇଥିବା କବିଙ୍କ ଚିନ୍ତାଧାରାର ଏକ ବିକଶିତ ରୂପ ଦେଖିବାକୁ ମିଳେ 'ନିଜସ୍ୱ ସଂଳାପ'ରେ । ଏହା ୧୯୬୯ ମସିହାରେ ପ୍ରକାଶିତ ହୋଇଥିଲା । ସଂକଳନସ୍ଥ କବିତା ସଂପର୍କରେ କବିଙ୍କର ସ୍ୱକୀୟ ମତାମତରୁ କବିତାଗୁଡ଼ିକର ବକ୍ତବ୍ୟ ସଂପର୍କରେ ଅନୁଧ୍ୟାନ କରିହୁଏ । କବିଙ୍କ ଭାଷାରେ –

"ଅବଶ୍ୟ ମୋର ସଂଳାପ ଗୁଡ଼ିକ ସୃଷ୍ଟିର ପ୍ରଥମ ମୁହୂର୍ତ୍ତରେ ମୋ ନିଜ ପାଇଁ ଉଦ୍ଦିଷ୍ଟ ହେଲେ ବି ଠିକ୍ ତା'ର ପର ମୁହୂର୍ତ୍ତରେ ତାହା ଆଉ ମୋର ହୋଇ ରହିନାହିଁ । ତା'ର ଆବେଦନ ହୋଇଯାଇଛି ସାର୍ବଜନୀନ । ଆଉ ସାର୍ବକାଳୀନ କି ନୁହେଁ, ତା'ର ବିଚାରକ ସେଇ ଅନନ୍ତ ମହାକାଳ ।"(୧୦)

୧୯୫୫-୧୯୬୫ ଏହି ଏକ ଦଶନ୍ଧିର ସଂହତ ଅନୁଭୂତିର ପରିଚ୍ଛନ୍ନ ପରିପ୍ରକାଶ ହେଉଛି 'ନିଜସ୍ୱ ସଂଳାପ' । କବି 'ନିଜସ୍ୱ ସଂଳାପ' ମାଧ୍ୟମରେ ମାନବଜାତିକୁ ଏହି ବାର୍ତ୍ତା ପ୍ରେରଣ କରିବାକୁ ଚାହାଁନ୍ତି ଯେ - ସମାଜରେ ବଞ୍ଚିବାକୁ ହେଲେ ଏକ ସୁସ୍ଥ ମାନସିକତା ସଂପର୍ଣ୍ଣ ଜୀବନ ଅପରିହାର୍ଯ୍ୟ । ଏଥିପାଇଁ ସଂଗ୍ରାମ ଆବଶ୍ୟକ । ଯେଉଁ ସଂଗ୍ରାମର ଚିତ୍ରକୁ ବହନ କରିଛି 'ନିଜସ୍ୱ ସଂଳାପ' ସଂକଳନ । କବି ଜଣେ ସାମାଜିକ ଅଂଗୀକାରବଦ୍ଧ ସ୍ରଷ୍ଟା ଭାବରେ ବ୍ୟକ୍ତିଗତ ଚିନ୍ତାଚେତନାକୁ ବାଦ୍ ଦେଇ ସମାଜ ଉପରେ ଗୁରୁତ୍ୱାରୋପ କରିଛନ୍ତି ।

ସଂକଳନଟି ପ୍ରକାଶିତ ହେବାବେଳକୁ ସାଂପ୍ରତିକ ସମାଜ ବିଦେଶୀ ଶାସନବ୍ୟବସ୍ଥା କବଳରୁ ମୁକ୍ତ । ଗଣଦ୍ୱାରା, ଗଣପାଇଁ ଓ ଗଣମାନଙ୍କର ଶାସନ ବ୍ୟବସ୍ଥା ପ୍ରତିଷ୍ଠା ହୋଇସାରିଥାଏ । ବର୍ତ୍ତମାନର ସମାଜ ବ୍ୟବସ୍ଥାରେ ଏହା କେତେଦୂର୍ ସଫଳ ହୋଇପାରିଛି ତା'ର ସ୍ୱରୂପ କବି ଉଦ୍‌ଘାଟନ କରିବାର ପ୍ରୟାସ କରିଛନ୍ତି । 'ବଗ' କବିତାଟି ଦୃଷ୍ଟାନ୍ତକୁ ନିଆଯାଉ ।

"ବଗଠାରୁ ଏ ଶତାବ୍ଦୀ ଶିଖିଅଛି ବହୁ ବର୍ଷ ପରେ
ବଞ୍ଚିବାକୁ ଚାହଁ ଯଦି ଖାଣ୍ଟି ଏକ ମଣିଷ ଭାବରେ
ଧର୍ମ ନାମେ ନରହତ୍ୟା ଯେତେ ତୁମେ କରିବାର କର
ତେବେ ତ' ପାଇବ ଯାଇ ବଞ୍ଚିବାର ନ୍ୟାର୍ଯ୍ୟ ଅଧିକାର ।" (୧୧)

ଏ ଦେଶର ଭୂମି ସ୍ୱାଧୀନ ହେଲା ସତ, କିନ୍ତୁ ଏ ଦେଶର ଜନସାଧାରଣଙ୍କୁ ମିଳିଲା କି ଏ ଯାଏ ସ୍ୱାଧୀନତାର ସଫଳତା । ଅର୍ଥନୈତିକ, ଆଧ୍ୟାତ୍ମିକ ତଥା ସାଂସ୍କୃତିକ ସ୍ୱାଧୀନତା ? ଏସବୁ ପ୍ରଶ୍ନ କବିଚିତ୍ତକୁ ବାରମ୍ବାର ଆନ୍ଦୋଳିତ କରୁଛି । ତେଣୁ ବର୍ତ୍ତମାନ ସମାଜରେ ଦେଶକୁ ଶାସନ କରୁଥିବା ଶାସକଗୋଷ୍ଠୀଙ୍କର ସ୍ୱରୂପ କେତେ ଉଜ୍ଜ୍ୱଳ ଓ କେତେ ମଳିନ ସେ ସଂପର୍କରେ କବି ଚିନ୍ତା ପ୍ରକଟ କରିଛନ୍ତି । ଜନସାଧାରଣଙ୍କ ହୃଦୟରୁ ପରାଧୀନତାର ଜ୍ୱାଳା ସିନା ଶାନ୍ତ ହୋଇଗଲା କିନ୍ତୁ ଆଗାମୀ ଭବିଷ୍ୟତର ସ୍ୱପ୍ନ ହେଲା ଭୂଲୁଣ୍ଠିତ, ଆଶା ହେଲା ଧୂଳିସାତ । ସାମସମୟିକ ସମାଜର ଏ ପ୍ରକାର ପରିସ୍ଥିତିକୁ 'ବଗ' ପ୍ରତୀକ ମାଧ୍ୟମରେ ବ୍ୟଙ୍ଗୋକ୍ତି ଛଳରେ କବି ପ୍ରକାଶ କରିଛନ୍ତି ।

ସେହିପରି ଅନ୍ୟ ଏକ କବିତା ହେଉଛି 'ବଡ଼ ଦିନ ଉତ୍ସବ' । ବର୍ତ୍ତମାନ ସମାଜରେ ମଣିଷ ଏତେମାତ୍ରାରେ ଧର୍ମାନ୍ଧ ଯେ ଧର୍ମର ସଂକୀର୍ଣ୍ଣ ବଳୟ ମଧ୍ୟରେ ସେ ନିଜକୁ ଆବଦ୍ଧ କରିଦେଇଛି । ସବୁରି ଉପରେ ଯେ; 'ମାନବ ଧର୍ମ' ଶ୍ରେଷ୍ଠ ଏକଥା ସେ ମନରୁ ପାଶୋରି ଦେଇଛି । ଘଣ୍ଟା ଘଣ୍ଟା ଧରି ତାମସିକ ପୂଜାର୍ଚ୍ଚନାକୁ ଧର୍ମ ସାଧନାର ଏକ ମାର୍ଗ ବୋଲି ଗ୍ରହଣ କରିନେଇଛି । ଧର୍ମଶାସ୍ତ୍ରରେ ଘୋଷିତ ନୀତି, ମଣିଷ ପ୍ରତି ମଣିଷର ଦୟାଭାବ, କ୍ଷମା, ସହନଶୀଳତା ଏସବୁ ତା'ର ଅନ୍ତରରୁ ଉଭେଇ ଯାଇଛି । ବଡ଼ଦିନ ଉତ୍ସବ ପାଳନ ଆଜି ତା' ପାଇଁ ଆଡ଼ମ୍ବରତାର ପ୍ରତୀକ । ଯୀଶୁଙ୍କର ମହାନ୍ ତ୍ୟାଗ, ମହତ୍ ବାଣୀ ଆଜି ମନୁଷ୍ୟର କୌଣସି କାର୍ଯ୍ୟରେ ଲାଗୁନାହିଁ । ପ୍ରତିକ୍ରିୟାଶୀଳ କବି ଉଚ୍ଚାରଣ କରୁଛନ୍ତି –

"ଗୀର୍ଜାର ପ୍ରାର୍ଥନା ମିଛ, ମିଥ୍ୟା ପୁଣି ଏହି ଉପାସନା
ଲୁଣ୍ଠିତ ଆତ୍ମାର ପାଇଁ ଏଇ ଏକ ଜଘନ୍ୟ ବଂଚନା
ଏ ଦୀର୍ଘାୟୁ ଦିବସରେ ସତ୍ୟ ଖାଲି ନରହତ୍ୟା ସଖି
ଆଲୋକର ସତ୍ତା ନାହିଁ ତୁମକୁ ମୁଁ ପାରୁନି କି ଦେଖି । (୧୨)

କବିତାର ଅନ୍ତରାଳରେ ମାର୍କସ୍‌ବାଦୀ ଚିନ୍ତାଧାରାର ପ୍ରଚ୍ଛନ୍ନ ରୂପକୁ ଲକ୍ଷ୍ୟ କରାଯାଇପାରେ । ମାର୍କସ୍‌ବାଦ ଧର୍ମ ପ୍ରତି ଅନାସ୍ଥା ଭାବପୋଷଣ କରିଥାଏ । ସମସ୍ତ ପ୍ରକାରର ଅନ୍ୟାୟ, ଅତ୍ୟାଚାର ମୂଳରେ ଯେ ଧର୍ମ ବିଶ୍ୱାସ ରହିଛି, ଏହା ଉପରେ ମାର୍କସ୍‌ବାଦ ଗୁରୁତ୍ୱାରୋପ କରେ । ତେଣୁ କବି ବ୍ରଜନାଥ ମଧ୍ୟ ତାଙ୍କ କବିତାରେ ଏହି ଦିଗ ଉପରେ ଗୁରୁତ୍ୱାରୋପ କରିବାକୁ ଯାଇ ଧର୍ମ ବିଶ୍ୱାସ ବିରୋଧରେ ସ୍ୱର ଉତ୍ତୋଳନ କରିଛନ୍ତି । ୧୯୬୦ ମସିହା ପରବର୍ତ୍ତୀ କାଳରେ କବିଙ୍କର ବିଦ୍ରୋହୀ କାବ୍ୟଚେତନା ଯେ ପ୍ରଖର ହୋଇଉଠିଛି ଏହାକୁ ଅସ୍ୱୀକାର କରାଯାଇନପାରେ । ଏହି ଆହ୍ୱାନୀ କାବ୍ୟ ସ୍ୱରର ସ୍ପଷ୍ଟ ପ୍ରମାଣ ମିଳେ ୧୯୬୭ ମସିହାରେ ପ୍ରକାଶିତ 'ନିଃଶବ୍ଦ ପ୍ରତିବାଦ' ସଂକଳନରେ । ସେହି ସମୟରେ ନକ୍‌ସାଲ୍ ଆନ୍ଦୋଳନର ସୂତ୍ରପାତ ଘଟିସାରିଥାଏ । ଏହାର ପ୍ରଭାବରେ କାବ୍ୟକବିତାରେ ସାମାଜିକ ସମସ୍ୟା ଅତି ଶାଣିତ ଭାବେ ପ୍ରକାଶିତ ହେଉଥାଏ । ଯଦିଓ ୧୯୭୪/୭୫ ମସିହା ବେଳକୁ କବି ବ୍ରଜନାଥ କମ୍ୟୁନିଷ୍ଟପାର୍ଟିଠାରୁ ନିରାପଦ ଦୂରତା ରକ୍ଷା କରୁଥାଆନ୍ତି, କିନ୍ତୁ ସାହିତ୍ୟିକ ଜୀବନ ବ୍ୟତୀତ କବି ବ୍ରଜନାଥ ଏକ ସୁସ୍ଥ ସାମାଜିକ ବ୍ୟବସ୍ଥା ପାଇଁ ବିଭିନ୍ନ ସଂଗଠନ ମାଧ୍ୟମରେ ଦୃଢ଼ ପଦକ୍ଷେପମାନ ଗ୍ରହଣ କରୁଥାଆନ୍ତି । ଆଭ୍ୟନ୍ତରୀଣ ଜରୁରୀ କାଳୀନ ପରିସ୍ଥିତି ସମୟରେ କବି 'ନାଗରିକ ଅଧିକାର ସୁରକ୍ଷା ସଂଗଠନ' ମାଧ୍ୟମରେ ସମକାଳୀନ ସମାଜ ବ୍ୟବସ୍ଥା ବିରୋଧରେ ସ୍ୱର ଉତ୍ତୋଳନ କରନ୍ତି । ପ୍ରଥମତଃ ଜଣେ ସଚେତନଶୀଳ ନାଗରିକ ଭାବେ, ଦ୍ୱିତୀୟତଃ

ଜଣେ ସାମ୍ୟବାଦୀ ସ୍ରଷ୍ଟା ଭାବରେ କବି କବିତା ମାଧ୍ୟମରେ ପ୍ରତିବାଦର ସ୍ୱର ପ୍ରକଟିତ କରିଛନ୍ତି । କବି ସୁସ୍ଥ ସମାଜ ପରିକଳ୍ପନାର ସ୍ୱପ୍ନ ଯେ କେବଳ ଦେଖୁଛନ୍ତି ତାହା ନୁହେଁ ବରଂ ସ୍ୱପ୍ନକୁ ସାକାର କରିବା ପାଇଁ ଯେଉଁ ସାମର୍ଥ୍ୟ ଆବଶ୍ୟକ ସ୍ୱରଚିତ କବିତା ମାଧ୍ୟମରେ ତାହା ସୂଚାଇ ଦେଉଛନ୍ତି । ଯାହାର ଫଳଶ୍ରୁତି ହେଉଛି 'ନିଃଶବ୍ଦ ପ୍ରତିବାଦ' ସଂକଳନ । ସଂକଳନସ୍ଥ ଅଧିକାଂଶ କବିତା ଅଂଧ ଶାସନ ବିରୋଧରେ ଲିଖିତ । ଏତଦ୍‌ବ୍ୟତୀତ ଆଉଏକ ଗୁରୁତ୍ୱପୂର୍ଣ୍ଣ ଘଟଣା ଯାହାକି ସମଗ୍ର ଓଡ଼ିଶାକୁ ଦୋହଲାଇ ଦେଇଥିଲା, ତାହା ହେଉଛି 'ବାଲିଆପାଳ ଘାଟୀ ସ୍ଥାପନ ବିରୋଧୀ ଜନ ଆନ୍ଦୋଳନ' । ଏହାକୁ ସେତେବେଳେ ବହୁ ବ୍ୟକ୍ତି ଓ ସଂଗଠନମାନ ବିରୋଧ କରୁଥିଲେ । ଏଥିରେ କବି ବ୍ରଜନାଥଙ୍କ ସହିତ କବି ବିଜୟ ଉପାଧ୍ୟାୟ ମଧ୍ୟ ସକ୍ରିୟ ଭୂମିକା ଗ୍ରହଣ କରିଥିଲେ । ଉଭୟ କବି 'ବାଲିଆପାଳ'କୁ ସେମାନଙ୍କ କବିତାରେ ସ୍ଥାନ ଦେଇ ନିଜର ବିରୋଧାଭାସକୁ ଉପଯୁକ୍ତ ଢଂଗରେ ଉପସ୍ଥାପିତ କରିଛନ୍ତି । ସଂକଳନଟିର ନାମସିନା 'ନିଃଶବ୍ଦ ପ୍ରତିବାଦ' ରଖିଛନ୍ତି କିନ୍ତୁ କବିତା ଗୁଡ଼ିକୁ ଅନୁଧ୍ୟାନ କଲେ ପ୍ରତୀୟମାନ ହୁଏ ଯେ ଏଥିରେ ଥିବା ବିରୋଧାଭାସ ଆଦୌ ନିଃଶବ୍ଦ ନୁହେଁ ବରଂ ଏହା ଏକ ସଶବ୍ଦ ପ୍ରତିବାଦ । ଏ ସଂପର୍କରେ ପ୍ରାବନ୍ଧିକ ଡଃ ବିଜୟ ରଞ୍ଜନର ଶତପଥି ମତପ୍ରଦାନ କରନ୍ତି ଯେ –

"ନିଃଶବ୍ଦ ପ୍ରତିବାଦ ସଂକଳନରେ ଶ୍ରୀରଥଙ୍କର ଆଣ୍ଟିଏଷ୍ଟାବ୍ଲିଶ୍‌ମେଣ୍ଟ କାବ୍ୟସ୍ୱର ବେଶ୍ ତୀବ୍ର । ଏହାର କବିତା ଗୁଡ଼ିକ ଯେପରି କି ଘୋଷଣା କରନ୍ତି ପ୍ରତିବାଦର ଭାଷା ହିଁ ସ୍ୱାଧୀନତାର ଭାଷା । ଏହା ସଶବ୍ଦ ହେଉ କି ନିଃଶବ୍ଦ ହେଉ । ପ୍ରବହମାନ ସମୟର ବିଚିତ୍ର ଗତିଧାରା ଭିତରେ ଏହି ଚରମ ସତ୍ୟ ସ୍ଥାନ-କାଳ-ପାତ୍ର ଭେଦରେ ଶତ ସହସ୍ରବାର ପ୍ରମାଣିତ ହୋଇଆସିଛି ।(୧୩)

କବିଙ୍କର ଯେଉଁ ସଂକଳନ ସଂପର୍କରେ ଆଲୋଚନା କରାଯାଇଛି ସେଥିରୁ ଏକଥା ସ୍ପଷ୍ଟ ହେଉଛି ଯେ, କବି ସିଧାସଳଖ 'ବିପ୍ଳବ' ପାଇଁ ଆହ୍ୱାନ ପ୍ରଦାନ କରିନଥିଲେ ମଧ୍ୟ ପରୋକ୍ଷ ଭାବରେ ତାହା କରିଛନ୍ତି ଓ ଏହା ସାମାଜିକ ସମସ୍ୟାବଳୀ ମାଧ୍ୟମରେ ପ୍ରକାଶିତ ହୋଇଛି । ୧୯୭୯ ମସିହା ଡିସେମ୍ବର ୨୪ ତାରିଖରେ ବାଲେଶ୍ୱରରେ "ଗଣମୁକ୍ତି ଲେଖକ ସାମ୍ମୁଖ୍ୟ" ଗଠିତ ହୁଏ । ଯେଉଁ ସଂଗଠନ କି ସାମ୍ୟବାଦୀ ଚିନ୍ତାଧାରା ଉଦ୍ରେକ କରାଇବାରେ ତତ୍‌କାଳୀନ ସମୟରେ ପ୍ରମୁଖ ଭୂମିକା ଗ୍ରହଣ କରେ । କବି ବ୍ରଜନାଥ ଏହାଦ୍ୱାରା ପ୍ରଭାବିତ ହୋଇ ସମାଜରେ ପ୍ରଚଳିତ ପ୍ରଥା, ପରଂପରା ବିରୋଧରେ ବିଦ୍ରୋହାତ୍ମକ ସ୍ୱରଉତ୍ତୋଳନ କରନ୍ତି । ସକଳପ୍ରକାରର ଦୁର୍ନୀତିର ପରିସମାପ୍ତି ଘଟାଇ ଶୋଷଣ ବିହୀନ ସମାଜ ଗଠନ ପାଇଁ କବି ପରାମର୍ଶ

ଦିଅନ୍ତି --

"ଆଗାମୀର ଚିତ୍ରପଟେ
ଆଙ୍କିଦେବି ନୂଆଏକ
ଶ୍ରେଣୀହୀନ ସମାଜର (୧୪)
ହିରଣ୍ମୟ ଛବି ।"

ସାମ୍ୟବାଦୀ କବି ମେହେନତି ଜନତାର ଜୟଗାନ କରେ । ସାମନ୍ତବାଦୀ ସଭ୍ୟତାର ବାବଦୂକ ସାଜିଥିବା ଗୋଷ୍ଠୀଙ୍କୁ ତୀବ୍ର ବିରୋଧ କରେ । ଇତିହାସ ଯୁଗେ ଯୁଗେ ଏହି ଗୋଷ୍ଠୀଙ୍କୁ ଉଚ୍ଚସ୍ଥାନ ଦେଇଆସିଛି । ରାଜା ମହାରାଜାଙ୍କ ଠାରୁ ଆରମ୍ଭ କରି ସେମାନଙ୍କ କୀର୍ତ୍ତି ସମୂହ ଇତିହାସର ପୃଷ୍ଠା ମଣ୍ଡନ କରିଛି । ସାଧାରଣ ଜନତାର ଶ୍ରମର କୌଣସି ମୂଲ୍ୟ ନାହିଁ । ମାର୍କସ୍ ଯେଉଁ ଇତିହାସର ବସ୍ତୁବାଦୀ ଧାରଣା (Materialistic Interpretation of history) ଉପରେ ଗୁରୁତ୍ୱାରୋପ କଲେ, ସେଥିରେ ରାଜା ମହାରାଜାଙ୍କ ଉପରେ ଗୁରୁତ୍ୱ ଦିଆନଯାଇ ସାଧାରଣ ଜନତା ଉପରେ ଗୁରୁତ୍ୱାରୋପ କରାଗଲା । ଏହାର ମୂଳ କେନ୍ଦ୍ରବିନ୍ଦୁ ହେଲା 'ବସ୍ତୁ' ବା 'ସଂପତ୍ତି' । ଯେଉଁ ସଂପତ୍ତିକୁ ଭିତ୍ତି କରି ଅର୍ଥନୈତିକ, ରାଜନୈତିକ ସଂଗଠନମାନ ତିଆରି ହୁଏ ଓ ଏହା ହିଁ ମଣିଷର ବୌଦ୍ଧିକ ଜୀବନକୁ ନିୟନ୍ତ୍ରଣ କରେ । ଏହା ଉପରେ ମାର୍କସ ଗୁରୁତ୍ୱାରୋପ କଲେ । ଇତିହାସର ଏ ପ୍ରକାର ବ୍ୟାଖ୍ୟା ଧୀରେ ଧୀରେ ସମାଜରେ ଆଦୃତ ହେଲା ଓ ସାଧାରଣ ଜନତାଙ୍କୁ ଏହା ମର୍ଯ୍ୟାଦା ପ୍ରଦାନ କଲା । ତେଣୁ ମାର୍କସ୍‌ଙ୍କର ଇତିହାସର ବସ୍ତୁବାଦୀ ଧାରଣା ଦ୍ୱାରା ଓଡ଼ିଆ କବିମାନେ ମଧ୍ୟ ବହୁ ଭାବେ ପ୍ରଭାବିତ ହେଲେ । କବି ସଚ୍ଚିରାଉତରାୟଙ୍କର (କୋଣାର୍କ), ବ୍ରଜନାଥଙ୍କ 'ନିଃଶବ୍ଦ ପ୍ରତିବାଦ'ରେ ଉଚ୍ଚାରିତ ପ୍ରତିଧ୍ୱନି ମାର୍କସ୍‌ଙ୍କର ଏହି ଚିନ୍ତାଧାରାକୁ ଦୃଷ୍ଟିସମ୍ମୁଖରେ ରଖି ଅଗ୍ରଗତି କରିଛି । କବି ରାଉତରାୟ ଲେଖନ୍ତି –

"ତୁମେ ଦେଖୁଅଛ ଶିଳାରେ ତାର'ତ
ରମ୍ୟକଳାର ରୂପ
ମୁଁ ଦେଖୁଛି ତହିଁ କୋଟି କଙ୍କାଳ
ଭଗ୍ନ ବୁକୁରସ୍ତୁପ ।" (୧୫)

କବି ବ୍ରଜନାଥ ଲେଖନ୍ତି –

"ଇତିହାସ ଗଢ଼ା ହୁଏ ଶ୍ରମ ଆଉ ସ୍ୱପ୍ନର ସଂଗମେ,
ଇତିହାସ ଗଢ଼ାହୁଏ କୃଷକ ଶ୍ରମିକ ଆଉ
ଶତଶତ ମେହେନତି ମଣିଷର ଘର୍ମର ପ୍ଲାବନେ । (୧୬)

ମାର୍କସ୍‌ବାଦ ସଦାସର୍ବଦା 'ଜୀବନ ପାଇଁ କଳା' ନୀତିରେ ଆସ୍ଥା ପ୍ରକଟ କରିଥାଏ । ସମାଜ ସେବାରେ କଳା ଓ ସାହିତ୍ୟ ବିନିଯୋଗ ହେବା ଏକାନ୍ତ ଆବଶ୍ୟକ । ତେଣୁ କବି ବ୍ରଜନାଥଙ୍କର ଅଧିକାଂଶ କବିତାର ଭାବବସ୍ତୁ ସାମାଜିକ ସମସ୍ୟାବଳୀ ଉପରେ ଆଧାରିତ । 'ନିଃଶବ୍ଦ ପ୍ରତିବାଦ'ରେ ଥିବା 'କୁକୁର ହେବା ସପକ୍ଷରେ' କବିତାଟିକୁ ବିଚାରକୁ ନିଆଯାଉ । କବିତାଟି ସରକାର ବିରୋଧରେ ପ୍ରତିବାଦ କରେ । ଜାତୀୟ ଜରୁରୀକାଳୀନ ପରିସ୍ଥିତି ସମୟରେ ସୁପ୍ରିମ୍‌କୋର୍ଟ ରାୟ ଦିଅନ୍ତି – During Internal Emergency the citizen has lost the right to life and property. ଯେଉଁ ସମାଜରେ ମଣିଷ ସ୍ୱାଧୀନ ଭାବରେ ବଞ୍ଚିପାରିବ ନାହିଁ ସେ ଦେଶର ମଣିଷ କୁକୁରଠାରୁ ମଧ୍ୟ ତୁଚ୍ଛ । ସାଂପ୍ରତିକ ଶାସନବ୍ୟବସ୍ଥାକୁ ବିଦ୍ରୂପ କରିବାକୁ ଯାଇ କବି ଲେଖନ୍ତି –

"କିଛି ନ 'ହେଲେ ବି କୁକୁର ପାରୁଛି ଭୁକି
ଦୁଇ ଗୋଡ଼ ତଳେ ଲାଞ୍ଜ ତଳକୁ ଜାକି
କିନ୍ତୁ ସେତକ ସ୍ୱାଧୀନତା କାହିଁ ମୋର
ପାଟି ଫିଟାଇଲେ ଲାଠି ଓ ଗୁଳି ହିଁ ସାର ।" (୧୭)

ଗାଣତନ୍ତ୍ରିକ ଶାସନବ୍ୟବସ୍ଥା ସାଧାରଣ ଜନତାଙ୍କୁ ପ୍ରାଧାନ୍ୟ ଦେବା ଉଚିତ୍ । ଏଥିରେ ଯଦି ସ୍ୱେଚ୍ଛାଚାରିତାର ପ୍ରବେଶ ଘଟେ ତାହା କଳୁଷିତ ପାଲଟିଯାଏ । କଳଙ୍କିତ ଶାସନବ୍ୟବସ୍ଥା ବିରୋଧରେ ତୀବ୍ର ବିରୋଧାଭାସ ପରିଲକ୍ଷିତ ହୁଏ 'ସଭ୍ୟତାର ମୁହଁ' ସଂକଳନରେ । ଏ ସଂପର୍କରେ କବି ସ୍ୱୟଂ ମତପ୍ରକାଶ କରନ୍ତି –

"ଶତାବ୍ଦୀର ଏଇ ଶେଷ ସୀମାନ୍ତରେ ଠିଆ ହୋଇ ଯେଉଁ 'ସଭ୍ୟତାର ମୁହଁ' ଆମ ଆଖିର ଦର୍ପଣରେ ଝଲସି ଉଠିଛି, ସେ ମୁହଁ ବିକୃତ ଓ ବିବର୍ଣ୍ଣ, ବୀଭତ୍ସ ଓ ବିଷଣ୍ଣ, କରୁଣ ଓ ଅସହାୟ । କ୍ଷୟିଷ୍ଣୁ ଧନତାନ୍ତ୍ରିକ ସଭ୍ୟତାର କ୍ଷଣିକ ଔଜଲ୍ୟ ସତ୍ତ୍ୱେ ଓ ଅପସଂସ୍କୃତିର ରାହୁଗ୍ରାସ ଭିତରେ ଆଜିର ଜନଜୀବନ ଯେପରି ପଙ୍ଗୁ ଓ ଜୀର୍ଣ୍ଣ, ସେହିପରି ଭଗ୍ନପକ୍ଷ ଓ ଶୂନ୍ୟଗର୍ଭ ।"(୧୮)

'ବିପ୍ଳବ' ଯେ କେବଳ ପୁଂଜିବାଦର ବିନାଶ ଚାହେଁ ତାହା ନୁହେଁ ବରଂ ଉନ୍ନତତର ସମାଜ ବ୍ୟବସ୍ଥାର ପ୍ରତିଷ୍ଠା ଲାଗି କ୍ଷୟିଷ୍ଣୁ ମୂଲ୍ୟବୋଧ ବିରୋଧରେ ସ୍ୱରଉତ୍ତୋଳନ କରେ । ନୂତନତାର ସର୍ଜନା ପାଇଁ ଯେଉଁ ସାହତ୍ୟ ସୃଷ୍ଟି ହୁଏ, ତାହା ହିଁ ପ୍ରକୃତରେ ସାର୍ଥକ ବିପ୍ଳବୀ ସାହିତ୍ୟ । ତେଣୁ ସେହି ନ୍ୟାୟରେ କବି ବ୍ରଜନାଥ ସମାଜର ଅବ୍ୟବସ୍ଥା ପାଇଁ ଯେଉଁମାନେ ଦାୟୀ ସେମାନଙ୍କୁ ସିଧାସଳଖ ଆକ୍ଷେପ କରିଛନ୍ତି 'ଚଢ଼େଇ' କବିତାରେ । କବିଙ୍କ ଭାଷାରେ –

"ଛଳନାର ଇସ୍ତାହାର
ଇସ୍ତାହାରର ଛଳନା
ନୀତିହୀନ ନେତାଙ୍କର
କଳଂକିତ ହାତରେ
ଥେଇ ଥେଇ ନାଚୁଛି
ଶତ ଶତ ହତଭାଗ୍ୟ
ଜୀବନର ଖେଳନା ।" (୧୯)

'ନିଃଶବ୍ଦ ପ୍ରତିବାଦ' ଓ 'ସଭ୍ୟତାର ମୁହଁ' ରେ ଉଚ୍ଚାରିତ ଉଦାତ୍ତ ବୈପ୍ଳବିକ ଆହ୍ୱାନ କିନ୍ତୁ 'ମନର ମାନଚିତ୍ର' ଓ 'ହେ ମହାଜୀବନ'ରେ ଖୋଜିଲେ ଆମକୁ ନିରାଶ ହେବାକୁ ପଡ଼ିବ । ପ୍ରାଥମିକ ପର୍ଯ୍ୟାୟର କବିତାଗୁଡ଼ିକରେ ଯେଉଁ ମାନବବାଦୀ ଦୃଷ୍ଟିଭଂଗୀ ବା, ଅନ୍ୟ ଭାଷାରେ କହିଲେ ପ୍ରଗତିବାଦର ଶାନ୍ତ ସ୍ନିଗ୍ଧରୂପ ଦେଖିବାକୁ ମିଳିଥିଲା 'ହେ ମହାଜୀବନ' ତାକୁ ହିଁ ଗ୍ରହଣ କରିନେଇଛି । ଏହା କବି ସ୍ୱୟଂ ସ୍ୱୀକାର କରନ୍ତି ସଂକଳନର ମୁଖବଂଧରେ ।

"ଜୀବନ ପ୍ରତି, ମଣିଷ ପ୍ରତି ଓ ଏ ଦେଶର ମାଟି-ପାଣି-ପବନ ପ୍ରତି ଗଭୀର ମମତ୍ୱବୋଧକୁ ତାଙ୍କ କାବ୍ୟ ଚେତନାର ନାଭି-ପଦ୍ମ ବା ପ୍ରାଣକେନ୍ଦ୍ର ବୋଲି କହିଛନ୍ତି, ଏବଂ ସଂକଳନଟିକୁ ମଣିଷର ସଂଗ୍ରାମ ଓ ଶାନ୍ତି, ଜୀବନ ଓ ସ୍ୱାଧୀନତାର ସପକ୍ଷରେ ଏକ କାବ୍ୟିକ ଦଲିଲ୍ ବା ବାସ୍ତବ ଗାଥା ବୋଲି ଘୋଷଣା କରିଛନ୍ତି ।" (୨୦)

କିନ୍ତୁ 'ଲଘୁ ଶତକ'ରେ ସ୍ଥାନିତ କବିତାଗୁଡ଼ିକରେ କବି ବୈପ୍ଳବିକ ଚିନ୍ତାଦର୍ଶକୁ ଅତ୍ୟନ୍ତ ବ୍ୟଙ୍ଗାତ୍ମକ ଭାବରେ ବର୍ଣ୍ଣନା କରିଛନ୍ତି । ବେନ୍‌ଜନ୍‌ସନ୍ ଯେପରି ବ୍ୟଙ୍ଗାତ୍ମକ ରଚନା ମାଧ୍ୟମରେ ନିଜ ହୃଦୟର କଠୋର ଭାବାବେଗକୁ ଉପସ୍ଥାପିତ କରିଛନ୍ତି, କବି ବ୍ରଜନାଥ ମଧ୍ୟ ଅନୁରୂପ ଶୈଳୀକୁ ଆପଣେଇ ନେଇଛନ୍ତି ଲଘୁଶତକରେ ।

ବ୍ରଜନାଥଙ୍କ 'ଲଘୁଶତକ'ର ପ୍ରଥମ କବିତା 'ମୋର ଲେଖକ ହୋଇବାଧିକ୍' ରେ କବିଙ୍କର ଯେଉଁ ଚିନ୍ତାଧାରା ପରିଲକ୍ଷିତ ହୁଏ, ସେଥିରୁ ତାଂକର ବ୍ୟଂଗାତ୍ମକ ଦୃଷ୍ଟିଭଂଗୀର ପରିଚୟ ମିଳେ । କବି ଦୃଢ଼ ସ୍ୱରରେ ଗାନ କରନ୍ତି -

"ଶାଣଦିଆ ଖର ତରବାରୀ ଭଳି
କଲମ ଯଦି ମୋ ନ ଉଠିଲା ଝଳି
ନରଚିଲା ଯଦି ସତ୍ୟର ବାଣୀ ଯାହା ସେ ଭାବିଲା ଠିକ୍
ତେବେ ଲେଖକ ହୋଇବା ଧିକ୍ ମୋହର
କବି ବୋଲାଇବା ଧିକ୍ ।" (୨୧)

କବିର ବିପ୍ଳବ ପ୍ରତି ରହିଥିବା ଆନୁଗତ୍ୟ ତା'ର କାବ୍ୟକବିତାରୁ ହିଁ ପ୍ରମାଣିତ ହୋଇଥାଏ । ତହିଁରୁ ତାର ସାହିତ୍ୟିକ ମୂଲ୍ୟ ମଧ୍ୟ ନିରୂପିତ ହୋଇଥାଏ । କବି କୃତିର ସାର୍ଥକତା ତା'ର ପଦବିନ୍ୟାସରେ ନଥାଏ ବରଂ ସେଥିରେ ଯେଉଁଥିରେ କବି ହୃଦୟର ଆଦର୍ଶ ଓ ନିଷ୍ଠା ଜୀବନ୍ତ ରୂପ ପରିଗ୍ରହ କରିଥାଏ । ସମାଜ ପ୍ରତି କବି କେତେମାତ୍ରାରେ ଅଂଗୀକାରବଦ୍ଧ, ତାହା ମଧ୍ୟ ଏକ ଉଚ୍ଚାଙ୍ଗ ସୃଷ୍ଟିର ସମାଲୋଚନା ପାଇଁ ଏକାନ୍ତ ଆବଶ୍ୟକ । ଏହାକୁ ବହନ କରିଛି 'ଲେଖକ ହୋଇବାଧିକ୍' କବିତା । ଅନ୍ୟ ଏକ କବିତା 'ଡିସ୍କୋ ଯୁଗର ତରୁଣୀ ଆମେରେ' କବିଙ୍କର ସମାଜସଚେତନ ଦୃଷ୍ଟିଭଂଗୀର ପରିଚୟକୁ ବହନ କରିଅଛି ।

ଅବକ୍ଷୟଗାମୀ ଅପସଂସ୍କୃତି ବିରୋଧରେ ସ୍ୱର ଉତ୍ତୋଳନ କରିବା ବ୍ୟତୀତ କବି ସ୍ଥାନେସ୍ଥାନେ କେତେକ ସାମାନ୍ୟ ବସ୍ତୁକୁ ପ୍ରତୀକ ଭାବେ ଗ୍ରହଣ କରି ବିଦ୍ରୋହାତ୍ମକ ଚିନ୍ତାଧାରାକୁ ବ୍ୟକ୍ତ କରୁଛନ୍ତି । କେତେବେଳେ 'ମଶା'କୁ ପ୍ରତୀକ ଭାବେ ଗ୍ରହଣ କରିଛନ୍ତି ତ' କେତେବେଳେ 'ଥଳି'କୁ ପ୍ରତୀକ ଭାବେ ଗ୍ରହଣ କରିଛନ୍ତି ।

"ଦୁନିଆରେ ଯଦି ପାଇବାକୁ ଚାହଁ ଖ୍ୟାତି ଓ ଅମର ଯଶ
କଳା ବଜାରୀ ଓ ପୁଂଜିପତିର ମଶାରୀ ଭିତରେ ପଶ
ଶୁଣ୍ଢରେ ତୁମ ଭୂଷ
ବିପ୍ଳବୀ ବୋଲି ପାଇବ ସୁନାମ, ପିଇବ ଖାଣ୍ଟି ରସ ।" (୨୨)

"ଏଥର ଟିକିଏ ଉପରକୁ ଟେକ ମଥା
ମୁହଁ ଖୋଲି କୁହ ପୀଡ଼ିତ ପ୍ରାଣର କଥା
ଅସନ୍ତୋଷର ତୀବ୍ର ଦହନେ ଜଳି
ରୁଦ୍ର ରୋଷରେ ଜାଗ ହେ ଜାଗରେ ଥଳି ।" (୨୩)

ସମାଜରୁ କଳାବଜାରୀ, ଶୋଷଣର ବିଲୋପ ପାଇଁ ସାମାନ୍ୟ ମଶାଟିଏ ଯଦି ଅଣ୍ଡାଭିଡ଼ି ବାହାରି ପାରୁଛି ତା' ହେଲେ ମଣିଷ କାହିଁକି ନ ପାରିବ ? 'ଲଘୁଶତକ'ରେ ଏକ ଭିନ୍ନ ଶୈଳୀ ମାଧ୍ୟମରେ ପ୍ରଗତିବାଦର ପ୍ରଖ୍ୟାପନ କରାଯାଇଥିବା ବେଳେ 'ହେ ମୋର ସ୍ୱଦେଶ' ରେ ସାମସମୟିକ ସମାଜ ବ୍ୟବସ୍ଥା ବିରୋଧୀ କାବ୍ୟସ୍ୱର ଅନୁରଣିତ ହୋଇଛି । କ୍ଷମତାନ୍ଧ ରାଜନୀତିଜ୍ଞମାନଙ୍କ କବଳରେ ପ୍ରିୟ ଭାରତମାଟି ଆଜି କବଳିତ । ଧର୍ମାନ୍ଧମାନଙ୍କ କୂଟକ୍ରାନ୍ତ ଦ୍ୱାରା ଭାରତବର୍ଷ ଆଜି ଆହତ । ଭାରତବର୍ଷର ଏ ପ୍ରକାର ପରିସ୍ଥିତିରେ କବିଙ୍କର ବ୍ୟଥିତ ହୃଦୟରୁ ଝରି ପଡ଼ିଛି –

"ଦିଗନ୍ତେ ଦିଗନ୍ତେ ଶୁଭେ
ଘାତକର କ୍ରୁର ଅଟ୍ଟହାସ

ଯନ୍ତ୍ରଣାରେ ଭରି ଉଠେ
ଭାରତର ନଦ ନଦୀ
ବନଗିରି ଜନପଦ
ମାଟି ଓ ଆକାଶ ।". (୨୪)

କବି ହୃଦୟର ସାମ୍ୟବାଦୀ ଚିନ୍ତାଧାରା କ୍ରୂର ପରିସ୍ଥିତିକୁ ରୂପାୟିତ କରିବା ସଂଗେସଂଗେ ଆଗାମୀ କାଲିର ସୁନେଲୀ ଭବିଷ୍ୟତ ପାଇଁ ଜନତାଙ୍କୁ ଆମନ୍ତ୍ରଣ କରେ । ଏକ ସୁଖଦ ସମୟର ଆଗମନ ପାଇଁ ଅପେକ୍ଷା କରିଥାଏ । କବିଙ୍କର ଏ ପ୍ରକାର ସର୍ବଜନପ୍ରସାରୀ ଦୃଷ୍ଟିଭଂଗୀ ସଂପର୍କରେ ମନ୍ତବ୍ୟ ପ୍ରଦାନ କରିବାକୁ ଯାଇ 'ବାଞ୍ଛାନିଧି ଦାସ' କହନ୍ତି –

"ଦେଶ ମାଟିର ମୋହକାଟି, ବର୍ଣ୍ଣବୈଷମ୍ୟର ସୀମା ରେଖା ଟପି କବି କବିତା ଗୁଡ଼ିକରେ ମହାନ୍ ମାନବିକତାର ଜୟଗାନ କରିଛନ୍ତି ଓ 'ସବାର୍ ଉପରେ ମାନୁଷ୍ ସତ୍ୟ'ର ନେତ ଊର୍ଦ୍ଧ୍ୱକୁ ଟୋଳି ଧରିଛନ୍ତି । କବିତାଗୁଡ଼ିକରେ ଅନ୍ତର୍ନିହିତ ଲାଳିତ୍ୟ ଛନ୍ଦ ଓ ଉଦ୍‌ବୋଧନୀର ଭାବବ୍ୟଞ୍ଜନା ତୀବ୍ର ଥିବାରୁ ଏହା ଯେ "ବିଲେ ବୋଲେ ଚଷା' ଓ 'ଅନ୍ତଃପୁରେ ଯୋଷା'ର କ୍ଷମତା ଓ ଗୌରବ ଅର୍ଜନ କରିପାରିବ, ଏଥିରେ ତିଳେ ମାତ୍ର ସନ୍ଦେହ ନାହିଁ ।"(୨୫)

ବ୍ରଜନାଥଙ୍କ କବିତାର ଏକ ବିଶେଷ ଦିଗ ହେଉଛି ଚଳନ୍ତି ସମାଜରେ ଦେଖାଦେଉଥିବା ଅତ୍ୟାଚାର ଓ ଶୋଷଣର ବର୍ଣ୍ଣନା । ସେହିପରି ଏକ ଘଟଣା ହେଉଛି ୧୯୮୬ ମସିହାରେ ସଂଘଟିତ ହୋଇଥିବା ଏକ ସମ୍ମିଳନୀରେ ମୁଖ୍ୟମନ୍ତ୍ରୀଙ୍କ ଅଭିଭାଷଣ । ତାହା ପୁଣି ଥିଲା ବାଲିଆପାଳଘାଟୀ ସପକ୍ଷରେ । ଏହା ବିରୋଧରେ କବିଙ୍କର ପ୍ରତିକ୍ରିୟା କିପରି ଦେଖନ୍ତୁ –

"ମୁଖ୍ୟ-ମନ୍ତ୍ରୀ ବୁଦ୍ଧି ନୁହଁଇ ସ୍ୱଚ୍ଛ
ଯୁଦ୍ଧଘାଟୀକୁ କହିଲେଣି ଏକ ଶିଳ୍ପ ।
ମଦ୍ୟକୁ ଯଦି କାଲି ସେ କହିବେ ଦୁଗ୍ଧ
ବାଃ-ବାଃ କହି ନାଚିଯିବେ ଗୁଣ ମୁଗ୍ଧ ।
କୁଳଟାକୁ ଯଦି କହିବେ ସେ କୁଳବଧୂ
ସଂଜ୍ଞା ବଦଳି ହାଣ୍ଡିଆ ହେବ ମଧୁ ।" (୨୬)

ବ୍ୟଙ୍ଗାତ୍ମକ ଶୈଳୀ ମାଧ୍ୟମରେ ସାଂପ୍ରତିକ ପରିସ୍ଥିତି ବିରୋଧରେ ବେଶ୍ ଚମତ୍କାର ଢଂଗରେ କବି ନିଜର ବିରୋଧଭାସକୁ ବ୍ୟକ୍ତ କରିଛନ୍ତି । ଏ ସଂପର୍କରେ ଆଲୋଚକ 'ଦୁର୍ଗା ପ୍ରସନ୍ନ ପଣ୍ଡା' କହନ୍ତି –

"ବ୍ରଜନାଥଙ୍କ ବ୍ୟଙ୍ଗ ଦ୍ୱାରା ମଣିଷର ଅଦୃଶ୍ୟ ଅବଚେତନ, ଆଲୋକର ଦୃଶ୍ୟମାନ ବଳୟକୁ ଆସିଛି । ସେ ସାମସମୟିକ ବୁଦ୍ଧିଜୀବୀ ଲେଖକଙ୍କ ଦୃଷ୍ଟିର ଅନ୍ତରାଳରେ ରହିଯାଉଥିବା ଅନେକ ଅପାଂକ୍ତେୟ ବସ୍ତୁକୁ ଉପଜୀବ୍ୟ କରି କବିତାରେ ରସ ସୃଷ୍ଟି କରିଛନ୍ତି ।"(୨୭)

କବି ବ୍ରଜନାଥ ଦୀର୍ଘ ପଚାଶ ବର୍ଷରୁ ଊର୍ଦ୍ଧ୍ୱସମୟ ଧରି କାବ୍ୟ ସାଧନାରେ ନିମଗ୍ନ । ବର୍ତ୍ତମାନ ମଧ୍ୟ କବିଙ୍କର ଲେଖନୀ ଚଳଚଞ୍ଚଳ । କବିଙ୍କର କବିତା ଆଲୋଚନାରୁ ଏହା ସ୍ପଷ୍ଟହୁଏ ଯେ ଆଦ୍ୟ ପର୍ଯ୍ୟାୟରେ ପ୍ରଗତିବାଦକୁ ମାନବବାଦର ରୂପ ପ୍ରଦାନ କରିଥିବା କବି, ମଧ୍ୟ ପର୍ଯ୍ୟାୟରେ ତଥାକଥିତ ସାମାଜିକ ବ୍ୟବସ୍ଥା, ଭ୍ରଷ୍ଟାଚାର ତାଙ୍କ କାବ୍ୟସ୍ୱରକୁ ଶାଣିତ ଓ କଠୋର କରିଦେଇଛି । ଅଦ୍ୟାବଧି ଏହି ସ୍ୱର ହାସ୍ୟ ବ୍ୟଙ୍ଗ ମାଧ୍ୟମରେ ନିଛକ ବାସ୍ତବତାକୁ ରୂପ ଦେବାକୁ ଆଗୁସାର । ତିନୋଟି ପର୍ଯ୍ୟାୟରେ ରଚିତ କବିତାର କେନ୍ଦ୍ରବିନ୍ଦୁ ହେଉଛି 'ମନୁଷ୍ୟ' । ସେ ମନୁଷ୍ୟ ହେଉଛି ସଭ୍ୟତା ଓ ସଂସ୍କୃତି ଗଢୁଥିବା ନିମ୍ନବର୍ଗର ମନୁଷ୍ୟ । କବି ବ୍ରଜନାଥଙ୍କ କବିତା ସଂପର୍କରେ ପ୍ରାବଂଧିକ ଡଃ ବୈଷ୍ଣବ ଚରଣ ସାମଲ ମତପ୍ରଦାନ କରନ୍ତି –

"ମାନବତାର ସଂପ୍ରସାରଣ ଲକ୍ଷ୍ୟ ହୋଇଥିବାରୁ ଶ୍ରୀରଥ ଇନ୍ଦ୍ରିୟ ସମର୍ଥିତ କବି ନୁହନ୍ତି, ଅତୀତଚାରୀ ନୁହନ୍ତି, ଗଭୀର ଅଂଧକାର ମଧ୍ୟରେ ନିଦ୍ରା ଦେବୀଙ୍କ କୋଳରେ ଲାଳିତ ମଧ୍ୟ ନୁହନ୍ତି । ଜୀବନ ଓ ସମାଜ ଭାବନା ତାଙ୍କୁ ଆଲୋଡ଼ିତ କରିଥିବାରୁ ବ୍ୟକ୍ତିମୟତାରୁ ସେ ମୁକ୍ତ ହୋଇ ମଧ୍ୟବିତ୍ତୀୟ ସମୂହକଲ୍ୟାଣକାମୀ ମାନସିକତାର ହୋଇଛନ୍ତି ରୂପକାର । (୨୮)

କବି ବ୍ରଜନାଥଙ୍କ କବିତାଗୁଡ଼ିକୁ ଅନୁଶୀଳନ କଲେ ପ୍ରତୀୟମାନ ହୁଏ ଯେ, ତାଙ୍କର କବିତା କ୍ଳାନ୍ତି, ନୈରାଶ୍ୟ ଓ ବିଷାଦର କବିତା ନୁହେଁ । ତାଙ୍କ କବିତା ପ୍ରତିବାଦର କବିତା, ପ୍ରେରଣାର ଉତ୍ସ । କୌଣସି ଦର୍ଶନ ପ୍ରତି କବିଙ୍କର ଅଂଗୀକାରବଦ୍ଧତା ଶତପ୍ରତିଶତ ନଥିଲେ ମଧ୍ୟ କବିଙ୍କ କବିତାରେ ପ୍ରକାଶ ପାଇଛି ମଣିଷ ସମାଜ ପ୍ରତି ଅହେତୁକ ସମବେଦନା, ଯାହା କି କବିଙ୍କୁ ଏକ ସାର୍ଥକ ସାମ୍ୟବାଦୀ ସ୍ରଷ୍ଟାର ମାନ୍ୟତା ପ୍ରଦାନ କରୁଅଛି ।

## କବି ରବି ସିଂ

ଓଡ଼ିଆ ସାହିତ୍ୟର ଏକକ ଅଶ୍ୱାରୋହୀ, ଯାହାଙ୍କର ସାରସ୍ୱତ ସତ୍ତା ଓଡ଼ିଆ ଜାତି, ଭାଷା, ସାହିତ୍ୟ, ସଂସ୍କୃତି ପ୍ରତି ଅଂଗୀକାରବଦ୍ଧ, ପ୍ରତ୍ୟେକ ଘଟଣାକୁ ଆହ୍ୱାନ ଭାବେ ଗ୍ରହଣ କରି ଅଦ୍ୟାବଧି ଓଡ଼ିଆ ସାହିତ୍ୟରେ ଉନ୍ନତଶିର, ନୈତିକତାରେ ଯାହାଙ୍କର ସାରସ୍ୱତ ମୂଲ୍ୟବୋଧ ସଦାଉତ୍କୀର୍ଣ୍ଣ, ସେ ହେଉଛନ୍ତି ଓଡ଼ିଆ ସାହିତ୍ୟର ଶକ୍ତିଶାଳୀ

ବାମପନ୍ଥୀ କବି ଶ୍ରୀଯୁକ୍ତ ରବୀନ୍ଦ୍ରନାଥ ସିଂହ । ଆଧୁନିକ ଓଡ଼ିଆ ସାହିତ୍ୟରେ କବିଙ୍କର ଆବିର୍ଭାବ, ଅଭିଯାନ ଓ ଉତ୍‌ଥାନ ଦୀର୍ଘ ଚାରିଦଶକର ଇତିହାସ । ଏହି ପ୍ରତିଭାବାନ କବି ଜଗତ୍‌ସିଂହପୁର ଜିଲ୍ଲା ଅନ୍ତର୍ଗତ 'ନବାପାଟଣା' ଗ୍ରାମରେ ଜନ୍ମ ଗ୍ରହଣ କରିଥିଲେ । ପିତା ରାମଚନ୍ଦ୍ର ସିଂହ ଥିଲେ ଜଣେ ସ୍ୱାଧୀନତା ସଂଗ୍ରାମୀ, ବିସ୍ମୟ ବ୍ୟକ୍ତିତ୍ୱ । ପିତାଙ୍କର ସ୍ୱାଧୀନତା ସଂଗ୍ରାମରେ ଯୋଗଦାନ ହେତୁ କବିଙ୍କ ପରିବାରକୁ ସର୍ବସ୍ୱ ହରାଇବାକୁ ପଡ଼ିଥିଲା । କବିଙ୍କର ଜନ୍ମ ବେଳେ ତାଂକର ବାସଗୃହ ପୋଲିସ୍ କର୍ମଚାରୀମାନଙ୍କ ଦ୍ୱାରା ପରିବେଷ୍ଟିତ ହୋଇଥିଲା । ମା' ଗୃହହୀନା ହୋଇ ପଡ଼ିଶା ଘରେ ଆଶ୍ରିତା ହୁଅନ୍ତି । ପିତାଙ୍କର ମୃତ୍ୟୁ ପରେ କବି ପାଲଟି ଯାଆନ୍ତି ଜୀବନର ଚଲାପଥରେ ଏକାନ୍ତ ନିସଂଗ । କଲେଜ୍ ଶିକ୍ଷାର ଦ୍ୱାର ମାଡ଼ି ନଥିବା କବି ଗ୍ରାମ୍ୟ ପାଠଶାଳାରେ କିଛି କାଳ ଅଧ୍ୟୟନ କରିଥିଲେ । କବିଙ୍କର ସାରସ୍ୱତ ସାଧନାର ଦିଗ୍‌ବଳୟକୁ ସ୍ପର୍ଶ କଲେ ଏହା ବିଶ୍ୱାସ କରିହୁଏ ନାହିଁ । ପ୍ରତିଭାବାନ୍ କବିଙ୍କର ଜୀବନ ଇତିହାସରେ ଘଟିଛି ନାନାଦି ଉତ୍‌ଥାନ ପତନ । ପରିବାର ଉପରେ ପୋଲିସ୍‌ମାନଙ୍କର ଜୁଲମ୍ ସାଙ୍ଗକୁ, ଅଶେଷ ନିର୍ଯ୍ୟାତନା, ନ୍ୟସ୍ତ ସ୍ୱାର୍ଥବାଦୀଙ୍କର ଜଘନ୍ୟ ଆକ୍ରମଣ କବିଙ୍କୁ ତାଙ୍କର ଲକ୍ଷ୍ୟ ପଥରୁ ବିଚ୍ୟୁତ କରାଇଦେଇନାହିଁ । କବିଙ୍କର ଏ ପ୍ରକାର ଦୃଢ଼, ସଂକଳ୍ପବଦ୍ଧ ମାନସିକତାର ପୃଷ୍ଠପଟ୍ଟରେ ରହିଛି ପିତାଙ୍କର ନିର୍ମଳ ନୈତିକ ବ୍ୟକ୍ତିତ୍ୱ ସାଙ୍ଗକୁ ସାମ୍ରାଜ୍ୟବାଦ ବିରୋଧୀ ସଂଗ୍ରାମ । ଏହା ହିଁ କବିଙ୍କୁ ସମସ୍ତ ବିପଦକୁ ଧୈର୍ଯ୍ୟର ସହିତ ମୁକାବିଲା କରିବା ପାଇଁ ପ୍ରେରଣା ପ୍ରଦାନ କରିଛି । ଏତଦ୍‌ବ୍ୟତୀତ ପ୍ରତିଭାବାନ୍ ସ୍ରଷ୍ଟା ଗୋଦାବରୀଶ ମହାପାତ୍ରଙ୍କ ସହିତ ଆତ୍ମୀୟତା, ଗାଳ୍ପିକ ସୁରେନ୍ଦ୍ର ମହାନ୍ତିଙ୍କ ସହିତ ଏକତ୍ର ବସବାସ ହିଁ ସାରସ୍ୱତ ସାଧନା ନିମନ୍ତେ କ୍ଷେତ୍ର ପ୍ରସ୍ତୁତ କରିଥିଲା କହିଲେ ଅତ୍ୟୁକ୍ତି ହେବନାହିଁ ।

କବି ନିଜ ଦୁଃଖଦ ଜୀବନର ସ୍ମୃତି ଚାରଣ କରିବାକୁ ଯାଇ କହନ୍ତି –

"ମଶାଲ୍ ଭୂଲୁଣ୍ଠିତ ହୋଇ ଆସୁଥିଲା । ଏତିକିବେଳେ ତାକୁ ତଳୁ ଉଠାଇ ନେଲେ । ଗୋଟିଏ ଦିନ ମାତ୍ର ଚାହାଲୀରେ ପାଠ ପଢ଼ିଥିବା, ଖଣ୍ଡିଏ ଦି ଖଣ୍ଡି ଚଟି ଗୀତ ବହି ଓ ଏକ ଭ୍ରମଣ କାହାଣୀର ରଚୟିତା, ଗ୍ରାମ ସେବକ ଚାକିରୀ ପାଇଁ ସଦ୍ୟ ଅଯୋଗ୍ୟ ବିବେଚିତ ଜଣେ ଶୀର୍ଣ୍ଣକାୟ ଯୁବକ । ନାମ – ରବି ସିଂ । ମୁକାମ – କଟକ ଜିଲ୍ଲା ଜଗତ୍‌ସିଂହପୁରର ନବାପାଟଣା ।" (୨୯)

କବିଙ୍କର ବକ୍ତବ୍ୟରୁ ସ୍ପଷ୍ଟ ପ୍ରତୀୟମାନ ହୁଏ ଯେ, କବିଙ୍କର ଜୀବନ ଖ୍ରୁବ୍ ଜ୍ୱାଳାମୟ । ପିତୃମାତୃହରା ଅନାଥ ହେବା ପରେ, କବି ଆରମ୍ଭ କରନ୍ତି ସମାଜକୁ, ଏ ଦୁନିଆକୁ ଚିହ୍ନି ଅନ୍ୟକୁ ଚିହ୍ନାଇବାର ଦୁର୍ବାର ପ୍ରୟାସ । ଯାହାକି ତାଙ୍କର କାବ୍ୟକବିତାରେ ପ୍ରକାଶିତ । ଏହି ଦରଦୀ କାବ୍ୟପ୍ରାଣର ପ୍ରଚ୍ଛନ୍ନ ଅଭିବ୍ୟକ୍ତି 'ପଥପ୍ରାନ୍ତର' କବିତା

ସଂକଳନର ମୁଖବଂଧରୁ ହିଁ ଏହା ସ୍ପଷ୍ଟ ପ୍ରମାଣିତ ହୁଏ । କବି ନିଜର ବକ୍ତବ୍ୟ ବାଢ଼ିବାକୁ ଯାଇ କହନ୍ତି –

"ଅର୍ଦ୍ଧାହାର, ଅନାହାର, ଗଭୀର ହତାଶାରେ ଉଦ୍‌ଭ୍ରାନ୍ତ ହୋଇ ଏକ କକ୍ଷଚ୍ୟୁତ ଧୂମକେତୁ ପରି ମୁଁ ଘୂରି ବୁଲୁଥିଲି ଟିକିଏ ସ୍ନେହ, ଆଦର, ଆଶ୍ୱାସ, ହୃଦ୍ୟତା ଏବଂ ଆଲୋକର ଭିକ୍ଷାର୍ଥୀ ହୋଇ, ସେଇ ଘୂର୍ଣ୍ଣନ ଭିତରେ ବାଟୋଇର ରକ୍ତିମାନନ, ମଣିଷର ଅକାରଣ ଘୃଣା, ଆଶ୍ରୟ ବଦଳରେ ଆକ୍ରମଣ, ଶ୍ରଦ୍ଧା ବଦଳରେ ପଦାଘାତ, ଏସବୁ ଥିଲା ମୋର ସହଚର ।" (୩୦)

ଘନ ନୈରାଶ୍ୟ, ଅପରିମିତ ଯାତନା ମଧ୍ୟରେ ଅହରହ ଛଟପଟ ହେଉଥିବା କବି ପ୍ରାଣ ଆଶାର ଦ୍ୟୋତନା ପାଇଁ ଗାଇ ଉଠିଛି –

"ଆଜି ଏତେ ବେଳେ
କ୍ଳାନ୍ତ ଚରଣେ ଦିଅ ହେ ବଳ
ହେ ମୋର କଲମ ଶକ୍ତ ଶୂଳ
ନିରାଶାର ଘନ- ଅଂଧାରେ ତୁମେ ଆଶାର ଫୁଲ
ତୀକ୍ଷଣ ମୂନରୁ ମସୀ ନୁହେଁ ଖାଲି ଅନଳ ଢାଳ ।" (୩୧)

କାବ୍ୟିକ ଜୀବନର ଅୟମାରମ୍ଭରେ କବି କାମନା କରନ୍ତି ଅୟୁତ ଶକ୍ତିର ପରାକ୍ରମ । ଯେଉଁ ଶକ୍ତି କି ତାଙ୍କୁ ଆବର୍ଜନା ପୂର୍ଣ୍ଣ ସମାଜ ବ୍ୟବସ୍ଥା ବିରୋଧରେ, ଅବହେଳିତ ମାନବାତ୍ମା ବିରୋଧରେ ସଂଗ୍ରାମ କରିବା ପାଇଁ ଅଶେଷ ପ୍ରେରଣା ପ୍ରଦାନ କରିଥାଏ । ଯେଉଁ କବିର ଜୀବନ ଯେତେ ଦୁଃଖ ଜର୍ଜ୍ଜରିତ, ତା'ର ସୃଷ୍ଟି ସେତିକି ପ୍ରାଣସ୍ପର୍ଶୀ । ସେଥିରେ ମଣିଷର ହୃଦୟର ବେଦନା ସେତିକି ଅନୁଭବ୍ୟ । ଯାହାକି କବି ରବି ସିଂଙ୍କ କବିତାରୁ ଅନୁଭବ କରିହୁଏ । ଏ ସଂପର୍କରେ ଡଃ ଶରତ୍ ଚନ୍ଦ୍ର ମହାନ୍ତିଙ୍କ କହନ୍ତି –

"ନିଜ ଭିତରେ ଅନ୍ୟକୁ ଦେଖିବା- ବିଶ୍ଳେଷଣ କରିବା ଏବଂ ବ୍ୟର୍ଥତାର ବ୍ୟଥା ଅପସାରଣ ନିମିତ୍ତ ସମସ୍ତ ଉତ୍ସାହ ଓ ଅଭୀପ୍‌ସାଦୀପ୍ତ କାବ୍ୟବାଣୀ ଉଚ୍ଚାରଣରେ ନୂତନ ଚେତନା ଓ ଚିନ୍ତାର ଫୁଲବନ ସୃଷ୍ଟି କରିବା ସତେ ଯେମିତି ଏହି ସତ୍ୟକାମୀ କବି ପୁରୁଷଟିର ଅନ୍ତିମ ପୁଣି ଅନ୍ତହୀନ ଅଭିଳାଷ ।" (୩୨)

ଏହିପରି ବ୍ୟକ୍ତିଗତ ଅଭିଜ୍ଞତା ହିଁ ତାଙ୍କୁ ପ୍ରଚଳିତ ସମାଜ ବ୍ୟବସ୍ଥା ବିରୋଧରେ ପ୍ରତିବାଦ କରିବା ପାଇଁ ପ୍ରଚ୍ଛନ୍ନ ପ୍ରେରଣା ପ୍ରଦାନ କରିଥିଲା । ଏହି ପରିଚୟର ସ୍ୱାକ୍ଷର ବହନ କରେ ନିମ୍ନୋକ୍ତ ପଂକ୍ତି –

"ଚଲାପଥ ମୋର ଦୁର୍ଗମ ଆଜି ବଂଧୁ ହେ,
ତିମିର ପଥର ପାନ୍ଥ ମୁଁ ।

ନିଷ୍ପେଷଣ ଓ ଶୋଷଣ,

କଷଣ ବେଦୀ ତଳେ ଆଗାମୀ ଯୁଗର ସନ୍ଥ ମୁଁ ।" (୩୩)

କବିଙ୍କର କାବ୍ୟ ସ୍ୱରରେ ବିଦ୍ରୋହର ଯେଉଁ ସ୍ୱରୂପ ପ୍ରକାଶ ପାଇଛି ତାହା ଧୀରେଧୀରେ ଦୃଢ଼ତାକୁ ବରଣ କରିନେଇଛି । କବିଙ୍କର ସ୍ୱୋକ୍ତି - ନିଷ୍ପେଷଣ, ଶୋଷଣ, କଷଣର ବିଲୋପ ପାଇଁ ସେ ସନ୍ଥ ପରି ସାଧନାରେ ନିମଗ୍ନ ହେବାକୁ ମଧ୍ୟ ପଶ୍ଚାତ୍‌ପଦ ହେବେ ନାହିଁ । ଜୀବନର ଚଲାପଥ ଯେତେ ଦୁର୍ଗମ ହେଲେ ମଧ୍ୟ ସେଥିରୁ ସେ ଓହରି ଯିବେ ନାହିଁ । ଏହି କଣ୍ଟକିତ ଜୀବନପଥ ମଧ୍ୟରେ ସେ ନୂତନତାର ସୌରଭ ବିଞ୍ଚି ଦେଇପାରିବେ । 'ପଥପ୍ରାନ୍ତର' ସଂକଳନ ସଂପର୍କରେ କବି ମାୟାଧର ମାନସିଂ' ମତବ୍ୟକ୍ତ କରନ୍ତି –

"But this is merely the voice of an angry young man. Lasting contributions from his pen are yet to come."(34)

'ପଥପ୍ରାନ୍ତର'ରେ ପ୍ରତିଫଳିତ ହୋଇଥିବା ବୈପ୍ଳବାତ୍ମକ ଦୃଷ୍ଟିଭଂଗୀ କୌଣସି ଗୁଣରେ କମ୍ ନୁହେଁ । ଏହା ଠିକ୍ ମାତ୍ର କବି ମାନସିଂ ସମ୍ଭବତଃ କେବଳ କବିଙ୍କର ଏହି ଏକମାତ୍ର ସଂକଳନକୁ ଆଖି ଆଗରେ ରଖି ଏପରି ମନ୍ତବ୍ୟ ପ୍ରଦାନ କରିଥିବା ଅନୁମିତ ହୁଏ । ପ୍ରଥମ କବିତା ସଂକଳନରେ ଦେଖାଦେଇଥିବା ସାମାଜିକ ବିଦ୍ରୋହ ପରବର୍ତ୍ତୀ ପର୍ଯ୍ୟାୟରେ କବିଙ୍କୁ ବିପ୍ଳବୀ ଯୁଗର ଅଗ୍ରଗାମୀ ପୁରୋଧା ଭାବରେ ସଜାଇ ଦେଇଛି । ସ୍ୱର୍ଦ୍ଧିତ କବିତ୍ୱର ଜ୍ୱଳନ୍ତ ଆଗ୍ନେୟଶିଖା ପରିଲକ୍ଷିତ ହୁଏ 'ଚରମପତ୍ର', 'ଶିଥିଳ ବଲ୍‌ଗା', 'ଲାଲ୍ ପାଗୋଡ଼ାର ପ୍ରେତ ଓ ଅନ୍ୟାନ୍ୟ କବିତା' 'ଭ୍ରୁକୁଟୀ', 'ପାଦଟୀକା', 'ବିଦୀର୍ଣ୍ଣ', 'ଅପ୍ରୀତିକର କବିତା', 'ଜ୍ୱାଳାର ମାଳା', 'କ୍ଷତ', 'ବିଷବାଣୀ', 'ଦୁର୍ଗମଗିରି', 'ଝଡ଼' 'ଗାନ୍ଧାରେ', ଏର୍ବହରା', 'କ୍ରାନ୍ତି କାମୋଦୀ', 'ନବମସ୍ୱର୍ଗ' - ଇତ୍ୟାଦି ସଂକଳନରେ । କବି ସ୍ୱୟଂ ତାଙ୍କ କାବ୍ୟିକ ଜୀବନକୁ ତିନୋଟି ଭାଗରେ ବିଭକ୍ତ କରିବାକୁ ଯାଇ ମତ ପ୍ରଦାନ କରିଛନ୍ତି ଯେ –

"ତିନୋଟି ପର୍ଯ୍ୟାୟ-ବିଶିଷ୍ଟ ମୋର କବି ଜୀବନ ପ୍ରଥମେ ସାମାଜିକ ବିଦ୍ରୋହ, ପରେ ଜାତୀୟତାବାଦ, ତା'ପରେ ଆନ୍ତର୍ଜାତୀୟତାବାଦ ବା ବିଶ୍ୱ କୁଟୁମ୍ବିତାରେ ବିଲୀନ ହୋଇ ଏ ଯାବତ୍ ଦୁର୍ବାର ବେଗରେ ପ୍ରବହମାନ ।"(୩୫)

ତେଣୁ ତାଙ୍କର ସାମାଜିକ ବିଦ୍ରୋହ 'ପଥପ୍ରାନ୍ତର' ମଧ୍ୟରୁ ହିଁ ଆରମ୍ଭ ହୋଇଛି । ସମାଜରେ ସଦା ଅବହେଳିତ ଶୋଷିତ ଜନତା, ଦରିଦ୍ର ଭିକାରୀ, କ୍ଷୁଧାରେ ଆତୁର ଶିଶୁ, କଳକାରଖାନାରେ କାର୍ଯ୍ୟରତ ଶ୍ରମିକମାନଙ୍କ ପାଇଁ ଏହା ଉଦ୍ଦିଷ୍ଟ । ଏହି ଚିନ୍ତାଧାରାର ବଳିଷ୍ଠ ରୂପକୁ ବହନ କରେ 'ଚରମ ପତ୍ର' ସଂକଳନ । ସଂକଳନସ୍ଥ

କବିତା ବିପ୍ଳବୀ ସାହିତ୍ୟର ଇତିହାସରେ ଏକ ମାଇଲ୍‌ଖୁଣ୍ଟ କହିଲେ ଅତ୍ୟୁକ୍ତି ହେବ ନାହିଁ । ମାର୍କସ୍‌ବାଦୀ ତତ୍ତ୍ୱ ଧର୍ମ, ଈଶ୍ୱର ବିଶ୍ୱାସ, ଭଗବାନଙ୍କର ସ୍ଥିତି ଉପରେ ଆସ୍ଥା ପ୍ରକଟ କରେ ନାହିଁ । ଜଣେ ସାର୍ଥକ ମାର୍କସ୍‌ବାଦୀ ସ୍ରଷ୍ଟା ହିସାବରେ କବି ରବି ସିଂ ଏହି ତତ୍ତ୍ୱକୁ ସଂକଳନର ମୂଳ ଆଧାର ଭାବେ ଗ୍ରହଣ କରିଛନ୍ତି । କବି ସମାଜର ଦିଗ୍‌ଦ୍ରଷ୍ଟା । କବି ହିଁ ଦ୍ୱିତୀୟ ଈଶ୍ୱର । କାହିଁକି ନା' ଈଶ୍ୱରଙ୍କ ପରି କବି ହିଁ ସୃଷ୍ଟି କରିପାରେ । ସୃଷ୍ଟି ମାଧ୍ୟମରେ କେତେବେଳେ ପାଠକର ଚକ୍ଷୁରେ ମାୟାର ଅଂଜନ ଲେପନ କରି ସ୍ୱପ୍ନାଲୋକରେ ଭାସି ବୁଲିବାର ଅଭିଳାଷ ଜାଗ୍ରତ କରାଏ ତ', କେତେବେଳେ ସମାଜର ଅବ୍ୟବସ୍ଥା ବିରୋଧରେ ବିଦ୍ରୋହର ବୀଜ ବୁଣି ଦେଇପାରେ । ଯଦି ସେଥିରେ ସଫଳ ନ ହୁଏ, ତା ହେଲେ ଈଶ୍ୱରଙ୍କ ପ୍ରତି ନିଜ ହୃଦୟର କ୍ଷୋଭ ଜାଗ୍ରତ କରାଏ । ଏତାଦୃଶ କ୍ଷୋଭରୁ ସମ୍ଭୁତ ହୁଏ ବୈପ୍ଳବାତ୍ମକ ଉଗ୍ର ମନୋଭାବ । କବିତା ମାଧ୍ୟମରେ ଈଶ୍ୱରଙ୍କୁ ଦାୟ କରିବାର ସାମର୍ଥ୍ୟ କବି ବିନା ଅନ୍ୟ କାହା ପାଖରେ ନଥାଏ । ଈଶ୍ୱରଙ୍କ ନିକଟରୁ ଯଦି ସୃଷ୍ଟିର ଅୟମାରମ୍ଭ, ତାଙ୍କରି ଇଂଗିତରେ ସୃଷ୍ଟି ଯଦି ପରିଚାଳିତ, ତା ହେଲେ ଈଶ୍ୱରଙ୍କ ସୃଷ୍ଟିରେ ତାରତମ୍ୟର ସ୍ଥାନ ନାହିଁ । ତେଣୁ କବି ରବି ସିଂ ଭଗବାନହୀନ ସୃଷ୍ଟି କରିବାକୁ ସଂକଳ୍ପବଦ୍ଧ ହୁଅନ୍ତି । କବିଙ୍କ ବର୍ଣ୍ଣନାରେ ତାହା ପରିଲକ୍ଷିତ –

"ଭଗବାନହୀନ ସୃଷ୍ଟି କରିବି ସିନା
ଅନ୍ୟ ପନ୍ଥା ନାହିଁ ଭଗବାନ
ପଦତ୍ୟାଗର ବିନା
ଚରମ ପତ୍ର ଦେଲି ଭଗବାନ
ଚରମ ପତ୍ର ଘେନ
ଆଗାମୀ ଚବିଶ ଘଣ୍ଟା ଭିତରେ
ଆଗାମୀ କାଲିର ଏଇ ପ୍ରଭାତରେ
ଯେବେ ନଛାଡ଼ିବ ଗୋଲୋକ ସିଂହାସନ ।" (୩୬)

କବିତାରେ କବି ଦୃଢ଼ ଭାବରେ ଈଶ୍ୱର ବିରୋଧୀ । ଓଡ଼ିଆ ସାହିତ୍ୟରେ ଅନ୍ୟାନ୍ୟ ମାର୍କସ୍‌ବାଦୀ କବିମାନେ ମଧ୍ୟ ନିଜସ୍ୱ ସୃଷ୍ଟିରେ ଏହି ଚିନ୍ତାଧାରାକୁ ସ୍ଥାନ ଦେଇଛନ୍ତି ସତ, କିନ୍ତୁ କବି ରବି ସିଂଙ୍କ ପରି ଶାଣିତ କଣ୍ଠସ୍ୱର ସେମାନଙ୍କ କବିତାରେ ବିରଳ । ନିଜର ଏହି ଈଶ୍ୱର ବିରୋଧୀ ଚିନ୍ତାଦର୍ଶ ଉପରେ କବି ସ୍ୱୟଂ ମତ ପ୍ରକାଶ କରନ୍ତି–

"ଜୀବନ, ସମାଜ, ସୃଷ୍ଟି, ସ୍ରଷ୍ଟା ପ୍ରଭୃତିଙ୍କ ବିରୋଧରେ ମୋର ଅଭିଯୋଗ ବହୁତ କିଛି । ଦୀନତା, ପଶୁତା, ଅମାନବିକତା ପୂର୍ଣ୍ଣ ଦୁନିଆକୁ କେନ୍ଦ୍ର କରି ଆଜନ୍ମରୁ ମୁଁ ଘୂରି ବୁଲୁଛି ଏକ ଉପଗ୍ରହ ଆକାରରେ ।"(୩୭)

'ପଥପ୍ରାନ୍ତର' ଓ 'ଚରମ ପତ୍ର'ରେ ଯେଉଁ ବିଦ୍ରୋହୀ କାବ୍ୟ ସ୍ୱର ପରିଲକ୍ଷିତ ହୁଏ, ତାହା ପରବର୍ତ୍ତୀ ସଂକଳନ 'ଶିଥିଳ ବଲ୍‌ଗା'ରେ କିଞ୍ଚିତ ଶିଥିଳ ପଡ଼ିଯାଇଥିବା ପରି ମନେହୁଏ । ସଂକଳନସ୍ଥ କବିତା ଗୁଡ଼ିକରେ କବି ଖୁବ୍ ଆଶାବାଦୀ । ଏହା କବିଙ୍କୁ ସାମୟିକ ଆଶ୍ୱାସନା ପ୍ରଦାନ କରିଛି । 'ଜଳରେ ଅନଳ' କବିତାରେ ପୌରାଣିକ ଚରିତ୍ର 'ଦୁର୍ଯ୍ୟୋଧନ' ଓ 'ଅଭିମନ୍ୟୁ' ମାଧ୍ୟମରେ କବି ସମାଜର ଅତ୍ୟାଚାର ଏବଂ ବିଦ୍ରୋହୀ ଚିନ୍ତାଧାରାକୁ ବ୍ୟକ୍ତ କରିଛନ୍ତି । କବିଙ୍କ ଦୃଷ୍ଟିରେ ଦୁର୍ଯ୍ୟୋଧନ ଅନ୍ୟାୟ ଦୁର୍ନୀତିର ପ୍ରତୀକ । ଏହି ଅନ୍ୟାୟର ପ୍ରତିରୋଧ କରୁଛି ଯୁବକ ଅଭିମନ୍ୟୁ । ଦୁର୍ନୀତି ରୂପକ ଚକ୍ରାନ୍ତର ବ୍ୟୁହଭେଦ କରିବା ପାଇଁ ସେ ସଂକଳ୍ପବଦ୍ଧ । କବିଙ୍କ ବର୍ଣ୍ଣନାଟି ଏହିପରି–

"ଆଜି ଏତେବେଳେ ଜାଗ ଭାରତର ଅଭିମନ୍ୟୁର ଦଳ ଥରେ,
ହୁଗାଳି ଆଣରେ ରାମରୂପୀ ଏଇ ଦୁର୍ଯ୍ୟୋଧନର ରଥଚକ
ଜଳରେ ଅନଳ, ପୁଣି ବିଦ୍ରୋହ ଶିଖା ଟେକ ।"(୩୮)

ସାମ୍ୟବାଦୀ ସମାଜ ପ୍ରତିଷ୍ଠା ପାଇଁ କବି ସଦାସର୍ବଦା ଉଦ୍ୟମରତ କବିତାର ସ୍ୱଚ୍ଛନ୍ଦ, ସାବଲୀଳ ଭାବାବେଗ ମଧ୍ୟରେ । ପଙ୍ଗୁ, ଅଥର୍ବ ମଣିଷ ସମାଜକୁ ଜାଗ୍ରତ କରିବାକୁ ଯାଇ କବି ଉଦ୍‌ବୋଧନ ଦିଅନ୍ତି –

"ମୁଁ ଡାକୁଛି ଉଠଉଠ ଶାୟିତ ଜୀବନ
ଉଠ ପଙ୍ଗୁ [illegible]ରେ ସ୍ଥବିରେ
ହେ ଘୁମନ୍ତ !
ମାର ଥରେ ଚେତନା[illegible] ହାଇ
ପୂର୍ବାଶାରେ ବାଜିଲାଣି, ଉଦୟର ରକ୍ତ-ସାହାନାଇ ।" (୩୯)

ପ୍ରଚଳିତ ଶାସନବ୍ୟବସ୍ଥା ବିରୋଧରେ ବୈପ୍ଳବିକ ସ୍ୱର ଉତ୍ତୋଳନ କରିବା ପାଇଁ କବି ଏହି ସଂକଳନରେ ଆହ୍ୱାନ ପ୍ରଦାନ କରିଛନ୍ତି । ଯେଉଁ ଶାସନ ବ୍ୟବସ୍ଥା ଅନ୍ୟାୟକୁ ପ୍ରଶ୍ରୟ ଦିଏ, ପ୍ରତିଭା ଓ ଯୋଗ୍ୟତାକୁ ସମ୍ମାନ ଦେଇ ଜାଣେ ନାହିଁ, ଯେଉଁମାନେ ଅପାରଗ, ଶାସନ ବ୍ୟବସ୍ଥା ସଂପର୍କରେ ସଂପୂର୍ଣ୍ଣ ଅଜ୍ଞ, ସେଇମାନେ ଆଜିର ସମାଜରେ ଆଗ ଧାଡ଼ିର ନେତା । ସେଇମାନଙ୍କ ହାତରେ ଏ ଦେଶର ଶାସନ ବ୍ୟବସ୍ଥା ନ୍ୟସ୍ତ । ଏଠାରେ ସାମୂହିକ ସ୍ୱାର୍ଥର ସ୍ଥାନ ନାହିଁ । ତେଣୁ ଏ ପ୍ରକାର ଶାସନ

ବ୍ୟବସ୍ଥାର ଆମୂଳଚୂଳ ପରିବର୍ତ୍ତନ ଆଣିବା ପାଇଁ, କବି ସଦାସର୍ବଦା କବିତାରେ ବିଦ୍ରୋହାତ୍ମକ ଶୈଳୀ ଅବଲମ୍ବନ କରିଛନ୍ତି । କବିଙ୍କର କବିତାରେ ତାହା କିପରି ରୂପଲଭିଛି ନିମ୍ନୋକ୍ତ ପଂକ୍ତିରୁ ଜଣାପଡ଼େ ।

"ଶିକ୍ଷା ନ ଥାଇ ଶିକ୍ଷକ ଦଳ ଗର୍ଜେ ଅନର୍ଗଳ
ଅକବିର ଦଳ ମଣ୍ଡନ କରେ କବିତାର ଦରବାର ।
ଜନ-ଶତ୍ରୁର ବନ୍ଦନା ଗାଏ ବସିଯାଏ ଦିବାରାତ୍ରି
ଫରଫର ଉଡ଼େ ତାହାରି ଦୁଆରେ ସାରସ୍ୱତର ଜୈତ୍ରୀ
ଦେଶ ସାରା ଆଜି ଭରିତ ଗଲେଣି ଭଣ୍ଡ
ନିରାପତ୍ତା ତା' ରକ୍ଷା କରୁଛି ଆଜିର ଶାସନ ଦଣ୍ଡ । (୪୦)

'ଭ୍ରୂକୁଟୀ' ସଂକଳନରେ ମଧ୍ୟ ଅନୁରୂପ କାବ୍ୟସ୍ୱର ଅନୁରଣିତ । ପ୍ରଚଳିତ ସମାଜ ବ୍ୟବସ୍ଥାର ଧ୍ୱଂସ ସାଧନ କରି ନୂତନତାର ଆଗମନ ପାଇଁ ଦୁର୍ବାର ଆକାଂକ୍ଷା ଏଥିରେ ପ୍ରକାଶିତ । ଠିକ୍ ସେହିପରି ବୈପ୍ଳବିକ ଚିନ୍ତାଦର୍ଶର ପରିପକ୍ୱ ରୂପକୁ ବହନ କରିଛି 'ଲାଲ୍ ପାଗୋଡ଼ାର ପ୍ରେତ' ସଂକଳନସ୍ଥ କବିତା । ଏଥିରେ ଏକ ଅଭିନବ ଢଂଗରେ କବି ଶ୍ରୀଯୁକ୍ତ ସିଂ ବିଦ୍ରୋହାତ୍ମକ ମନୋବୃତ୍ତିକୁ ସ୍ଥାନ ଦେଇଛନ୍ତି । ବିଶାଳ କୀର୍ତ୍ତିସ୍ତମ୍ଭ କୋଣାର୍କର ଅନ୍ତରାଳରେ ଛପିରହିଥିବା ବାରବର୍ଷର ବାଳକ ଧର୍ମ୍ମପଦର ସ୍ମୃତିକୁ ପୁନଃ ଜାଗରିତ କରିଛନ୍ତି । ଧର୍ମ୍ମପଦର ଆତ୍ମ ବିସର୍ଜ୍ଜନ କବିଙ୍କୁ ଦାରୁଣ ଆଘାତ ଦେଇଛି । କବି ଏଥିପାଇଁ ଭଗବାନଙ୍କୁ ଦାୟୀ କରିବା ପାଇଁ ମଧ୍ୟ ପଛେଇ ନାହାନ୍ତି । ଯୁଗେ ଯୁଗେ ଏ ସମାଜ ସତ୍ୟକୁ ଉପଯୁକ୍ତ ମର୍ଯ୍ୟାଦା ପ୍ରଦାନ କରିନାହିଁ ସତ କିନ୍ତୁ 'ସତ୍ୟ' ହିଁ ସଦାସର୍ବଦା ନିଜର ବିଜୟବାନା ଉଡ଼ାଇବାକୁ ସକ୍ଷମ ହୋଇପାରିଛି । ଏ ଜାତି ନିକଟରେ ବାଳକ ଧର୍ମ୍ମପଦ ଚିରଦିନ ପାଇଁ ଅମଳିନ ପ୍ରତିଭା । ବାରଶହ ବଢ଼େଇଙ୍କର ଆପଣାର ସ୍ୱାର୍ଥ ପାଇଁ ନିରୀହ ବାଳକର ଆତ୍ମବଳିଦାନ ଅତ୍ୟନ୍ତ କ୍ଷୋଭର ବିଷୟ । ଏ ଜାତି ପ୍ରତିଭାକୁ ସମ୍ମାନ ଦେଇ ଜାଣେ ନାହିଁ, ବରଂ ପ୍ରତିଭାର ଅପମୃତ୍ୟୁ ଘଟାଇ, ପ୍ରତିଭାର ପୁଷ୍ପଟିଏ ପ୍ରସ୍ଫୁଟିତ ହେବା ଆଗରୁ ବୃନ୍ତଚ୍ୟୁତ କରାଇ ଦିଏ । ଏ ଜାତିର, ଏ ମନୁଷ୍ୟ ସମାଜର ଏ ପ୍ରକାର ଆଚରଣରେ କବି ଆତ୍ମା ସଦା ବ୍ୟଥିତ । ବାରଶହ ବଢ଼େଇଙ୍କର ନିଷ୍ଠୁରତା ବିରୋଧରେ କବି କ୍ଷୁବ୍ଧ । ସମାଜରେ ମିଥ୍ୟା ଓ ପାଶବିକ ଶକ୍ତିର ଦର୍ପିତ ଅଭିଯାନ କବିଙ୍କୁ ବ୍ୟଥିତ କରିଛି । ଧର୍ମପଦର ଦୁଃଖରେ କବି ଯେତିକି ଆତ୍ମହରା, ସମାଜର ଦିଗଭ୍ରଷ୍ଟତାକୁ ନେଇ କବି ସେତିକି ମର୍ମାହତ । ଅତୀତରେ ସମାଜ ବ୍ୟବସ୍ଥାରେ ଯେଉଁ ଅନୁନ୍ନତି ଥିଲା ବର୍ତ୍ତମାନ ଭାରତବର୍ଷରେ ମଧ୍ୟ ତାହା ପରିଲକ୍ଷିତ । ସ୍ୱାଧୀନତା ପ୍ରାପ୍ତି ପରେ ରାଜନୀତି କ୍ଷେତ୍ରରେ ସ୍ୱାର୍ଥକେନ୍ଦ୍ରିକ ମତବାଦ

ମୁଣ୍ଡଟେକିଛି । ଯେଉଁ ନେତୃବୃନ୍ଦ ମାନବତାବାଦର ଜୟଗାନ କରୁଥିଲେ, ସେମାନେ ଆଜି ବୁର୍ଜୁଆ ଗଣତନ୍ତ୍ରର ସ୍ତାବକ ପାଲଟିଛନ୍ତି । କବିଙ୍କ ଭାଷାରେ –

"ଭାରତ ମାଟି, ବୁର୍ଜୁଆ ଗଣତନ୍ତ୍ରର ଏକ ମସ୍ତଭାଟି
ପ୍ରଚୁର ସୁରା, ତମରି ସମାଜବାଦର ଭାଟିରେ ଆତୁହରା ।"(୪୧)

କବି ଦୃଷ୍ଟିରେ ଭାରତବର୍ଷ ହେଉଛି ବୁର୍ଜୁଆ ତନ୍ତ୍ରର ମୁଖ୍ୟ ସ୍ଥାନ । ସମାଜରେ ପରିଲକ୍ଷିତ ହେଉଥିବା ପରିବର୍ତ୍ତନଠାରୁ ଆରମ୍ଭକରି ପ୍ରତିଟି ଘଟଣା, ଦୁର୍ଘଟଣାର ପ୍ରତିଛବି ପ୍ରତିବିମ୍ବିତ ହୁଏ ସାହିତ୍ୟିକର ସୃଷ୍ଟି ମଧ୍ୟରେ । କାହିଁକି ନା ସମାଜ ପ୍ରତି, ମଣିଷ ଜୀବନପ୍ରତି ସାହିତ୍ୟିକର ଦୃଷ୍ଟିଭଂଗୀ ଭିନ୍ନ । ପାରଂପରିକତାର ବାଧାବନ୍ଧନକୁ ଭ୍ରୁକ୍ଷେପ ନ କରି, ତଥା- କଥିତ କାଇଦା କଟକଣାକୁ ଆଡ଼େଇ ଦେଇ ଯେଉଁମାନେ ନୂତନତାର ସର୍ଜନା କରନ୍ତି, ସେଇମାନଙ୍କୁ ଏ ସମାଜ ଫାଶୀ ଦଣ୍ଡ ଦିଏ । ଠିକ୍ ଯେମିତି ବିପ୍ଳବୀ ନାଗଭୂଷଣଙ୍କ ଫାଶୀ ଦଣ୍ଡାଦେଶ ଶୁଣିବା ପରେ ଅଧିର ହୋଇ କବି ଆଇନ୍ ବିରୋଧରେ ବିକ୍ଷୋଦ୍‌ଗାର କରିବାକୁ ମଧ୍ୟ ପଛେଇ ନାହାନ୍ତି । ଦେଶ ସ୍ୱାଧୀନତା ଲାଭ ପୂର୍ବରୁ ନେତୃବୃନ୍ଦମାନେ ମାନବ ସମାଜରେ ସହନଶୀଳତା, ସାମ୍ୟ, ମୈତ୍ରୀର ବାର୍ତ୍ତା ପ୍ରଚାର କରୁଥିଲେ । କିନ୍ତୁ ଆଜି ତାହା ଜନସାଧାରଣଙ୍କ ପାଇଁ ମୂଲ୍ୟହୀନ । ଦେଶବାସୀଙ୍କ ଚିନ୍ତାଚେତନାରୁ ଏହାର ମୃତ୍ୟୁ ଘଟିଛି । କବି ତେଣୁ ଗାନ୍ଧିଜୀଙ୍କୁ ପ୍ରଶ୍ନ କରନ୍ତି–

"ମୁକ୍ତି ମାର୍ଗେ ବର୍ତ୍ତମାନ ଯେ ଅଦ୍‌ଭୁତ ବଂଧନର ଫାଶୀ
କଣ୍ଠରୁଦ୍ଧ କରିବସେ, ଏ ନିରୀହ ବିରାଟ ଜାତିର
ତୁମ ଦତ୍ତ ସ୍ୱାଧୀନତା, ନଏ ସେହି ମହାଦୁର୍ନୀତିର ।" (୪୨)

କବିଙ୍କର ପ୍ରତ୍ୟେକଟି କବିତାକୁ ଲକ୍ଷ୍ୟ କଲେ ଜଣାଯାଏ ଯେ, ସମାଜର ଯେକୌଣସି ସ୍ତରରେ ଅନ୍ୟାୟ, ଅସତ୍ୟ, ଅତ୍ୟାଚାର ଦେଖାଦେଇଛି କବିଙ୍କର ଲେଖନୀରୁ ତାହା ବାଦ୍ ପଡ଼ିନାହିଁ । ସେଥିପାଇଁ ଏସବୁ ବିରୋଧରେ ସଂଗ୍ରାମ କରିବା ପାଇଁ କବିଙ୍କ ଜୀବନର ପ୍ରତ୍ୟେକଟି ମୁହୂର୍ତ୍ତ ଉତ୍ସର୍ଗୀକୃତ । ଏ ସଂପର୍କରେ କବିଙ୍କର ମତାମତକୁ ଲକ୍ଷ୍ୟକଲେ ଏହା ସ୍ପଷ୍ଟ ଜଣାପଡ଼େ ।

"ସମାଜ ନିରପେକ୍ଷ କଳା ପାଇଁ କଳା ତତ୍ତ୍ୱର କୁହୁଡ଼ିଆ ଚାଲ୍‌ଟାର ଅନ୍ୟନାମ ହେଲା ପରୀକ୍ଷା ନିରୀକ୍ଷା । ଆଜି ଯେତେବେଳେ ଶୋଷକ ଶ୍ରେଣୀର କୁରୁସଭା ତଳେ ଅଗଣିତ ମେହେନତି ଖଟିଖିଆ ସର୍ବହରା ଶ୍ରେଣୀର ଗୃହ ବଧୂ କେବଳ ବିବସନା ନୁହେଁ, ଧର୍ଷିତା ଓ ଲାଞ୍ଛିତା; ତା'ର ବକ୍ଷବାସ ପ୍ରତିନିୟତ ଯେତେବେଳେ ଅତ୍ୟାଚାରୀ ଜହ୍ଲାଦ ଦୁଃଶାସନ କର୍ତ୍ତୃକ ଲୁଣ୍ଠିତ, ସେଠି ପରୀକ୍ଷା-ନିରୀକ୍ଷା ନାମରେ ଧର୍ମ ରାଜ

ଯୁଧିଷ୍ଠିର ପରି ନୀରବ ଦର୍ଶକ ହୋଇ ବସିବାର ସାଧନା ମୋର କେବେ ନଥିଲା ।" (୪୩)

କବି ଯେତେବେଳେ ନିମ୍ନବର୍ଗର ଜନତାଙ୍କ ଦୁଃଖକୁ କବିତାରେ ପ୍ରକାଶ କରେ ସେତେବେଳେ ସେ ନିଜକୁ ସେଇମାନଙ୍କ ମଧ୍ୟରୁ ଜଣେ ବୋଲି ମନେକରେ । ସେତେବେଳେ ଯାଇ କବିତା ସାଧାରଣ ଜନତାଙ୍କର ନିକଟବର୍ତ୍ତୀ ହୋଇଥାଏ । ଏ ପ୍ରକାର ଆତ୍ମୀୟତାର ସ୍ୱର ବହନ କରେ କବିଙ୍କର ନିମ୍ନୋକ୍ତ କବିତାର ପଂକ୍ତି ।

"ଆଘାତ ଉପରେ ଆଘାତ ହାଣିଛି ଅକଲ୍ୟାଣର ଶିରେ
ସଉନ୍ଦର୍ଯ୍ୟ ମୋ କାନ୍ଦିଛି ସଦା ବେଦନା ସିନ୍ଧୁ ତୀରେ,
ସାଗର ପରି ମୁଁ ଗର୍ଜି ମରିଛି ବେଳାଭୂମେ ପିଟି ମଥା
ସାରା ଜୀବନ ମୋ ଜାଳିଛି ପୋଡ଼ିଛି ଯେଉଁ ଅଭାବର ବ୍ୟଥା ।
ସେହି ଅଭାବର ବିନାଶ ପାଇଁ ମୋ ମସୀ ପାଲଟିଛି ବିଷ ।
ଶୋଷଣବାଦ ମୋ ବିଦ୍ରୋହ ଆଉ ବିପ୍ଳବ ଇତିହାସ ।" (୪୪)

କବିର କବିତା ଯେତିକି ହୃଦୟ ସ୍ପର୍ଶୀ ହେବ, ତାହା ଜନସାଧାରଣଙ୍କର ସେତିକି ନିକଟବର୍ତ୍ତୀ ହୋଇପାରିବ । ଚିରନ୍ତନ କାଳ ପାଇଁ ଏହା ପ୍ରଭାବ ବିସ୍ତାର କରିପାରିବ । କିନ୍ତୁ ସାହିତ୍ୟିକ ମାତ୍ରକେ ସମସ୍ତେ ସୃଷ୍ଟିର ଆରମ୍ଭରୁ ଜନସାଧାରଣଙ୍କୁ ସଚେତନ କରାଇବା ପାଇଁ ସଂକଳ୍ପବଦ୍ଧ ହୋଇଥାଆନ୍ତି । ଏଥିରୁ କବି 'ରବି ସିଂ' ମଧ୍ୟ ବିଚ୍ୟୁତ ହୋଇ ନାହାଁନ୍ତି । 'ବନ୍ଦେ ଉତ୍କଳ ଜନନୀ', 'ଜାତି ପ୍ରେମ ବହ୍ନି ପ୍ରଜ୍ୱଳିତ କର' ....., 'ଉଠରେ ଉଠରେ ଉତ୍କଳ ସନ୍ତାନ', 'ଉଠ କଂକାଳ ଛିଡୁ ଶୃଙ୍ଖଳ'..... ପର୍ଯ୍ୟନ୍ତ ଯେତେସବୁ ଶକ୍ତି ଚ୍ୟବନ ପ୍ରଦାନ କଲେ ମଧ୍ୟ ଏ ସମାଜରୁ ଅଂଧାନୁଗତାର ବିଲୋପ ଘଟେ ନାହିଁ । ଓଡ଼ିଆ ଜାତି କ୍ଷୁଧାରେ ଆତୁର ନ' ହେଲେ, କର୍ମାନୁସଂଧାନ କରେ ନାହିଁ । ଏ ନିଦ୍ରିତ ଓଡ଼ିଆ ଜାତି ପାଖରେ ନିଷ୍ଠା ନଥାଏ କି କର୍ମପ୍ରବଣତା ନଥାଏ । ତେଣୁ ଓଡ଼ିଆ ଜାତିକୁ କବି ଜାଗ୍ରତ କରିବା ପାଇଁ କହନ୍ତି –

"ନିଘୋଡ଼ ନିଦରେ ଶୋଇବାରେ ଆମେ ଓଡ଼ିଆ ଦିଗ୍‌ବିଜୟୀ
କ୍ଷୁଧା ହିଁ ଆମର କର୍ମ ପ୍ରେରଣା, ଆମେ ତାର ଭାବ ବାହୀ ।"(୪୫)

ବିପ୍ଳବୀ କବିତା କେବଳ ଯେ ଶୋଷଣ ବିରୋଧରେ ସ୍ୱର ଉତ୍ତୋଳନ କରେ ତାହା ନୁହେଁ ବରଂ ବିପ୍ଳବୀ କବିତା ସମାଜର ସ୍ତରେ ସ୍ତରେ ଅନୁଭୂତ ହେଉଥିବା ଅତ୍ୟାଚାର ବିରୋଧରେ ସଂଗ୍ରାମ କରିବାର ମନୋବୃତ୍ତିକୁ ଦୃଢ଼ କରିଥାଏ । ଆଜିର ଏ ସମାଜ ଅବକ୍ଷୟମୁଖୀ । ସମାଜ ଜୀବନରୁ ମାନବିକତା ଲୁପ୍ତ ପ୍ରାୟ । ମନୁଷ୍ୟର ହୃଦୟରେ ଆତ୍ମୀୟତାର ଘୋର ଅଭାବ । ପଦିଏ ସତ କଥା କହିବା ପାଇଁ ମଧ୍ୟ ତା'ର

ସାହସ ନାହିଁ । ମାନବିକତା ଶୂନ୍ୟ ଏ ମଣିଷ ସମାଜ ଆଜି ଶୁଷ୍କ, ଧୂସର ମରୁବାଲିରେ ପରିଣତ ହୋଇଯାଇଛି । ସମାଜର ଏ ପ୍ରକାର ଅବ୍ୟବସ୍ଥା କବିଙ୍କୁ ଖୁବ୍ ମର୍ମାହତ କରିଛି । ମାର୍ମିକ ଶୈଳୀରେ ବର୍ଣ୍ଣନା କରିବାକୁ ଯାଇ କବି କହନ୍ତି –

"ଏ ମାଟି ବୁକୁରେ ସୁଖର ଫୁଲ ଫୁଟେ ନାହିଁ
ପଦେ ସତ କଥା କହିବା ପାଇଁ ଅଧିକାର ନାହିଁ
ପୀଡ଼ିତ ପ୍ରାଣର ଦୀର୍ଘ-ଶ୍ୱାସେ ଯେଉଁଠି ଆକାଶ ତାତେ,
ଶିବ, ସୁନ୍ଦର ହୁଏ ଅଚେତନ ମିଥ୍ୟାର ପଦାଘାତେ ।" (୪୬)

କବି ରବି ସିଂଙ୍କର କବିତା କଳ୍ପନା ରାଜ୍ୟରେ ଭାସି ବୁଲିବାର ମୋହ ସୃଷ୍ଟି କରେନାହିଁ । ବରଂ ସମାଜର ନିଛକ ବାସ୍ତବତାର ଚିତ୍ର ଅଂକନ କରେ । ଏକ ପକ୍ଷରେ ନିଜସ୍ୱ ଜୀବନର ବହୁଳ ଅନୁଭୂତି, ଅପରପକ୍ଷରେ କାବ୍ୟିକ ପ୍ରତିଭା, ସର୍ବୋପରି ସତକୁ ସାମ୍ନା କରିବାର ଯେଉଁ ନିର୍ଭୀକତା, ତାହା ହିଁ ତାଙ୍କର କାବ୍ୟିକ ଜୀବନକୁ ଆଗେଇ ନେଇଛି । ପରିବର୍ତ୍ତନ ପାଇଁ ଦୃଢ଼ ଆସ୍ଥାବାନ୍ କବି ସମୟେସମୟେ ବ୍ୟଥିତ ହୋଇପଡ଼ିଛନ୍ତି । ସମକାଳୀନ ସମାଜ ବ୍ୟବସ୍ଥାରେ ଯେତେବେଳେ କୌଣସି ପରିବର୍ତ୍ତନର ଆଭାସ୍ ଦୃଷ୍ଟିଗୋଚର ହୁଏ ନାହିଁ, ସେତେବେଳେ କବିଙ୍କୁ ଏକ ଅନାସ୍ଥା ଭାବ ଗ୍ରାସ କରେ । ଯେଉଁ କବି ନିଜ ଜୀବନକୁ ସଳିତା କରି ତିଳ ତିଳ ଏଇ ସମାଜ ପାଇଁ ଜାଳି ଦେଇଛନ୍ତି, ନିଜ ହୃଦୟରୁ ଲହୁ ନିଗାଡ଼ି ଦେଇଛନ୍ତି ଏଇ ମଣିଷମାନଙ୍କ ପାଇଁ, ହେଲେ ପାଇଛନ୍ତି କଣ ? କେତେଦୂର ସେ ଏଥିରେ ସଫଳ ହୋଇଛନ୍ତି ? ବ୍ୟଥିତ ବିମର୍ଷ କଣ୍ଠରୁ ଝରି ପଡୁଛି –

"ମାନବ ଭିତରୁ ମାନବିକତାଟା ଭିନ୍ନ
ସେଥିପାଇଁ ଆଜି ମୁଁ ଏକ ମସ୍ତ ନାସ୍ତିବାଚକ ଚିହ୍ନ ।"(୪୭)

କବିଙ୍କର ହୃଦୟରେ ମ୍ରିୟମାଣ ସୃଷ୍ଟି କରିଥିବା ଏହି ବିମର୍ଷ ଭାବର ନିରସନ ଘଟିବ ସେହିଦିନ ଯେଉଁଦିନ ମନୁଷ୍ୟର ହୃଦୟରୁ ପାଶବିକତାର ବିଲୋପ ଘଟିବ । ଜଣକର ଦୁଃଖରେ ଅନ୍ୟ ଜଣେ ସମଭାଗୀ ହେବେ । ପୁରୁଷ ମାନେ ଦୃଢ଼, ପ୍ରତିଜ୍ଞାବଦ୍ଧ ହେବା ସାଙ୍ଗକୁ ନାରୀ ହେବ ସ୍ନେହ, ପ୍ରେମ, ପ୍ରୀତିର ଏକ ମମତ୍ୱମୟୀ ପ୍ରତିମୂର୍ତ୍ତି । ତୀବ୍ର ଜ୍ୱଳନର ଯନ୍ତ୍ରଣା ଭୋଗୁଥିବା କବି ହୃଦୟ ଆଜି ମଧ୍ୟ ଅପେକ୍ଷା କରିଛି ଅସରନ୍ତି ଆଶାକୁ ନେଇ । କବିଙ୍କର କବିତା କେବଳ ଯେ ମାର୍କସ୍‌ବାଦୀ ତତ୍ତ୍ୱ ସିଦ୍ଧାନ୍ତକୁ ଆଶ୍ରୟ କରି ସଂଗ୍ରାମୀ କାବ୍ୟସ୍ୱର ଶୁଣାଇଛି ତାହା ନୁହେଁ କବିଙ୍କର କବିତା ମଧ୍ୟ ଏକ ରୋମାଣ୍ଟିକ୍ କାବ୍ୟ ସ୍ୱରକୁ ମଧ୍ୟ ବହନ କରିଛି । ରୋମାଣ୍ଟିକ୍ କାବ୍ୟ ସ୍ୱର ମଧ୍ୟରେ 'ବିପ୍ଳବୀ'

ସତ୍ତାଟି କିନ୍ତୁ ବିଲୟ ଭଜି ନାହିଁ । ପ୍ରେମ ଚେତନା ବା ନାରୀ କୈନ୍ଦ୍ରିକ କବିତା ସମାଜରେ ଆଦୃତି ଲଭିଥିଲେ ମଧ୍ୟ କବିଙ୍କର କବିତାରେ ନାରୀ ଏକ ଭିନ୍ନ ଦୃଷ୍ଟିଭଂଗୀକୁ ନେଇ ପ୍ରକାଶିତ ହୋଇଛି । ନାରୀ କେବଳ ସୌନ୍ଦର୍ଯ୍ୟର ପ୍ରତୀକ ନୁହେଁ, ନାରୀ ସ୍ନେହ, ପ୍ରେମ, ଉତ୍ସାହ ଓ ଉଦ୍ଦୀପନାରପ୍ରତୀକ । କବିଙ୍କ ବର୍ଣ୍ଣନାରେ –

"ଜାଣି ମୁଁ ନଥିଲି ତମେ କରୁଥିଲ ଅଭିନୟ ମୋର ସାଥେ
ହେ ଅଭିନେତ୍ରୀ ଦେହଟା ତମର ଏଡ଼ିକି ଶସ୍ତା ସତେ ?
ଛଳନା ତମର ସହଜାତ ଗୁଣ; ଜଟିଳ ତମର ଅନ୍ତଃ କରଣ
ବୁଝିଛି ଆଜି ମୋ ଅନାବିଳ ପ୍ରାଣ ବସି ପୃଥିବୀର ପଥେ ।"(୪୮)

ଏ ସଂପର୍କରେ କବିଙ୍କର ନିଜସ୍ୱ ଅଭିମତ ହେଉଛି –

"ଥିଲାବାଲା ଓ ନଥିଲାବାଲା ଅଧ୍ୟୁଷିତ ସମାଜରେ ପ୍ରେମ ମଧ୍ୟ ବିଭାଜିତ ବା ଦୁଇଫାଳ । XXX । ପୁରୁଷର ପ୍ରେମର ପାତ୍ରୀ କେବଳ ନାରୀ, ଏ ଧାରଣା ଅଧିକାଂଶଙ୍କର, ମାତ୍ର ମାନବ ପ୍ରେମ, ବିଶ୍ୱପ୍ରେମ ଯେ ସର୍ବୋତ୍ତମ ପ୍ରେମ ଏକଥା ମୋର ଅନୁଭବସିଦ୍ଧ ହୋଇଥିବାରୁ ମୁଁ ବର ବର୍ଣ୍ଣନୀ ମାନଙ୍କର ତନୁଲତା ଲାଳାୟିତ ଭଂଗିମା, ସଯତ୍ନ ଅବିନ୍ୟସ୍ତ ଚୂର୍ଣ୍ଣକୁନ୍ତଳା ମାନଙ୍କଠାରୁ ଦୂରତା ରକ୍ଷା କରିଛି ।" (୪୯)

ସାଂପ୍ରତିକ ସମାଜରେ 'ପ୍ରେମ' ହେଉଛି ଏକ ପ୍ରକାର ପଣ୍ୟ ସାମଗ୍ରୀ । ଏହା ଆତ୍ମିକ ଭାବସତ୍ତା ବିହୀନ । କୃତ୍ରିମ ଜୀବନଯାପନ ପ୍ରଣାଳୀ, ଅର୍ଥଲିପ୍ସୁ ମନୋବୃତ୍ତି ମନୁଷ୍ୟ ହୃଦୟରୁ ସ୍ନେହ, ପ୍ରେମ ସବୁକିଛିକୁ ଛଡ଼ାଇ ନେଇ ଯାଇଛି । 'ବଂଧୁତା' ନାମରେ ଏଠାରେ ମିଳୁଛି କେବଳ ପ୍ରତାରଣା । ଏପ୍ରକାର ସମାଜରେ ଜୀବନ ବଞ୍ଚିବା ସତରେ କେଡ଼େ ଦୁର୍ବିସହ ? ଯେଉଁ ସମାଜ ଆଜି ସବୁଦିଗରୁ ଅଧୋଗତି ଆଡ଼କୁ ମୁହାଁଉଛି ସେ ସମାଜରେ କିପରି ପ୍ରଗତି ଆନୟନ କରାଯାଇପାରିବ ? ସେଥିପାଇଁ କବି କହୁଛନ୍ତି –

"ଜୀବନର ଛବି ଦେଖିବାକୁ ଗଲେ ମରଣର ଛବି ଦିଶେ
ବଂଧୁ ବୋଲି ମୁଁ ଡାକିଲେ କାହାକୁ ଶତ୍ରୁ ଆସଇ ପାଶେ ।"(୫୦)

ଆଜୀବନ ସଂଗ୍ରାମକୁ ଦୀକ୍ଷା ଭାବରେ ଗ୍ରହଣ କରିଥିବା କବି ଶେଷରେ ଆଶାପୋଷଣ କରୁଛନ୍ତି –

"ଜାଣେ ମୁଁ ଜାଣେରେସାଥୀ
ଘଟିବତ ଦିନେ ଶ୍ରେଣୀବିଲୁପ୍ତି
ପାହିବ ଏ କାଳରାତି ।"(୫୧)

୧୯୭୦ ମସିହା ବେଳକୁ ଓଡ଼ିଶାରେ ନକ୍‌ସାଲ ଆନ୍ଦୋଳନର ବେଶ୍ ପ୍ରଭାବ ଅନୁଭୂତ ହେଉଥାଏ । କବି ରବି ସିଂ ମଧ୍ୟ ଏହି ଆନ୍ଦୋଳନର ପ୍ରେରଣାରେ ଉଦ୍ବୁଦ୍ଧ ଥିଲେ । କବିଙ୍କର କଟକସ୍ଥିତ ବାସଭବନ ବିଭିନ୍ନ ବିପ୍ଳବୀ ଜନନାୟକମାନଙ୍କର ଗୁପ୍ତ ଆଶ୍ରୟସ୍ଥଳୀ ଥାଏ । ପ୍ରାରମ୍ଭିକ ପର୍ଯ୍ୟାୟରେ ଦେଖା ଦେଇଥିବା ପ୍ରଗତିକାମୀ ଆଗ୍ନେୟବାର୍ତ୍ତା ମଧ୍ୟବର୍ତ୍ତୀ ପର୍ଯ୍ୟାୟର କବିତାରେ କିଞ୍ଚିତ୍ ଶାନ୍ତ ଶୀତଳ ରୂପ ପରିଗ୍ରହ କରିଥିଲେ ମଧ୍ୟ ୧୯୭୦ ମସିହା ପରେ ଏହା ପୁନଃ ପୂର୍ବ ଅବସ୍ଥାକୁ ଫେରି ଆସିଛି । କବିଙ୍କର 'ଖଣ୍ଡିଆ ବିଡ଼ି' କବିତାକୁ ଏଠାରେ ଆଲୋଚନା କରାଯାଇପାରେ । ଖଣ୍ଡିଆ ବିଡ଼ି ହେଉଛି ଖଟିଖିଆ ସାଧାରଣ ଜନତାର ପ୍ରତୀକ । ଖଣ୍ଡିଆବିଡ଼ିରେ ସଂଯୋଗ କରାଯାଇଥିବା ସାମାନ୍ୟ ଅଗ୍ନିକଣା ସୃଷ୍ଟିକୁ ଜାଳିପୋଡ଼ି ଛାରଖାର କରିଦେଇପାରେ । କାରଣ 'ଅଗ୍ନି' ସର୍ବଶକ୍ତିମାନ୍ । ସାମାନ୍ୟ ଆଘାତରେ ସେ ଲିଭିଯାଏ ନାହିଁ । କବିଙ୍କର ଏହି ଚିନ୍ତାଦର୍ଶ ବଂଗଳା କବି ସୁକାନ୍ତ ଭଟ୍ଟାଚାର୍ଯ୍ୟଙ୍କ 'ଦେଶଲାଇ କାଠି' କବିତାରେ ପ୍ରତିଫଳିତ ଚିନ୍ତାଧାରା ପରିପ୍ରତୀୟମାନ ହୁଏ । କବି ସୁକାନ୍ତ ମଧ୍ୟ ଅନୁରୂପ ଭାବରେ ସାମାନ୍ୟ ଦିଆସିଲି କାଠିର ନିଆଁରୁ ବିରାଟ ଧ୍ୱଂସ ଯେ ସମ୍ଭବ ହୋଇପାରିବ ତାହାର କଳନା କରନ୍ତି । ଉଭୟ କବିତାକୁ ଏଠାରେ ଉପସ୍ଥାପିତ କଲେ ତାହା ସ୍ପଷ୍ଟ ହୋଇପାରିବ ।

*"ଆମ୍‌ରାବନ୍ଦୀ ଥାକ୍‌ବ ନାଁ ତୋମାଦେର୍ ପକେଟେ ପକେଟେ
ଆମ୍‌ରା ବେରିୟ ପଡ଼ବ, ଆମ୍‌ରା ଛଡ଼ିୟେ ପଡ଼ବ୍ ।
ଶହରେ, ଗଞ୍ଜେ, ଗ୍ରାମେ-ଦିଗନ୍ତ ଥେକେ ଦିଗନ୍ତେ ।
ଆମ୍‌ରା ବାର୍ ବାର୍ ଜ୍ୱଲି - ନିତାନ୍ତ ଅବ ହେଲାୟ
ତା ତୋ ତୋମର୍ ଜାନେନ ?
କିନ୍ତୁ ତୋମ୍‌ରା 'ଜାନେନା ?
କିବେ ଆମ୍‌ରା ଜ୍ୱଲେ ଉଠ୍‌ବ
ସବାଇ ଶେଷେ ବାରେର୍ ମତୋ ! (୫୨)

* "ଚିନ୍ତା ନାହିଁ, ପଡ଼ିଥାଅ, ତମ ଜ୍ଞାତି, ବଂଶଧର ପୁଣି ପରିଜନ
ସେମାନେ ଉଠିବେ ଜାଗି ଜଣେ ଜଣେ ହୋଇ ଅଗ୍ନିମାନ୍ ।
କାହାରି ଅଂଗୁଳି ଚାପ, ଓଠ ଫାଙ୍କ ସେମାନଙ୍କୁ ସେବେ
ପାରିବନି ଧରିରଖି, ସମ୍ମିଳିତେ ସମସ୍ତେ ଜଳିବେ ।

x x x x x

ହାହାକାର, ଆର୍ତ୍ତନାଦ, କୋଳାହଳ, ଯିବ ସବୁ ଜଳି
ପଥ ଧାରେ ପଡ଼ିରହି ଦେଖିବ ତା' ହେ ଖଣ୍ଡିଆ ବିଡ଼ି ।" (୫୩)

ଶ୍ରେଣୀ ସଂଘର୍ଷ, ସର୍ବହରାର ଦୁଃସ୍ଥ ଜୀବନ ଚିତ୍ର କବିଙ୍କ ଲେଖନୀରେ ଯେମିତି ପ୍ରକାଶିତ ଜନମାନସରେ ବେଶ୍ ପ୍ରଭାବ ପକାଇଥିବା ନକ୍‌ସାଲ୍ କ୍ରାନ୍ତି ମଧ କବିଙ୍କ କବିତାରେ ସେମିତି ପ୍ରକାଶିତ । ସମାଜର ବିଫଳତା ମଧ୍ୟରୁ କବି ରବି ସିଂ ସଦାସର୍ବଦା ସ୍ୱପ୍ନ ଦେଖନ୍ତିଜନଗଣଙ୍କ ମୁକ୍ତିପାଇଁ । ସେମାନଙ୍କ ହୃଦୟରେ ଆଶାର ବାରିସିଞ୍ଚନ କରିବା ପାଇଁ କବି ଲେଖନୀ କହେ –

"କଳା ନାମେ କେବେ କରିନାହିଁ କବି
କଳା କାରବାର ଭୁଲେ
ନାହିଁ ବେଶୀ ଆୟୁ, ଅସ୍ତରବିଟା
ପଶ୍ଚିମା କାଶେ ଝୁଲେ
ଆଉ ଟିକେ ପରେ ପଡ଼ିବ ତ' ଛିଡ଼ି
ଆସିବ ତ ଘନ ଅଂଧାର ମାଡ଼ି
ଟିକ୍ ଟିକ୍ ଚାଲେ ସମୟର ଘଡ଼ି
ଜବି ମୁଁ ବେପରବାୟ
ବ୍ୟର୍ଥ ହେବନି ତପସ୍ୟା ମୋର
ଘଟିବ ସୂର୍ଯ୍ୟୋଦୟ ।" (୫୪)

ବିପ୍ଳବୀ କବିର ଏ ପ୍ରକାର ସ୍ୱର ସମାଜରେ ପରିବର୍ତ୍ତନ ଆଣିବାକୁ ପୂର୍ଣ୍ଣ ଭାବରେ ସମର୍ଥ । କବିଙ୍କ ଭାଷାରେ–

"ବିପ୍ଳବ ନୁହେଁ ମୋଟେ ଗୋଲାପର ବନ
ନୁହେଁ ଭୋଜି ସଭା, ଗୋଲାପ ଗଂଧି ବୁର୍ଜୁଆର ପ୍ରୀତି
ମହା ଭୂଗୋଳର ମହାଉତ୍ସବ, ଜୀବନର ଜୟଗୀତି
x x x x
ପଥ ଦୁର୍ଗମ ସେ ପଥେ ମୃତ୍ୟୁ, ଝଡ଼ ଓ ଅଂଧକାର
ରକ୍ତ, ଅଗ୍ନି, ଫାଶୀର ମଂଚ ହାତାହାତି କାରାଗାର ।" (୫୫)

କବି ରବି ସିଂ କେବଳ ଯେ କାବ୍ୟକବିତା ମାଧ୍ୟମରେ ଜୀବନ ଯନ୍ତ୍ରଣାର ସ୍ୱରକୁ ଉପସ୍ଥାପିତ କରିଛନ୍ତି, ତାହାନୁହେଁ ତାଙ୍କ ରଚିତ 'ସଂସ୍କୃତିର ବୈପ୍ଳବିକ ମୂଲ୍ୟବୋଧ' ପ୍ରବଂଧ ସାଙ୍ଗକୁ 'ନିର୍ବାଚିତ ନିବନ୍ଧ', ରବି ସିଂ ଉବାଚ' 'ଫୁଙ୍ଗୁଳାଫର୍ଦ୍ଦ' ଇତ୍ୟାଦି ଗ୍ରନ୍ଥରୁ ତାଙ୍କର ଶାଣିତ ଯୁକ୍ତିସିଦ୍ଧ ଦୃଷ୍ଟିଭଂଗୀକୁ ଯେ କେହି ପାଠକ ସହଜରେ ଲକ୍ଷ୍ୟ କରିପାରିବ । କବିଙ୍କର କାବ୍ୟିକ ପ୍ରତିଭା ସଂପର୍କରେ ଡଃ ଶରତଚନ୍ଦ୍ର ମହାନ୍ତି ମତବ୍ୟକ୍ତ କରନ୍ତି –

"କବିତା ତେଣୁ ତାଙ୍କର ଜୀବନର ପ୍ରତିଟି ପର୍ବର, ଯନ୍ତ୍ରଣାର, ପ୍ରତିଟି ଚିତ୍କାରର ଏବଂ କାଳର ପ୍ରତିଟି ଭୃକୁଟୀର । 'ଆଶା' 'ଆଶ୍ୱାସନା' 'ଜୀବନ ଯନ୍ତ୍ରଣା' 'ପ୍ରେମ-ପ୍ରୀତି', 'କାମନା ବାସନା' ଏବଂ ସମସ୍ତ ପ୍ରଗତିଶୀଳ ଭାବ ଓ ଭାବନାର ସ୍ପର୍ଶାତୁର ରବି କବି ମାନସ ଓଡ଼ିଆ କବିତାରେ ଏକ ନିର୍ଦ୍ଦିଷ୍ଟ ଆଶା ଓ ଆତଙ୍କର ବଜ୍ର ଗମ୍ଭୀର ପ୍ରକଂପନ ସୃଷ୍ଟି କରିଅଛି - ଏହା ନିଃସନ୍ଦେହ।" (୫୬)

ଉପରୋକ୍ତ ମନ୍ତବ୍ୟର ସତ୍ୟାସତ୍ୟ ଅନୁସାରେ କବି ରବିସିଂଙ୍କର କବିତା ମନୁଷ୍ୟ ଜୀବନର ପ୍ରତିଟି ପୃଷ୍ଠାକୁ ଉନ୍ମୋଚନ କରିଛି । ବିପ୍ଲବର ଦ୍ୱାହି ଦେଇ, ଆଶା ଆଶ୍ୱାସନାର ବାରି ସିଞ୍ଚନ କରିଛି। କବି ମନୁଷ୍ୟ ଜୀବନର ଚିତ୍ର ଅଂକନ କରୁକରୁ କଦାପି କଳ୍ପନାର ମାୟା ରାଜ୍ୟରେ ପାଠକକୁ ଭୁଲାଇ ଦେଇନାହାନ୍ତି କି କଳ୍ପନା ଦ୍ୱାରା ଫୁଲ ଫୁଟିବାର କଥା ମଣିଷକୁ କହିନାହାନ୍ତି, କହିଛନ୍ତି ସାମାଜିକ ସଂକଟର କଥା । ଗାନ କରିଛନ୍ତି ଅବକ୍ଷୟବାଦୀ ଆଧୁନିକ ସଂସ୍କୃତି, ସଂକ୍ରମିତ ହୋଇଥିବା ଅପସଂସ୍କୃତିର ଦୁଃଖଦ ଗାଥା । ସ୍ୱାଧୀନତା ପରବର୍ତ୍ତୀ ଦୀର୍ଘ ଅର୍ଦ୍ଧଶତାବ୍ଦୀରୁ ଊର୍ଦ୍ଧ୍ୱକାଳ ଧରି ରବି ସିଂ ସାଲିସ୍‌ବିହୀନ ବିପ୍ଲବୀ କବି ଭାବରେ ନିଜର ଏକ ସ୍ୱତନ୍ତ୍ର ଧରା ଓ ଧାରା ସୃଷ୍ଟି କରି ପାରିଛନ୍ତି ଓ ତାଙ୍କର ସମକାଳ ତଥା ପରବର୍ତ୍ତୀ ବିପ୍ଲବୀମାନଙ୍କ ପାଇଁ ପ୍ରେରଣା ହୋଇରହିଛନ୍ତି ।

## କବି ସଦାଶିବ ଦାଶ

"କିଏ ମୋତେ କଲ୍ଲୋଳିତ କରିଦିଏ ସୃଜନ ଛନ୍ଦରେ
କିଏ ମୋତେ ଜୀବନର କ୍ଷୀରାବ୍ଧିରେ ବଂଚିବା ଶିଖାଏ,
କାହିଁକି ସେ ଚୋରି କରେ ମୋ ଆତ୍ମାର ସମସ୍ତ ଯନ୍ତ୍ରଣା
କି ଦେଇ ପୂଜିବି ତାରେ, ଡେଇଁ ତାର ମହୁର ଅଗଣା ।"(୫୭)

କବିତା ଜୀବନ ରୂପକ ପୁଷ୍ପର ପ୍ରସ୍ଫୁଟିତ ରୂପ । କେତେବେଳେ ସୂର୍ଯ୍ୟଙ୍କର କିରଣ ତ' କେତେବେଳେ ପୁନେଇଁ ଚାନ୍ଦର ସ୍ୱଚ୍ଛ ଆଲୋକ ରେଖା । କେତେବେଳେ ଅଗ୍ନିର ଶିଖା ପରି ଉତ୍ତାପ ଭରିଦିଏ ମନ ମଧ୍ୟରେ ତ' କେତେବେଳେ ପୌଷର ଶୀତଳତା ପରି ମନକୁ କାଲୁଆ କରିଦିଏ । କବି ପ୍ରତିଭା ଏପରି ଏକ ଦିବ୍ୟଦତ୍ତ ପ୍ରତିଭା ଯାହାକି ସୀମିତ ସମୟ ପାଇଁ କଲ୍ଲୋଳିତ କରେ, ଉଚ୍ଚାଟିତ କରେ, ଠିକ୍ ଯେମିତି ଛାଇ ଆଲୁଅର ଖେଳପରି । ସାଗରର ଢେଉ ବେଳାଭୂମିକୁ ସ୍ପର୍ଶକରି ପୁନଶ୍ଚ ସାଗର ବକ୍ଷକୁ ଲେଉଟି ଗଲାପରି । ସର୍ବୋପରି ଏହା ଜୀବନ ରୂପକ ସାଗରକୁ ସୁରୁଖୁରୁରେ ପାର କରିବାର ପଥ ନିର୍ଦ୍ଦେଶ କରିଥାଏ । ମନୁଷ୍ୟକୁ ବଞ୍ଚିବା ଶିଖାଇଥାଏ । ସମାଜରେ ସଂଘର୍ଷ କରିବା ପାଇଁ ପ୍ରେରଣା ପ୍ରଦାନ କରେ ଏବଂ କବି ହିଁ ଏଠାରେ ପ୍ରେରଣା ଦାତାର ଭୂମିକା ନିର୍ବାହ କରନ୍ତି । 'ଶବ୍ଦେଶ୍ୱରୀ' କବିତାର ଉପରୋକ୍ତ ପଂକ୍ତି କେବଳ

ଯେ କବି ସଦାଶିବଙ୍କୁ କ୍ଷଣିକ ସମୟ ପାଇଁ ସର୍ଜନ ଛନ୍ଦରେ ଆପ୍ୟାୟିତ କରେ ତାହା ନୁହେଁ ଜୀବନ ସାଗର ପାର ହେବା ପାଇଁ ଶକ୍ତି ପ୍ରଦାନ କରେ । ଅସରନ୍ତି ଦୁଃଖ ଯନ୍ତ୍ରଣାର ଉପଶମ କରାଏ । ଏଠାରେ ଏହି ପ୍ରସଂଗର ଉଲ୍ଲେଖ କରିବାର ଅର୍ଥ କବିତା ପରୀକ୍ଷା ନିରୀକ୍ଷା ବା ପ୍ରୟୋଗର ଉପାଦାନ ନୁହେଁ । କବିତା ମାଟି, ମନୁଷ୍ୟ ସର୍ବୋପରି ମାନବବାଦର ମହାମନ୍ତ୍ରକୁ ଉଚ୍ଚାରଣ କରିବା କଥା । ଏହିପରି ଏକ ଯୁଗାନ୍ତକାରୀ ବାର୍ତ୍ତାକୁ ବହନକରି କବି ସଦାଶିବଙ୍କର କଣ୍ଠସ୍ୱର ଆଜି ଉର୍ଜସ୍ୱଳ । କବି ତାଙ୍କର କବିତାକୁ ବହୁବିଧ ପରୀକ୍ଷାନିରୀକ୍ଷା ନିକଟରୁ ଯଥାସମ୍ଭବ ଦୂରେଇ ରଖି ଉତ୍ତର ଷାଠିଏ କାଳରେ ନିଜର ଏକ ସ୍ୱତନ୍ତ୍ର ସ୍ଥାନ ରଖି ପାରିବାକୁ ସକ୍ଷମ ହୋଇଛନ୍ତି ।

କବି ପ୍ରତିଭାର ଉନ୍ମେଷ ଘଟେ ଷଷ୍ଠଦଶକରୁ । ଅଦ୍ୟାବଧି ପରିମାଣାତ୍ମକ ଓ ଗୁଣାତ୍ମକ ଉଭୟ ଦୃଷ୍ଟିକୋଣରୁ କବି ବହୁ କାବ୍ୟକବିତା ରଚନା କରି ଓଡ଼ିଆ ବାଣୀଭଣ୍ଡାରକୁ ସମୃଦ୍ଧ କରିଯାଇଛନ୍ତି । କବିଙ୍କର ସୃଜନଶୀଳ ପ୍ରତିଭାର ପରିଚୟ ବହନ କରେ 'ମଳୟସନ୍ତ୍ରାସ', 'ଅ'ରୁ ଚନ୍ଦ୍ରବିନ୍ଦୁ', 'ଏସ୍‌ପ୍ଲାନେଡ୍', 'ଷଷ୍ଠ ଚେତନା', 'ଅକ୍ଷାଂଶ ଦ୍ରାଘିମା', 'କାଳ ନିରବଧି', 'ଅବଧୂତକ୍ରାନ୍ତି', 'ନିତ୍ୟପଦ୍ମ ତୋଳା', 'ଉତ୍ତରପର୍ବ', 'ପ୍ରେମିକା ପ୍ରେମିକା', 'ପ୍ରିୟନାରୀ', 'ସୋରିଷ ଫୁଲର ହସ', 'ଶବ୍ଦ ବ୍ରହ୍ମ' ଇତ୍ୟାଦି କବିତା ସଂକଳନ । ଉପରୋକ୍ତ ସଂକଳନ ଗୁଡ଼ିକ ମଧ୍ୟରୁ କବିଙ୍କର କାବ୍ୟିକ ପ୍ରତିଭାର ବହୁବିଧ ସ୍ୱରକୁ ଉଦ୍‌ଘାଟନ କରିପାରିବା । କେତେବେଳେ ଏହା ମନୁଷ୍ୟ ହୃଦୟରେ ଆଶାର ରେଣୁ ବିଚ୍ଛୁରିତ କରିବାକୁ ସକ୍ଷମ ହୋଇ ପାରୁଛିତ (ଆଶାର ସମାପ୍ତି କାହିଁ / କାହିଁ କୁହ ପ୍ରୀତିର ପୂର୍ଣ୍ଣତା), କେତେବେଳେ ବିପ୍ଳବର ଲେଲିହାନ ଅଗ୍ନିଶିଖା ପ୍ରଜ୍ୱଳିତ କରିଦେଇଛି ତ (ଆରେ ମୋର ବୈପ୍ଳବିକ ଆବେଦନ ପ୍ରାଣର ପୁଲକ / ଝଲକେ ଝଲକେ ରକ୍ତ ସ୍ମୃତି ତୀର୍ଥ.../ ଜାଗିଚାଲ ଆଗ୍ନେୟ ପ୍ରତିଭୂ ଆରେ ମୋର ବିଷର ଶତକ !) କେତେବେଳେ ଏହା ଆଗାମୀ ଶତାବ୍ଦୀକୁ ସମ୍ଭାବନାମୟ କରିବା ପାଇଁ ପ୍ରତିଜ୍ଞାବଦ୍ଧ ହୋଇଉଠିଛି । କବିଙ୍କ ଭାଷାରେ –

"ମୋତେ ଯାହା କୁହ ପଛେ
ଶତାବ୍ଦୀର ପରଠାରୁ
ଅଧିକ ମୋର ଇତିହାସ
ସମସ୍ତ ଗ୍ଲାନି, ହତାଶା ଓ ଆତ୍ମଦାନଠାରୁ
ମୋ ଭିତରେ [illegible] ରହିଛି
ଶତାବ୍ଦୀକୁ [illegible] ବିଶ୍ୱାସ ।" ([illegible])

କବି ସଦାଶିବଙ୍କ କାବ୍ୟିକ ପ୍ରତିଭାକୁ ଏଠାରେ ତିନୋଟି ପର୍ଯ୍ୟାୟରେ ଆଲୋଚନା କରାଯାଇପାରେ । ପ୍ରଥମଟି ଆଦିପର୍ବ (ପ୍ରସ୍ତୁତି ପର୍ବ)ଦ୍ୱିତୀୟଟି କାବ୍ୟଚେତନାର ଆରୋହଣ (ମଧ୍ୟପର୍ବ) ତୃତୀୟଟି ଉତ୍ତରଣ ପର୍ବ - (ଅଦ୍ୟାବଧି ପରିଲକ୍ଷିତ ହେଉଥିବା କାବ୍ୟିକ ସ୍ୱର) । ପ୍ରଥମ ପର୍ଯ୍ୟାୟର କବିତା ସଂକଳନ ('ମଳୟ ସନ୍ତ୍ରାସ', 'ଅ'ରୁ ଚନ୍ଦ୍ରବିନ୍ଦୁ', 'ଏସ୍‌ପ୍ଲାନେଡ', 'ଷଷ୍ଠ ଚେତନା') ଇତ୍ୟାଦିରେ ଏକ ବୃହତ୍ତର କାବ୍ୟିକ ଚିନ୍ତାଧାରାର ବୀଜବପନ କରାଯାଇଥିବା ପରିଲକ୍ଷିତ ହୁଏ । ତତ୍‌କାଳୀନ ସମୟରେ ଗୁରୁ ପ୍ରସାଦଙ୍କ ନେତୃତ୍ୱରେ ଓଡ଼ିଆ ସାହିତ୍ୟର ଅଂଗ ଓ ଆତ୍ମାରେ ଯେଉଁ ବିଦେଶୀ ଭାବ ଦେଖିବାକୁ ମିଳିଥିଲା, ସେହି ସମୟରେ ବାମପନ୍ଥୀ ଚିନ୍ତାଧାରାର ସମ୍ଭାର ଧରି କବି ସଦାଶିବଙ୍କର ଓଡ଼ିଆ କବିତା କ୍ଷେତ୍ରକୁ ଅନୁପ୍ରବେଶ ଘଟେ ଉପରୋକ୍ତ ସଂକଳନ ଗୁଡ଼ିକ ମାଧ୍ୟମରେ । ଏ ସଂପର୍କରେ ସ୍ୱୟଂ କବି 'ଉତ୍ତର ପର୍ବ' ସଂକଳନସ୍ଥ ମୁଖବଂଧରେ ସ୍ୱୀକାର କରିବାକୁ ଯାଇ କହନ୍ତି –

"ଓଡ଼ିଆ କବିତା ଯେତେବେଳେ ତଥାକଥିତ ଆଧୁନିକ ପ୍ରୟୋଗବାଦିତାର ଯୂପକାଷ୍ଠରେ ବନ୍ଦୀ ହୋଇ ପଡ଼ିଥିଲା, ଠିକ୍ ସେତିକିବେଳେ ଯେଉଁ କବିତା ମୁକ୍ତି ମଳୟ ଭଳି ଓଡ଼ିଆ କାବ୍ୟାକାଶରେ ପ୍ରବାହିତ ହେଉଥିଲା, ସେଗୁଡ଼ିକ ମଧ୍ୟରେ ଉତ୍ତରପର୍ବରେ ସଂଶ୍ଳିଷ୍ଟ କବିତାମାନ ଥିଲା ପ୍ରାଥମିକ ପର୍ଯ୍ୟାୟଭୁକ୍ତ । ଏହି ଧାରାଟି ଷଷ୍ଠ ଦଶକରେ ଦାନା ବାନ୍ଧିଥିଲା ଓ କାଳକ୍ରମେ ଆଧୁନିକ ଧାରାଠାରୁ ଭିନ୍ନ ହୋଇଗଲା । ତା'ର ବାଛବିଚାର ଏବେ ଆରମ୍ଭ ହୋଇଛି । ସୁଅ ମୋଡ଼ ଭାଂଗୁଥିବାର ପ୍ରତୀତ ହେଲାଣି । ସଚ୍ଚିବାବୁଙ୍କ ପଛକୁ ଓଡ଼ିଆ କବିତା ବହୁଳାଂଶରେ ପରୀକ୍ଷା ନିରୀକ୍ଷାର ଅର୍ଗଳି ଭିତରେ ଗତି କରୁଥିଲା । କିପରି ଏକ ବିଷାଦଗ୍ରସ୍ତ ନୀରବତାରେ ବିତି ଯାଇଥିଲା ସ୍ୱାଧୀନତା ପରର ଚଉଠ ଶତାବ୍ଦୀ ।" (୫୯)

ତେଣୁ ଷଷ୍ଠ ଦଶକ ଓଡ଼ିଆ କବିତା ଯେଉଁ ଥଟ୍‌ଫୁଲ୍ ଚିନ୍ତାଧାରାକୁ ବହନ କରି ଭାରାକ୍ରାନ୍ତ ହୋଇ ପଡ଼ିଥିଲା, ସାଧାରଣ ପାଠକର ବିଚାରଶକ୍ତି ଏହାକୁ ସ୍ପର୍ଶ କରିବାକୁ ଥିଲା ଅକ୍ଷମ । ଏକ ଶୁଷ୍କ ପ୍ରାଣହୀନ ଚିନ୍ତାଧାରା ଓଡ଼ିଆ ସାହିତ୍ୟକୁ ଆଚ୍ଛାଦିତ କରିଥିବା ସମୟରେ ଯୁବପୀଢ଼ିର କେତେକ କବି ଓଡ଼ିଆ କବିତାକୁ ଭିନ୍ନ ମାର୍ଗରେ ପରିଚାଳିତ କରିଛନ୍ତି । ସେମାନଙ୍କ ମଧ୍ୟରୁ କବି ସଦାଶିବ ଦାଶ ଅନ୍ୟତମ ପ୍ରମୁଖ ପୁରୋଧା । ଯାହାଙ୍କର କବିତା ବିଳାସ ଜୀବନଚର୍ଯ୍ୟାଠାରୁ ଦୂରେଇ ଆସି ସାଧାରଣ ମାଟି ମଣିଷର କଥା କହେ । ସ୍ୱୟଂ କବି 'ଶବ୍‌ଦବ୍ରହ୍ମ' ସଂକଳନରେ ମତବ୍ୟକ୍ତ କରନ୍ତି –

"ମୋ କବିତାଟି ପଢ଼ି ମାଲ୍‌କାନଗିରିର ଘଞ୍ଚ ଜଂଗଲରେ ରହୁଥିବା ସାଧାରଣ ପାଠକ, ରାୟଗଡ଼ା, ଲାଂଜିଗଡ଼, କରଂଜିଆ, ଯୁଯୁମୋରା କିମ୍ବା ଶିମିଳୀପାଳର ଆଗ୍ରହୀ

ପାଠକ ଯେତେବେଳେ ଲେଖେ 'କବି ତୁମେ ଆମ ଜୀବନର କଥା କ' ସେତେବେଳେ ମହାକବି ମାନଙ୍କର ଜ୍ଞାନପୀଠ, ସରସ୍ୱତୀ, ଶାରଳା, ଏକାଡ଼େମୀ, ଲକ୍ଷ ଲକ୍ଷ ଟଙ୍କା, ଉପଢ଼ୌକନ ଓ ସ୍ତୁତୀଗାନମାନ ମୋତେ ଅସାର ଓ କ୍ଷଣିକ ମନେ ହୁଅନ୍ତି ।" (୬୦)

ଉପରୋକ୍ତ ମତବାଦରୁ ଏକଥା ସ୍ପଷ୍ଟ ସୂଚିତ ହୁଏ ଯେ କବି ସଦାଶିବଙ୍କ ଲେଖନୀ ଅୟମାରମ୍ଭ କାଳରୁ ଅଦ୍ୟାବଧି ମାନବ ସମାଜର ନିଛକ ପ୍ରତିଛବି ଉଦ୍‌ଘାଟନ କରିଚାଲିଛି । ଯାହାକୁ ଆମେ ପ୍ରଗତିବାଦୀ ଚିନ୍ତାଧାରାର ଏକ ଅଂଶ ବିଶେଷ ବୋଲି ଗ୍ରହଣ କରିନେଲେ ଭୁଲ୍ ହେବନାହିଁ । କବିଙ୍କର ଏତାଦୃଶ ଚିନ୍ତାଧାରାର ପୃଷ୍ଠପଟରେ ଛାତ୍ର ଜୀବନରେ ବିଭିନ୍ନ ରାଜନୈତିକ କାର୍ଯ୍ୟକଳାପ ସହିତ ସଂପୃକ୍ତି କବିଙ୍କୁ ମାନସିକ ସ୍ତରରେ ସମ୍ବଳ ଯୋଗାଇଛି । କବିଙ୍କର ପ୍ରଥମ ପର୍ଯ୍ୟାୟର ସଂକଳନ ଗୁଡ଼ିକ ଏହି ମହାମନ୍ତ୍ରକୁ ବହନ କରିଛି । ଏ ସଂପର୍କରେ ଆଲୋଚକ ଡଃ ଦିଲ୍ଲୀପ କୁମାର ସ୍ୱାଇଁ ମତ ପ୍ରଦାନ କରନ୍ତି ଯେ – "ନୂଆ କରି ଚାଟଶାଳୀ ଯାଇଥିବା ଚାଟ ଯେପରି ଗୁରୁତ୍ୱପୂର୍ଣ୍ଣ ବ୍ରହ୍ମା, ବିଷ୍ଣୁ, ମହେଶ୍ୱରକୁ ଗୋଲାକାର ଭାବରେ ରୂପ ଦେଇପାରେ ନାହିଁ ଠିକ୍ ସେହିପରି ସକଳନସ୍ଥ କବିତାମାନ ପ୍ରଗତିପନ୍ଥୀ ମନ୍ତ୍ରରେ ଦୀକ୍ଷିତ ହୋଇ କଠୋର ମନ ଓ ଚରମ ବକ୍ତବ୍ୟ ପ୍ରଦାନ କରିପାରି ନାହାନ୍ତି ।" (୬୧) କିନ୍ତୁ ଆଲୋଚକଙ୍କର ଏ ମନ୍ତବ୍ୟକୁ ଗ୍ରହଣ କରାଯାଇ ନ' ପାରେ । କବିଙ୍କର ପ୍ରଥମ ପର୍ଯ୍ୟାୟ ସଂକଳନର ଅଧିକାଂଶ କବିତା ପ୍ରଗତିବାଦର ବାର୍ତ୍ତା ବହନ କରିଛି । କବିଙ୍କ ରଚିତ ଆଜ୍ଚି ଖାଲି ବସନ୍ତ ବସନ୍ତ, ମୁକ୍ତିକାମୀ, ଦୁଇଟି କବିତା, ନିର୍ଦ୍ଦେଶନାମା, ଶେଷ ଚୈତ୍ରର ସବୁଜ ଶାଖା, ଅଂଧାର, ସୂର୍ଯ୍ୟୋଦୟ, ପ୍ରେରଣା, ବିଷୁବ ସମ୍ଭାଷଣ, ଚୌରଂଗୀରେ ଲେନିନ୍ ଷ୍ଟାଚ୍ୟୁ ଦେଖିବାପରେ, ଜାନୁଆରୀ ଛବିଶ୍‌ର ଏକ ସମୀକ୍ଷା, ମଳୟ ସନ୍ତ୍ରାସ, ଏସ୍‌ପ୍ଲାନେଡ୍ ଆଦି ବହୁ କବିତାରେ ଏହି ଚିନ୍ତାଧାରାର ରୂପ ଦେଖିବାକୁ ପାଇବା । ଏଠାରେ କେତୋଟି କବିତା ପଂକ୍ତିର ବର୍ଣ୍ଣନା ସହିତ ବ୍ୟାଖ୍ୟା ଉପସ୍ଥାପନ କଲେ ଆଲୋଚନାଟି ହୃଦୟଙ୍ଗମ କରାଯାଇପାରିବ ।

* "ସବୁଜ କ୍ଷେତରେ ଯିଏ ଜନ୍ମ କରେ ଖମାରର ସମସ୍ତ ବୈଭବ ।
ସମାଜର ବୈଶାଖ ଦେହେ ଭସାଏ ଯେ ସୃଷ୍ଟିଶୀଳ ଶ୍ରାବଣର ମେଘ ।
ଦଳିତର ନାମ ନେଇ ପଂଜିକାର କେତେକ ଗଣକ
ଲେଖନ୍ତି ଜାତକ ଏଠି ଭାଙ୍ଗିବାକୁ ମଣିଷର ଶକ୍ତଦୁଇ ହାତ ।" (୬୨)

* "ମାଟିକୁ ଫଟାଏ ଯିଏ ସେ ଜାଣଇ ଭୋକର ବେଦନା
ପଥର ଭାଂଗଇ ଯିଏ ସେ ଜାଣିଛି ତା' ହାତର ଶକ୍ତି

ଖାଦାନେ ଯେ କାମ କରେ ସେ ଜାଣିଛି ଅଭାବର କଥା ।
ଶୋଷିତ ସମାଜ ଜାଣେ ଗଣଯୁଦ୍ଧ ଏକ ନ୍ୟାୟପନ୍ଥା ।" (୬୩)

* "ଫୁଲ ଫଳ ଅରଣ୍ୟଠୁ ନଦୀ
ସମସ୍ତେ କି ଶୋଷଣରେ ମୂକ
ଈଶ୍ୱର ଗୋଟାଏ ଲୋକ
ଯାହା ପାଦେ ମଣିଷ ହିଁ ବଂଧା କ୍ରୀତାଦାସ
ଈଶ୍ୱର ଗୁଡ଼ାଏ ପାପ
ସତ ମିଛ ପୁଣ୍ୟେ ଗଢ଼ା ପାପର କଣ୍ଢେଇ
ଶିଳାର ସ୍ତବକ ଏଇ ମଣିଷର ରୁଦ୍ଧ ପରଂପରା
ବଂଶୀ ସ୍ୱନେ ହତ୍ୟାକରେ, ସୁରେ ଗଢ଼େ ଝଡ଼ ଚଉତରା ।" (୬୪)

ପ୍ରଗତିବାଦୀ ତତ୍ତ୍ୱ ଧର୍ମ, ପାରଂପରିକ ଈଶ୍ୱର ବିଶ୍ୱାସ ବିପକ୍ଷରେ ସ୍ୱର ଉତ୍ତୋଳନ କରିଥାଏ । କାରଣ-ଈଶ୍ୱର ଏ ସଂସାରର ସୃଷ୍ଟି କର୍ତ୍ତା ସତ, କିନ୍ତୁ ଯାବତୀୟ ବୈଷମ୍ୟ ପାଇଁ ସେ ହିଁ ଦାୟୀ । ସୃଷ୍ଟିର ସର୍ବୋତ୍କୃଷ୍ଟ ପ୍ରାଣୀ ମନୁଷ୍ୟ । ଯାହା ନିକଟରେ ରହିଛି ଅମାପ ଶକ୍ତିର ଉତ୍ସ । ସେ ସେହି ଶକ୍ତିକୁ ବିନିଯୋଗ କରି ସବୁଜ କ୍ଷେତରେ ଶସ୍ୟର ସମ୍ଭାର ସୃଷ୍ଟି କରିବାଠାରୁ ଆରମ୍ଭ କରି ପଥର ଭାଂଗିବା ପର୍ଯ୍ୟନ୍ତ ସବୁକିଛି କରିପାରେ । କିନ୍ତୁ ଶେଷରେ ସମାଜରେ ସେ ହୁଏ ଅବହେଳିତ । ଏହା ବିରୋଧରେ ସ୍ୱର ଉତ୍ତୋଳନ କରିବା ପରିବର୍ତ୍ତେ ଭାଗ୍ୟଭଗବାନଙ୍କ ନିକଟରେ ନିଜକୁ ସମର୍ପଣ କରଦିଏ । ଏହା ବିରୋଧରେ କବି ସଦାଶିବ ନେଁ ସ୍ୱର ଉଦ୍‌ଘୋଷଣା କରିଛନ୍ତି ସେହି ସ୍ୱର କବି ସଚ୍ଚିରାଉତରାୟ ଓ କବି ରବି ସିଂଙ୍କ କବିତାରେ ମଧ୍ୟ ଦୃଷ୍ଟିଗୋଚର ହୁଏ ।

* "ଚୁରିବାକୁ ଦେଲେ ଧନୀର ବି ଧନ
ରକ୍ତ ତୁମର ଲୋଡ଼ା ଭଗବାନ
ତୁମରି କବର ଧନୀର କବର
ମରଣ ତୁମର ଚାହିଁ
ଭଗବାନ ଅଛ କାହିଁ ।"(୬୫)

* "ଚରମ ପତ୍ର ଦେଲି ଭଗବାନ
ଚରମ ପତ୍ର ଘେନ
ଆଗାମୀ ଚବିଶ ଘଣ୍ଟା ମଧ୍ୟରେ
ଆଗାମୀ କାଲିର ପ୍ରଭାତରେ

ଯଦି ନ ଛାଡ଼ିବ ଗୋଲୋକ ସିଂହାସନ
ଶିରୁ ଅବୟବ ଛିନ୍ନ କରିବ, ମୋ ତରବାରୀ
ତମରି ଅଂକ ଶାୟିନୀ ଦଳର କର କଂକଣ
ପଦାଘାତେ ଦେବି ଚୂରି ।"(୬୬)

ତେଣୁ କବିଙ୍କର ପ୍ରାଥମିକ ପର୍ଯ୍ୟାୟର ସଂକଳନ ଗୁଡ଼ିକ ଯେ ପ୍ରଗତିବାଦୀ ବାର୍ତ୍ତାକୁ ବହନ କରିଛି ଏହାକୁ ନିର୍ବିବାଦରେ ସ୍ୱୀକାର କରାଯାଇପାରେ ।

ଆଦ୍ୟ ପର୍ଯ୍ୟାୟରେ ଦୃଷ୍ଟିଗୋଚର ହେଉଥିବା କାବ୍ୟିକ ସ୍ୱର ମଧ୍ୟବର୍ତ୍ତୀ ପର୍ଯ୍ୟାୟ ବେଳକୁ ଆହୁରି ବଳିଷ୍ଠ ହୋଇ ପାରିଛି । ସଚ୍ଚିରାଉତରାୟ, ଭଗବତୀ ଚରଣ ପାଣିଗ୍ରାହୀ, ଅନନ୍ତ ପଟ୍ଟନାୟକ ଯେଉଁ ଚିନ୍ତାଧାରାକୁ ଜନ୍ମ ଦେଇଥିଲେ, ପରବର୍ତ୍ତୀ ସମୟରେ ଏହାକୁ ଲାଳନପାଳନ କରି ଆଗକୁ ନେବାରେ ଯଥେଷ୍ଟ କଷ୍ଟସ୍ୱୀକାର କରିଥିଲେ କବି ବ୍ରଜନାଥ ରଥଙ୍କଠାରୁ ଆରମ୍ଭକରି କବି ସଦାଶିବଙ୍କ ପର୍ଯ୍ୟନ୍ତ ବହୁ କବିଗଣ । ଓଡ଼ିଆ କବିତାକୁ ଏଲିୟଟୀୟ ଚିନ୍ତାଧାରାରୁ ମୁକ୍ତ କରି ପ୍ରଗତିବାଦର ବନ୍ୟାରେ ପ୍ଳାବିତ କରିବାରେ ଏମାନଙ୍କର ଅବଦାନ କୌଣସି ଗୁଣରେ କମ୍ ନୁହେଁ । ସମାଲୋଚକ ବାଞ୍ଛାନିଧି ଦାସ'ଙ୍କ ମତରେ –

"ଏହାକୁ ବିପ୍ଳବୀ ସାହିତ୍ୟର ପୁନର୍ଜୀବନ୍ୟାସର ଯୁଗ ବୋଲି କହିଲେ ବରଂ ଯଥାର୍ଥ ହେବ । ସ୍ତିମିତ ନବଯୁଗର ଆଲୋକ ଶିଖାକୁ ନୂତନ ଅମ୍ଳଜାନ ଦେଇ ଉତ୍କଳର ଗଗନ ତଳେ ଯେଉଁ ତରୁଣ ଗୋଷ୍ଠୀ ଯୌଥ ଉଦ୍ୟମରେ ସମୁଜ୍ଜ୍ୱଳ କରି ଜଳାଇଥିଲେ, ସେଇ ଗୋଷ୍ଠୀର ଅଗ୍ରଣୀ ସାଥୀ ଥିଲେ ପ୍ରସନ୍ନ ପାଟ୍ଟଶାଣୀ ଓ ସଦାଶିବ ଦାଶ ।"(୬୭)

କବିଙ୍କର ମଧ୍ୟବର୍ତ୍ତୀ ପର୍ଯ୍ୟାୟର କବିତାଗୁଡ଼ିକରେ ପ୍ରତିଫଳିତ ହେଉଥିବା ପ୍ରଗତିବାଦୀ ଚିନ୍ତାଧାରା ସଂପର୍କରେ ଆଲୋଚନା କରିବା ପୂର୍ବରୁ ତତ୍କାଳୀନ ଓଡ଼ିଶାର ସାମସମୟିକ ପରିସ୍ଥିତି ଓ ସେଥିରେ କବିଙ୍କର ଭୂମିକା ସଂପର୍କରେ ଆଲୋକପାତ ନ କଲେ ଆଲୋଚନାଟି ଅସଂପୂର୍ଣ୍ଣ ମନେହେବ । ୧୯୬୭ ମସିହାରେ ଭାରତର ଉତ୍ତର ପୂର୍ବ ଭାଗରେ ସାମାଜିକ ଓ ଅର୍ଥନୈତିକ ଶୋଷଣ ବିରୁଦ୍ଧରେ ଆନ୍ଦୋଳନ ତତ୍ ସଂଗେସଂଗେ ୧୯୬୯ ବେଳକୁ ନକ୍ସାଲ୍ ଆନ୍ଦୋଳନ, ଷାଠିଏ ମସିହା ପରବର୍ତ୍ତୀ ଓଡ଼ିଆ କବିତାରେ କିଛିଟା ନୂତନ ସ୍ପର୍ଶ ଓ ସମ୍ବେଦନଶୀଳତା ଭରି ଦେଇଥିଲା କହିଲେ ଅତ୍ୟୁକ୍ତି ହେବ ନାହିଁ । ଏହି ସମୟରେ ପାଟ୍ଟଶାଣୀ ଜଣେ ଉଦୀୟମାନ ଛାତ୍ର ନେତା । କବି ସଦାଶିବ ଯୁବଲେଖକସମ୍ମେଳନ (୧୯୬୯) ର ଯୁଗ୍ମ ସଂପାଦକ । ସେତେବେଳକୁ ତାଙ୍କ ସଂପାଦନାରେ 'ଆଭା' ପତ୍ରିକା ପ୍ରକାଶିତ ହେଉଥାଏ । ୧୯୭୦ ମସିହାରେ

ବ୍ରହ୍ମପୁରଠାରେ ଯୁବଲେଖକସମ୍ମେଳନ ଅନୁଷ୍ଠିତ ହେବା ଅବସରରେ ସେଠାକୁ ଆନ୍ଧ୍ରର 'ଦିଗମ୍ବର' କବି ଗୋଷ୍ଠୀ ନିମନ୍ତ୍ରିତ ହୋଇଆସନ୍ତି । ସେମାନଙ୍କର ପ୍ରେରଣା ଲାଭ କରି କବି ଓଡ଼ିଶାରେ 'ଅବଧୂତ ଗୋଷ୍ଠୀ' ଗଠନର ଭିତ୍ତିଭୂମି ସ୍ଥାପନ କରନ୍ତି । କବିଙ୍କ ସହିତ ହାତ ମିଳାନ୍ତି କବି ପ୍ରସନ୍ନ ପାଟଶାଣୀ, ବଂଧୁ ରତ୍ନାକର ଚଇନି, ବଂଧୁ ଦେବେନ୍ଦ୍ର ମାନସିଂହ, ବଂଧୁ ନବୀନ ସୁନ୍ଦର ସୁବୁଦ୍ଧି । କବି 'ଆଭା' ପତ୍ରିକା ସଂପାଦନା କଲାବେଳେ କବି ପ୍ରସନ୍ନ 'ବେଳା' ପତ୍ରିକାର ସଂପାଦନା କରନ୍ତି । କୌଣସି ଗୋଷ୍ଠୀଗତ ସାହଚର୍ଯ୍ୟ ବିନା ଏମାନେ ଓଡ଼ିଆ ସାହିତ୍ୟକୁ ଏକ ଭିନ୍ନ ମାର୍ଗ ଦେଖାଇବା ପାଇଁ ସକ୍ଷମ ହୁଅନ୍ତି । ସମାଲୋଚକ ବାଞ୍ଛାନିଧି ଦାସ ଏ ସଂପର୍କରେ କହନ୍ତି ଯେ –

"ବେଳା ଓ ଆଭା ଥିଲା ଦୁଇଜଣ ବ୍ୟକ୍ତିଗତ ତରୁଣ କବିଙ୍କର, ତେଣୁ ହାତରୁ ଖାଇ ଘୋଡ଼ା ଆଗରେ ଏ ପତ୍ରିକାଦ୍ୱୟ କେତେ ବା ଦଉଡ଼ନ୍ତେ ।" (୬୮)

ଆଲୋଚକଙ୍କର ମନ୍ତବ୍ୟଟି ଏ ଦୁଇ କାବ୍ୟ ପୁରୁଷ ଓ ସେମାନଙ୍କ ଯଥାସାଧ୍ୟ ଉଦ୍ୟମ ପାଇଁ ଉପଯୁକ୍ତ ମନ୍ତବ୍ୟ ନୁହେଁ । ଏ ଦୁଇଟି ପତ୍ରିକା ସୀମିତ ଆୟୁଷ ନେଇ ଜନ୍ମଲାଭ କରିଥିଲେ ମଧ୍ୟ ଓଡ଼ିଆ ସାହିତ୍ୟକୁ ଏମାନଙ୍କର ଅବଦାନ ଯଥେଷ୍ଟ ବେଶୀ ରହିଛି । ଏହି ପତ୍ରିକାରେ ପ୍ରକାଶିତ କବିଙ୍କର କବିତାଗୁଡ଼ିକ 'ଷଷ୍ଠଚେତନା', 'ଅଯାଂଶ ଦ୍ରାଘିମା', 'ଅବଧୂତ କ୍ରାନ୍ତି' ପ୍ରଭୃତି ସଂକଳନରେ ସନ୍ନିବେଶିତ ହୋଇଛି । ସମାଜବାଦୀ ବାସ୍ତବତା ଏହାର ମୁଖ୍ୟ ସ୍ୱର । ତତ୍‌କାଳୀନ ସମାଜରେ ପରିଲକ୍ଷିତ ହେଉଥିବା ସାମାଜିକ ଅସଂଗତି ଓ ତାହାର ପ୍ରତିକାର ଉଦ୍ଦେଶ୍ୟରେ କବିତାଗୁଡ଼ିକ ରଚିତ । ଜଣେ ସଫଳ ସାମ୍ୟବାଦୀ ସ୍ରଷ୍ଟା ଭାବରେ କବି ସଦାଶିବ ତାଙ୍କ କବିତାରେ ସାମ୍ୟବାଦର ପ୍ରସାର ପାଇଁ ଚେଷ୍ଟିତ । କିନ୍ତୁ ତାଙ୍କ କବିତାରେ ଗୋଟିଏ କଥା ଦୃଷ୍ଟିଗୋଚର ହୁଏ, ତାହା ହେଉଛି - ସଚ୍ଚିରାଉତରାୟଙ୍କ ଠାରୁ ଆରମ୍ଭକରି ରବି ସିଂଙ୍କ ପର୍ଯ୍ୟନ୍ତ କବିମାନଂକ କବିତାରେ – ପ୍ରଗତିବାଦର ଯେଉଁ ବଜ୍ରନିର୍ଘୋଷ ରୂପକୁ ଆମେ ଦେଖିବାକୁ ପାଇଥାଉ, କବିଙ୍କ କବିତା ସେ ଦୃଷ୍ଟିରୁ ଏକ ବ୍ୟତିକ୍ରମ । ବୋଧହୁଏ ଏହା ହିଁ ଅବଧୂତ କବି ଗୋଷ୍ଠୀଙ୍କର କାବ୍ୟିକ ବୈଶିଷ୍ଟ୍ୟ । ପ୍ରଗତିବାଦୀ ଚିନ୍ତାଦର୍ଶକୁ ଉଗ୍ର ବିଚାରଧାରା, ତେଜୋଦୀପ୍ତ ବାଣୀ ମାଧ୍ୟମରେ ପ୍ରକାଶ ନକରି ସରଳ, ସାବଲୀଳ ଭାଷା ମାଧ୍ୟମରେ ସ୍ୱକୀୟ ଭାବକୁ ରୂପାୟିତ କରିବା । ଦୃଷ୍ଟାନ୍ତ ସ୍ୱରୂପ ନିମ୍ନୋକ୍ତ କବିତାଟିକୁ ଗ୍ରହଣ କରାଯାଇପାରେ ।

"ଭୋକର ବନସ୍ତରେ ଛାଗଳ ଶିଶୁର ଭୟ
ଅନ୍ୟ ନାମ ତା'ର ଜରାଜୀର୍ଣ୍ଣ ବିଂଶ ଶତାବ୍ଦୀ
ତମେ ନିଜ ଭୟରେ କାକୁସ୍ଥ ସିପାହୀ ଭାରତବର୍ଷ

ତମେ କ'ଣ କିଛି ପାଇବ ନାହିଁ ?
ତମେ କ'ଣ ଥରେ ଉଠିବ ନାହିଁ ?
ତମେ କ'ଣ ଥରେ ବଞ୍ଚିବ ନାହିଁ ?
ନାହିଁ ..... ନାହିଁ ..... ନାହିଁ ..... ।" (୬୯)

ଠିକ୍ ସେହିପରି ଅନ୍ୟ ଏକ କବିତା 'କୋରାପୁଟ୍'ର ଆରମ୍ଭ ମଧ୍ୟ ଏହିପରି : "ଶ୍ରାବଣୀ ଚଞ୍ଚୁରେ ଶ୍ୟାମଳ ସବୁଜ ବନମାୟା ସହ ପାହାଡ଼ୀ ଝୋଲାର ପାଷାଣ ଛାଆଣୀରେ ଭୋକର ନୂପୁର ବାଜେ ।" କବିତାଟିରେ ସମାଜର ନିଛକ ବାସ୍ତବତାର ବର୍ଣ୍ଣନା କବିଙ୍କୁ ଏକ ସାର୍ଥକ ସମାଜବାଦୀ ସ୍ରଷ୍ଟାର ମାନ୍ୟତା ପ୍ରଦାନ କରେ । ଏ ପ୍ରକାର ସାମାଜିକ ଅଂଗୀକାରବଦ୍ଧତା ମଧ୍ୟ ପ୍ରଗତିବାଦର ଏକ ଅଂଶବିଶେଷ ।

କବିଙ୍କ ରଚିତ 'ଯତନ୍‌ନଗର', 'ରୋସନ୍ନାରା', 'ମୁନାତନ୍ ବିବି', 'ଚୌରଂଗୀ', 'ପାବ୍ଲୋନେରୁଦା' ଇତ୍ୟାଦି କେତେକ କବିତା ପ୍ରଗତିବାଦୀ ଚିନ୍ତାଚେତନାକୁ ଆଧାର କରି ରଚିତ ହୋଇଥିଲେ ମଧ୍ୟ ସ୍ୱତନ୍ତ୍ରତା ଦାବୀ କରେ । ଯଦିଓ 'ଯତନ୍‌ନଗର' ତତ୍କାଳୀନ ବହୁ ସ୍ରଷ୍ଟାଙ୍କୁ କବିତା ରଚନା କରିବା ପାଇଁ ଖୋରାକ୍ ଯୋଗାଇଛି (କବି କୁଂଜ ବିହାରୀ ଦାଶ, ଦୁର୍ଗାଚରଣ ସାମନ୍ତ)ସତ, କିନ୍ତୁ କବିଙ୍କ କବିତାର ଭାବବଳୟ ବେଶ୍ ସ୍ପର୍ଶକାତର ମନେ ହୁଏ ।

'ଯତନ୍ ନଗର' - ଢେଙ୍କାନାଳ ରେଲ୍‌ୱେ ଷ୍ଟେସନ୍‌ର ଅନତି ଦୂରରେ ପର୍ବତର ଶିଖର ଦେଶରେ ଅବସ୍ଥିତ ପରିତ୍ୟକ୍ତ ଏକ ରାଜଉଆସ, ଯାହାକି ଆଜି ମଧ୍ୟ ଅଂଧାରୀ ଗଡ଼ଜାତିଶାସନ ବ୍ୟବସ୍ଥାର ମୂକସାକ୍ଷୀ ପାଲଟିଛି । କବି ସଦାଶିବଙ୍କ ଭାଷାରେ ଏହା କିପରି ରୂପ ଲଭିଛି ଦେଖନ୍ତୁ –

"ତୁମେ ! ରକ୍ତ ଝାଳର କଂକ୍ରିଟ୍‌ରେ ଗଢ଼ା
x x x x x
ତୁମ ପାହାଚରେ ସାମନ୍ତ ଅଶ୍ୱମାନଙ୍କର ଛାପା ପଦଚିହ୍ନ
ଅଂଗାରର ଅକ୍ଷରରେ ସେମାନଙ୍କ ନଗ୍ନ ଭୌଗୋଳିକୀ
ବେଠୀ ବେପାରୀରେ ଯୋଡ଼ା
ପାଷାଣ ଖଣ୍ଡରେ ଗଢ଼ା ଅସନ୍ତୋଷ ନଗ୍ନ,
ଚର୍ବିଜଳା ମହାଦୀପୁ ଶୋଷଣର ନିଆଁ ନିର୍ବାପିତ
ମୂଲିଆର ମାଂସ ପେଶୀ, ଝାଳ, ରକ୍ତ ପୌରୁଷର
ରୂପାନ୍ତର ...... ଯତନ ନଗର । (୭୦)

ରକ୍ତ ଓ ଝାଳରେ ଜୁବୁବୁବୁ ଭୋକିଲା ଲୋକମାନଙ୍କର ହାଡ଼ରେ ଗଢ଼ା ଯତନ

ନଗର । ସାମନ୍ତବାଦର ବେଡ଼ି କୋରଡ଼ା ମଧ୍ୟରେ ଏହା ଏକ ଅସନ୍ତୋଷ ଅଯତ୍ନ ନଗରରେ ପରିଣତ ହୋଇଯାଇଛି । କବି ଏହି ଅସଜଡ଼ା ନଗରକୁ ସଜାଡ଼ିବା ପାଇଁ ଦୃଢ଼ ଆଶାପୋଷଣ କରିବାକୁ ଯାଇ କହନ୍ତି –

"ଯେଉଁ ପିତା ସନ୍ତାନର ସ୍ନେହ ଛାଡ଼ି
ସୃଜନର କାଟି ବେଂକୁ ତା'ର
ପାଷାଣରେ ଲେଖିପାରେ ତା' ନୀରବ ମୃତ୍ୟୁର ଗଜଲ
ଖଟିଖଟି ହାଡ଼କୁ ପାପରା କଲା
ତା'ର ସେହି ସନ୍ତାନର ରକ୍ତ
ଜନ୍ମ କିବା ମୁକ୍ତ ପୂର୍ବାଶାର ।" (୭୧)

ମହାଭାରତରେ 'ଶକୁନି' ଯେପରି ନିଜର ଜ୍ଞାତିପରିଜନଙ୍କର ହାଡ଼ରେ ତିଆରି କରିଥିବା ପଶାକାଠି ରୂପକ ଅମୋଘ ଅସ୍ତ୍ର ମାଧ୍ୟମରେ କୁରୁବଂଶ ଧ୍ୱଂସ ସାଧନ କରିପାରିଥିଲା, ଠିକ୍ ସେହିପରି ଖଟିଖିଆ ମୂଲିଆ ମାନଙ୍କ ଶରୀରରୁ ଜନ୍ମ ନେବ ମୁକ୍ତିର ମହାମନ୍ତ୍ର । ଯିଏକି କେବଳ ଯତନନଗର କାହିଁକି ସମଗ୍ର ପୃଥିବୀ ବକ୍ଷରୁ ଶୋଷଣ ଅତ୍ୟାଚାରର ପରିସମାପ୍ତି ଘଟାଇପାରିବ । ଏହି ବର୍ଣ୍ଣନା ହିଁ କବିତାକୁ ଏକ ସାର୍ବକାଳୀକ ନୂତନ ଔଜଲ୍ୟ ପ୍ରଦାନ କରୁଅଛି ।

ଠିକ୍ ସେହିପରି କବି ସଦାଶିବ ନିଜସ୍ୱ ବୈପ୍ଳବିକ ଚିନ୍ତାଧାରାକୁ 'ମୁନାତନ୍ ବିବି' ଓ 'ରୋସନ୍ନାରା' ନାମ୍ନୀ ଦୁଇଟି ନାରୀ ଚରିତ୍ରର ବୈପ୍ଳବିକ କାର୍ଯ୍ୟକଳାପ ମାଧ୍ୟମରେ ଉପସ୍ଥାପନ କରିଛନ୍ତି । 'ମୁନାତନ୍ ବିବି'ର ଘର ଚାନ୍ଦବାଲି । ଉଦର କ୍ଷୁଧାକୁ ଉପଶମ କରିବା ପାଇଁ ସେ ମନୁଷ୍ୟ ମାଂସ ଭକ୍ଷଣ କରିଥିଲା । ପରୋକ୍ଷରେ ଏହା ଉତ୍କଟ ସମାଜ ବ୍ୟବସ୍ଥାକୁ ପ୍ରତୀକିତ କରିବା ସହିତ ପାରିପାର୍ଶ୍ୱିକ ପରିସ୍ଥିତି କିପରି ମୁନାତନ୍‌କୁ ବିପ୍ଳବିଣୀ କରିବାରେ ସହାୟକ ହୋଇଛି ତାହା ନିମ୍ନୋକ୍ତ ଉକ୍ତିରୁ ଜଣାପଡ଼େ

"ଘର ଚାନ୍ଦବାଲି ମୋର
ନାମ ମୁନାତନ୍
ମଣିଷର ମାଂସରକ୍ତ, ହାଡ଼ର ଆହୁତି ବିନା
ଝଡ଼ ଯଜ୍ଞୁ ମିଳେ ନାହିଁ ମୁକ୍ତିର ନିଶାନ୍ । (୭୨)

ସେହିପରି ରୋସନ୍ନାରା ମଧ୍ୟ କବି ଦୃଷ୍ଟିରେ ଏକ ବିପ୍ଳବୀ ନାରୀ ଚରିତ୍ର । ମୁନାତନ୍‌ର ଦୟନୀୟ ଅବସ୍ଥା ଯେମିତି କବିଙ୍କୁ ପ୍ରଭାବିତ କରିଛି, ରୋସନ୍ନାରାର ଅସାଧାରଣ ସାହସ ମଧ୍ୟ କବିଙ୍କୁ ବେଶ୍ ଆଲୋଡ଼ିତ କରିଛି । ଗୋଟିଏ ନାରୀ ପାଇଁ ଯଦି ଦୁରାଚାରୀ ରାକ୍ଷସ ରାବଣର ଅନ୍ତ ହୁଏ, ନାରୀ ପାଇଁ ଯଦି ମହାଭାରତ ସଂଗଠିତ

ହୋଇ କୌରବ ବଂଶ ନାଶ ହୋଇପାରେ, ନାରୀ ଯଦି ହିଟ୍‌ଲର୍‌ର କ୍ଷୁଧାକୁ ... ଦେଇପାରେ, ତା' ହେଲେ ରୋସନ୍ନାରା ନାମ୍ନୀ ନାରୀଟି ମଧ୍ୟ ସମାଜର ସମସ୍ତ ଅନ୍ୟାୟ, ଅତ୍ୟାଚାରର ପୂର୍ଣ୍ଣଚ୍ଛେଦ୍ ପକାଇବାକୁ ସକ୍ଷମ ହୋଇପାରିବ । ପ୍ରତିଦାନରେ ହୁଏତ ତାକୁ ତା'ର ପ୍ରାଣବଳୀ ଦେବାକୁ ପଡ଼ିପାରେ କିନ୍ତୁ ସେ ପଶ୍ଚାତ୍‌ପଦ ହେବ ନାହିଁ । ତେଣୁ ରୋସନ୍ନାରା ଶତୃର ମୁକାବିଲା କରିବାକୁ ଯାଇ ଶତୃପକ୍ଷର ଟ୍ୟାଙ୍କ୍ ତଳେ ପ୍ରାଣ ବିସର୍ଜ୍ଜନ କରିଛି ଓ ନିଜକୁ ବିଶ୍ୱମୁକ୍ତି ସଂଗ୍ରାମର ପ୍ରତୀକ ଭାବରେ ସମାଜ ନିକଟରେ ଉପସ୍ଥାପିତ କରିପାରିଛି । କବିଙ୍କ ବର୍ଣ୍ଣନାରେ –

"ବେଗମର କୋଠି ଭାଂଗି ଆଙ୍କିଦିଏ ଆଶାୟୀର ଛବି
ଯାର ପାଦେ ପ୍ରଣିପାତ କରିଯାଏ ବିଶ୍ୱ ମୁକ୍ତିବାଦୀ ।
ପ୍ରତିକ୍ରିୟା ଗାରଦରେ, ଲେଖାଯାଏ ଯା'ର ପ୍ରତିଛବି
ରୋସନ୍ନାରା ସତେ କିବା ନିଜେ ହୁଏ ପ୍ରଳୟର କବି ।" (୭୩)

ଏ ପ୍ରକାର ବୈପ୍ଳବିକ ଚିନ୍ତାଦର୍ଶର ପ୍ରତିଫଳନ କବିଙ୍କର 'ଆକ୍ଷାଂଶ ଦ୍ରାଘିମା' ସଂକଳନରେ ମଧ୍ୟ ପରିଦୃଷ୍ଟ ହୁଏ । 'ନିର୍ଦ୍ଦେଶନାମା', 'ଅଂଧାର', 'ମୌସୁମୀସମ୍ବୋଧନ', 'ନିଜ ପ୍ରତିନିଧିଠାରୁ', 'ସାବରମତୀ' ପ୍ରଭୃତି କବିତା ଏହାର ଦୃଷ୍ଟାନ୍ତ ଅଟେ । ଦଳିତ ମନୁଷ୍ୟଜାତିର ଦୁଃଖ, କଷ୍ଟ, ଯନ୍ତ୍ରଣା କବିଙ୍କୁ ବେଶୀ ପ୍ରଭାବିତ କରିଛି । କୃଷକମାନଙ୍କଠାରୁ ଆରମ୍ଭ କରି ଖଣି ଖାଦାନ୍‌ରେ କାର୍ଯ୍ୟରତ ଶ୍ରମିକମାନଙ୍କ ପର୍ଯ୍ୟନ୍ତ ଯେଉଁମାନଙ୍କର ଶ୍ରମମୂଲ୍ୟ ଅପହୃତ ହୁଏ ପୁଂଜିପତି ଦ୍ୱାରା ସେମାନଂକର ଅସହାୟତା କବିଙ୍କୁ ବେଶୀ ପ୍ରଭାବିତ କରିଛି । ତେଣୁ ଏ ପ୍ରକାର ବୈଷମ୍ୟ ସମାଜ ବ୍ୟବସ୍ଥା ବିରୋଧରେ ଗଣସଂଗ୍ରାମ ହେଉଛି ଏକମାତ୍ର ଉପଯୁକ୍ତ ପନ୍ଥା । ହଳାହଳମୟ ସମାଜ ବ୍ୟବସ୍ଥା ମଧ୍ୟରୁ ଆଗାମୀ ସ୍ୱର୍ଣ୍ଣାଭ ଭବିଷ୍ୟତରୂପୀ ଅମୃତକୁ ସନ୍ଧାନ କରିବା ପାଇଁ କବି ଆଶାପୋଷଣ କରିଛନ୍ତି ।

କବିଙ୍କର ଏ ପ୍ରକାର ଚିନ୍ତାଦର୍ଶ ସଂପର୍କରେ ମତପ୍ରଦାନ କରିବାକୁ ଯାଇ ଅଧ୍ୟାପକ ଦିଲ୍ଲୀପ କୁମାର ସ୍ୱାଇଁ କହନ୍ତି–

"ଅକ୍ଷାଂଶ ଦ୍ରାଘିମାର କବିତାମାନ ଅବଧୂତୀୟ ଦୃଷ୍ଟିକୋଣର ବିକ୍ଷିପ୍ତ ପରିଚୟ ପ୍ରଦାନ କରିପାରିଛି । ପ୍ରଜାପାଟକଙ୍କଠାରୁ ମଜଦୁର୍, ମୂଲିଆ, ଆଦିବାସୀ, ଗିରିଜନଙ୍କଠାରୁ କବିଙ୍କ ପର୍ଯ୍ୟନ୍ତ ସଚେତନତା ସୃଷ୍ଟି କରି ସାମାଜିକ ନ୍ୟାୟ (social justice) ପାଇଁ ପଥ ପ୍ରସ୍ତୁତ କରିପାରିଛି ।" (୭୪)

ପ୍ରଗତିବାଦୀ ଚିନ୍ତାଚେତନାର ସର୍ବୋତ୍କୃଷ୍ଟ କଳାଗତ ସାଫଲ୍ୟ ଅର୍ଜ୍ଜନର ହକ୍‌ଦାର ହେଉଛି କବିଙ୍କର 'ଅବଧୂତ କ୍ରାନ୍ତି' କବିତା ସଂକଳନ । ସଂକଳନଟି ୧୯୯୫

ମସିହାରେ ଆତ୍ମପ୍ରକାଶ କରିଥିଲେ ମଧ୍ୟ କବିତା ଗୁଡ଼ିକ ସତୁରୀ ଦଶକରେ ରଚିତ । ସଂକଳନଟିରେ ବର୍ଣ୍ଣିତ ଅବତରଣିକା କବିଙ୍କୁ ଜଣେ ସାର୍ଥକ ସାମ୍ୟବାଦୀ କବିର ମାନ୍ୟତା ପ୍ରଦାନ କରୁଛି । କବିଙ୍କର ଏହି ସଂକଳନସ୍ଥ କବିତା ଗୁଡ଼ିକରେ ମାଟି ମନସ୍କତା ପରିଲକ୍ଷିତ ହଏ । କବିଙ୍କର ବୈପ୍ଳବିକ ସତ୍ତା ଏଠାରେ ମଳୟ ପବନ ମାଧ୍ୟମରେ ବିପ୍ଳବର ଆବାହନ କରିପାରେ । କୋରାପୁଟ୍‌ର ସରଳ ଆଦିବାସୀ ପ୍ରାଣରେ ମଧ୍ୟ ବିପ୍ଳବର ମନ୍ତ୍ର ଉଚ୍ଚାରଣ କରାଇପାରେ । ଏହି ବିପ୍ଳବର ବଜ୍ର ଗମ୍ଭୀର କଣ୍ଠସ୍ୱର ଶୁଣି ଚିଲିକାର ନୀଳ ଜଳରାଶି ରକ୍ତ ବର୍ଣ୍ଣ ଧାରଣ କରିପାରେ । ଶତସହସ୍ର ବିପ୍ଳବୀ ରାଜଗୁରୁଙ୍କୁ ଜନ୍ମ ଦେଇପାରେ । ଏହା ହିଁ କବି ସଦାଶିବଙ୍କ କବିତାର ଅନନ୍ୟ ବୈଶିଷ୍ଟ୍ୟ ।

କବିଙ୍କର କବିତାର ଅନ୍ୟତମ ବଳିଷ୍ଠ ଦିଗ ହେଉଛି କବିତାର ଆନ୍ତର୍ଜାତୀୟକରଣ ମାଧ୍ୟମରେ ବୈପ୍ଳବିକ ଚିନ୍ତାଦର୍ଶର ପ୍ରଖ୍ୟାପନ । କବିତା କୌଣସି ନିର୍ଦ୍ଦିଷ୍ଟ ସୀମା ମଧ୍ୟରେ ଆବଦ୍ଧ ନୁହେଁ । କବି କବିତାରେ ଯେମିତି ଚିଲିକା, କୋରାପୁଟ୍‌ର କଥା କହିଛନ୍ତି ଠିକ୍ ସେମିତି ଆମେରିକା, ଏସିଆ, ଆଫ୍ରିକାର କଥା ମଧ୍ୟ କହିଛନ୍ତି । କବିଙ୍କର ବୈପ୍ଳବିକ ବାର୍ତ୍ତା କୌଣସି ନିର୍ଦ୍ଦିଷ୍ଟ ସୀମା ମଧ୍ୟରେ ଆବଦ୍ଧ ନ ହୋଇ ସମଗ୍ର ବିଶ୍ୱକୁ ପରିବ୍ୟାପ୍ତ ହୋଇପାରିଛି । କବିଙ୍କ ଭାଷାରେ –

"ସୀମା ପରିସୀମା ନାହିଁ ଏକ ସେଇ ସମଗ୍ର ମେଦିନୀ
ନାହିଁ ଏଠି ଆମେରିକା, ଏସିଆ, ଆଫ୍ରିକା
ଗାନ୍ଧୀ, ମାଓ, କେନେଡ଼ିର ଭିନ୍ନ ଭିନ୍ନ କଥା ।
ଗୋଟିଏ ପୃଥିବୀ ପାଇଁ ରକ୍ତ ମୋର ଲେଖିବ ଭୂମିକା
ନିଗ୍ରୋ, ଚୀନା, ଭାରତୀୟ ଅବା ଭିଏତ୍‌ନାମ୍
ଆକାଶ ପରି ପ୍ରଶାନ୍ତ ଏକ ରଂଗେ ହେବେ ରଂଗାୟିତ
ସେ ପୁରୁଷ ଘୁରି ଘୁରି ଦେଇଯାଏ ଏହି ସୂଚୀପତ୍ର ।" (୭୫)

ସମାଜର ନଗ୍ନ ଅପ୍ରିୟ ସତ୍ୟକୁ ଉଦ୍‌ଘାଟନ କରିବା ଯଦି ପ୍ରଗତିବାଦର ଅନ୍ୟତମ ଲକ୍ଷ୍ୟ ହୁଏ, ତାହାହେଲେ କବି ସଦାଶିବ ଏହି ଚିନ୍ତାଧାରାର ବାହକ । ସମଗ୍ର ପୃଥିବୀର କୃଷକ, ଶ୍ରମିକ ଗୋଷ୍ଠୀ ଶୋଷଣରେ ଆଜି ରକ୍ତାକ୍ତ । ସେମାନଙ୍କର ଗୋଟିଏ ଦୁଃଖ, ତାହା ହେଉଛି ସେମାନେ ଶୋଷିତ । ଏହାର ନିରାକରଣ ମଧ୍ୟ ଗୋଟିଏ । ତାହା ହେଉଛି ବିପ୍ଳବ ।

କବିଙ୍କର ଏ ପ୍ରକାର ବୈପ୍ଳବିକ ଦୃଷ୍ଟିଭଂଗୀ ଚିରସ୍ଥାୟୀ ହୋଇ ପାରିନଥିଲା । କବିଙ୍କର ଦୀର୍ଘବର୍ଷର ନୀରବତା ତାଙ୍କର କାବ୍ୟିକ ସ୍ୱରକୁ ମଳିନ ପକାଇ ଦେଇଥିଲା ।

ଦଶବର୍ଷର ନୀରବତା ଭଂଗ କରି କବି ପୁନଃ ଆତ୍ମପ୍ରକାଶ କରନ୍ତି 'କାଳ ନିରବଧି', 'ନିତ୍ୟ ପଦ୍ମତୋଳା' ଓ 'ବିଗଳିତ କରୁଣା' ସଂକଳନ ମାଧ୍ୟମରେ ।

ପୂର୍ବବର୍ତ୍ତୀ କବିତାରେ ପରିଲକ୍ଷିତ ହେଉଥିବା ବୈପ୍ଲବିକ ଚିନ୍ତାଦର୍ଶକୁ ଏହି ପର୍ଯ୍ୟାୟର କବିତା ଗୁଡ଼ିକରେ ଦେଖିବାକୁ ପାଇବା ନାହିଁ ବରଂ କାବ୍ୟ ସ୍ୱରରେ କିଛି କୋମଳତା, ଏଠାରେ ପରିଲକ୍ଷିତ ହୁଏ । ବିଶେଷକରି ସ୍ୱାଧୀନତା ପରବର୍ତ୍ତୀ ସାମାଜିକ ଅବ୍ୟବସ୍ଥାର ଚିତ୍ର ପ୍ରତିପାଦନ ଓ ଏହା ବିରୋଧରେ ତୀବ୍ର ଅସନ୍ତୋଷର ଚିତ୍ର ଏହାର ମୁଖ୍ୟ ଉପଜୀବ୍ୟ । ଦେଶ ସ୍ୱାଧୀନ ହେବାର ୫୦ ବର୍ଷ ଅତିକ୍ରାନ୍ତ । ତଥାପି ମଧ୍ୟ ସମାଜ ବ୍ୟବସ୍ଥାରେ ସୁଧାର ଅଣାଯାଇପାରିନି । ଗାନ୍ଧିଜୀଙ୍କ ସ୍ୱପ୍ନ ବାସ୍ତବରୂପ ନେବା ଆଗରୁ ବିଲୟ ଭଜିଛି । ଅବିଶ୍ୱାସ, ହିଂସା, ଦ୍ୱେଷରେ ବର୍ତ୍ତମାନର ସମାଜ ଜୀବନ ଭାରାକ୍ରାନ୍ତ । ଏହିପରି ଏକ ରୁଗ୍ଣ ସମୟର ଚିତ୍ରକୁ କବି ବର୍ଣ୍ଣନା କରିଛନ୍ତି –

"କାହିଁକି ଫୁଲ ଗୁଡ଼ିକ ହସି ପାରୁ ନାହାନ୍ତି
ଚିତ୍ରକାରର ଫୁଟନ୍ତ ରଂଗରେ ।
ପତ୍ର ଗୁଡ଼ିକର କଂକାଳରେ
ବାର୍ଦ୍ଧକ୍ୟର ଅପ୍ରସନ୍ନ ସମୟ
ରାସ୍ତାର ଧୂଳିରେ ଚକ୍ରାବର୍ତ୍ତ ତାଣ୍ଡବ ।" (୭୬)

ସମାଜ ବ୍ୟବସ୍ଥା ଆଜି ଏତେ ମାତ୍ରାରେ କଳୁଷିତ ଯେ, ଶିବାଜୀ ଏଠାରେ ସନ୍ତ୍ରାସବାଦୀ, ନାଥୁରାମ୍ ଏଠାରେ ନେତା, ଚୋର ତସ୍କରମାନଙ୍କ ମଥାରେ ଟେକା ହୁଏ ପାଟଛତା । ଏହା ହେଉଛି ଗୋଟିଏ ଅସହାୟ ଦେଶର ଶାସନର ବ୍ୟବସ୍ଥା । ଯେଉଁ ଜାତୀୟପତାକା ସାମ୍ୟ, ମୈତ୍ରୀ ଓ ଏକତାର ମହାମନ୍ତ୍ରରେ ଉଦ୍‌ବୁଦ୍ଧ କରାଇବା ପାଇଁ ଥିଲା ଉଦ୍ଦିଷ୍ଟ, ତାହା ଆଜି ହିଂସା, ଦ୍ୱେଷ, ଧର୍ମାନ୍ଧତାର କଳୁଷ ବାତାବରଣ ଦ୍ୱାରା ନିଜେ କଳୁଷିତ ହୋଇ ନିଜର ରଂଗ ବଦଳାଇ ଦେଇଛି । ତେଣୁ କବି ପ୍ରଶ୍ନ କରନ୍ତି ?

"ପତାକାଟିର ରଂଗ ଏମିତି ବଦଳିଗଲା କିପରି ?
କିଏ ଏମିତି ଧର୍ମାନ୍ଧତାର ରଂଗରେ ରଂଗେଇ ଦେଲା ତାକୁ । (୭୭)

କବିଙ୍କର କବିତାଗୁଡ଼ିକର ଆଲୋଚନାରୁ ଏହା ପ୍ରତୀୟମାନ ହୁଏ ଯେ କବିତାର ବାହ୍ୟ ଆବରଣ ସାମାଜିକ ଅଂଗୀକାରବଦ୍ଧତାକୁ ପ୍ରତିପାଦିତ କରୁଥିଲାବେଳେ, ଅନ୍ତଃରୂପ ସତେଯେପରି ସମାଜର ଅସଂଗତି ବିରୋଧରେ ବିପ୍ଳବ ପାଇଁ ପ୍ରେରଣା ପ୍ରଦାନ କରୁଅଛି । କବି ସଦାଶିବଙ୍କୁ ଅଧ୍ୟୟନ କରିବା ଅର୍ଥ ସାମସମୟିକ ପରିବେଶ, ପରିସ୍ଥିତିର ହୃତ୍ ସ୍ପନ୍ଦନକୁ ମଧ୍ୟ ଅନୁଭବ କରିହେବ । ଭାବ, ଭାଷା, ବର୍ଣ୍ଣନା ବୈଚିତ୍ର୍ୟର ଅପୂର୍ବ କୌଶଳ ତାଙ୍କ କବିତାରେ ପରିଲକ୍ଷିତ ହୋଇଥାଏ । ତତ୍‌କାଳୀନ ସମାଲୋଚକଗଣ

ଯଦି ଏପରି ପ୍ରତିଭାବାନ ସ୍ରଷ୍ଟାଙ୍କୁ ଉଚିତ୍ ମର୍ଯ୍ୟାଦା ପ୍ରଦାନ କରିଥାଆନ୍ତେ ତା' ହେଲେ ଯେଉଁ ଦୃଢ଼ ସଂକଳ୍ପ ନେଇ ଅବଧୂତ ଗୋଷ୍ଠୀ ଗଠିତ ହୋଇଥିଲା ଓ ନବ୍ୟ ପ୍ରଗତିବାଦର ବାର୍ତ୍ତାକୁ ପ୍ରଚାର କରୁଥିଲା ତାହା କକ୍ଷଚ୍ୟୁତ ହୋଇନଥାନ୍ତା । ପରିଶେଷରେ ଏତିକି କୁହାଯାଇପାରେ ଯେ, କବିଙ୍କର କବିତା ଆଜି ମଧ୍ୟ ସେଇ ନବ୍ୟ ପ୍ରଗତିର ବାର୍ତ୍ତାକୁ ପ୍ରଚାର କରୁଅଛି ଓ ତାହା ଯେ' ଯୁଗ ଯୁଗ ପାଇଁ ପଥ ପ୍ରଦର୍ଶନ କରୁଥିବ, ଏହା କହିବା ବୃଥା ହେବନାହିଁ ।

## କବି ପ୍ରସନ୍ନ ପାଟ୍ଟଶାଣୀ

"ମୁଁ ଏକ ଅବଧୂତ
ଦୀର୍ଘ ମୋର ଚାଲିବାର ପଥ
ଆଗାମୀ ସ୍ୱର୍ଣ୍ଣ ସକାଳର ନବ ଇସ୍ତାହାର
ଜନ୍ମ ମୋର କରିବାକୁ ପୂର୍ବକୁ ଲୋହିତ
ଆକାଶର ଚଉହଦୀରେ ସତ୍ୟ ପାଇଁ ଜାଳିବି ମୁଁ
ପଳୟ ମଶାଲ୍ ।"

('ଜନ୍ମ ନେଲି ଏକ ଅବଧୂତ' – 'ଆଭା' - ୨ୟ ବର୍ଷ/ ୬/୭/ସଂଖ୍ୟା)

ଉପରୋକ୍ତ ପଂକ୍ତିରେ ନିଜକୁ ସ୍ୱୟଂ ଅବଧୂତ ଭାବରେ ସମ୍ବୋଧନ କରିଥିବା ସ୍ରଷ୍ଟା, ଯାହାଙ୍କକବିତା ଆଗାମୀ କାଲିର ସ୍ୱର୍ଣ୍ଣାଭ ସକାଳର ନବ ଇସ୍ତାହାର ରଚନା କରେ କେବଳ ସେତିକି ନୁହେଁ ସ୍ରଷ୍ଟା ପୁରୁଷ ଏହି ସତ୍ୟକୁ ସାକାର କରିବା ପାଇଁ ଆକାଶର ଚୌହଦୀରେ ପ୍ରଳୟର ଅନିର୍ବାଣ ଅଗ୍ନିଶିଖା ଜାଳି ଦେବାକୁ ମଧ୍ୟ ତତ୍ପର ହୁଅନ୍ତି ସେ ଅନ୍ୟ କେହି ନୁହଁନ୍ତି, ସେ ଆମର ଚିର ପରିଚିତ କବି ଶ୍ରୀଯୁକ୍ତ ପ୍ରସନ୍ନ ପାଟ୍ଟଶାଣୀ । ଷଷ୍ଠ ଦଶକର ଓଡ଼ିଆ କବିତାରେ ପାଶ୍ଚାତ୍ୟ ଚିନ୍ତାଚେତନାର ଅନୁପ୍ରବେଶ ଏହାକୁ ରୁକ୍ଷ, ଧୂସର କରିଦେଇଥିଲା । ସମାଜର ପ୍ରତିବିମ୍ବ ଅପେକ୍ଷା ବ୍ୟକ୍ତି କୈନ୍ଦ୍ରିକ ଭାବନା ପାଲଟିଥିଲା କବିତାର ମୁଖ୍ୟ ଆତ୍ମିକ ଉଚ୍ଚାରଣ । ସେହିପରି ଏକ ସମୟରେ ସମାଜର ଅଗଣିତ ନିଷ୍ପେଷିତ ବ୍ୟକ୍ତିତ୍ୱଙ୍କର ଅନ୍ତରାତ୍ମାର ବାଣୀକୁ ହୃଦୟରେ ବହନ କରି, ଜନସମାଜ ପାଇଁ ଅଜସ୍ର ଆଶା, ଆକାଂକ୍ଷାର ସମ୍ଭାର ଧରି ସତୁରୀ ଦଶକରୁ କବି ଅଦ୍ୟାବଧି ସାଧନାରତ । କବିଙ୍କ କବିତ୍ୱ ପ୍ରତିଭା ସଂପର୍କରେ ପ୍ରାବନ୍ଧିକ ଡଃ. ବୈଷ୍ଣବ ଚରଣ ସାମଲ ମତବ୍ୟକ୍ତ କରିବାକୁ ଯାଇ କହନ୍ତି –

"କବି ପାଟ୍ଟଶାଣୀଙ୍କର କବିତା ଯଥାର୍ଥରେ ଅଗଣିତ ନିଷ୍ପେଷିତ ଜନତାର ଅନ୍ତରର ପ୍ରତିଧ୍ୱନି । ସାଂପ୍ରତିକ ଯୁଗ ଯନ୍ତ୍ରଣା ମଧ୍ୟରେ ଯେଉଁ ନୈରାଶ୍ୟ ଓ ଶୋଚନୀୟ ବ୍ୟଥା

ଓ ବିଫଳତା ସୃଷ୍ଟି ହୋଇଛି, ସେଇ ଶବ୍ଦହୀନ, ପ୍ରାଣହୀନ ନୀରବ ଯନ୍ତ୍ରଣାର ଧକ୍କା ବଉଦ ଭିତରେ ସେ ଶୁଣିଛନ୍ତି ନୂତନ ଆଶାର ଘୁଙ୍ଗୁର ।"(୭୮)

ନିଜସ୍ୱ କାବ୍ୟକବିତାକୁ ଅଗଣିତ ଜନତାଙ୍କର ଲହୁ ଲୁହରେ ରଂଜିତ କରିଥିବା କବି ପାଟଶାଣୀଙ୍କର ଏତାଦୃଶ ଚିନ୍ତାଧାରାର ପୃଷ୍ଠପଟରେ ଥିଲା ନକ୍ସାଲ୍‌ବାଡ଼ି ଆନ୍ଦୋଳନ, ବଂଗଳାର ବିପ୍ଳବୀ ଯୁବ ସଂପ୍ରଦାୟ, ଆନ୍ଧ୍ରର ଦିଗମ୍ବର ଗୋଷ୍ଠୀ ଏବଂ ସତୁରୀ ଦଶକର ଓଡ଼ିଆ କାବ୍ୟକବିତା କ୍ଷେତ୍ରରେ ଉଲ୍ଲେଖନୀୟ ଅବଦାନ ରଖିଥିବା କେତେକ ବ୍ୟକ୍ତିତ୍ୱମାନଙ୍କ ସହ ବଂଧୁତା । ଏସବୁକୁ ହୁଏତ ଆଲୋଚନା ନକଲେ କବିଙ୍କର କବିତା ସଂପର୍କରେ ଅନୁଶୀଳନ ଅସମାପ୍ତ ମନେହେବ । ପଡ଼ୋଶୀ ବଂଗଳା ରାଷ୍ଟ୍ରର ଏକ ଉପାନ୍ତ ଅଂଚଳରେ ଯେତେବେଳେ ୰କାହ୍ନୁ ସାନ୍ୟାଲ୍ ଓ ୰ଚାରୁ ମଜୁମ୍‌ଦାରଙ୍କ ନେତୃତ୍ୱରେ ନକ୍ସାଲ୍‌ବାଡ଼ି ଆନ୍ଦୋଳନ ଆରମ୍ଭ ହୋଇ ତତ୍‌କାଳୀନ ସମୟରେ ତୀବ୍ର ଆଲୋଡ଼ନ ସୃଷ୍ଟି କରିଥିଲା, ତାହା ମଧ୍ୟ ଓଡ଼ିଶାର ସାହିତ୍ୟିକ ପାଣିପବନକୁ ବେଶ୍ ପ୍ରଭାବିତ କରିଥିଲା । ଫଳସ୍ୱରୂପ ଓଡ଼ିଶାରେ ନକ୍ସାଲ୍ କ୍ରାନ୍ତିର ସଫଳ ନାୟକ ଭାବେ ଆବିର୍ଭାବ ଘଟିଲା ନାଗଭୂଷଣ ପଟ୍ଟନାୟକ, ଡି. ଭୂବନ ମୋହନ ପଟ୍ଟନାୟକ, ଗଣନାଥ ପାତ୍ର, ରବି ଦାସ, ରମେଶ ଅଲ୍ଲୀ ବେସାନ୍ତ ପ୍ରମୁଖଙ୍କର । ଏହି ସ୍ରଷ୍ଟାମାନେ ମୁଖ୍ୟତଃ ସାହିତ୍ୟ ମାଧ୍ୟମରେ ରକ୍ତାକ୍ତ ଶ୍ରେଣୀ ସଂଘର୍ଷକୁ ଆହ୍ୱାନ ଦେବାରେ ପ୍ରମୁଖ ଭୂମିକା ଗ୍ରହଣ କରିଥିଲେ । ଯୁବଗୋଷ୍ଠୀର ଏ ପ୍ରକାର ପ୍ରତିକ୍ରିୟା ସଂପର୍କରେ ତତ୍‌କାଳୀନ ସମୟରେ ସୁରେନ୍ଦ୍ର ମହାନ୍ତି ମତପୋଷଣ କରନ୍ତି ଯେ –

"ଯୁବ ମାନସର ଅସନ୍ତୋଷ ଯୁଗ ଜୀବନର ଯନ୍ତ୍ରଣାକୁ କ୍ରମେ ଦୁର୍ବିସହ କରି ଦେଲାଣି । ରାଜନୈତିକ ହିଂସାକାଣ୍ଡ ଓ ସନ୍ତ୍ରାସବାଦ କ୍ରମେ ଏକ ରାଜନୈତିକ ତତ୍ତ୍ୱରେ ପରିଣତ ହେଲାଣି । ଏହାର ମୁକାବିଲା କରିବା ପାଇଁ ପ୍ରବଳ ଦମନ ନୀତି ଯେତିକି ଅନୁସରଣ କରାଯାଇଛି ତାହାର ବିସ୍ଫୋରଣ ମଧ୍ୟ ସେତିକି ଉତ୍କଟତର ହେବାରେ ଲାଗିଛି । ଏହାର ଅପରନାମ ନକ୍ସାଲପନ୍ଥୀ ।"(୭୯)

ତତ୍‌କାଳୀନ ସମୟରେ ଏ ପ୍ରକାର ବୈପ୍ଳବିକ ଆଲୋଡ଼ନ ସାଙ୍ଗକୁ ସକ୍ରିୟ ହୋଇଉଠିଥିବା ଅବଧୂତ କବିତାର ଧାରା ମଧ୍ୟ କବିଙ୍କୁ ବହୁ ମାତ୍ରାରେ ଅନୁପ୍ରେରିତ କରିଛି । କବି ସଦାଶିବଙ୍କ 'ଆଭା' ପତ୍ରିକା ଓ ନାଟ୍ୟକାର ରତ୍ନାକର ଚଇନିଙ୍କ 'ଶିଖା' ପତ୍ରିକା ମଧ୍ୟ ସେ ସମୟରେ ଖୁବ୍ ନାଁ କମେଇଥାଏ । ଏହି ସମୟରେ କବି ପ୍ରସନ୍ନ ବାଣପୁର କଲେଜରେ ଆଇ.ଏ.ଶ୍ରେଣୀର ଛାତ୍ର । 'ଆଭା' ପ୍ରକାଶିତ ହେବାର କିଛି ମାସ ପରେ ତାଙ୍କ ସଂପାଦନାରେ 'ବେଳା' ପତ୍ରିକା ପ୍ରକାଶ ପାଏ । ଏ ଦୁଇ ପତ୍ରିକାରେ ମୁଖ୍ୟତଃ ବହୁ ପ୍ରଗତିବାଦୀ ଚିନ୍ତାଚେତନା ମୂଳକ ଲେଖା ପ୍ରକାଶ ପାଉଥିବାରୁ

କବିଙ୍କର ଏହି ଚିନ୍ତାଚେତନା ମୂଳରେ ଏ ଦୁଇ ପତ୍ରିକାର ଭୂମିକାକୁ ଆମେ ଅସ୍ୱୀକାର କରିପାରିବା ନାହିଁ । କବି ସଦାଶିବଙ୍କ ସହ କବି ପ୍ରସନ୍ନଙ୍କର ପ୍ରଥମ ସାକ୍ଷାତ ହୁଏ ୧୯୬୮ ମସିହାରେ ସମ୍ବଲପୁରଠାରେ ହୋଇଥିବା ଯୁବଲେଖକ ସମ୍ମେଳନରେ । ଏକ ଲକ୍ଷ୍ୟ ନେଇ ଭିନ୍ନ ରାସ୍ତାରେ ଚାଲୁଥିବା ଦୁଇ କବି ଆତ୍ମା ଏକାକାର ହୁଅନ୍ତି । 'ଆଭା' ଓ 'ବେଳା' ପତ୍ରିକା ଏକ ପରିବାରଭୂକ୍ତ ହୁଏ । କବି ସଦାଶିବ, ନାଟ୍ୟକାର ରତ୍ନାକର ଚଇନିଙ୍କ ସହ ଯୋଗ ଦିଅନ୍ତି - କବି ପ୍ରସନ୍ନ । ସମୟକ୍ରମେ ଏମାନଙ୍କ ସହ ହାତମିଳାନ୍ତି ଗାଳ୍ପିକ ଦେବେନ୍ଦ୍ର ନାଥ ମାନସିଂହ ଓ ନବୀନ ସୁନ୍ଦର ସୁବୁଦ୍ଧି । ଏମାନଙ୍କର ଉଦ୍ୟମରେ ପ୍ରକାଶ ପାଏ 'ଅବଧୂତ ଯୁଗ' । ୰ ପଦ୍ମଶ୍ରୀ ଉପେନ୍ଦ୍ର ମହାରଥୀଙ୍କ କଳିଯୁଗେଶ୍ୱର ଆଶ୍ରମ ପାଲଟିଯାଏ ଏମାନଙ୍କର ସାଧନାଭୂମି । ଏମାନଙ୍କର କର୍ମ ପ୍ରବଣତା ଓ ଅବଧୂତ ଗୋଷ୍ଠୀର ସୃଷ୍ଟି ସଂପର୍କରେ ଆଲୋଚକ ବାଞ୍ଛାନିଧି ଦାସଙ୍କ ମନ୍ତବ୍ୟକୁ ଏଠାରେ ଉଲ୍ଲେଖ କରାଯାଇପାରେ ।

"ସଦାଶିବ ଦାଶ ଏ ଗୋଷ୍ଠୀର ଇଂଜିନ୍ ହେଲେ, ପ୍ରସନ୍ନ ତା'ର ଚାଳିକା ଶକ୍ତି । ସେ ପଂଜର ହେଲେ ପ୍ରସନ୍ନ ତା'ର ପ୍ରାଣବାୟୁ । ଉଭୟଙ୍କ କର୍ମ ପ୍ରବଣତା ଓ ସୃଷ୍ଟିଶୀଳତାକୁ ନେଇ ଅବଧୂତ ଗୋଷ୍ଠୀ ଗଢ଼ି ଉଠିଥିଲା ।" (୮୦)

ଉପରୋକ୍ତ ଆଲୋଚନାରୁ ସ୍ପଷ୍ଟ ହୁଏ ଯେ, କବିଙ୍କର କବିତ୍ୱ ଏପ୍ରକାର ବୈପ୍ଲବିକ ଚିନ୍ତାଦର୍ଶ ଉପରେ ଗଢ଼ି ଉଠିଛି । ଓଡ଼ିଆ କବିତାକୁ ଏକ ନୂତନ ମୋଡ଼ ଦେଇ, ଅଗଣିତ ଜନତାଙ୍କର ଦୁଃଖ, ଯନ୍ତ୍ରଣାକୁ ଅନୁଭବ କରି, ସମାଜର ବୈଷମ୍ୟ ବିରୋଧରେ ସ୍ୱରଉତ୍ତୋଳନ କରିବା ପାଇଁ କବି ତାଙ୍କର କବିତାକୁ ବୈପ୍ଲବିକ ଚେତନାର ଆଗ୍ନେୟସ୍ରୋତରେ ସାମିଲ୍ କରିଦେଇଛନ୍ତି । ନିମ୍ନରେ କବିଙ୍କର କବିତାଗୁଡ଼ିକୁ ଆଲୋଚନା କଲେ ଏଥିରୁ ପ୍ରଗତିବାଦର ଉତାପକୁ ସହଜରେ ବାରି ହୁଏ ।

* "ମୋତେ ରେ ଉଠାଅ
ମଶାଣି ଧୂଆଁ ଜୁଇର ଫୁଲ
ଶବ ମୁଁ ନୁହେଁ ଶକ୍ତ ହାଡ଼
କୋକେଇ ତଳେ ନିଆଁର ରଡ଼ ।" (୮୧)

* "ହେ ସୂର୍ଯ୍ୟ ତୁମେ ଆହୁରି ଜଳ !
ତାତିଉଠୁ ମୋର ଭୋକର ତଳିପା
ମାଟିର ତଳପ ସବୁଜ ମନ
ସବୁକୁ ମତାଇ
ମାତାଲ୍ କରହେ, ଖେଳିବି ମୁଁ ଏଠି ନିଆଁର ଖେଳ ।" (୮୨)

"My present to you would be.
A red lotous
of the wounded heart
And the oppressed mind
that blossoms daily." (83)

(The 'Ava' - Nov - 1976 page - 27, vol - III No - 4)

କବିଙ୍କର ଏହି କବିତାଗୁଡ଼ିକ ଯେତିକି ଉତ୍ତାପଧର୍ମୀ, ସେତିକି ନୂତନ ସମାଜ ଗଠନ ପାଇଁ ବଦ୍ଧପରିକର । ଯେଉଁ ସମାଜରେ ସମାନତା ବିରାଜମାନ କରୁଥିବ, ଯେଉଁଠାରେ କୋଟିକୋଟି ନିରନ୍ନ ଜନତାର କଂକାଳ ସାର ରୂପ ନଥିବ, ନଥିବ ଦୁର୍ନୀତି, ଶିଶୁହତ୍ୟା, ନରବଳି, ବେକାରୀ ଓ ଦରବୃଦ୍ଧି, ପେଟ ବିକଳରେ ମା' ତା'ର ଶିଶୁପୁତ୍ରକୁ ବିକ୍ରୀ କରୁନଥିବ । ସାଂପ୍ରତିକ ସମାଜର ଉକ୍ତ ବ୍ୟବସ୍ଥା ବିରୋଧରେ କବିଙ୍କ ଲେଖନୀ କିପରି ପ୍ରତିବାଦ କରିଛି, ତାହା ନିମ୍ନୋକ୍ତ ପଂକ୍ତିରୁ ପ୍ରତିପନ୍ନ ।

"ପ୍ରଗତି କରିଛେ ଆମେ ଭାରତରେ
ନାରୀ ଧର୍ଷଣରେ, ଅପମିଶ୍ରଣରେ,
ଶିଶୁ ହତ୍ୟା, ନରବଳି, ବେକାରୀ ଓ ଦରବୃଦ୍ଧି ଯେତେ
ସବୁ ଆମ କରାମତି, ସବୁ ଆମ ହାତର ସଫେଇ
ପେଟ ବିକଳରେ ମାଆ ଦେଉଛି ବଢ଼େଇ
କୋଡ଼ ପୋଛା ଶିଶୁଟିକୁ ଧୀରେ ।" (୮୪)

ନିମ୍ନଗାମୀ ସମାଜରେ ସତରେକ'ଣ କବିଙ୍କର ସ୍ୱପ୍ନ ସାର୍ଥକ ହେବ ? ଯେଉଁ ସ୍ୱପ୍ନ ଦିନେ ଦେଖିଥିଲେ କାଳିନ୍ଦୀ ଚରଣ ପାଣିଗ୍ରାହୀ ଆଗାମୀ କବିତାରେ । "କବିତା ଗଢ଼େ ଏକ ବିରାଟ ସମାଜର / ସବୁରି ପାଇଁ ଯହିଁ ବଖୁରିଏ ଘର ।" ଶେଷରେ ପ୍ରତିକ୍ରିୟାଶୀଳ କବିକଣ୍ଠ ଗାନ କରୁଛି -

"ଏ ଗଣତନ୍ତ୍ର ଲୋଡ଼ା ନାହିଁ ।
ଲୋଡ଼ା ନାହିଁ ଏ ଭୋଟ କଡ଼ା
କ୍ଷମତା ପତ୍ରଟି ଦେଉଛ ପୁଂଜିବାଦକୁ ନା ସର୍ବହରାକୁ
ଏ ଲଢ଼େଇ ପୁଂଜିବାଦର ନା ସର୍ବହରାର / ଖଟିଖିଆର ନା ଲୁଟିଖିଆର ।" (୮୫)

କବିଙ୍କର ଏ ପ୍ରକାର ପ୍ରତିକ୍ରିୟାଶୀଳ କାବ୍ୟସ୍ୱର ପ୍ରଗତିବାଦୀ ଚିନ୍ତାଦର୍ଶକୁ ପରିପୁଷ୍ଟ କରିପାରିଛି । ପ୍ରଚଳିତ ଶାସନବ୍ୟବସ୍ଥା ବିରୋଧରେ ପ୍ରତିକ୍ରିୟା ଏଠାରେ ପ୍ରଗତିବାଦର ରୂପ ଲାଭ କରିଛି । ପ୍ରଗତିବାଦୀ ତତ୍ତ୍ୱ ଅନୁଯାୟୀ ଲେଖକର ବିଦ୍ରୋହାତ୍ମକ ମନୋବୃତ୍ତି ସୃଷ୍ଟି ହୁଏ ପ୍ରଚଳିତ ଅଂଧାରୀ ଶାସନ ବ୍ୟବସ୍ଥା ବିରୋଧରେ । ଯେଉଁ ଶାସନ 'ଗଣତନ୍ତ୍ର'

ନାମକୁ ବହନ କରି 'ଜଣତନ୍ତ୍ର'ରେ ରୂପାନ୍ତରିତ ହୋଇଥାଏ । ଏହି କାବ୍ୟସ୍ୱର ତିଳତିଳ ହୋଇ ମରୁଥିବା ଅଗଣିତ ନିଷ୍ପେଷିତ ଜନତାଙ୍କୁ ଏକାଠି କରିବା ପାଇଁ ସଂକଳ୍ପବଦ୍ଧ ହୁଏ । ଶାସନତନ୍ତ୍ର ବିରୋଧୀ ଚିନ୍ତାଧାରା ନିମ୍ନୋକ୍ତ ପଂକ୍ତିରେ କିପରି ରୂପ ଲଭିଛି ତାହା ଦେଖିବାର କଥା ।

"ଏଇମିତି ସରିଯାଉଛି ସମୟ
ପାଖେଇ ଆସୁଛି ନିର୍ବାଚନ
ଗରିବୀ ବଢୁଛି, ଧନୀମାନେ ବି ବଢୁଛନ୍ତି
କିଏ ବଂଚି ରହିଛି ସିଂହାସନ ପାଇଁ ତ
ମୁଠାଏ ଖାଦ୍ୟ ପାଇଁ ମଣିଷର ଜୀବନ ସଂଗ୍ରାମ
କେବେ ସରିଯିବ ନାହିଁ ।" (୮୬)

"ତମ ପ୍ରଚାର ଗଣତନ୍ତ୍ର
ତମ ଶାସନ ଏକଛତ୍ର
ଗଣତନ୍ତ୍ର ନାମେ ଗଣହତ୍ୟାର
କରୁଅଛି ଷଡ଼ଯନ୍ତ୍ର
ତମ ଭାବମୂର୍ତ୍ତି ଶୋଷଣର ମହାମନ୍ତ୍ର ।" (୮୭)

ପ୍ରଗତିବାଦ ପ୍ରାଥମିକ ପର୍ଯ୍ୟାୟରେ ସ୍ୱର ଉତ୍ତୋଳନ କରୁଥିଲା ଅତ୍ୟାଚାରୀ ରାଜତନ୍ତ୍ର ଶାସନର ବିଲୋପ ପାଇଁ। ଅଧୁନା ପ୍ରଗତିବାଦ ସ୍ୱରଉତ୍ତୋଳନ କରୁଛି ଗାଣତନ୍ତ୍ରିକ ଅବ୍ୟବସ୍ଥାକୁ ଦେଖି । ଶୋଷିତ ଜନତାଙ୍କୁ ଏକଜୁଟ୍ କରିବା ଓ ସେମାନଙ୍କର ଅଧିକାର ସଂପର୍କରେ ସଚେତନ କରିବା ବୈପ୍ଳବିକ ସାମ୍ୟବାଦୀ କବିର ଲକ୍ଷ୍ୟ । ପ୍ରଗତିବାଦୀ କବିତାର ସୃଷ୍ଟି ଶ୍ରେଣୀସଂଘର୍ଷ ମଧ୍ୟରୁ ଏବଂ ଏହାର ସମାଧାନ ବିପ୍ଳବରେ ନିହିତ । ଏହି ସୂତ୍ରକୁ ବହନ କରି ପାଢଶାଣୀଙ୍କ କବିତା କିପରି ଗତିଶୀଳ ହୋଇଛି ତାହା ନିମ୍ନରେ ପ୍ରଦତ୍ତ ।

"ରକ୍ତର ଖେଳ ଖେଳିବ
ଦିନେ ମଣିଷ ଛୁଆ
ମଣିଷ ହାତରେ ଜଳିବ
ଦିନେ କ୍ରାନ୍ତିର ନିଆଁ ।'

ଜନସାଧାରଣ ଯେ ପର୍ଯ୍ୟନ୍ତ ସଚେତନ ନ ହୋଇଛନ୍ତି, ସେ ପର୍ଯ୍ୟନ୍ତ ସାମ୍ୟବାଦୀ ସମାଜ ଗଠନ ହୋଇ ପାରିବ ନାହିଁ । ଜନସମାଜକୁ ସଚେତନ କରାଇବା ପ୍ରଗତିବାଦୀ କବିର ମୂଳ ଲକ୍ଷ୍ୟ ହେବା ଉଚିତ୍ । ଏ ପ୍ରକାର ନିଷ୍ଠା, ଏକାଗ୍ରତା ମଧ୍ୟରୁ କବିର ଲେଖନୀ ବିଚ୍ୟୁତ ହେବା ଉଚିତ୍ ନୁହେଁ ।

ବାସ୍ତବିକ୍ ଯିଏ ପ୍ରକୃତ ସ୍ରଷ୍ଟା, ସେ ସମ୍ମାନ ସିଦ୍ଧି ଚାହେଁ ନାହିଁ । ସେ ଚାହେଁ ଜନତାର ଦୁଃଖକୁ ନିଜ ହୃଦୟରେ ଅନୁଭବ କରିବା ସହିତ, କାଗଜ କଲମରେ ସେହି ଦୁଃଖର ପ୍ରତିଛବି ଅଂକନ କରିବା ପାଇଁ । ବର୍ତ୍ତମାନ ପ୍ରଶ୍ନ ଉଠେ ଯେ କବି ଯେଉଁ ସାଧାରଣ ମଣିଷର ଜୀବନର ଚିତ୍ର କବିତାରେ ଅଂକନ କରେ ସେଥିରେ ଭରି ରହିଥାଏ ମାନବିକ ସମ୍ବେଦନା । ଯାହାକୁ ଆମେ ସାମ୍ୟବାଦୀ କବିର ଏକ ଲକ୍ଷଣ ବୋଲି ଗ୍ରହଣ କରିପାରିବା । ଖଟିଖିଆ ମାନଙ୍କର ଦୁଃଖକୁ ନିଜେ ଅନୁଭବ କରି ଏହା ବିରୋଧରେ ପ୍ରତିବାଦ କରିବା ପାଇଁ ସାମ୍ୟବାଦୀ ସ୍ରଷ୍ଟା ଜନତାଙ୍କୁ ନୈତିକ ସମର୍ଥନ ଯୋଗାଇଥାଏ । ଏଥିପାଇଁ ବିପ୍ଳବୀ କବି ସତ୍ତା ଏଇ ସମାଜ ମଧ୍ୟରୁ ବିଭିନ୍ନ ଚରିତ୍ରମାନଙ୍କୁ ସାଉଁଟି ଆଣି; ସେମାନଙ୍କର କାର୍ଯ୍ୟଧାରାକୁ ବିଶ୍ଳେଷଣ କରେ । ସମାଜ ପାଇଁ ଦିଗ୍‌ଦର୍ଶନ ଓ ଶେଷରେ ଏହା ମାଧ୍ୟମରେ ଆହ୍ୱାନ ଦେଇଥାଏ । 'ରକ୍ତପଥ' କବିତାର ଏକ ଅଂଶରୁ ଏହା ପ୍ରମାଣିତ ହୁଏ ।

"ଠିକ୍ ଦିନେ ଘଟିଥିଲା ଭାରତର ବନ୍ଦୀଶାଳେ
କଲିକତା ଲାଲ୍ ବଜାରରେ
ବନ୍ଦିନୀ ନାରୀର ହାତ, ଲୁହା ଛଡ଼ରେ ଆଘାତ
କାରାଗାର ଖଡ଼ି ସବୁ ଯୋନିର ଗର୍ଭଚିରି
ଶୁଣିଥିଲା କରୁଣ ବିକଳ ସଂଗୀତ
ତୋ ସ୍ତନ ମୁକୁଳାଇ ଜଙ୍ଗି ସାହି ନୃଶଂସ ଦାରୋଗା
ଚେଙ୍କି ଥିଲା ସିଗାରେଟ୍ ନିଆଁ ।
କ୍ୟାନ୍‌ସର୍ ଜୀବାଣୁ ଠାରୁ ଭୟଙ୍କର ମଣିଷ ପ୍ରକୃତି
ନାରକୀୟ ବିଭତ୍ସ ପିପାସର ରାତ୍ରୀ ।" (୮୮)

ନକ୍‌ସାଲ୍‌ପନ୍ଥୀ ନିର୍ଯ୍ୟାତିତା ନାରୀଟିର ସଂଗ୍ରାମୀ ମନୋବୃତ୍ତି ଜନସମାଜଙ୍କୁ ପ୍ରେରଣା ଯୋଗାଉଛି । ନାରୀଟିର ବିଭତ୍ସ ଅବସ୍ଥା ଅଗଣିତ ଜନତାଙ୍କର ଚକ୍ଷୁକୁ ଲୋତକାର୍ଦ୍ର କରୁଛି । ଏହି ପ୍ରକାର ଚିତ୍ର ସଚ୍ଚିଦାନନ୍ଦ ରାଉତରାୟଙ୍କର 'ନାଗଭୂଷଣ' 'ରୋସନ୍ନାରା' ସଦାଶିବ ଦାଶଙ୍କର - 'ମୁନାତନ ବିବି', 'ରୋସନ୍ନାରା' ଇତ୍ୟାଦି କବିତାରେ ମଧ୍ୟ ଦେଖିବାକୁ ପାଇବା ।

କବି ପ୍ରସନ୍ନଙ୍କ କବିତା କେବଳ ଯେ ପାରଂପରିକ ରୀତିରେ ବିପ୍ଳବର ମହାମନ୍ତ୍ରକୁ ବହନ କରିଛି ତାହା ନୁହେଁ କବିତା ଭିତରେ ସେ ଦେଖନ୍ତି ସୀମାହୀନ ଅନନ୍ତ ଆକାଶକୁ । ଅବଲୋକନ କରନ୍ତି ଦିଗନ୍ତ ବିସ୍ତାରୀ ସାଗରର ନୀଳ ଜଳରାଶିକୁ । ଗୋପାଏ କାକରରେ ପୂର୍ଣ୍ଣ ସୂର୍ଯ୍ୟର ସତ୍ତାକୁ ଅନୁଭବିଲା ପରି ତାଙ୍କ କବିତାର ଗୋଟିଏ

ଗୋଟିଏ ଅକ୍ଷର ମଧ୍ୟରେ ଅନୁଭବ କରିହୁଏ ବିପ୍ଳବର ତେଜସ୍ୱୀତାକୁ । ବିପ୍ଳବୀ ଚିନ୍ତାଚେତନାଧର୍ମୀ କବିତ୍ୱ ପ୍ରତିଭାର ଔଜ୍ଜଲ୍ୟରେ ଅପହୃତ କରିଦିଅନ୍ତି ସମସ୍ତ ମାନସିକ ଅବସାଦ । ତେଣୁ ତାଙ୍କ କବିତା ଆଜି ପାଲଟି ଯାଇଛି ଜୀବନର ମାର୍ମିକ ଉଚ୍ଚାରଣ । ନିମ୍ନୋକ୍ତ ପଂକ୍ତିରୁ ତାହା ସ୍ପଷ୍ଟ ଅନୁମେୟ ।

"ମାଟିକୁ ଚୁମୁଛି ପତ୍ରର କାରାରେ
ପତ୍ରର କାରାରେ ପବନର ଅପୂର୍ବ ବ୍ୟଂଜନା
ସକାଳ ଓ ସଂଜର ନୀରଜନା
କବିତାର ଭିତରେ
କବିତା ଭିତରେ
ମୁଁ ଦେଖୁଛି ଅସଂଖ୍ୟ ଆକାଶ
କବିତା ଭିତରେ ମୁଁ ଦେଖୁଛି ଅସଂଖ୍ୟ ସମୁଦ୍ର
ଗୋଟାଏ କାକରରେ ପୂର୍ଣ୍ଣ ସୂର୍ଯ୍ୟକୁ ଅନୁଭବ କଲାପରି
ଗୋଟାଏ ଅକ୍ଷର ଭିତରେ ଅନୁଭବ କରୁଛି କବିତାକୁ ।"(୮୯)

ପ୍ରଗତିବାଦୀ କାବ୍ୟଧାରାର ଅନ୍ୟତମ ସଫଳ ଏହି କାବ୍ୟ ନାୟକ କବିତାର ଛତ୍ରେଛତ୍ରେ ଅନୁଭବ କରିଛନ୍ତି କ୍ଷୁଧିତ ମାନବାତ୍ମାର ଜଠରାଗ୍ନିକୁ । ଏହି ଅଗ୍ନିଶିଖା ମଧ୍ୟରୁ ସଂଧାନ ପାଇଛନ୍ତି ବିପ୍ଳବର । ଜ୍ୱାଳାମୟୀ ଲେଖନୀ ମାଧ୍ୟମରେ ଓଡ଼ିଆ ସାହିତ୍ୟ ଆକାଶକୁ ନୂତନ ରଂଗରେରଂଜିତ କରିଦେଇଛନ୍ତି । ପରିଶେଷରେ ପ୍ରସନ୍ନଙ୍କ କବିତା ସଂପର୍କରେ ଏତିକି କୁହାଯାଇପାରେ ଯେ, ତାଙ୍କ ଲେଖନୀ ବିଳାସମୟୀ ପ୍ରାଚୁର୍ଯ୍ୟକୁ ପରିହାରକରି ପାଲଟିଯାଇଛି ପ୍ରଗତିବାଦୀ ଚିନ୍ତାଚେତନାର ମାର୍ମିକ ଉଚ୍ଚାରଣ । ସାମସମୟିକ ଓଡ଼ିଆ କାବ୍ୟଧାରାକୁ ପ୍ରଗତିବାଦର ମନ୍ତ୍ରରେ ଅଭିମନ୍ତ୍ରିତ କରିବା ପାଇଁ ପ୍ରସନ୍ନଙ୍କ କବିତାର ଯେ ଯଥେଷ୍ଟ ଭୂମିକା ରହିଛି ଏହାକୁ ଅସ୍ୱୀକାର କରାଯାଇ ନପାରେ ।

## କବି ବନମାଳୀ ସେନାପତି

୧୯୫୦ ମସିହା ପରବର୍ତ୍ତୀ ପ୍ରଗତିବାଦୀ କାବ୍ୟଧାରାର ଅନ୍ୟତମ ସ୍ମରଣୀୟ ସାଧକ ହେଉଛନ୍ତି କବି ବନମାଳୀ ସେନାପତି । ୧୯୨୮ ମସିହାରେ ବାଲେଶ୍ୱରର ଜଳେଶ୍ୱର ଠାରେ କବି ଜନ୍ମ ଗ୍ରହଣ କରିଥିଲେ । ଦରିଦ୍ର ପରିବାରରେ ଜନ୍ମ ଗ୍ରହଣ କରି ପ୍ରତି ମୁହୂର୍ତ୍ତରେ ଆର୍ଥିକ ଦୂରବସ୍ଥା ଭୋଗୁଥିଲେ ମଧ୍ୟ ଏହା କବିତ୍ୱ ପ୍ରତିଭାର ବିକାଶ କ୍ଷେତ୍ରରେ କେବେହି ପ୍ରତିବଂଧକ ସାଜି ନଥିଲା । ଉତ୍ତରାୟଣୀ ବେଳେ ପର୍ଯ୍ୟନ୍ତ କବି ପ୍ରଗତିବାଦୀ ଅଭିମୁଖ୍ୟକୁ ନେଇ ନୀରବରେ କାବ୍ୟ ସାଧନା କରି ଚାଲନ୍ତି । କିନ୍ତୁ

ଗଣମୁକ୍ତି ଲେଖକ ସଂଗଠନ ହିଁ ଏହି ନୀରବ ପ୍ରାଣକୁ ଚଳଚଞ୍ଚଳ କରିବାରେ ସମର୍ଥ ହୁଏ । ଅଶୀଦଶକର ଶେଷଭାଗ ବେଳକୁ କବି ବାଲିଆପାଳ ଅଞ୍ଚଳରେ ଗାଁ ଗାଁ ବୁଲି ସ୍ୱରଚିତ କବିତା ଆବୃତ୍ତି କରି ଜନସାଧାରଣଙ୍କୁ ସଚେତନ କରାଇବା ସହିତ ନିଜର ସାଂଗଠନିକ ଦକ୍ଷତା ପ୍ରତିପାଦନ କରନ୍ତି । କବିଙ୍କର କାବ୍ୟକୃତି ଆଲୋଚନା କଲେ ତାହା ପ୍ରଗତିବାଦୀ ଆଭିମୁଖ୍ୟକୁ କେତେ ପରିମାଣରେ ବହନ କରିଛି ତାହା ... ପ୍ରତୀୟମାନ ହୋଇଥାଏ ।

କବିଙ୍କର ପ୍ରଥମ କବିତା ସଂକଳନ 'ପ୍ରଭାତନଳିନୀ' ୧୯୫୦ ମସିହାରେ ପ୍ରକାଶ ପାଏ । ପ୍ରଚଳିତ ସମାଜ ବ୍ୟବସ୍ଥା ବିରୋଧରେ ସ୍ୱର ଉତ୍ତୋଳନ କରିବା ପ୍ରଗତି ସାହିତ୍ୟର ଅଂଶବିଶେଷ । କବି ଜନଗଣଙ୍କର ଚିନ୍ତା ଚେତନାର ସାର୍ଥକ ରୂପକାର ହେବା ଉଚିତ୍ । କବିଙ୍କର ଲେଖନୀ ସେଇମାନଙ୍କ ଉଦ୍ଦେଶ୍ୟରେ ସମର୍ପିତ ହେବା ଉଚିତ୍, ଯେଉଁମାନେ ଦେଶର ମଜଦୁର୍ ଜନତା, ଦିନବେଳା ଦୁଇ ମୁଠା ଖାଇବାକୁ ନ'ପାଇ ଅନାହାରରେ ନିରୀହ କଂକାଳସାର ଜୀବନଯାପନ କରନ୍ତି ! କବିଙ୍କ ଭାଷାରେ-

"ତୋହରି ଦେଶର କୋଟି ମଜଦୁର୍ ଅଂଧାରେ ଯାଏ ସଢ଼ି
କଲିକତା ଆଉ ରେଙ୍ଗାମ୍ ମୁଲକେ ଥାଆନ୍ତି କୋରଡ଼ା ବେଢ଼ି
ଶିକ୍ଷା ନାହିଁ କି ଦୀକ୍ଷା ବି ନାହିଁ ପଶୁ ପରି ଦିନ କାଟେ
ପାଏନି ସୁବିଧା ସ୍ୱାଧୀନ ଯୁଗରେ ବସି ଖାଲି ମଥା ପିଟେ ।" (୯୦)

କବିତାଟିରେ ସର୍ବହରା ଖଟିଖିଆର ପ୍ରାଣ ଓ ଆର୍ତ୍ତି ପ୍ରକାଶିତ । ସ୍ୱାଧୀନତା ପରବର୍ତ୍ତୀ ଦୟନୀୟ ଅବସ୍ଥାର ଚିତ୍ର ଏଥିରେ ପ୍ରକାଶିତ । ଯେଉଁ ଦେଶର କୋଟିକୋଟି ଶ୍ରମିକ, ମଜଦୁର୍ ପୋକ ମାଛି ପରି ଖଟିଖଟି ପ୍ରାଣ ବିସର୍ଜନ କରନ୍ତି, ପଶୁପରି ପରାଧୀନର ଜୀବନ ବଞ୍ଚନ୍ତି, ସେ ଦେଶ ସ୍ୱାଧୀନ ନୁହେଁ । ତେଣୁ ଆଗାମୀ ଭବିଷ୍ୟତ କାଳର ସ୍ରଷ୍ଟାମାନଙ୍କୁ କବି ଉପଦେଶ ଦିଅନ୍ତି ସେଇମାନଙ୍କର ଯନ୍ତ୍ରଣା ଜର୍ଜରିତ ସ୍ୱରଲିପିକୁ କବିତାରେ ସ୍ଥାନ ଦେବା ପାଇଁ । ଏକ ଶୋଷଣମୁକ୍ତ ସ୍ୱାଧୀନ ସମାଜ ଗଠନ କରିବା ଉଦ୍ଦେଶ୍ୟରେ କବିଙ୍କର ପ୍ରାରମ୍ଭିକ କାବ୍ୟ ଚେତନା ଋଦ୍ଧିମନ୍ତ ।

କବିଙ୍କର ପ୍ରଗତିବାଦୀ ଚିନ୍ତାଦର୍ଶ ମୂଳରେ ମାର୍କସ୍, ଏଙ୍ଗେଲସ୍‌ଙ୍କ ବିଶ୍ଳେଷଣ ପଦ୍ଧତି ଓ ଲେନିନ୍‌ଙ୍କ ସଂଗ୍ରାମୀ ଜୀବନର ପ୍ରଭାବ ପଡ଼ିଥିବା ଲକ୍ଷ୍ୟ କରାଯାଏ । କାରଣ ଏହି ତତ୍ତ୍ୱ ଯେମିତି ଶ୍ରେଣୀ ବିହୀନ ସମାଜ ଗଠନ ଉପରେ ପ୍ରାଧାନ୍ୟ ଦେଇଛି, କବିଙ୍କର ଅନୁଚିନ୍ତା ମଧ୍ୟ ଏହାକୁ ଆଧାର କରି ପର୍ଯ୍ୟବେସିତ ହୋଇଛି । ଏତଦ୍‌ବ୍ୟତୀତ

ବାସ୍ତବ ଜୀବନର ଅନୁଭୂତି ମଧ୍ୟ କବିଙ୍କର ପ୍ରଗତିଶୀଳ ଲେଖନୀକୁ ବଳବତ୍ତର କରିଛି କହିଲେ ଅତ୍ୟୁକ୍ତି ହେବ ନାହିଁ ।

୧୯୫୩ ମସିହାରେ କବି ସେନାପତିଙ୍କର 'ଜନତାରାଜ୍' ନାମକ ଏକ କବିତା 'ନୂଆ ଦୁନିଆଁ' ରେ ପ୍ରକାଶ ପାଏ । ଶୋଷଣ ଖୋର୍ ଅତ୍ୟାଚାରୀ ଗୋଷ୍ଠୀ ସୁଷମ ସମାଜ ବ୍ୟବସ୍ଥା କ୍ଷେତ୍ରରେ ଯେଉଁ ପ୍ରତିବଂଧକ ସୃଷ୍ଟି କରୁଛନ୍ତି ସେମାନଙ୍କୁ କବି 'ଜନତାରାଜ୍' କବିତା ମାଧ୍ୟମରେ ସଚେତନ କରାଇଦିଅନ୍ତି । କବି କହନ୍ତି –

"ଦିନେ ନା ଦିନେ ଏରଣ ହୋଇବ ଶେଷ
ସେଦିନ ନଥିବ ଉଚ୍ଚ ଅବା ନୀଚ ଲେଶ
ଆଗାମୀ ଦିନର ମୁଁ ଯେଉଁ ଦେଖୁଛି ଛବି
ରକ୍ତ କାଳିରେ ଲେଖୁଛି ଭୋକିଲା କବି ।" (୯୧)

କବି ବନମାଳୀ ପ୍ରଗତି ସାହିତ୍ୟର ଅନ୍ୟତମ ସାର୍ଥକ ସାରଥୀ । ଯାହାଙ୍କର କବିତା ଜନସାଧାରଣଙ୍କୁ ଉଦ୍‌ବୁଦ୍ଧ କରିବା ସଙ୍ଗେସଙ୍ଗେ ଅନ୍ୟାୟ ବିରୋଧରେ ଲଢ଼ିବା ପାଇଁ ସଂଗଠିତ କରାଇପାରେ । ଅଂଧବିଶ୍ୱାସ, ଧର୍ମ ଓ ଈଶ୍ୱରବିଶ୍ୱାସକୁ ପ୍ରଗତି ସାହିତ୍ୟର ପରିପନ୍ଥୀ ବୋଲି ଧରାଯାଏ । ଏସବୁ ବିରୋଧରେ ମଧ୍ୟ କବିଙ୍କ କବିତା ବିଷୋଦ୍‌ଗାର କରିନି । ସମାଜ ଆଉ ସଭ୍ୟତାର ବିକାଶ ପଥରେ ଯେଉଁମାନେ ଜୀବନ ଦେଇ ରକ୍ତ ନିଗାଡ଼ିଛନ୍ତି ଦେଶ ଓ ଜାତିକୁ ଶକ୍ତ କରିଛନ୍ତି କବି ବନମାଳୀ ସେହିମାନଂକ କଥା କହିଛନ୍ତି । କବିଙ୍କର ଏତାଦୃଶ ଚିନ୍ତାଧାରା ସଂପର୍କରେ ପ୍ରାଂବଧିକ ଡଃ ବିଜୟ କୁମାର ଶତପଥୀ ମତପ୍ରଦାନ କରନ୍ତି ଯେ –

"ଏଇ ସବୁ ଭୂମିହୀନ ଓ ସର୍ବହରାଙ୍କ ପାଇଁ ତାଙ୍କ କାବ୍ୟ ସ୍ୱରରେ ସ୍ଥାନ ପାଇଛି ବ୍ୟଥା ଓ ବିଦ୍ରୋହର ଯୁଗପତ୍ ରାଗିଣୀ । ସଂଗ୍ରାମ ଦ୍ୱାରା ହିଁ ଆଗାମୀ କାଲିର ନୂତନ ସମାଜ ବ୍ୟବସ୍ଥା ଜନ୍ମ ନେବ ।" (୯୨)

ଶୋଷଣ ରାଜ୍‌ର କଷଣ ବେଦୀ ଉପରେ କବି ବନମାଳୀ ଲକ୍ଷଲକ୍ଷ ଜନତାଙ୍କର ମନ୍ତ୍ରଦାତା ସାଜିଛନ୍ତି । ଜନସଂଗ୍ରାମର ବାର୍ତ୍ତା ପ୍ରଚାର କରିବାକୁ ଯାଇ କହୁଛନ୍ତି –

"ହେ ଶୋଷିତ ବେକାର୍ ଭିକାରୀ
କୋଟି କୋଟି ନିରନ୍ନ ଓ ମେହେନତି ଲୁହାର ମଣିଷ
ମୁଁ ତୁମକୁ ହୁସିଆରୀ ଦିଏ
ଇଏ ମୋର କାବ୍ୟ ନୁହେଁ
ଅବା ଶସ୍ତା ସିନେମାର ଗୀତ ନାଟ ନୁହେଁ
ନୁହେଁ ଏହା ସୌଖୀନ ମଣିଷ ପାଇଁ ସାହିତ୍ୟ ବିଳାସ

ଇଏ ମୋର ଇସ୍ତାହାର ଦରିଦ୍ର ଓ ଅନାହାର ପାଇଁ

X X X X

ଧନତନ୍ତ୍ର ଜଂଜିର୍‌ରେ ଭଂଗା ତାରେ

ଶକ୍ତ ଏକ ଧର୍ମୀୟ ଉଏଲ୍‌ଡିଂ ।” (୯୩)

ପ୍ରଗତିବାଦୀ କବି ବିଳାସ ସମ୍ଭାର କିମ୍ବା କଳ୍ପନା ଜଗତରେ ବିଭୋର ହୁଏ ନାହିଁ । ପାର୍ଥିବ ସମ୍ଭୋଗ, ପ୍ରାଚୁର୍ଯ୍ୟ ଠାରୁ ନିଜକୁ ଯଥାସମ୍ଭବ ଦୂରେଇ ରଖେ । ତା'ର କଲମରେ ସଦାସର୍ବଦା ଭାଷାର ଉତ୍ତପ୍ତ ଅଗ୍ନି ଉଦ୍‌ଗୀରଣ ହେଉଥାଏ । ସତେଯେପରି ଏହା ଅନ୍ୟାୟ-ଶୋଷଣରୂପୀ ରାକ୍ଷସକୁ ଜାଳି ପୋଡ଼ି ଧ୍ୱଂସ କରିଦେଇପାରିବ । ତା'ର ଲେଖନୀରେ ରୂପାୟିତ ହୁଏ ନିରନ୍ନ ମାନବର ବିକଳ ନୟନରେ ମୁଠିଏ ଭାତ ମାଗିବାର କରୁଣ ଦୃଶ୍ୟ । ସେଇ ଦରଦୀ ଜନତାଙ୍କ ଉଦ୍ଦେଶ୍ୟରେ କବି ବନମାଳୀ ତାଙ୍କର କବିତା ରୂପୀ ଅର୍ଘ୍ୟଥାଳୀକୁ ଅର୍ପଣ କରିଦିଅନ୍ତି । ସେଇ ସାଧାରଣ ଜନତାଙ୍କ ସ୍ୱାର୍ଥ ସପକ୍ଷରେ କାବ୍ୟ ଅଭିଯାନ ଜାରିରଖନ୍ତି । ତାହା ପ୍ରମାଣିତ ହୁଏ ନିମ୍ନୋକ୍ତ ପଂକ୍ତିରୁ ।

“ଶାଗ ଖଡ଼ା ଲୁଣ ପଖାଳ ତୋରାଣି

ଯାହାର ଦି' ଓଳି ଖୋରାକ୍

ତାହା ପାଇଁ ମୋର ଅଭିଯାନ ଆଜି

ତାହା ପାଇଁ ଢାଳେ ଲୋତକ ।” (୯୪)

କବି ବନମାଳୀ ଜୀବନ ଯନ୍ତ୍ରଣାର ସ୍ରଷ୍ଟା, ଯିଏକି କବିତାରେ ଆଂକି ଦେଇପାରନ୍ତି ମଣିଷର ଛବି । ଦୁଃଖ, ଯନ୍ତ୍ରଣା, ଦୁର୍ନୀତି ମଧ୍ୟ ଦେଇ ପ୍ରଗତିର କଥା କହୁଥିବା କବି ବନମାଳୀ ସମୟର କାନ୍‌ଭାସ୍‌ରେ ଆଂକି ଦେଇପାରନ୍ତି ସରଳ ନିରୀହ ଆଦିବାସୀ ଝିଅ ସାଲ୍‌କୀର ଛବି । ଛବିଟି ଜୀବନ୍ୟାସ ପାଏ ସେତିକିବେଳେ ଯେତେବେଳେ ସାଲ୍‌କୀ କଣ୍ଠରେ କବି ସ୍ଲୋଗାନ୍ ଭରିଦିଅନ୍ତି । ସାଲ୍‌କୀ କହେ -

“ଭୂଇଁ ଦିଅ ହଳଦିଅ ଆମେ ସବୁ ବଞ୍ଚିବାକୁ ଚାହୁଁ

ହଳ ଯାର ଜମି ତାର

ଜମିଦାର କେଦାର ଜମି ସବୁ ଛାଡ଼

ସାଲ୍‌କି ଏକ ଆଦିବାସୀ ଝିଅ ସିଏ କହେ ଏକ ନୂଆ କଥା

ସୂର୍ଯ୍ୟଟା ଉପରେ ରହି ବେଦମ୍ ହସୁଛି

ଚକଦାର୍ ଥରୁଅଛି ଶୁଣି ଏ ଆବାଜ୍

ଜମି ଦିଅ ହଳଦିଅ ବଞ୍ଚିବାକୁ ଦିଅ-

ସାଲ୍‌କୀ ଏକ ଆଦିବାସୀ ଝିଅ
ପଟୁଆର ଆଗେ ସ୍ଲୋଗାନ୍ ଦେଉଛି
ସୂର୍ଯ୍ୟଟା ଉପରେ ରହି ବେଦମ୍ ହସୁଛି ।" (୯୫)

ସରଳ ନିରୀହ ଆଦିବାସୀ ଜୀବନଚିତ୍ର ମଧ୍ୟରେ ବିପ୍ଳବର ସ୍ରୋତ ବୁହାଇ ଦେବା କବିଙ୍କ କବିତାରେ ଯେମିତି ଦୃଷ୍ଟିଗୋଚର ହୁଏ କବି ସମରେନ୍ଦ୍ର ନାୟକ, କବି ବିଜୟ ଉପାଧ୍ୟାୟ, କବି ପ୍ରଶାନ୍ତ ମିଶ୍ରଙ୍କ କବିତାରେ ମଧ୍ୟ ଏହି ଚିନ୍ତାଧାରାର ରୂପ ଦେଖାଯାଏ । କବିଙ୍କର ଏକ ସ୍ୱତନ୍ତ୍ର କବିତା ହେଉଛି କବିତା 'ବାଲିଆପାଳ' । ବାଲିଆପାଳକ୍ଷେପଣାସ୍ତ୍ର ଘାଟୀ ପ୍ରତିଷ୍ଠା ବିରୋଧୀ ଜନସଂଗ୍ରାମ ତତ୍‌କାଳୀନ ବାଲେଶ୍ୱର ଅଂଚଳର ପାଣିପାଗକୁ ଦୋହଲାଇ ଦେଇଥିଲା । ଘାଟୀ ପ୍ରତିଷ୍ଠା ବିରୋଧୀ ପ୍ରତିକ୍ରିୟା କବିଙ୍କ କବିତାରେ ବେଶ୍ ପ୍ରଭାବଶାଳୀ ରୂପ ନେଇପାରିଛି । ବାଲିଆପାଳ ଘାଟୀ ପ୍ରତିଷ୍ଠା ସ୍ଥାପନ ତତ୍‌ସନ୍ନିକଟ ଅଂଚଳରେ ବାସ କରୁଥିବା ଲକ୍ଷ ଲକ୍ଷ ଲୋକଙ୍କ ମନରେ ଭୀତି ସଂଚାର କରିଥିଲା । ଭିଟାମାଟିରୁ ଉଚ୍ଛେଦ ହେବାର ଭୟ ସାଙ୍ଗକୁ ତାଳ, ତମାଳ ସୁଶୋଭିତ ଉତ୍ତର ଓଡ଼ିଶାର ସୌନ୍ଦର୍ଯ୍ୟକ୍ଷୟ ସରଳ ନିରୀହ ଗାଉଁଲୀ ମଣିଷମାନଙ୍କ ମନରେ ଆଶଙ୍କା ଭରିଦେଇଥିଲା । ଏହି ପରିପ୍ରେକ୍ଷୀରେ ରଚିତ କବିଙ୍କର ଉଦ୍‌ବୋଧନୀ ସଂଗୀତ 'ବାଲିଆପାଳ' । ଯେଉଁ ସଂଗୀତ ଭୋଗରାଇ ଅଞ୍ଚଳର ଗାଁ ଗାଁରେ ଅନୁରଣିତ ହେଉଥିଲା –

"ଚାଲରେ ଚାଲ୍ ଚାଲରେ ଚାଲ୍, ଚାଲ୍‌ରେ ବାଲିଆପାଳ
ମୁକ୍ତି ସୂର୍ଯ୍ୟ ଯେଉଁଠି ଲାଲ୍
ଭିଟାମାଟି ପାଇଁ ଲଢ଼େଇ ଆମର
ଆମର ପତାକା ଶୋଣିତ ଲାଲ
ଚାଲ୍‌ରେ ଚାଲ୍, ଚାଲ୍‌ରେ ଚାଲ୍ .... ।" (୯୬)

କବିଙ୍କ କଣ୍ଠ ସହିତ ସ୍ୱର ମିଶାଇଥିଲେ ଅନେକ ଦରଦୀଆତ୍ମା । ସୁପ୍ତ ଜାତିର କର୍ଣ୍ଣରେ କବି ଯେପରି ସଂକ୍ରାମକ ମହାମନ୍ତ୍ର ଫୁଙ୍କି ଦେଇଥିଲେ । ମନ୍ତ୍ରଦାତାଙ୍କର ମନ୍ତ୍ରଶୁଣି ବାଲିଆପାଳବାସୀ ପ୍ରତିଜ୍ଞାବଦ୍ଧ ହୋଇଥିଲେ, "ମରିବୁ ପଛକେ ମୁଠାଇ ଧରିବୁ ଜନମ ମାଟି, କରାଇ ଦେବୁନି ବାଲିଆପାଳରେ କ୍ଷେପଣ ଘାଟୀ ।" କବିଙ୍କର ଏହି ସଫଳତା ସଂପର୍କରେ ଆଲୋଚକ ବାଞ୍ଛାନିଧି ଦାସ ମତପ୍ରଦାନ କରନ୍ତି –

"କବି ବନମାଳୀ ଯଥାର୍ଥରେ ପାଲଟିଗଲେ ଉତ୍ତର ଓଡ଼ିଶାର ଚାରଣ କବି । ପ୍ରାଣଥିବାଯାଏ ପ୍ରତିବାଦ କରିଯାଅ ବୋଲି କବି ବନମାଳୀ ଏ କାବ୍ୟ ଗ୍ରନ୍ଥରେ ଉଦ୍‌ବୋଧନ ଦେଇଥିଲେ ଜନତାକୁ । କବିଙ୍କର ଚାରଣ ଧର୍ମୀ କବିତାଗୁଡ଼ିକ ପାଠ କଲେ ସ୍ୱତଃ ମନକୁ ଆସେ ।" (୯୭)

କବିଙ୍କର କବିତା ଗୁଡ଼ିକୁ ଅନୁଧ୍ୟାନ କଲେ ସ୍ପଷ୍ଟ ପ୍ରତିପାଦିତ ହୁଏ ଯେ, ଏସବୁ ପ୍ରଗତିବାଦୀ ଚିନ୍ତାଧାରା କ୍ଷେତ୍ରରେ ଏକଏକ ମାଇଲ୍ ଖୁଣ୍ଟ । ଏପରି ପ୍ରତିଭାବାନ ପ୍ରଗତିବାଦୀ କାବ୍ୟକାରଙ୍କୁ ଓଡ଼ିଆ ସାହିତ୍ୟ ଉଚିତ୍ ମର୍ଯ୍ୟାଦା ପ୍ରଦାନ କରିନାହିଁ । ବହୁ ଘାତ ପ୍ରତିଘାତ, ଦାରିଦ୍ର୍ୟର କଷାଘାତ ମଧ୍ୟରେ ପେଷି ହୋଇଥିଲେ ମଧ୍ୟ କବିଙ୍କର କଲମ ଅବିରତ ବିପ୍ଳବର ମହାମନ୍ତ୍ର ଉଚ୍ଚାରଣ କରୁଥିଲା । ଶାସକ, ସମାଜର ବାଧାବଂଧନ କଦାପି କବିଙ୍କର କଣ୍ଠ ରୋଧ କରିପାରିନଥିଲା । ସ୍ୱାଭିମାନ ଓ ଆତ୍ମବିଶ୍ୱାସର ଅଧିକାରୀ କବି ବନମାଳୀଙ୍କର କବିତା ଏ ଉତ୍ତର ପୀଢ଼ିଙ୍କ ହସ୍ତରେ ମୁକ୍ତିର ମଶାଲ୍ ଧରି ସତ୍ୟ, ନ୍ୟାୟର ପଥକଢ଼ାଇ ନେଉଥିବ, ଏକଥା ନିର୍ବିବାଦରେ ସ୍ୱୀକାର କରାଯାଇପାରେ ।

## କବି ବ୍ରଜେନ୍ଦ୍ରନାଥ ନାଥ ଦତ୍ତ

ସାମସମୟିକ କାଳରେ ପ୍ରଗତିବାଦୀ ଚିନ୍ତାଚେତନାର ଅନ୍ୟତମ ପୃଷ୍ଟପୋଷକ ହେଉଛନ୍ତି କବି ବ୍ରଜେନ୍ଦ୍ରନାଥ ଦତ୍ତ । ୧୯୩୩ ମସିହାରେ ବାଲେଶ୍ୱରର ଜଳେଶ୍ୱର ଟାଉନ୍‌ର ଅନତିଦୂରରେ ଥିବା ନହଞ୍ଜାରା ଗ୍ରାମରେ କବିଙ୍କର ଜନ୍ମ । ପିତା ଦ୍ୱାରକାନାଥ ଦତ୍ତ ଓ ମାତା କୁମୁଦିନୀ ଦେବୀଙ୍କର ସନ୍ତାନ ଥିଲେ କବି ବ୍ରଜେନ୍ଦ୍ର । ଶିକ୍ଷା ସମାପ୍ତି ପରେ କବି ବ୍ରଜେନ୍ଦ୍ର ଶିକ୍ଷକତାକୁ ନିଜ ଜୀବନର ବ୍ରତ ଭାବେ ଗ୍ରହଣ କରିନିଅନ୍ତି । କିଛି ବର୍ଷ ଶିକ୍ଷକତା କରିବା ପରେ ଚାକିରୀରୁ ଇସ୍ତଫା ଦେଇ ରାଜନୀତିରେ ସକ୍ରିୟ ଅଂଶଗ୍ରହଣ କରନ୍ତି । ଏକ ପକ୍ଷରେ ଶିକ୍ଷକ ଜୀବନର ଅଜସ୍ର ଅନୁଭୂତି, ଅପରପକ୍ଷରେ ରାଜନୈତିକ ଜୀବନର ବିସ୍ତୀର୍ଣ୍ଣକ୍ଷେତ୍ର ତାଙ୍କ ସାହିତ୍ୟ-ଜଗତକୁ ଯେ ବିପୁଳ ଭାବରେ ପ୍ରଭାବିତ କରିଛି ଏହାକୁ ଅସ୍ୱୀକାର କରାଯାଇନପାରେ । ସାହିତ୍ୟ ସଂଗଠନ କ୍ଷେତ୍ରରେ ନିଜର କର୍ତ୍ତବ୍ୟନିଷ୍ଠାର ପରିଚୟ ପ୍ରଦାନ କରିବାକୁ ଯାଇ ବ୍ରଜେନ୍ଦ୍ର ଜଳେଶ୍ୱରରେ ଗଠନ କରନ୍ତି 'ଦୀନକୃଷ୍ଣ ସ୍ମୃତି ପରିଷଦ' । ଜୀବନର ଉତ୍ତରଣ ପର୍ଯ୍ୟାୟରେ ପ୍ରଗତିବାଦୀ ଚିନ୍ତାଦର୍ଶ ଦ୍ୱାରା ବେଶ୍ ପ୍ରଭାବିତ ହୁଅନ୍ତି । କବିଙ୍କ ରଚିତ 'ବିନିଦ୍ର ଉର୍ମି', 'ଅସ୍ତ ସୂର୍ଯ୍ୟର ଅଶ୍ୱ', 'ମୌନ ଆରୋହଣ ଓ କ୍ଳାନ୍ତ ଅବରୋହଣ' ସଂକଳନରୁ ତାଙ୍କର କାବ୍ୟିକ ଚିନ୍ତାଦର୍ଶର ପରିଚୟ ଆମେ ପାଇପାରିବା ।

ସାଂପ୍ରତିକ ସମାଜ ବ୍ୟବସ୍ଥାର ଚିତ୍ରଣ ମାଧ୍ୟମରେ କବି ତାଙ୍କର ବୈପ୍ଳବିକ ଚିନ୍ତାଚେତନାକୁ ପରିସ୍ଫୁଟିତ କରାଇଛନ୍ତି । ଅପୂର୍ବ କଳାକୁଶଳତା ମାଧ୍ୟମରେ ବୈପ୍ଳବିକ ଭାବାଦର୍ଶର ପ୍ରଖ୍ୟାପନ କବି ବ୍ରଜେନ୍ଦ୍ରଙ୍କର କଳାଗତ ବୈଶିଷ୍ଟ୍ୟ ଅଟେ । କେବଳ କବି ବ୍ରଜେନ୍ଦ୍ର କାହିଁକି ସତୁରୀ / ଅଶୀ ଦଶକ ସମୟରେ ଯେଉଁ କବିମାନଙ୍କର ସାହିତ୍ୟ କ୍ଷେତ୍ରରେ ଆବିର୍ଭାବ ଘଟିଛି ଓ ତନ୍ମଧ୍ୟରୁ ଯେଉଁମାନେ ପ୍ରଗତିବାଦୀ ଚିନ୍ତାଧାରାକୁ ଗ୍ରହଣ

କରି ନେଇଛନ୍ତି ସେମାନଙ୍କ କବିତାରେ ପ୍ରଗତିବାଦର ଉଗ୍ର ରୂପ ପରିବର୍ତ୍ତେ ଏକ ଶାନ୍ତ, କାନ୍ତ, କମନୀୟ ରୂପ ପ୍ରତିଫଳିତ ହୋଇଥାଏ ।

କବି ବ୍ରଜେନ୍ଦ୍ରଙ୍କ କାବ୍ୟିକ ବୈଶିଷ୍ଟ୍ୟ ସଂପର୍କରେ ମତପ୍ରଦାନ କରିବାକୁଯାଇ ଆଲୋଚକ ବାଞ୍ଛାନିଧି ଦାସ କହନ୍ତି –

"ସମକାଳୀନ ସମାଜକୁ ଚିତ୍ରଣ କଲାବେଳେ କବିଙ୍କର ଦୃଷ୍ଟିଭଂଗୀ କିନ୍ତୁ ଅନ୍ୟ କବିଙ୍କଠାରୁ ନିଆରା । କବିକଳାର ଦୁର୍ଗ ଭିତରେ ଭାବର ସୁନ୍ଦରୀକୁ ଅବରୁଦ୍ଧା କରି ରଖିବାକୁ ଚାହାଁନ୍ତି । କବି ରସ ସୃଷ୍ଟି ଓ କଳାତ୍ମକ ପରିପ୍ରକାଶକୁ ଅଧିକ ଗୁରୁତ୍ୱ ଦିଅନ୍ତି – ଖୁବ୍ କମ୍ ଗୁରୁତ୍ୱ ଦିଅନ୍ତି କବିତାର ବକ୍ତବ୍ୟ ଉପରେ ।" (୯୮)

ସଂକଳନସ୍ଥ କବିତାଗୁଡ଼ିକ ଉପରେ ଦୃଷ୍ଟି ନିକ୍ଷେପ କଲେ ପ୍ରତିପାଦିତ ହୁଏ ଯେ କବିତାଗୁଡ଼ିକର ଅନ୍ତରାତ୍ମା ମାନବ ଜାତିର ସୁଖ ଦୁଃଖ ପାଇଁ ସତେଯେପରି ସମର୍ପିତ । ମାନବ ସଭ୍ୟତାର ବିକାଶ ପଥରେ ପରିଲକ୍ଷିତ ହେଉଥିବା ଯାବତୀୟ ଦ୍ୱନ୍ଦ୍ୱ,ସଂଘାତର ବିଲୋପ ଘଟାଇ ଏକ ସାମ୍ୟବାଦୀ ମାନବ ସମାଜର ପରିକଳ୍ପନା ଉଦ୍ଦେଶ୍ୟରେ କବିତା ଗୁଡ଼ିକ ଅଭିପ୍ରେତ । କବିଙ୍କର ଏହି ଚିନ୍ତାଧାରା ନିମ୍ନୋକ୍ତ ପଂକ୍ତିରେ ପ୍ରତିଫଳିତ ହୋଇଛି ।

"ଏତେ ସବୁ କାରୁକାର୍ଯ୍ୟ
ଉତ୍ସବର ଧୂପଦାନୀ
ସୁବାସ ସତ୍ତ୍ୱେ
ମୁଁ ଖୁଣ୍ଟି ଚାଲିଛି
ଅଚିହ୍ନା ଏଇ ଅଂଧାରରେ
ପୋତି ହୋଇ ପଡ଼ିଥିବା
ମଣିଷର କଣ୍ଠସ୍ୱର
(ହୋଇପାରେ ମହାରଣା ହୋଇପାରେ କୁଲି ଶ୍ରମିକର) (୯୯)

କବିତାର ପଂକ୍ତି ସୂଚାଏ ଦିଏ କୋଣାର୍କର ରମ୍ୟ କାରୁକାର୍ଯ୍ୟ ଓ ବିଳାସ ବ୍ୟସନର ପ୍ରାଚୁର୍ଯ୍ୟ କବିଙ୍କୁ ଆକୃଷ୍ଟ କରୁନାହିଁ । ଏହି ରମ୍ୟ କଳା ମଧ୍ୟରେ ଛପି ରହିଥିବା ଅଗଣିତ ଶ୍ରମିକର ଅକୁହା କଣ୍ଠସ୍ୱରକୁକବି ମର୍ମେମର୍ମେ ଉପଲବଧି କରୁଛନ୍ତି । ଶ୍ରମଜୀବୀ, ଦରିଦ୍ର, ଅବହେଳିତ ମାନଙ୍କର ଦୁଃଖକୁ ହୃଦୟଙ୍ଗମ କରି ସେଥିପ୍ରତି ସମବେଦନା ବ୍ୟକ୍ତ କରିବା ଓ ଏହାର ମୋଚନ କରିବା ପାଇଁ ଯଥାସମ୍ଭବ ବୈପ୍ଳବିକ ପଦକ୍ଷେପ ନେବା ପାଇଁ ଜନସମାଜକୁ ଆହ୍ୱାନ କରିବା ପ୍ରଗତିବାଦର ମୂଳ ଲକ୍ଷ୍ୟ ଅଟେ । କବି ବ୍ରଜେନ୍ଦ୍ର ଜଣେ ସାର୍ଥକ ପ୍ରଗତିବାଦୀ ସ୍ରଷ୍ଟା ଭାବରେ ନିଜ କବିତାରେ ଏହି ଚିନ୍ତାଦର୍ଶକୁ ସ୍ଥାନ ଦେଇଛନ୍ତି । କବିଙ୍କ ପୂର୍ବରୁ ଅନୁରୂପ କାଳଜୟୀ କଣ୍ଠସ୍ୱର

ଆମେ କାବ୍ୟକର୍ମୀ ସଚ୍ଚିଦାନନ୍ଦ ରାଉତରାୟଙ୍କର 'କୋଣାର୍କ' କବିତାରେ ମଧ୍ୟ ଅବଲୋକନ କରିଥାଉ । କବି ରାଉତରାୟ ମଧ୍ୟ ଠିକ୍ ସେଇ ଏକାକଥା କହିବାକୁ ଯାଇ ଲେଖିଛନ୍ତି –

"ତୁମେ ଦେଖିଅଛ ଶିଳାରେ ତା'ର ତ'
 ରମ୍ୟ କଳାର ରୂପ
ମୁଁ ଦେଖିଛି ତହିଁ କୋଟି କଂକାଳ
 ଭଗ୍ନ ବୁକୁର ସ୍ତୁପ ।" (କୋଣାର୍କ)

କବି ସଚ୍ଚିଦାନନ୍ଦଙ୍କ କାଳଜୟୀ ପଂକ୍ତିଟି କବିଙ୍କୁ ଯେପରି ମାନବବାଦୀ ବିପ୍ଳବୀ କବିର ମାନ୍ୟତା ପ୍ରଦାନ କରୁଛି, ଠିକ୍ ସେହିପରି କବି ବ୍ରଜେନ୍ଦ୍ରଙ୍କ କବିତା ମଧ୍ୟ ତାଙ୍କୁ ଏକ ସଚ୍ଚା ମାନବବାଦୀ ବିପ୍ଳବୀ କବିର ମର୍ଯ୍ୟାଦା ପ୍ରଦାନ କରୁଛି । ଏହି କାବ୍ୟସ୍ୱର ଆହୁରି ଅଧିକ ମର୍ମସ୍ପର୍ଶୀ ହୋଇ ପାରିଛି କବିଙ୍କର 'ଜୀବନ' କବିତାରେ । ମଣିଷ ଜୀବନ ପଥରେ ଯାତ୍ରା କରିବା ସମୟରେ ବହୁ ବାଧାବିଘ୍ନକୁ ଅତିକ୍ରମ କରେ । ବାଧାବିଘ୍ନ, ଝଡ଼ଝଂଜା ସାମିତ ସମୟ ପାଇଁ ମଣିଷର ହୃଦୟକୁ ଆଲୋଡ଼ିତ କରେ । ଝଡ଼ ପରେ ଯେମିତି ପୃଥିବୀ ଶାନ୍ତ ପଡ଼େ, ଠିକ୍ ସେମିତି ଦୁଃଖ ପରେ ସୁଖର ଆଗମନ ଘଟିଥାଏ । ତେଣୁ ସାଧାରଣ ମନୁଷ୍ୟ ଏସବୁର ଯଥାଯଥ ମୁକାବିଲା କରି ଜୀବନ ଅତିବାହିତ କରିପାରିଲେ ଜୀବନ ସ୍ୱର୍ଗୀୟ ସୁଷମାରେ ମଣ୍ଡିତ ହୋଇଥାଏ । କବିଙ୍କ ଭାଷାରେ –

"କ'ଣ ପାଇଁ ମୁଁ ମୁଣ୍ଡ ନୋଇଁ ଦେବି
 କାହାରି ପାଦରେ
ଧୀରେ ଧୀରେ ହଜି ଯାଉଛି ବୋଲି
 ଅଂଧ ବଳୟରେ ?
 ନା,
ତମେ ଝଡ଼ ହୋଇ ଭାଂଗିଯାଅ
ମୋର ଡାଳ ପତ୍ର
ବନ୍ୟା ହୋଇ ନଷ୍ଟକର
ମୋର ଫସଲର ପୁତ୍ର
ମୁଁ ଅବିଚଳ
ନାସ୍ତିର ପାହାଡ଼ ।" (୧୦୦)

ସମସ୍ତ ସମସ୍ୟାର ମୁକାବିଲା କରିବାକୁ ହେଲେ ମନୁଷ୍ୟକୁ ଅଟଳ ମହାମେରୁ ପରି ସ୍ଥିର, ସ୍ଥିତପ୍ରଜ୍ଞ, ଦୃଢ଼ ହେବାକୁ ପଡ଼ିବ । ତା' ହେଲେ ସମାଜରେ ପରିଦୃଷ୍ଟ ହେଉଥିବା ସମସ୍ତ ତାରତମ୍ୟର ଅବସାନ ଘଟିବ। କବି ବା ସ୍ରଷ୍ଟା ପୁରୁଷ ଏଇ ସଂସାରର ଜଣେ ମନୁଷ୍ୟ । ତା' ଭିତରେ ରହିଛି ଏକ ସମ୍ବେଦନଶୀଳ ମଣିଷର ଆତ୍ମା । ତେଣୁ ସ୍ରଷ୍ଟା ତା'ର ସୃଷ୍ଟିରେ ମାନବବାଦୀ ଚିନ୍ତାଚେତନାର ପରିପ୍ରକାଶ ଘଟାଇଥାଏ । ସେହିପରି ମାନବବାଦର ବାର୍ତ୍ତା ବହନ କରୁଥିବା ଅନ୍ୟଏକ କବିତା ହେଉଛି 'ଇରାନ୍' । ସମାଜରେ ସାଧାରଣ ମନୁଷ୍ୟର ସ୍ଥିତିକୁ ସୁଦୃଢ଼ କରିବାପାଇଁ ବିଦ୍ରୋହ ହିଁ ଏକମାତ୍ର ପନ୍ଥା । ଏହି ବିଦ୍ରୋହ ଯୋଗୀଠାରୁ ଆରମ୍ଭକରି ଭୋଗୀ ପର୍ଯ୍ୟନ୍ତ ସବୁରି ହୃଦୟକୁ ଉଚ୍ଚାଟିତ କରେ । ପାରଂପରିକ ସଭ୍ୟତାରେ ଅଂଧବିଶ୍ୱାସର କୁହେଳିକା ସୃଷ୍ଟି କରୁଥିବା ଧର୍ମ ଓ ଈଶ୍ୱର ବିଶ୍ୱାସ ଉପରେ କୁଠାରଘାତ କରେ । କବିଙ୍କ ଭାଷାରେ:-

"ବିଦ୍ରୋହ ! ସେ ତ ରୁଦ୍ର ପଳାଶ
ଅଂଧ ଲୋମଶ - ସବୁଜ ବନର ନିଆଁ
ଯୋଗୀ ଭୋଗୀ ଯେତେ ଶିଥିଳ ତନ୍ଦ୍ରା
ନିଖିଳ ନିଦ୍ରା ।
ସବୁରି କଣ୍ଠେସ୍ୱର ଦେଇଦିଏ ଚିଆଁ

x x x

ପୋଡ଼େ ସଂସ୍କୃତି, ଗୀତା ଓ କୋରାନ୍ ଗାଥା
କହିବାର ଯାହା କହିବାକୁ ନହେ
ରାଜ୍ୟରେ ନୁହେଁ ମୁକୁଟରେ ନୁହେଁ
ମାନବିକତାର ବ୍ୟଥା । (୧୦୧)

ସାମ୍ୟବାଦୀ କବିମାନଙ୍କ ପରି ସେ ମଧ୍ୟ ସର୍ବହରାର ଯୁଦ୍ଧବାଦ୍ୟକୁ ଶ୍ରବଣ କରିପାରିଛନ୍ତି । ଏହି ଯୁଦ୍ଧବାଦ୍ୟ ଏପରି ବଜ୍ରନିର୍ଘୋଷ ସ୍ୱର ପ୍ରକଟିତ କରୁଛି ଯେ, ସତେଯେପରି ପୃଥିବୀର ବକ୍ଷ ବିଦାରି ଦେବ । ସର୍ବହରା କେତେ କାଳ ପର୍ଯ୍ୟନ୍ତ ଅନ୍ୟାୟ, ଅତ୍ୟାଚାରକୁ ସହ୍ୟ କରିବ ? କୋଟିଏ ସର୍ବହରାର ପ୍ରାଣବିନିମୟରେ ଗୋଟିଏ ପୁଂଜିପତି ସୌଖୀନ ଜୀବନଯାପନ କରିବାକୁ ସମର୍ଥ ହୁଏ ସତ, କିନ୍ତୁ ସର୍ବହରା ଯେତେବେଳେ ରଣ ପ୍ରାଙ୍ଗଣରେ ବିଦ୍ରୋହ ପାଇଁ ସଜିଲ୍ ହୁଏ ସେତେବେଳେ ସେ ମୃତ୍ୟୁକୁ ମଧ୍ୟ ଭୟ କରେ ନାହିଁ । ସେ ହୁଏ ପରାକ୍ରମଶାଳୀ । ଗୋଟିଏ ସୂର୍ଯ୍ୟ ଉଦିତ ହୋଇ ଯେମିତି ସାରା ସଂସାରକୁ ଆଲୋକିତ କରେ, ଠିକ୍ ସେମିତି ଅଗଣିତ

ସର୍ବହରା ସ୍ଥାନକାଳପାତ୍ର ନିର୍ବିଶେଷରେ ଏକଜୁଟ୍ ହୋଇ ବିପ୍ଳବର ଆବାହନ କଲେ ପୁଂଜିପତିର ଶିବିର ନିମିଷକରେ ଧୂଳିସାତ୍ ହୋଇଯାଇ ପାରିବ । କବି ବ୍ରଜେନ୍ଦ୍ର ତେଣୁ ଦୃଢ଼ ଆଶାପୋଷଣ କରିବାକୁ ଯାଇ କହନ୍ତି –

"ଗୋଟିଏ ଶିବିରେ ସୂର୍ଯ୍ୟ ଉଇଁଲେ କୋଟିଏ ଶିବିର ଜଳେ,
ଗୋଟିଏ ଶିବିରେ ତୂର୍ଯ୍ୟ ବାଜିଲେ କୋଟିଏ ଶିବିର ଟଳେ ।
ସର୍ବହରାର ଡେରାରେ ଚମକ
ବାଜୁଅଛି ଦେଖ
ବିଦାରି ବକ୍ଷ ।" (୧୦୨)

କବିଙ୍କର ଆଲୋଚ୍ୟ କବିତାଟି ଅନନ୍ତ ପଟ୍ଟନାୟକଙ୍କ 'ସର୍ବହରା' କବିତା ସହିତ ତୁଳନୀୟ । 'ସର୍ବହରା'ରେ ମଧ୍ୟ ଅନୁରୂପ ସ୍ୱର ଅନୁରଣିତ, କବି ଅନନ୍ତ ଗାନ କରନ୍ତି –

"ପୁଂଜିତ ରୋଷେ ବଞ୍ଚିତ ଆମେ ଦୀପ୍ତ ଚେତନାବହ୍ନି
ନ ବୁଲିବୁ ଆଉ ଭିକ୍ଷୁକ ବେଶେ ଦୁଃଖ ବେଦନା ସହି
ପ୍ରାପ୍ୟ ଆମର ନେବୁରେ ମୁକର ଆମେ ଶ୍ରମିକର ଜାତି
ଫୁଟାଇବୁ ଆଜି ରକ୍ତ ପ୍ରଭାତ ଚିରି ଅଂଧାର ରାତି ।" (୧୦୩)
(ସର୍ବହରା)

କବିଙ୍କର ଉପରୋକ୍ତ କବିତା ଗୁଡ଼ିକର ଆଲୋଚନାରୁ ଆମେ ଏହି ନିର୍ଯ୍ୟାସରେ ଉପନୀତ ହେବା ଯେ କବି ବ୍ରଜେନ୍ଦ୍ରଙ୍କ କବିତାରେ ମନୁଷ୍ୟକୁ ମୁଖ୍ୟ ଉପାଦାନ ଭାବରେ ଗ୍ରହଣ କରାଯାଇଛି । ଅନ୍ୟ ଭାଷାରେ କହିଲେ ମାନବବାଦର ବନ୍ଦନା ଗାନ ଏହାର ମୁଖ୍ୟସ୍ୱର ପାଲଟିଛି । ଜୀବନର ଉତ୍ତର ପର୍ଯ୍ୟାୟରେ ନବଯୁଗ ସାହିତ୍ୟ ସଂସଦର ଆଭିମୁଖ୍ୟକୁ ଗ୍ରହଣ କରିନେଇଛି କବି ବ୍ରଜେନ୍ଦ୍ରଙ୍କ କବିତା । ଚମତ୍କାର ଶବ୍ଦ ସଂଯୋଜନା ଓ ସରଳ ସାବଲୀଳ ଛନ୍ଦ ମାଧ୍ୟମରେ ପ୍ରଗତିବାଦୀ ଆଭିମୁଖ୍ୟର ବ୍ୟାଖ୍ୟା କବିଙ୍କୁ ଏକ ସ୍ୱତନ୍ତ୍ର ମର୍ଯ୍ୟାଦା ପ୍ରଦାନ କରୁଅଛି ।

## କବି ହୋସେନ୍ ରବି ଗାନ୍ଧୀ

କବି ହୋସେନ୍ ରବି ଗାନ୍ଧୀ ଓଡ଼ିଆ ସାହିତ୍ୟରେ ନବ୍ୟ-କ୍ରାନ୍ତିକାରୀ ଆନ୍ଦୋଳନର ଅନ୍ୟତମ ସଫଳ ନାୟକ । ଯିଏ କି ସାହିତ୍ୟ ସର୍ଜନାକୁ ପେଶା ଭାବେ ଗ୍ରହଣ ନକରି ବିପ୍ଳବର ବାର୍ତ୍ତା ପ୍ରେରଣ ମାଧ୍ୟମରେ ସାମାଜିକ ପରିବର୍ତ୍ତନ ପାଇଁ ସଦାସର୍ବଦା ଲେଖନୀ ଚାଳନା କରିଛନ୍ତି । ୧୯୬୮ ମସିହାରୁ ଅଦ୍ୟାବଧି ଓଡ଼ିଆ ବୈପ୍ଳବିକ କାବ୍ୟିକ ପରଂପରାରେ କବି ଗାନ୍ଧୀ ଏକ ସଫଳ ଉଚ୍ଚାରଣ । ଯାହାଙ୍କର କବିତାର ଅକ୍ଷରମାନ

ବିପ୍ଳବର ତୋଫାନ୍ ସୃଷ୍ଟି କରିବା ସହିତ, ଅଗ୍ନିପରି ଅନ୍ୟାୟ, ଅତ୍ୟାଚାରକୁ ଜାଳି ପୋଡ଼ି ଦେବା ପାଇଁ ସମୁଦ୍ରର ଉତ୍‌ଥିତ ଲହରୀ ପରି କୂଳ ଲଂଘିବାକୁ ସମର୍ଥ ହୋଇଥାଏ । ଯାହାର ପ୍ରମାଣ ବହନ କରେ 'ଅକ୍ଷର' କବିତା ।

"ଅକ୍ଷର କିନ୍ତୁ ବାୟୁ ପରି
ସମର୍ଥ ତୋଫାନ୍ ସୃଷ୍ଟି କରିବାରେ
ଅଗ୍ନିପରି ସମର୍ଥ ଜାଳି ପୋଡ଼ି ଦେବା ପାଇଁ
ସମୁଦ୍ରର ଉତ୍ତାଳ ଲହରୀ ପରି ସମର୍ଥ
କରି ଦେବାକୁ ନିଜର କ୍ଷୁଧିତ ଗର୍ଭରେ ।" (୧୦୪)

ଓଡ଼ିଆ କବିତାର ଏହି କ୍ରାନ୍ତିକାରୀ କାବ୍ୟକର୍ମୀ ୧୯୪୮ ମସିହା ଅପ୍ରେଲ୍ ୨୩ ତାରିଖରେ ବର୍ତ୍ତମାନର ଯାଜପୁର ଜିଲ୍ଲାର କୋରାଇ ଅଞ୍ଚଳର ହଳଦିଗଡ଼ିଆ (ମୁଫଂତିବାଗ୍) ଗ୍ରାମରେ ଜନ୍ମଗ୍ରହଣ କରିଥିଲେ । କବିଙ୍କର ପିତା ୵ହାଜି ମୋଜମ୍ମିଲ୍ ହୁସେନ୍ ଓ ମାତା୵ ସଲମା ଖାତୁନ୍ ଥିଲେ ଅତ୍ୟନ୍ତ ସାହିତ୍ୟାନୁରାଗୀ । କବିଙ୍କର 'ଅଜା' ଥିଲେ ଉର୍ଦ୍ଦୁ ଭାଷାର ଜଣେ ଆଲୋଚକ, ଆଈ ମଧ୍ୟ କବିତା ରଚନା କରନ୍ତି । ଜେଜେଙ୍କର ସାନଭାଇ ମଧ୍ୟ ଥିଲେ ଜଣେ ସୁନାମଧନ୍ୟ କବି । ତେଣୁ ସମଗ୍ର ପରିବାର ଯେତେବେଳେ ସାହିତ୍ୟାନୁରାଗୀ ତେଣୁ ସେମାନଙ୍କ ପ୍ରଭାବ ଦ୍ୱାରା କବି ଯେ ପ୍ରଭାବିତ ଏହାକୁ ଅସ୍ୱୀକାର କରାଯାଇନପାରେ ।

କବି ପ୍ରତିଭାର ଆଦ୍ୟସ୍ଫୁରଣ ଘଟେ ୪ର୍ଥ / ୫ମ ଶ୍ରେଣୀରୁ । ମାତୃଭୂମିର 'କିଶୋର ଫଉଜ', ପ୍ରଜାତନ୍ତ୍ରର 'ମୀନା ବଜାର' ଇତ୍ୟାଦି ବହୁ ଶିଶୁ ସାହିତ୍ୟ ପତ୍ରିକାରେ ତାଙ୍କର କବିତା ପୃଷ୍ଠା ମଣ୍ଡନ କରେ । ସମ୍ବଲପୁର ସହରରେ କଟିଯାଏ କବିଙ୍କର କୈଶୋର । ପାରିବାରିକ ପ୍ରେରଣା କେବଳ ନୁହେଁ, ସାମସମୟିକ ପରିସ୍ଥିତି ଏବଂ ସର୍ବୋପରି କବିଙ୍କର ନେତୃତ୍ୱ ନେବାର ସାଂଗଠନିକ ମନୋବୃତ୍ତି ହିଁ କବିଙ୍କୁ pro-people ସାହିତ୍ୟ ରଚନା କରିବା ପାଇଁ ପ୍ରେରଣା ପ୍ରଦାନ କରିଥିଲା । ଏକାଦଶ ଶ୍ରେଣୀରେ ଅଧ୍ୟୟନ କରୁଥିବା ସମୟରେ କିଶୋର ହୁସେନ୍‌ଙ୍କୁ ବିଭିନ୍ନ ଚାଷୀ ଆନ୍ଦୋଳନରେ ଅଭିଭାଷଣ ପ୍ରଦାନ କରିବାର ସୁଯୋଗ ମିଳେ । ଏହା ବ୍ୟତୀତ ସେହି ସମୟରେ ବରଗଡ଼ର ଜର୍ଜ ହାଇସ୍କୁଲରେ ଦେଖା ଦେଇଥିବା ଛାତ୍ର ଆନ୍ଦୋଳନର ନେତୃତ୍ୱ ମଧ୍ୟ କବି ହୁସେନ୍ ନିଅନ୍ତି । ଏହି ସମୟରେ କବିଙ୍କୁ ମନମୋହନ ମିଶ୍ର, ସଚ୍ଚି ରାଉତରାୟ, ରବି ସିଂ, ବ୍ରଜନାଥ ରଥ ପ୍ରମୁଖ ବହୁ ପ୍ରଗତିବାଦୀ କବିଙ୍କର କବିତା ପ୍ରଭାବିତ କରେ । ସମ୍ବଲପୁରର ଗଂଗାଧର ମେହେର୍ ମହାବିଦ୍ୟାଳୟର ଛାତ୍ରଥିବା ସମୟରେ କବି ଛାତ୍ର ସଂସଦର ସଭାପତି, ଆଇନ୍ ପଢୁଥିଲାବେଳେ ଆଇନ୍ କଲେଜର

ସଭାପତି, ନିଖିଳ ଉତ୍କଳ ଛାତ୍ର ସଂଘର ଉପସଭାପତି, ୧୯୬୯ ରେ ସଂଗଠିତ ହୋଇଥିବା ଛାତ୍ର ଆନ୍ଦୋଳନର ରାଜ୍ୟ ସ୍ତରୀୟ କ୍ରିୟାନୁଷ୍ଠାନ କମିଟିର ଯୁଗ୍ମ ଆବାହକ ଇତ୍ୟାଦି ବହୁ ସାଂଗଠନିକ କାର୍ଯ୍ୟ କଳାପ ସହିତ ସଂପୃକ୍ତ ଥିଲେ । ତେଣୁ ଏ ପ୍ରକାର ଆନ୍ଦୋଳନାତ୍ମକ କାର୍ଯ୍ୟଧାରା ହିଁ କବିଙ୍କର ବୈପ୍ଳବିକ ସୃଷ୍ଟି ସମ୍ଭାରର ବୀଜମନ୍ତ୍ର କହିଲେ ଅତ୍ୟୁକ୍ତି ହେବ ନାହିଁ । ପୂର୍ବରୁ ଯେଉଁ ଯେଉଁ ପ୍ରଗତିବାଦୀ ସ୍ରଷ୍ଟାଙ୍କ ସଂପର୍କରେ ଆଲୋଚନା କରାଯାଇଛି ସମସ୍ତେ ପ୍ରାୟ ସାଂଗଠନିକ କାର୍ଯ୍ୟଧାରା ସହିତ ସଂପୃକ୍ତ ଓ ଏହାକୁ ହିଁ ବୈପ୍ଳବିକ ଚିନ୍ତାଧାରାର ପୃଷ୍ଠଭୂମି ରୂପେ ଗ୍ରହଣ କରାଯାଇଛି । କବିଙ୍କର ନିଜସ୍ୱ ବକ୍ତବ୍ୟ ହିଁ ଏହାକୁ ପ୍ରମାଣ କରେ ।

"ମୋର ରାଜନୈତିକ ଓ ସାହିତ୍ୟିକ ଜୀବନ ଛାତ୍ର, ଚାଷୀ, ଶ୍ରମିକ ଶ୍ରେଣୀର ଆନ୍ଦୋଳନ ଭିତରେ ଜନ୍ମ ନେଇଥିବାରୁ ଏହି ତତ୍ତ୍ୱ ପ୍ରତି ସ୍ୱାଭାବିକ୍ ଭାବେ ମୋର ଆକର୍ଷଣ ରହି ଆସିଛି ଏବଂ ଏବେ ବି ମୋ କବିତାର ଆତ୍ମା ଏହି ଭାବଧାରା ଦ୍ୱାରା ପ୍ରଭାବିତ ।"(୧୦୫)

ବର୍ତ୍ତମାନ୍ କବିଙ୍କ କବିତା କିପରି ବୈପ୍ଳବିକ ଚିନ୍ତାଦର୍ଶକୁ ଗ୍ରହଣ କରି ଅଦ୍ୟାବଧି ପ୍ରବହମାନ ସେ ସଂପର୍କରେ ଆଲୋଚନା କରାଯାଇପାରେ । କବିଙ୍କର ପ୍ରଥମ କବିତା ସଂକଳନ 'ମୁକ୍ତ ପୂର୍ବାଶା'ରେ ସନ୍ନିବେଶିତ କବିତା ଗୁଡ଼ିକ ମୁଖ୍ୟତଃ ବୈପ୍ଳବିକ ଚିନ୍ତାଦର୍ଶ ଉପରେ ଆଧାରିତ । ଛାତ୍ର ଆନ୍ଦୋଳନରେ ନେତୃତ୍ୱ ନେଇଥିବାରୁ କବିଙ୍କୁ କିଛି କାଳ ସମ୍ବଲପୁର ଜେଲ୍‌ରେ କାରାବରଣ କରିବାକୁ ପଡ଼ିଥିଲା । ଏହି ନିର୍ଜ୍ଜନ କାରାଗାରର କାଳ କୋଠରୀ ମଧ୍ୟରୁ ଆଗାମୀ କାଲିର ସୁନେଲୀ ଭବିଷ୍ୟତର ସ୍ୱପ୍ନ ଦେଖିବାକୁ ଯାଇ କବି କାମନା କରିଥିଲେ –

"ଧ୍ୱଂସ ଉପରେ ନୂତନ ସଉଧ ସୃଷ୍ଟି ଲାଗି
ଆଗାମୀ ପାଇଁରେ ଲେଖୁଛି କବିତା
ନୀରବେ ବସି ମୁଁ କବି ।
ଅତ୍ୟାଚାରରେ ଦୀପାୟନ ଏଇ ନିର୍ଜ୍ଜନ କାରାଗାରୁ
ଆବାହନା କରେ, କାଲିର ପାଇଁରେ
ନୂତନ ରକ୍ତ ରବି ।" (୧୦୬)

କବି କିଶୋର ବୟସରୁ ଲିଓଟଲଷ୍ଟୟ, ହୁଇଟ୍‌ମ୍ୟାନ୍, ଗର୍କୀ, ହୋଚିମିନ୍, ମାଓ-ସେ-ତୁଙ୍ଗ୍‌ଙ୍କ କବିତା ଦ୍ୱାରା ଗଭୀରଭାବେ ପ୍ରଭାବିତ ହୋଇଛନ୍ତି ବୋଲି ସ୍ୱୟଂ ଭିକାରୀ ଧଳଙ୍କ ସହିତ ସାକ୍ଷାତକାର ପ୍ରସଂଗରେ ସ୍ୱୀକାର କରନ୍ତି । 'ମାଓ' ବିପ୍ଳବର ସଂଜ୍ଞା ଯେପରି ନିରୂପଣ କରନ୍ତି; କବିଙ୍କ କବିତାରେ ମଧ୍ୟ ତାର ଅନୁରୂପ ପ୍ରଭାବ ପଡ଼ିଥିବାର

ଦେଖିବାକୁ ମିଳେ । 'ମାଓ'ଙ୍କ ମତରେ –

"A revolution is not a dinner party or, writing an essay or painting a picture, or, doing embroidery, it cannot be so refined, so leisurely and gentle, so temperate, kind, courteous, restrained, and magnanimous. A revolution is an insurrection, an act of violence by which one class overthrows another." (107)

କବି ହୁସେନ୍‌ଙ୍କ "ଏକ ସଂଜ୍ଞା : ବିପ୍ଳବ" କବିତାର କାବ୍ୟିକ ବ୍ୟାଖ୍ୟା ମଧ୍ୟ ଠିକ୍ ତା'ର ଅନୁରୂପ ।–

"ବିପ୍ଳବ ନୁହଁଇ ଭୋଜି
ଆକଣ୍ଠ ପିଇବ ଯହିଁ ସୁରାଭରା ପାତ୍ର
ବିପ୍ଳବ ନୁହଁଇ ଏକ ଶିଳ୍ପୀର ତୂଳୀକା
ଆଙ୍କୁଥିବ ବସି ଯହିଁ ମନୋରମ ଚିତ୍ର
ବିପ୍ଳବ ଉତ୍‌ଥାନ ଏକ ନିପୀଡ଼ିତ
ମଣିଷର ପ୍ରାଣେ
ବିପ୍ଳବ ହିଁ ଭରିଥାଏ ସବୁଜିମା
ସର୍ବହରା ମନେ ।
ତେଣୁ ତୁମେ ଯିଏ କହ କ୍ରାନ୍ତି ନୁହେଁ
ଧନୀକର ବିରୁଦ୍ଧରେ ଖଟିଖିଆ
ମଣିଷର ସଶସ୍ତ୍ର ଲଢ଼ାଇ, ।" (୧୦୮)

କବିଙ୍କର କବିତା ଶୋଷଣବାଦୀ ସମାଜ ବ୍ୟବସ୍ଥା ବିରୋଧରେ ସଂଗ୍ରାମର ବାର୍ତ୍ତା ପ୍ରଚାର କରେ । ଅତ୍ୟାଚାର ବିପକ୍ଷରେ ସଂଗ୍ରାମ କରିବାକୁ ହେଲେ ପ୍ରତ୍ୟେକ ଜନତାଙ୍କୁ ସଚେତନ ହେବାକୁ ପଡ଼ିବ । ଶୋଷଣ ବିହୀନ ସମାଜ ଗଠନ ପାଇଁ କବିଙ୍କର ପରିକଳ୍ପନା କିପରି ନିମ୍ନୋକ୍ତ ପଂକ୍ତିରୁ ତାହା ପ୍ରତୀୟମାନ ହୁଏ ।

-"ଜାଗ୍ରତ ହୁଅ ଜାଗ୍ରତ ହୁଅ, ମଣିଷ ଯେତେରେ ମେହେନତକାରୀ
ଅତ୍ୟାଚାରୀର ବକ୍ଷକୁ ଦିଅ ବିଦାରୀ
ତାହାରି ମଧ୍ୟୁ ନୂତନ ଶିଶୁ
ଜନ୍ମ ହୋଇବ ମୁକ୍ତି ମଶାଲ ଧରି ।" (୧୦୯)

'ପ୍ରଗତିବାଦ' କେବଳ ଯେ ଶୋଷଣ ବିରୋଧୀ କାବ୍ୟିକ ସ୍ୱର ଉତ୍ତୋଳନ କରେ ତାହା ନୁହେଁ, ତା' ଦୃଷ୍ଟିରେ ସମଗ୍ର ବିଶ୍ୱ ଗୋଟିଏ । ତେଣୁ ବିଶ୍ୱରେ ପ୍ରତ୍ୟହ ସଂଗଠିତ ହେଉଥିବା ଘଟଣାବଳୀ ମଧ୍ୟ ତା'ର ହୃଦୟରେ ରେଖାପାତ କରେ ।

କବିଙ୍କର ବିଶ୍ୱପ୍ରସାରିତ ଦୃଷ୍ଟିଭଂଗୀର ପ୍ରମାଣ ବହନ କରେ 'ମୁକ୍ତିର ଲାଲ ସୂର୍ଯ୍ୟ' କବିତା । କବିତାଟି କୃଷ୍ଣକାୟମାନଙ୍କ ଉପରେ ଶ୍ୱେତାଙ୍ଗମାନେ କରୁଥିବା ଅତ୍ୟାଚାରର ପୃଷ୍ଠଭୂମି ଉପରେ ଲିପିବଦ୍ଧ । ୧୯୬୮ ମସିହାରେ ରୋଡ଼େସିୟାର ବନ୍ଦୀଶାଳାରେ ରାଣୀ ଏଲିଜାବେଥ୍‌ଙ୍କ ଶତବାରଣ ସତ୍ତ୍ୱେ ଏକ କୃଷ୍ଣକାୟ ବନ୍ଦୀଙ୍କୁ ନିର୍ମମଭାବରେ ହତ୍ୟା କରାଯାଇଥିଲା । ଯାହାକି କବି ହୃଦୟରେ ଗଭୀର ରେଖାପାତ କରିଛି । ମର୍ମାହତ କବି ଆତ୍ମା ଆଶାପୋଷଣ କରିଛି ଯେ ଦିନେ, ନା' ଦିନେ ସମାଜରୁ ବର୍ଣ୍ଣବିଦ୍ୱେଷ ନୀତିର ବିଲୋପ ଘଟିବ । ସମାଜର ହୀନ ଚକ୍ଷୁର ବଳୟ ମଧ୍ୟରୁ କୃଷ୍ଣକାୟମାନେ ମୁକୁଳିଯାଇ ମୁକ୍ତିର ସ୍ୱାଦ ଆସ୍ୱାଦନ କରିପାରିବେ । ଏଠାରେ ଗୋଟିଏ କଥାକୁ ଅସ୍ୱୀକାର କରାଯାଇ ନ ପାରେ ଯେ କବି ସମାଜର ଜାଗ୍ରତ ପ୍ରହରୀ' । ସମାଜ ବ୍ୟବସ୍ଥାର ଯାବତୀୟ ଦୋଷ ତ୍ରୁଟିକୁ ଅନୁଧ୍ୟାନ କରି ଭବିଷ୍ୟଦ୍ରଷ୍ଟା ପରି ସମାଧାନର ସୂତ୍ର ବାହାର କରିଥାଏ କବି । ତେଣୁ ମୁକ୍ତିକାମୀ କବି ଆଶାପୋଶଣ କରନ୍ତି –

"ରଂଗ ଭେଦର, ସାମ୍ରାଜ୍ୟ ସାହୀର
କବର ଖୋଳାଳୀ ତ୍ରୟ
ରକ୍ତ ତୁମର ବ୍ୟର୍ଥ ଯିବନି
ତୁମ ପଥେ ଥିବ ବିଶ୍ୱର ସଦାଳୟ ।
ତୁମରି ମହାବେଦୀରୁ ବାଜୁରେ
ମୁକ୍ତିର ମହାତୁର୍ଯ୍ୟ
ତୁମରି ମରଣ ବେଦୀରୁ ଉଁଉଁରେ
ମୁକ୍ତିର ଲାଲ ସୂର୍ଯ୍ୟ ।" (୧୧୦)

ସାମ୍ୟବାଦର ମୂଳଭିତ୍ତି ସର୍ବହରା ଓ ଶୋଷକ ଗୋଷ୍ଠୀ ମଧ୍ୟରେ ଆବଦ୍ଧ । ଏଇ ସର୍ବହରା (ଶ୍ରମିକ, କୃଷକ, ଦିନ ମଜୁରିଆ) ର ମରମ କଥାକୁ ପ୍ରଗତିବାଦୀ କବିଟିଏ ଯେମିତି ଅନୁଭବ କରେ ତାକୁ ଭାଷାରେ ମଧ୍ୟ ସେହିପରି ପ୍ରକାଶ କରିବା ଉଚିତ୍ । ପ୍ରଗତିବାଦୀ କବିତାର ଭାଷା ଓ ଭାବ ଗଣାଭିମୁଖୀ ହେବା ଏକାନ୍ତ ଆବଶ୍ୟକ । ତେଣୁ କବି ହୁସେନ୍ ରବି ଗାନ୍ଧୀ ସାମସମୟିକ ସ୍ରଷ୍ଟାମାନଙ୍କର ଚିରାଚରିତ ଶୈଳୀ ନିକଟରୁ ଦୂରେଇ ଯାଇ ଏକ ନୂତନ ପରଂପରା ସୃଷ୍ଟି କରନ୍ତି । ପ୍ରଗତିବାଦୀ ସାହିତ୍ୟକୁ pro-people (ଜନସାଧାରଣଙ୍କ ସପକ୍ଷରେ ରଚିତ ସାହିତ୍ୟ)ର ଆଖ୍ୟା ପ୍ରଦାନ କରାଯାଏ । ତେଣୁ କବି ହୁସେନ୍ ଜଣେ ଯଥାର୍ଥ ପ୍ରଗତିବାଦୀ ସ୍ରଷ୍ଟା ଭାବରେ ଏହାକୁ ଅକ୍ଷରେ ଅକ୍ଷରେ ପାଳନ କରିଛନ୍ତି । ତାଙ୍କ ରଚିତ 'ଲୋକ ଗୀତ' ମାଧ୍ୟମରେ ପ୍ରତ୍ୟେକ ମଣିଷର ପାଖରେ ପହଞ୍ଚିବାକୁ ଚେଷ୍ଟା କରିଛନ୍ତି । ସେମାନଙ୍କୁ ସମକାଳୀନ ପରିସ୍ଥିତି

ସଂପର୍କରେ ସଚେତନ କରାଇବା ପାଇଁ କବି ହୋଇଛନ୍ତି ପ୍ରତିଶ୍ରୁତିବଦ୍ଧ । କବିଟିଏ ତା'ର ସୃଷ୍ଟି ସର୍ଜନା କରିଦେଲେ ସବୁକିଛି ସମାପ୍ତ ହୋଇଯାଏ ନାହିଁ । ସେହି କବି ପରମ ଭାଗ୍ୟବାନ ଯାହାର କାବ୍ୟ କବିତାକୁ ଜନସାଧାରଣ ହୃଦୟର ସହିତ ଗ୍ରହଣ କରନ୍ତି, କାର୍ଯ୍ୟରେ ଲଗାନ୍ତି ଏବଂ ସେଥିପାଇଁ କବିଟିଏ ନିଜେ ମଧ୍ୟ ସେତିକି ପ୍ରୟାସ କରିଥାଏ । ଏଦୃଷ୍ଟିରୁ କବି ହୁସେନ୍‌ଙ୍କର 'ଲୋକଗୀତ' ଏହି ଚିନ୍ତାଧାରାକୁ ବହନ କରି ଆଜି ମଧ୍ୟ ଏକ ସ୍ୱାତନ୍ତ୍ର୍ୟ ଦାବୀ କରୁଅଛି । ଏ ସଂପର୍କରେ କବିଙ୍କର ନିଜସ୍ୱ ମତାମତକୁ ଏଠାରେ ଉପସ୍ଥାପିତ କଲେ- କବିଙ୍କର ଗଣାଭିମୁଖୀ ଚିନ୍ତାଧାରା ସଂପର୍କରେ ଯଥେଷ୍ଟ ପ୍ରମାଣ ମିଳିପାରିବ । କବିଙ୍କ ଭାଷାରେ –

"ସେମାନେ ଗଣର ମନ- ବେଦନାକୁ, ସେମାନଙ୍କର ନିତି ଦିନିଆ ଭାଷାକୁ, ହସ କାନ୍ଦକୁ ପଛରେ ପକାଇ, ନିଜ ନିଜର ସୁଖ, ଦୁଃଖ, ପ୍ରେମ, ବିରହ ବା ମିଳନକୁ ପ୍ରାଧାନ୍ୟ ଦେଇ ଏପରି ଏକ ଭାଷା ପ୍ରସ୍ତୁତ କରୁଛନ୍ତି, ଯାହା ପାଶ୍ଚାତ୍ୟ ଦର୍ଶନରେ ଚିନ୍ତା କରାଯାଉଛି । ପାଶ୍ଚାତ୍ୟ ଉପମା ଓ ଛନ୍ଦରେ ଲେଖାଯାଉଛି । କିନ୍ତୁ ରହିଛି ଓଡ଼ିଆ ଅକ୍ଷରରେ ଏକ କିମ୍ଭୁତ କିମାକାର ଶବ୍‌ଦର ତା'ର ବାଡ଼ ଘେରା କ୍ୟାଂପ୍ ଜେଲ୍‌ରେ । ତେଣୁ ତାହା ପାଠକ ମହଲରେ ଆଦୃତ ହୋଇପାରୁନି, ବିକ୍ରୟ ହେବା ଦୂରେ ଥାଉ ।"(୧୧୧)

ସାଧାରଣ ଜନତାର ବୋଧଗମ୍ୟ ହେବା ଭଳି ଭାଷା ପ୍ରୟୋଗ କରି ପ୍ରଗତିବାଦର ସରଳ ସ୍ୱାଚ୍ଛନ୍ଦ୍ୟ ରୂପକୁ କବି କିପରି ଚିତ୍ରିତ କରିଛନ୍ତି ତାହା "ପାରି ହୋଇ ଯା'ରେ ତପତ ନଈ" ଗୀତରୁ ଲକ୍ଷ୍ୟ କରାଯାଇପାରେ ।

"ଏ ଯେଉଁ ଚେମେଡ଼ା ଲୋକ ବସିଛି ନାଁ
ଯା' ପେଟରେ ତୁହି ମାରିକି ନାତ
ଯା' ଶାଗ ତଳାରେ ଗୋରୁ ପୂରାଇଲୁ
ଛଡ଼ାଇ ନେଲୁ ଯା' ତୁଣ୍ଡରୁ ଭାତ ।
ଯା ଛୁଆ ଭାରିଯା ସରଗ ଦୁଆରେ
ରହିଛନ୍ତି ତୋର ପଥ ଅନାଇ
ଯା' ଢିଅରେ ଏବେ ଦୁବ ଉଠିବଣି
ବାରେ ଦେଖିଆ'ରେ ମୁହଁ ବୁଲାଇ
ସେ କହୁଛି ଆଜି ବାଟ ଛାଡ଼ିବନି
ଗଲେ ପଛେ ତା'ର ଜୀବନ ଯାଉ
ଜୀବନ ଗଲେ ତ' କିଛି ଯାଏନିରେ
ମହତ ହେଲେ ତା' ଜଗତେ ରହୁ ।" (୧୧୨)

ସହଜ, ସରଳ ଭାଷାର ପ୍ରୟୋଗ କରି କବି ବୈପ୍ଳବାତ୍ମକ ଚିନ୍ତାଧାରାକୁ ରୂପାୟିତ କରିଛନ୍ତି । ବିଦ୍ରୋହର ବଜ୍ର ଗମ୍ଭୀର ଧ୍ୱନି ବ୍ୟତୀତ ସରଳ ପ୍ରକାଶଭଂଗୀ କବିତାଟିକୁ ଏକ ସ୍ୱତନ୍ତ୍ର ମର୍ଯ୍ୟାଦା ପ୍ରଦାନ କରୁଛି । "ଜଗନ୍ନାଥ ହୋ ! ସବୁ ମାଗୁଅଛି ତୋତେ" କବିତାଟିରେ ମଧ୍ୟ ଅନୁରୂପ ବର୍ଣ୍ଣନା ଦେଖାଯାଏ । କବିଙ୍କ ଭାଷାରେ -

"ଖଟି ଖଟି ପ୍ରଭୁ ନୟାନ୍ତ ହୋଇକି.
ପେଟ ତ' ପୂରୁ ନଥିଲା,
ଯାହା ଅରଜିଲି ସାଉକାର ସବୁ
ଖଳାରୁ ତ' ବୋହି ନେଲା ।
ପର ଜମି ଥିଲା, ମୂଲିଆ ହୋଇ ମୁଁ
କଷଣ ଦୂଷଣ ସହି
ଯାହା ଫଳାଇଲି, କାଳ କାଳ ହେଲା
ମୋର ତ ହୋଇଲା ନାହିଁ ।" (୧୧୩)

କବିଙ୍କର 'ଲୋକ ଗୀତ' ପର୍ଯ୍ୟାୟର ସଂଗୀତ ସାଧାରଣ ଜନତାଙ୍କୁ ନିଜର ସ୍ୱାଧୀକାର ସଂପର୍କରେ ସଚେତନ କରାଇବାକୁ ଉଦ୍ଦିଷ୍ଟ । ପ୍ରଥମ ସଂକଳନରେ କବି ଜଣେ ସାମ୍ୟବାଦୀ ସ୍ରଷ୍ଟା ଭାବରେ ନିଜସ୍ୱ ଅଭିବ୍ୟକ୍ତିକୁ ରୂପ ପ୍ରଦାନ କରିଛନ୍ତି । ଦ୍ୱିତୀୟ ସଂକଳନରେ ଏକ ଭିନ୍ନ ଶୈଳୀ ମାଧ୍ୟମରେ ଅଭିମତ ଉପସ୍ଥାପନ କଲାବେଳେ ତୃତୀୟ ସଂକଳନ 'ସିଂହାସନ ଭାଂଗିବାର କାର୍ଯ୍ୟକ୍ରମ'ରେ କବି ଐତିହାସିକ ଚିନ୍ତାଧାରାର ଆଶ୍ରୟ ନେଇଛନ୍ତି । ନିମ୍ନୋକ୍ତ ପଂକ୍ତିରୁ ଏହା ପ୍ରତିପାଦିତ ହୁଏ ।

"ପଳାୟନ କର, କ୍ଷତି ନାହିଁ କିନ୍ତୁ ସେହି ପଳାୟନ
ଆଗାମୀ କାଲିର ସଂଗ୍ରାମ ପାଇଁ ଶକ୍ତି ସଂଗ୍ରହ ଉଦ୍ଦେଶ୍ୟରେ
ହେଉ, ଆସନ୍ତା କାଲିର ଲଢୁଆ ସେନା ନିର୍ମାଣ କରିବା ପାଇଁ ହେଉ ।

x x x x x

ଦେଖ ଚଉଦଶ ବର୍ଷ ପୂର୍ବେ ମକ୍‌କାଠାରୁ ଯେଉଁ ଲୋକଟି
ପଳାୟନ କରିଥିଲା, ଠିକ୍ ଦଶମ ବର୍ଷେ ହେଲା ସିଏ
ମକ୍‌କାର ବିଜୟୀ ।"(୧୧୪)

କବିଙ୍କର ପ୍ରଥମ ସଂକଳନ 'ମୁକ୍ତ ପୂର୍ବାଶା' ଯଦି ସାମ୍ୟବାଦୀ ଚିନ୍ତାଚେତନାର ପ୍ରାଥମିକ ପର୍ଯ୍ୟାୟ ହୁଏ, 'ସିଂହାସନ ଭାଂଗିବାର କାର୍ଯ୍ୟକ୍ରମ', ସେଇ ଚିନ୍ତାଧାରାର ଏକ କ୍ରମପରିଣତ ଅଭିବ୍ୟକ୍ତି । ପରବର୍ତ୍ତୀ ସଂକଳନ 'ନିଅଁଟ ରାତିର ସ୍ୱପନ୍' କବିଙ୍କର ସାମ୍ୟବାଦୀ ଚିନ୍ତାଚେତନାର ଅନ୍ୟତମ ସଫଳ ପ୍ରୟାସ । 'ନିଅଁଟ ରାତିର ସ୍ୱପନ'ରେ

ସାମସମୟିକ ପରିସ୍ଥିତି ଏବଂ ତା'ର ସଠିକ୍ ନିରାକରଣ ବଳରେ ସମାଜରେ କିପରି ପ୍ରଗତିର ସ୍ରୋତ ଆନୟନ କରାଯାଇପାରିବ ସେଥିପାଇଁ କବି ଚେଷ୍ଟିତ । ଯେମିତି କବି ସାଂପ୍ରତିକ କାଳର ରାଜନୈତିକ ନେତୃବୃନ୍ଦଙ୍କ ଗତିବିଧିକୁ ନେଇ 'କୁଆ' କବିତାଟି ରଚନା କରିଛନ୍ତି । କବିଙ୍କ ଭାଷାରେ -

"ଏମନ୍ତ କୁଆଃ ଯଦି ନ ଦେଖିଛ,
ନିର୍ବାଚନ ମଞ୍ଚରେ ମଧୁର ବଚନ ଓ
ସ୍ୱପ୍ନିଳ ଆସନ୍ତାକାଲିର ପ୍ରତିଶ୍ରୁତି
ଦେଇ ଚାଲିଥିବା, ଡାକବାଜି ଯନ୍ତ୍ରରେ କଂପମାନ କରି
ଭାଷଣ ଦେଉଥିବା,
ବେଳେ ବେଳେ ଗୀତ ଗାଉଥିବା
ମଣିଷକୁ ଦେଖ, ସତରେ ଚମତ୍କାର
ଅତ୍ୟନ୍ତ ଚମତ୍କାର । ଚମତ୍କାରୀ କୁଆ ।" (୧୧୫)

ସ୍ୱାଧୀନତା ପରବର୍ତ୍ତୀକାଳୀନ ଭାରତବର୍ଷର ନିଛକ ପ୍ରତିଛବି ଉପରୋକ୍ତ କବିତାଂଶରୁ ପରିଲକ୍ଷିତ ହୁଏ । ବ୍ରିଟିଶ୍ ମାନଙ୍କର ସ୍ୱେଚ୍ଛାଚାରୀ ଶାସନରୁ ଭାରତବର୍ଷକୁ ସ୍ୱାଧୀନତା ଆନ୍ଦୋଳନ ହିଁ ମୁକ୍ତି ପ୍ରଦାନ କଲା । ଭଗତ୍ ସିଂହଙ୍କ ଠାରୁ ଆରମ୍ଭ କରି ବାଜିରାଉତଙ୍କ ପର୍ଯ୍ୟନ୍ତ ଅନେକ ଆନ୍ଦୋଳନକାରୀ ଶହୀଦ୍ ହେଲେ । ପରାଧୀନ ଭାରତ ବର୍ଷର ସାଧାରଣ ଜନତା ସେଦିନ ସ୍ୱପ୍ନ ଦେଖୁଥିଲେ ଏକ ସୁନ୍ଦର ଭବିଷ୍ୟତର । ଗାଣତନ୍ତ୍ରିକ ପରଂପରା ଅନୁଯାୟୀ ଭାରତୀୟମାନେ ନିର୍ବାଚିତ କଲେ ଲୋକ ପ୍ରତିନିଧି । ଯେଉଁ ପ୍ରତିନିଧିମାନେ ନିର୍ବାଚିତ ହୋଇ ଶାସନ ଗାଦିରେ ବସିଲେ, ଆଶା କରାଗଲା ସେମାନେ ସାଧାରଣ ଜନତାଙ୍କର ନିକଟତର ହେବେ । ସାଧାରଣ ମଣିଷର ଭାଗ୍ୟ ବଦଳିବ । ଭୟ, ଦାରିଦ୍ର୍ୟ ଓ ଦୁର୍ନୀତିର ଅବସାନ ଘଟିବ । ରହିବ ଶାନ୍ତି ଓ ସୁଖ । କିନ୍ତୁ ଏସବୁ ପରିବର୍ତ୍ତେ ବର୍ତ୍ତମାନ ସମାଜ ବ୍ୟଭିଚାର ଦ୍ୱାରା ହେଲା କଳୁଷିତ । ଶାସକମାନେ ହେଲେ ହୀନ ଚରିତ୍ରର ମନୁଷ୍ୟ । ଏମାନେ କେବଳ ନିର୍ବାଚନ ସମୟ ଆସିଲେ ମଧୁର ବଚନ କହନ୍ତି । ଆସନ୍ତାକାଲି ପାଇଁ ଅଜସ୍ର ସ୍ୱପ୍ନିଳ ଆଶା ଭରି ଦିଅନ୍ତି । ଶାସକ ନେତୃବୃନ୍ଦଙ୍କର ଏ ପ୍ରକାର ମନୋବୃତ୍ତିକୁ କବି କୁଆ ପ୍ରତୀକ ମାଧ୍ୟମରେ ଭିନ୍ନ ଢଂଗରେ ସମାଲୋଚନା କରିଛନ୍ତି । ଅନ୍ୟ ଏକ କବିତା 'ମାଂସ'ରେ ମଧ୍ୟ କବି ସାଂପ୍ରତିକ ସମାଜରେ ଜନସାଧାରଣ କିପରି ନିଷ୍ପେଷିତ, ପ୍ରତିବାଦହୀନ ସେ ସଂପର୍କରେ ବର୍ଣ୍ଣନା କରିଛନ୍ତି । ଶାସକ ଗୋଷ୍ଠୀଙ୍କୁ କଂସେଇ ଓ ଅସହାୟ ଜନତାଙ୍କୁ ନିରୀହ ପ୍ରାଣୀ ସହିତ ତୁଳନା କରାଯାଇଛି । କଂସେଇର ହୃଦୟରେ ଯେପରି ଦୟା, ମାୟା ନଥାଏ,

ଠିକ୍ ସେପରି ସମାଜପତିର ହୃଦୟରେ ମଧ୍ୟ ଦୟା, କ୍ଷମାର ସ୍ଥାନ ନଥାଏ । ନିର୍ବିକାର ଭାବରେ ସକଳ ଇଚ୍ଛାକୁ ପୂର୍ଣ୍ଣ କରିବାକୁ ଯାଇ ନିରୀହ ଜନ ସମୁଦାୟଙ୍କ ଉପରେ ଯାବତୀୟ ଅତ୍ୟାଚାର କରି ବସେ । ଏ ସଂପର୍କରେ କବିଙ୍କ ବର୍ଣ୍ଣନାଟି କିପରି ଦେଖନ୍ତୁ –

"ପ୍ରାଣୀ ଯେବେ ଚିତ୍କାର କରେ
କାତର କଣ୍ଠରେ,
ଆନନ୍ଦରେ କଂସେଇ ତା' ଛୁରୀଟି
ଚଳାଇଥାଏ ବଧ କରିବାକୁ
ସାମାଜିକ ଉତ୍ପୀଡ଼ିତ ଆମେ
ଜନ ସମୁଦାୟ
ଯେତେବେଳେ ଚିତ୍କାର କରୁଁ
ସମାଜପତିର ଅସତ୍ର
ସୁରୁଖୁରୁ ସହକାରେ ତା' କାର୍ଯ୍ୟ କରିଯାଏ
ନିର୍ବିକାର ନିର୍ଲିପ୍ତ ଭାବରେ ।' (୧୧୬)

କବି ହୁସେନ୍ କାୟମନୋବାକ୍ୟରେ ମଣିଷର ଜୟଗୀତି ହିଁ ଗାନ କରିଛନ୍ତି ତାଙ୍କର ପ୍ରତ୍ୟେକଟି ସୃଷ୍ଟି ମଧ୍ୟରେ । ସତେଯେପରି କବି ମଣିଷର ସୁଖ, ଦୁଃଖ, ହସ, କାନ୍ଦ ସହିତ ନିଜକୁ ଏକାକାର କରିନେଇଛନ୍ତି । ଆହ୍ୱାନ ପ୍ରଦାନ କରିଛନ୍ତି –

"ଏକ୍‌ଲା ତୁମେ ବା' କଣ କରିପାରିବ ?
ଏକଯୁଟ୍ ହୁଅ, ମୁଷ୍ଟିବଦ୍ଧ
ହୁଅ, ଶୃଙ୍ଖଳିତ ହୁଅ, ଜୀବନର ସଂଗ୍ରାମରେ
ବିଜୟ ତୁମର
ତୁମେ ସବୁ ହୋଇଯିବ ସ୍ରଷ୍ଟା
ଆଗାମୀ ସଂସାର କାବ୍ୟର
ସଭ୍ୟତା ଇତିହାସର ।" (୧୧୭)

କବି ମନୁଷ୍ୟ ସମାଜକୁ ଏକ୍‌ଜୁଟ୍ ହେବା ପାଇଁ, ଗୋଷ୍ଠୀବଦ୍ଧ ହୋଇ ସମସ୍ତ ଆହ୍ୱାନକୁ ସାମ୍‌ନା କରିବା ପାଇଁ କବି କେବଳ ଯେ ନୈତିକ ସାହସ ପ୍ରଦାନ କରିଛନ୍ତି ତାହା ନୁହେଁ, ନିଜେ ମଧ୍ୟ ଏସବୁ ବିପଦକୁ ସାମ୍‌ନା କରିବା ପାଇଁ ଅଣ୍ଟାଭିଡ଼ି ବାହାରି ପଡ଼ିଛନ୍ତି । ଯେତେଦିନ ପର୍ଯ୍ୟନ୍ତ ସମାଜରେ ଆଦର୍ଶର ଆଗମନ ନ ହୋଇଛି ସେତେଦିନ ପର୍ଯ୍ୟନ୍ତ କବି ତାଙ୍କର ସଂଗ୍ରାମର ଜୟଯାତ୍ରା ଅବ୍ୟାହତ ରଖିବେ । ସଂଗ୍ରାମର ପଥରେ

ଯେତେ ବାଧା-ବିଘ୍ନ ଆସିଲେ ବି ସେସବୁକୁ ଭ୍ରୁକ୍ଷେପ ନ'କରି ଆଗେଇ ଯିବାକୁ ପଡ଼ିବ । ଏଥିପାଇଁ ସତେଯେପରି କବି ହୁସେନ୍ ପ୍ରତିଶ୍ରୁତିବଦ୍ଧ । କବିଙ୍କର କବିତାର ନିମ୍ନୋକ୍ତ ପଂକ୍ତିରୁ ଏହା ସ୍ପଷ୍ଟଅନୁମିତ ହୁଏ ।

"ବାରମ୍ବାର ହାରୁଥିବି, ବାରଂବାର ପଡୁଥିବି
ଉଠିପଡ଼ି ଦୌଡୁଥିବି ସଂଗ୍ରାମର ପଥେ
ମରି ପୁଣି ବଞ୍ଚୁଥିବି, ରକ୍ତ ବୀର୍ଯ୍ୟ ସମ;
ଏ ସନ୍ଦେଶ ଦେଇଅଛି ମୋତେ
ମୋର ପ୍ରଥମ ଯୌବନ ।" (୧୧୮)

କବି ନିଜର ତାରୁଣ୍ୟ ବୟସରେ ସ୍ୱପ୍ନ ରାଜ୍ୟରେ ଭାସି ବୁଲିନାହାନ୍ତି । ନିଛକ୍ ବାସ୍ତବତାକୁ ସାମ୍ନା କରିଛନ୍ତି । ପ୍ରତି ମୁହୂର୍ତ୍ତରେ ଭେଟୁଛନ୍ତି ଖାଦ୍ୟ, ବସ୍ତ୍ର, ବାସଗୃହ ପାଇଁ ସଂଘର୍ଷ କରୁଥିବା ନିରୀହ ଜନତାଙ୍କୁ । ଏ ପ୍ରକାର ଶକ୍ତ ବାସ୍ତବତାକୁ ଅନୁଭବ କରୁଥିବା ଯୁବକ ପାଇଁ ତାରୁଣ୍ୟର କାଞ୍ଚନିକ ମାଦକତା ସବୁକିଛି ମୂଲ୍ୟହୀନ, ଅସାର । ବିଦ୍ରୋହୀ କବିର ବିଦ୍ରୋହୀ ଆତ୍ମା ଏସବୁର ନିରାକରଣ ପାଇଁ ବଜ୍ରଶପଥ ନିଏ । ଯଥାର୍ଥରେ କହିବାକୁ ଗଲେ କବିଙ୍କ ରଚିତ 'ଯୌବନ' କବିତା ସଂଗ୍ରାମୀ କବି ଆତ୍ମାର ଏକ ବାଙ୍ମୟ ବିସ୍ଫୋରଣ । ପୀଡ଼ିତ ପ୍ରାଣର ବେଦନାପୁଷ୍ଟ କବି ପ୍ରାଣ ଆତୁର ହୋଇ ଗାଇ ଉଠିଛି–

"ଯେ ଯାଏ ମୁଁ ହୋଇନି ଶୀଥିଳ,
ଯେ ଯାଏ ଶୋଇନି ମୁହିଁ ଜ୍ୱଳନ୍ତ ଯୁଇରେ,
ଲଢୁଥିବି ମୁକତି ପାଇଁ, [illegible] ପାଇଁ,
ଲଢୁଥିବ ମୋ ପୌରୁଷ ଚିରନ୍ତନ ଶାନ୍ତି ପାଇଁ
କଂସ ଆଉ ରାବଣ [illegible],
ଅଭିମନ୍ୟୁ, ପୁରୁ ଆଉ ଶହୀଦ୍ ହୁସେନ୍,
ଏଇମାନେ ଜାଣ
ଅଟନ୍ତି ମୋ ପହିଲି ଯୌବନ ।" (୧୧୯)

କବିଙ୍କର ଉପରୋକ୍ତ କବିତାରେ 'କାଜିନଜରୁଲ୍'ଙ୍କର 'ବିଦ୍ରୋହୀ' କବିତାର ପ୍ରଭାବ ସ୍ପଷ୍ଟ ଅନୁମିତ ହୁଏ । 'ଯୌବନ'ରେ କବି ହୁସେନ୍‌ଙ୍କର କାବ୍ୟାତ୍ମା ଯେପରି ଏକ ସ୍ୱର୍ଣ୍ଣାଭ ଭବିଷ୍ୟତର ଆଗମନ ପାଇଁ ଅପେକ୍ଷାରତ । କବି ନଜରୁଲ୍ ମଧ୍ୟ ଅନୁରୂପ ଆଶା ପଛରେ ପ୍ରଧାବିତ । କବି ନଜରୁଲ୍‌ଙ୍କ ପଂକ୍ତିଟିରୁ ଏହା ଅନୁମିତ ହୁଏ ।

"ମହା ବିଦ୍ରୋହୀ ରଣ କ୍ଳାନ୍ତ
ଆମି ସେଇଦିନ ହେବଶାନ୍ତ
ଯେବେ ଉତ୍ପୀଡ଼ିତେର କ୍ରନ୍ଦନ ରୋଲ ଆକାଶେ
ବାତାସେ ଧ୍ୱନି ଦେନା
ଅତ୍ୟାଚାରୀର ଖଡଗ୍ କୃପାଣ ଭୀମ ରଣ ଭୂମେ ରଣିବେନା
ବିଦ୍ରୋହୀ ରଣକ୍ଳାନ୍ତ
ଆମି ସେଇଦିନ ହବ ଶାନ୍ତ ।" (୧୨୦)

କବି ନଜରୁଲ୍‌ଙ୍କ କବିତାର ତୀବ୍ର ବୈପ୍ଳବାତ୍ମକ ସ୍ୱରର ଉଦ୍‌ଘୋଷଣା ଯେପରି ସଂଗ୍ରାମୀ ମନୋବୃତ୍ତିକୁ ପୁନଃଜାଗରିତ କରାଏ, କବି ହୁସେନ୍‌ଙ୍କର କାବ୍ୟ ସ୍ୱର ମଧ୍ୟ ରକତ ତତାଇ ଦିଏ । କବିଙ୍କର କବିତା ଆଲୋଚନାରୁ ସ୍ପଷ୍ଟ ପ୍ରତିପନ୍ନ ହୁଏ ଯେ କବି କେବଳ ପ୍ରଗତିବାଦର ଦ୍ୱାହି ଦେଇ କବିତା ରଚନା କରିଛନ୍ତି, ତାହା ନୁହେଁ ବରଂ କବିତାରେ କବି ଜଣେ ସଫଳ ସାମାଜିକଅଂଗୀକାରବଦ୍ଧ ସ୍ରଷ୍ଟାର ଦାୟିତ୍ୱ ନିଭାଇଛନ୍ତି । ସାମାଜିକ ଅଂଗୀକାରବଦ୍ଧତା ମଧ୍ୟ ପ୍ରଗତିବାଦର ଅନ୍ୟ ଏକ ରୂପ କହିଲେ ଅତ୍ୟୁକ୍ତି ହେବ ନାହିଁ । ଯେଉଁ କବି ସମାଜ ପ୍ରତି ଯେତିକି ଦାୟବଦ୍ଧ ତା'ର କବିତା ସେତିକି ଉଚ୍ଚକୋଟୀର । ସମାଜର ପ୍ରଗତିରେ ହିଁ ପ୍ରଗତିବାଦର ମୂଳ ମଂଜିଟି ନିହିତ । ତେଣୁ କବି ହୁସେନ୍‌ଙ୍କର କବିତା ମାଟି, ମଣିଷ, ସମାଜ ପାଇଁ ଅହରହ ସଂଗ୍ରାମ କରୁଥିବା କାବ୍ୟପୁରୁଷର ଆତ୍ମଲିପି । ଏ କବିତା ଦିନେନା ଦିନେ ଅରାଜକତା ରୂପକ ଅଂଧକାରର ବକ୍ଷ ଭେଦ୍ କରି ସାମ୍ୟ, ମୈତ୍ରୀ ରୂପୀ ଆଲୋକର ଅନୁସଂଧାନ ପାଇବ । ସମଗ୍ର ମାନବ ଜାତିକୁ ସାଧନା, ଏକାଗ୍ରତା ଓ ମାନବପ୍ରେମରେ ବାନ୍ଧି ରଖିବ । କିନ୍ତୁ ସାଂପ୍ରତିକ ସମୟର ଦୋଦୁଲ୍ୟମାନ ପରିସ୍ଥିତି ସମୟେ ସମୟେ ବାଧ କରୁଛି ଚିନ୍ତା କରିବାକୁ ସତରେ କ'ଣ କବିଙ୍କର ସ୍ୱପ୍ନ ସାକାର ହେବ ? କବିଙ୍କର ସ୍ୱପ୍ନକୁ ସାକାର କରିବା ଦାୟିତ୍ୱ ସଂଘବଦ୍ଧ ହୋଇଥିବା ଅଗଣିତ ନିଷ୍ପେଷିତ ଜନତାଙ୍କର । ଏକ ସୁଖୀ ସମୃଦ୍ଧିଶାଳୀ ସାମ୍ୟବାଦୀ ସମାଜର ଗଠନ ହୋଇପାରିଲେ ପ୍ରଗତିବାଦୀ କବିର ପ୍ରଚେଷ୍ଟା ଯେ ସାଫଲ୍ୟ ମଣ୍ଡିତ ହୋଇପାରିବ ଏଥିରେ ଦ୍ୱିମତ ହେବାର ଅବକାଶ ନାହିଁ ।

## କବି ଈଶ୍ୱର ନାୟକ

ଭୋକିଲା ଶିଶୁର କଅଁଳ ଓଠରେ ହସର ଫୁଆରା ଦେଖିବାକୁ କଳ୍ପନା କରୁଥିବା, ଅଗଣିତ ନିଷ୍ପେଷିତ, ନିର୍ଯ୍ୟାତିତ ମଣିଷଙ୍କୁ ମୁକ୍ତିର ନୂତନ ସ୍ୱାଦ ଚଖାଇବା ପାଇଁ ପ୍ରେରଣା ପ୍ରଦାନ କରୁଥିବା, ବ୍ରିଟିଶ୍‌ର ଲୌହ ଶିକୁଳିରୁ ଦେଶବାସୀଙ୍କୁ ମୁକୁଳାଇବା ପାଇଁ କବିତାରେ ସଂକଳ୍ପବଦ୍ଧ ହେବାପାଇଁ ପ୍ରେରଣା ପ୍ରଦାନ କରୁଥିବା କବି ଈଶ୍ୱର

ନାୟକ, ପ୍ରଗତିବାଦୀ କବିତାର ଅନ୍ୟତମ କାବ୍ୟିକ ପ୍ରତିଭା । ଦାରିଦ୍ର୍ୟ ଓ ଦୁସ୍ଥତା ତାଙ୍କ ଜୀବନର ଚିର ସହଚର । ବୋଧହୁଏ ସେଥିପାଇଁ କବିଙ୍କର କୌଣସି କବିତା ସଂକଳନ ଆତ୍ମପ୍ରକାଶ କରିନାହିଁ । କିନ୍ତୁ କବିଙ୍କର କବିତାଗୁଡ଼ିକ ପ୍ରଗତିବାଦୀ କାବ୍ୟ ସାହିତ୍ୟର ଇତିହାସରେ ଏକ ସ୍ୱତନ୍ତତାଦାବୀ କରେ !

ସମ୍ବଲପୁରର 'ଲଇଡ଼ା' ଗ୍ରାମରେ କବିଙ୍କର ଜନ୍ମ । ବାଲ୍ୟ ଜୀବନରୁ ଛାନ୍ଦ, ଚଉପଦୀ ରୀତିରେ କବିତା ରଚନା କରୁଥିଲେ କବି ଈଶ୍ୱର । ବିଦ୍ୟାଳୟରେ ଅଧ୍ୟୟନ କରୁଥିବା ସମୟରେ ସାମ୍ୟବାଦୀ ସଂଗଠକ ପ୍ରସନ୍ନ କୁମାର ପଣ୍ଡାଙ୍କ ସହିତ ତାଂକର ସାକ୍ଷାତ ହୁଏ । ତାଂକ ଦ୍ୱାରା କବି ଗଭୀର ଭାବରେ ପ୍ରଭାବିତ ହୁଅନ୍ତି ଓ ସାମ୍ୟବାଦୀ ସଂଗଠନ ସହିତ ନିଜକୁ ସାମିଲ୍ କରିଦିଅନ୍ତି । ଏଥିପାଇଁ କବିଙ୍କୁ ୧୯୭୦-୭୫ ମସିହା ଦୀର୍ଘ ପାଞ୍ଚ ବର୍ଷ ଜେଲ୍ ଭୋଗିବାକୁ ପଡ଼େ । ତତ୍‌କାଳୀନ ସାମସମୟିକ ପରିସ୍ଥିତି କବିଙ୍କୁ ବୈପ୍ଳବିକ ଚିନ୍ତାଚେତନା ସମ୍ବଳିତ କାବ୍ୟ କବିତା ରଚନା କରିବା ପାଇଁ ପ୍ରେରଣା ପ୍ରଦାନ କରିଥିଲା । କବି ସ୍ୱୟଂ ନିଜ ଜୀବନ କାଳରେ ଯେଉଁ ପରିସ୍ଥିତିର ସମ୍ମୁଖୀନ ହୋଇଥିଲେ ତାହା ତାଂକ କବିତାର ମୁଖ୍ୟ ଉପାଦାନ । ନିଦର୍ଶନ ସ୍ୱରୂପ ଏଠାରେ ଏକ କବିତାର ଉଦାହରଣ ପ୍ରଦାନ କରାଯାଇପାରେ ।

"ଛିଣ୍ଡାଇବି ମଣିଷ ହାତରୁ
ଅଗଣିତ ଯୁଗର ବନ୍ଧନ
ଭାଂଗିଦେବି ମଣିଷ ହାତରୁ
ଦାସତ୍ୱର ଅକୁହା ସ୍ପନ୍ଦନ ।"(୧୨୧)

କବି ଈଶ୍ୱର ତାଂକ କବିତାରେ ଯେତିକି ଦୃଢ଼ ସେତିକି ପ୍ରତିଜ୍ଞାବଦ୍ଧ । ଯୁଗଯୁଗ ଧରି ଅତ୍ୟାଚାରର ବଂଧନରେ କବଳିତ ହୋଇ ପଡ଼ିଥିବା ମଣିଷ ସମାଜକୁ ମୁକୁଳାଇବା ପାଇଁ କବିଙ୍କର ଲେଖନୀ ଆଜି ମଧ୍ୟ ସତତ ଚେଷ୍ଟିତ । ସଂଗ୍ରାମୀ, ସାମ୍ୟବାଦୀ ମୂଲ୍ୟବୋଧ ଅଦ୍ୟାବଧି କବିଙ୍କୁ ଏହି ଚିନ୍ତାଚେତନାର କବିତା ରଚନା କରିବା ପାଇଁ ପ୍ରେରଣା ପ୍ରଦାନ କରୁଅଛି । କବି ଈଶ୍ୱର ଆମର ପାରଂପରିକ ଐତିହ୍ୟ ଓ ସଂସ୍କୃତି ପ୍ରତି ଗଭୀର ସମ୍ମାନ ବୋଧ ପ୍ରଦର୍ଶନ କରନ୍ତି । ଏ ଦେଶ, ଏ ଜାତିର ଜୟଗାନ କରନ୍ତି । ଯେଉଁ ମହାମନୀଷୀମାନେ ଏ ଜାତି ପାଇଁ ଗୌରବ ସେମାନଂକୁ ଆନ୍ତରିକତାର ସହିତ ପ୍ରଣିପାତ କରନ୍ତି । କେବଳ ଯେ ଗାନ୍ଧୀ, ଗୋପବଂଧୁ, ବାଜିରାଉତଙ୍କୁ ସମ୍ମାନ ଜଣାନ୍ତି ତାହା ନୁହେଁ ବରଂ ତାଂକ ଦୃଷ୍ଟିରେ ନିଜ ଗ୍ରାମର ସ୍ୱାଧୀନତା ସଂଗ୍ରାମୀ 'ରାଜୀବ ଲୋଚନ ତିୱାରୀ'ଙ୍କୁ ମଧ୍ୟ ଆଦର୍ଶ ଭାବେ ଅଭିହିତ କରନ୍ତି । ତାଂକ ମତରେ ସେ ହେଉଛନ୍ତି 'ଲଇଡ଼ା ଗ୍ରାମର ଗାନ୍ଧୀ' । ତାଂକରି ଆଦର୍ଶ ଦ୍ୱାରା ଗଭୀର ଭାବେ ଅନୁପ୍ରାଣିତ

ହୋଇ କବି ମଧ୍ୟ ଅନ୍ୟାୟ ଅତ୍ୟାଚାର ବିରୋଧରେ ସଂଗ୍ରାମ କରିବାକୁ ମଇଦାନକୁ ଓହ୍ଲାନ୍ତି । କବିତାରେ ତାଂକୁ ଯଥାଯୋଗ୍ୟ ସମ୍ମାନ ପ୍ରଦର୍ଶନ କରିବାକୁ ଯାଇ କହନ୍ତି:-

"ଯେଉଁମାନେ ଜାଳିଥିଲେ ସ୍ୱାଧୀନତା ସଂଗ୍ରାମର ନିଆଁ
ଈଶ୍ୱର ନାୟକ ତାଂକୁ ରକ୍ତ ଦେଇ ନମସ୍କାର କରେ ।
ଲଇତାର୍ ଗାନ୍ଧୀ ତିଓ୍ୱାରୀଜୀ ବଂଶଧର ମୁହିଁ
ଫାଶୀ ଖୁଣ୍ଟେ ହସି ହସି ଝୁଲିଯିବି ପଛେ
ମୃତ୍ୟୁ ପାଇଁ ଏମାନଂକୁ ଡରିଯିବି ନାହିଁ ।"(୧୨୨)

ମାନବବାଦୀ କବି ମନୁଷ୍ୟର ଦୁଃଖ, ଯନ୍ତ୍ରଣା, ତା ପ୍ରତି ହେଉଥିବା ଅନ୍ୟାୟ, ଅତ୍ୟାଚାର ବିରୋଧରେ ନିଜର ପ୍ରତିକ୍ରିୟା ପ୍ରକାଶ କରେ । ଏ ପ୍ରକାର ଶୋଷଣର ବିଲୁପ୍ତି ପାଇଁ ଶ୍ରେଣୀ ସଂଗ୍ରାମ ହିଁ ଏକାନ୍ତ ଆବଶ୍ୟକ । 'ଆଗାମୀ' କବିତାରେ କବି କାଳିନ୍ଦୀଚରଣ ଯେଉଁ କଳ୍ପନା କରିଥିଲେ ସମାଜରେ ତାରତମ୍ୟର ପ୍ରାଚୀର ରହିବ ନାହିଁ, ସଭିଙ୍କ ପାଇଁ ପେଟପୁରା ଖାଇବାକୁ ମିଳିବ । ରହିବା ପାଇଁ ମଧ୍ୟ ବଖୁରିଏ ଗୃହର ଆବଶ୍ୟକତା ପୂରଣ ହୋଇପାରିବ । ମାନବବାଦୀ କବି କାଳିନ୍ଦୀଙ୍କ ପରି କବି ଈଶ୍ୱର ମଧ୍ୟ ଅନୁରୂପ କଳ୍ପନା କରିଛନ୍ତି । ଏ ପୃଥିବୀ ଏକ୍, ଆକାଶ ଏକ୍, ସୂର୍ଯ୍ୟ, ଚନ୍ଦ୍ର ସବୁ ଏକ । ତେଣୁ ସେହି ନ୍ୟାୟରେ ମନୁଷ୍ୟ ମଧ୍ୟ ଏକତାର ସୂତ୍ରରେ ଆବଦ୍ଧ । ତେଣୁ ସମାଜରେ ଏକ ସମାନ ବ୍ୟବସ୍ଥାର ପରିକଳ୍ପନା ପାଇଁ କବି ଗାନ କରନ୍ତି-

"ବେକାର ଯୁବକଙ୍କୁ କାମ ଦେବା ପାଇଁ
ବନଜର ମାଟିରେ ଜଳ ଦେବାପାଇଁ
ଭୋକିଲା ପେଟରେ ରୁଟି ଦେବା ପାଇଁ

x x x x

ଯେହେତୁ ପୃଥିବୀଟା ଏକ
ସାରା ମଣିଷ ଏକ
ଏବଂ ଏଇ ଆକାଶଟା ଏକ । (୧୨୩)

ବୋମା ଫିଙ୍ଗିବା, ଯୁଦ୍ଧ କରିବା, ବା କୌଣସି ହିଂସାତ୍ମକ ପନ୍ଥା ଅବଲମ୍ବନ କରିବା ଦ୍ୱାରା ଯେ ସମାଜରେ ସାମ୍ୟବାଦର ଆନୟନ କରାଯାଇପାରିବ ତାହା ନୁହେଁ । କବି ଈଶ୍ୱର ଜଣେ ଯଥାର୍ଥ ସାମ୍ୟବାଦୀ ସ୍ରଷ୍ଟା । କବିଙ୍କର ଏତାଦୃଶ ଚିନ୍ତାଧାରା ପ୍ରତିକୂଳ ପରିସ୍ଥିତି ଓ ସ୍ଥାଣୁତା ବିରୋଧରେ ଲଢ଼ିବାର ଦୃଢ଼ ମାନସିକତା ସୃଷ୍ଟି କରେ ଏବଂ ଏକ ଉନ୍ନତ ଜୀବନବୋଧର ଈଶାରା ଦେଇ ସମୃଦ୍ଧ ସମାଜର ଚିତ୍ର ଅଂକନ

କରେ । ଶ୍ରେଣୀ ସଂଗ୍ରାମରେ ଅଖଣ୍ଡ ଆସ୍ଥା ସ୍ଥାପନ କରୁଥିବା କବି ସମାଜର ଶୋଷଣ ବ୍ୟବସ୍ଥାକୁ ଚମତ୍କାର ବର୍ଣ୍ଣନା ଶୈଳୀ ମାଧ୍ୟମରେ ଉପସ୍ଥାପନା କରିଛନ୍ତି । ଶୀତ ଋତୁକୁ ପ୍ରତୀକ ମାଧ୍ୟମରେ କବି ଗ୍ରହଣ କରି 'ଶୀତ ଋତୁ ବିପକ୍ଷରେ' କବିତାରେ ନିଜସ୍ୱ ମତାମତ ପ୍ରଦାନ କରିଛନ୍ତି । ଶୀତ ଋତୁ ହେଉଛି ଫୁଲ, ଫଳ, ଐଶ୍ୱର୍ଯ୍ୟର ଋତୁ । ଯେଉଁ ଐଶ୍ୱର୍ଯ୍ୟର ମାଲିକ୍ ହେଉଛନ୍ତି ସାହୁକାରମାନେ । ଶୀତଋତୁରେ ଅଜସ୍ର ସମ୍ଭାର ଭରି ଦେଉଥିବା ମୂଲିଆ, କୃଷକମାନେ ଏହାକୁ ଉପଭୋଗ କରନ୍ତି ନାହିଁ । ଭୋଗକରେ ବିଳାସୀ ଜମିଦାର ଗୋଷ୍ଠୀ । ସହର ଠାରୁ ଆରମ୍ଭ କରି ଗାଁ ଗହଳି ପର୍ଯ୍ୟନ୍ତ ସର୍ବତ୍ର ଏମାନଂକର ଅସ୍ତିତ୍ୱକୁ ଅନୁଭବ କରିହୁଏ । କବିତାରେ କବି କହନ୍ତି:-

"ଶୀତ ଆସେ ସହରର ରିକ୍ସାବାଲା
ମେହେନ୍ତର ମୂଳିଆ ବସ୍ତିକୁ ।
X X X X
କୁଲି ଏବଂ ରେଜାଙ୍କର ଜୀର୍ଣ୍ଣ କୁଟୀର ମଥାନେ
ଉଧାରୀ ଅସୁଲ ପାଇଁ ଜିଦ୍ ଧରି ବସେ ।"(୧୨୪)

ଆକର୍ଷଣୀୟ ବାକ୍‌ଚାତୁରୀ ମାଧ୍ୟମରେ ଅସହାୟ ଜନତାଙ୍କ ହୃଦୟର ମର୍ମସ୍ପର୍ଶୀ ସ୍ପନ୍ଦନକୁ କବିତାରେ ରୂପ ଦେଇଛନ୍ତି କବି ଈଶ୍ୱର । କେବଳ ଯେ କବିତାରେ ଏହାକୁ ସ୍ଥାନ ଦେଇ କବି ନିଜର କର୍ତ୍ତବ୍ୟ ସମାପନ କରିଛନ୍ତି ତାହା ନୁହେଁ ଏ ପ୍ରକାର ଅବିଚାର ଅନ୍ୟାୟର ପୂର୍ଣ୍ଣଚ୍ଛେଦ୍ ପକାଇବା ପାଇଁ ଅଦ୍ୟାବଧି କବି ଈଶ୍ୱର ସଂଗ୍ରାମରତ । ସାହିତ୍ୟ କ୍ଷେତ୍ରରେ କବି ଯେ କେବଳ ଏହି ଉଚ୍ଚାଙ୍ଗ ମୂଲ୍ୟବୋଧକୁ ଆଦର୍ଶ ଭାବରେ ଗ୍ରହଣ କରିଛନ୍ତି ତାହା ନୁହେଁ ସଂଗ୍ରାମକୁ ମଧ୍ୟ ନିଜଜୀବନର ବ୍ରତଭାବରେ ଗ୍ରହଣ କରିନେଇଛନ୍ତି । ଅଦ୍ୟାବଧି କୌଣସି ଗୋଟିଏ ସଂକଳନ ପ୍ରକାଶ ପାଇନଥିଲେ ମଧ୍ୟ କବିତା ଗୁଡ଼ିକ ବହନ କରିଥିବା ବୈପ୍ଳବିକ ମୂଲ୍ୟବୋଧ କବିଙ୍କୁ ବିପ୍ଳବୀ କବିର ମାନ୍ୟତା ପ୍ରଦାନ କରେ । ଓଡ଼ିଆ ସାହିତ୍ୟ ଏପରି ଜଣେ ପ୍ରତିଭାବାନ୍ ସ୍ରଷ୍ଟାଙ୍କର ସଂଗ୍ରାମୀ ଉଦ୍‌ବୋଧନକୁ ଉଚିତ୍ ମର୍ଯ୍ୟାଦା ପ୍ରଦାନ କରିନାହିଁ, ତାହା ଅତ୍ୟନ୍ତ ପରିତାପର ବିଷୟ ।

## କବି ସମରେନ୍ଦ୍ର ନାୟକ

ଅଗ୍ନିଗର୍ଭ ବୈପ୍ଳବିକ କବିତା ରଚନା କରି ଅଗଣିତ ଜନମାନସକୁ ପ୍ରଭାବିତ କରିପାରିଥିବା, ଚଳନ୍ତି ସମୟର ଅନ୍ୟତମ କାବ୍ୟିକ ପ୍ରତିଭା ହେଲେ କବି ସମରେନ୍ଦ୍ର ନାୟକ । ବାଲେଶ୍ୱର ଜିଲ୍ଲାର ନୀଳଗିରି ସବ୍‌ଡିଭିଜନ୍‌ର ତାଳବଣୀ ଗ୍ରାମରେ ୧୯୫୦ ମସିହାରେ ଏକ ସଂଗ୍ରାମୀ ପରିବାରରେ ଜନ୍ମଗ୍ରହଣ କରିଥିଲେ କବି ସମରେନ୍ଦ୍ର ।

ଉଚ୍ଚଶିକ୍ଷାରୁ ବଞ୍ଚିତ ହୋଇଥିଲେ ମଧ୍ୟ କବିଙ୍କର କବିତ୍ୱ ନିକଟରେ ଏହା ପ୍ରତିବନ୍ଧକ ସାଜିନଥିଲା । କବିଙ୍କୁ ଆଲୋଚନା କରିବା ପୂର୍ବରୁ ତାଙ୍କ ବ୍ୟାପକ ସଂଗ୍ରାମୀ ଜୀବନ ସଂପର୍କରେ ଦୃଷ୍ଟିପାତ ନ କଲେ, ଆଲୋଚନାଟି ଅସଂପୂର୍ଣ୍ଣ ମନେ ହେବ । ପ୍ରଥମତଃ କବିଙ୍କର ଜନ୍ମ ସଂଗ୍ରାମୀ ପରିବାରରେ । ତେଣୁ ପିତାଙ୍କର ପ୍ରଭାବରେ ପ୍ରଭାବିତ ହୋଇ ସଂଗ୍ରାମକୁ ନିଜ ଜୀବନର ଆଦର୍ଶ ଭାବରେ କବି ଗ୍ରହଣ କରିନେଇଥିଲେ ।

ସଂଗ୍ରାମୀ ଜୀବନର ଅୟମାରମ୍ଭରେ କବି ନିଜ ଗ୍ରାମର କେତେଜଣ ବୁଦ୍ଧିଜୀବୀଙ୍କୁ ନେଇ ଗଢ଼ିତୋଳିଲେ 'ଅଗସ୍ତି-ମୋହନ ଗଣସାହିତ୍ୟ ସଂସଦ' । ଫକୀରମୋହନ ସାହିତ୍ୟ ପରିଷଦର ସଭ୍ୟ ରହିବା ସହିତ, ବାଲେଶ୍ୱର ନାଗରିକ ଅଧିକାର ସୁରକ୍ଷା ସମିତିର ସାଧାରଣ ସଂପାଦକ ମଧ୍ୟ ଥିଲେ । ଏତଦ୍‌ବ୍ୟତୀତ କବିଙ୍କର ସାଂଗଠନିକ ଦକ୍ଷତାର ପରିଚୟ ବହନ କରେ 'ଗଣମୁକ୍ତି ଲେଖକ ସାମ୍ମୁଖ୍ୟ' ନାମକ ଏକ ରାଜ୍ୟସ୍ତରୀୟ ସଂଗଠନ । ନକ୍‌ସାଲ୍‌ବାଡ଼ି ଆନ୍ଦୋଳନ ଦ୍ୱାରା ପ୍ରଭାବିତ ହୋଇ କବି ସମରେନ୍ଦ୍ର ମଧ୍ୟ ଅନେକ କବିତା ରଚନାକରିଥିଲେ । ଏହାପରେ ୧୯୮୫-୮୬ ମସିହାରେ ବାଲେଶ୍ୱରର ବାଲିଆପାଳ ଠାରେ ଘାଟି ପ୍ରତିଷ୍ଠା ବିରୋଧରେ ଯେଉଁ ଆନ୍ଦୋଳନ ମୁଣ୍ଡ ଟେକିଥିଲା, କବି ଏହାର ମଧ୍ୟ ଅଗ୍ରଗାମୀ ନେତୃତ୍ୱ ନେଇଥିଲେ । କବିଙ୍କର ସଂଗ୍ରାମର ମଇଦାନ୍ କେବଳ ଯେ ବାଲେଶ୍ୱର ସୀମାରେଖା ମଧ୍ୟରେ ଆବଦ୍ଧ ଥିଲା ତାହା ନୁହେଁ, ସୁଦୂର ମାଲ୍‌କାନ୍‌ଗିରିର ଦୁର୍ଗମ ଅଂଚଳ ପର୍ଯ୍ୟନ୍ତ ମଧ୍ୟ ପରିବ୍ୟାପ୍ତ ଥିଲା । ୧୯୯୪-୯୫ ମସିହା ବେଳକୁ କବି ସମରେନ୍ଦ୍ର ବିଜୟ ଉପାଧ୍ୟାୟଙ୍କ ସହ ମିଶି 'ତର୍‌ଲାକୋଟା'ଠାରେ 'ଆଦିବାସୀ ସଂଘ' ଗଠନ କରନ୍ତି । ବାଲେଶ୍ୱର ଅଞ୍ଚଳରେ ଯେଉଁ ଚିନ୍ତାଦର୍ଶର ଭିତ୍ତିପ୍ରସ୍ତର ସ୍ଥାପନ ହୋଇଥିଲା, ତାହା ଆହୁରି ମଜଭୁତ୍ ହୋଇ ପାରିଛି ମାଲ୍‌କାନଗିରିର ଘଞ୍ଚଜଂଗଲ ମଧ୍ୟରେ । ଯେଉଁ ଅଂଚଳରେ ସରଳ ନିରୀହ ମଣିଷଟିଏ ପ୍ରତି ମୁହୂର୍ତ୍ତରେ ଶୋଷିତ ହେଉଛି, ସରକାରୀ ଶାସନ ବ୍ୟବସ୍ଥାର ମାୟାଜାଲ ମଧ୍ୟକୁ ପ୍ରବେଶ କରିବାକୁ ଯେଉଁମାନେ ଅକ୍ଷମ, ସେମାନଙ୍କର ନିରହଂକାର ଜୀବନଯାପନଶୈଳୀ, ସରଳତା, ସେମାନଙ୍କର ଦୁଃଖ, ଅବସାଦ କବି ପ୍ରାଣକୁ ଏତେମାତ୍ରାରେ ଛୁଇଁଗଲା ଯେ କବି ସମରେନ୍ଦ୍ର ପାଲଟି ଗଲେ ଆଦିବାସୀ ଜୀବନର ରୂପକାର । ତର୍‌ଲାକୋଟାର ଗାଁ ଗହଳିରେ ପରିଚିତ ହେଲେ 'ରୁକୁ ଡୋକ୍ରା' ନାମରେ । କବି ଆଦିବାସୀମାନଙ୍କ ପ୍ରତି କେତେ ସମ୍ବେଦନଶୀଳ, ତାହା ତାଙ୍କର 'ଅରଣ୍ୟର ଅଧିକାର ବନାମ୍ ଆଦିବାସୀ ଉଚ୍ଛେଦ' ସଂକଳନରୁ ପ୍ରତୀୟମାନ ହୁଏ ।

"ଯେଉଁମାନେ ହଜାର୍ ହଜାର୍ ବର୍ଷଧରି ଆକ୍ରମଣକାରୀର ଆକ୍ରମଣରେ, ଶାସକ ଶୋଷକର ଅତ୍ୟାଚାରରେ, ବର୍ଣ୍ଣବୈଷମ୍ୟ, ଧର୍ମବୈଷମ୍ୟ, କର୍ମ ବୈଷମ୍ୟ ତଥା ମର୍ମ

ବୈଷମ୍ୟର ବିଷାକ୍ତ ଘୃଣାରେ ଜର୍ଜରିତ ହେବା ସହିତ ପ୍ରକୃତିର ଚରମ ପ୍ରତିକୂଳ ପରିସ୍ଥିତିକୁ ମୁକାବିଲା କରି ତିଷ୍ଠି ରହିଛନ୍ତି । ତାହିଁ ଦେଲେ ସେମାନେ ନିଶ୍ଚିହ୍ନ ହୋଇଯିବେନି ।"(୧୨୫)

ଏହି ପୃଷ୍ଠଭୂମିକୁ ଦୃଷ୍ଟି ସମ୍ମୁଖରେ ରଖି କବି ସମରେନ୍ଦ୍ରଙ୍କର କାବ୍ୟ କବିତାକୁ ତିନି ଭାଗରେ ବିଭକ୍ତ କରିବା । ପ୍ରଥମ ପର୍ଯ୍ୟାୟରେ ନକ୍ସାଲବାଡ଼ି ଆନ୍ଦୋଳନର ପ୍ରଭାବରେ ପ୍ରଭାବିତ କବିତା, ଦ୍ୱିତୀୟରେ ବାଲିଆପାଳ ଘାଟି ବିରୋଧୀ କବିତା, ତୃତୀୟରେ ଆଦିବାସୀମାନଙ୍କର ଜୀବନଧାରାକୁ ନେଇ ରଚିତ କବିତା ।

୧୯୭୦/୭୧ ମସିହାରେ ପଶ୍ଚିମ ବଂଗରେ ଚାରୁ ମଜୁମ୍‌ଦାରଙ୍କ ନେତୃତ୍ୱରେ CPI (ML) ନାମକ ଏକ ରାଜନୀତିକ ଦଳ ଗଠିତ ହୋଇ ସାରିଥାଏ । ଏହାର ଆଭିମୁଖ୍ୟ ସଂପର୍କରେ ମତପ୍ରଦାନ କରିବାକୁ ଯାଇ ମଜୁମ୍‌ଦାର 'ଦେଶବ୍ରତୀ' ପତ୍ରିକାରେ ଉଲ୍ଲେଖ କରିଥିଲେ –

"ଜନଗନତାନ୍ତ୍ରିକ ବିପ୍ଳବେର୍ ପଥହଲ୍, କୃଷକ ଓ ଶ୍ରମିକ ଶ୍ରେନୀର ନେତୃତ୍ୱେ କୃଷି ବିପ୍ଳବେର୍ ପଥେ ଗ୍ରାମାଞ୍ଚଲେ ବିପ୍ଳବୀ ସଂଗ୍ରାମେର୍ ଏଲାକା ଗଡ଼େ ତୋଲା ଏବଂ ସେଇ ବିପ୍ଳବୀ ସଂଗ୍ରାମେର୍ ଏଲାକାକେ ପ୍ରସାରିତ କରେ ଶହରକେ ଘିରେ ଫେଲା ।"(୧୨୬)

ମଜୁମ୍‌ଦାରଙ୍କ ଉକ୍ତିରୁ ପ୍ରତିପାଦିତ ହୁଏ ଯେ, ଏହି ବିପ୍ଳବୀ ପାର୍ଟିର ଆଭିମୁଖ୍ୟ କୌଣସି ଏକ ନିର୍ଦ୍ଦିଷ୍ଟ ସ୍ଥାନର ଜନତାଙ୍କ ପାଇଁ ଉଦ୍ଦିଷ୍ଟ ନଥିଲା ବରଂ ସହରଠାରୁ ଆରମ୍ଭକରି ଗ୍ରାମାଞ୍ଚଳ ପର୍ଯ୍ୟନ୍ତ ସର୍ବତ୍ର ସେ ଏହାକୁ ପ୍ରଚାରିତ କରିବାକୁ ଚେଷ୍ଟା କରିଥିଲେ । କବି ମଜୁମ୍‌ଦାରଙ୍କର ଆଭିମୁଖ୍ୟ ପ୍ରତି କବି ସମରେନ୍ଦ୍ର ନିଜର ସମର୍ଥନ ପ୍ରକାଶ କରିବାକୁ ଯାଇ ବହୁ କବିତା ରଚନା କରିଥିଲେ । କବି ପ୍ରସନ୍ନ ପାଟଶାଣୀ, କବି ସଦାଶିବ ଦାଶ ଏବଂ କବି ହୋସେନ୍‌ରବିଗାନ୍ଧୀଙ୍କ ପରି, କବି ସମରେନ୍ଦ୍ର ମଧ ତାଙ୍କ କବିତାରେ ନକସାଲ୍‌ବାଡ଼ି ଆନ୍ଦୋଳନ ଉପରେ ଗୁରୁତ୍ୱାରୋପକରିଥିଲେ । କବିଙ୍କ ଦୃଷ୍ଟିରେ ନକ୍ସାଲବାଡ଼ି ଆନ୍ଦୋଳନ ଆଫ୍ରିକା, ପାଲେଷ୍ଟାଇନ୍‌ର ମୁକ୍ତି ସଂଗ୍ରାମ ସହ ତୁଳନୀୟ । କବିତାରେ କବି ଦୃଢ଼ୋକ୍ତିର ସହ ଉଚ୍ଚାରଣ କରନ୍ତି –

"ଭେଦ କରି ଧୂଳି ରୁକ୍ଷ ପଥରେ ଝରାଏ ମୁକ୍ତି ଗୀତି
ବସ୍ତୁବାଦର ଲାଭା ସୁଅ ତଳେ ଗ୍ରାମାଞ୍ଚଳର ଘାଟି
ଗଢ଼ି ତୋଳିବାକୁ ଟେକି ଦିଏ ତୋରାଭରା ମୁକ୍ତିର ଗାନ
ସେ ସମ୍ମାନର ହକ୍‌ଦାର ଶ୍ରୀକାକୁଲାମ୍ ଓ ଗଂଜାମ ।' (୧୨୭)

କବିଙ୍କ କବିତାରେ ଶୋଷିତ ମଣିଷମାନଙ୍କ ପାଇଁ ପରିଲକ୍ଷିତ ହେଉଥିବା ଆବେଗ

ନିଃସନ୍ଦେହରେ କବିଙ୍କୁ ଜଣେ ସାର୍ଥକ ପ୍ରଗତିବାଦୀ କବିର ମାନ୍ୟତା ପ୍ରଦାନ କରୁଛି । କବିଙ୍କର କବିତା ବାସ୍ତବିକ୍ ଶୋଷିତ ଜନଗଣଙ୍କ ପାଇଁ ଆଶାବାଡ଼ି ସଦୃଶ । ମୁକ୍ତିକାମୀ ମଣିଷମାନଙ୍କ ପାଇଁ ଆଶା, ଆଶ୍ୱାସନାର ବାରି ସିଞ୍ଚନକାରୀ । ସଂଗ୍ରାମୀ ଚିନ୍ତାଚେତନାକୁ ତୀବ୍ର କରିବାପାଇଁ କବି ରଚନା କରନ୍ତି 'ଖୁକାଦାସ୍' କବିତା । ଯେଉଁ ବିପ୍ଲବୀ ବ୍ୟକ୍ତିତ୍ୱ ମଜୁମ୍‌ଦାରଙ୍କ ଆଭିମୁଖ୍ୟକୁ ପ୍ରସାରିତ କରିବାର ଦୃଢ଼ସଂକଳ୍ପ ନେଇଛି ଓ ଲେନିନ୍, ମାଓ-ସେ-ତୁଙ୍ଗ୍‌ଙ୍କ ତତ୍ତ୍ୱକୁ ପ୍ରଚାର କରି ସଂଗ୍ରାମୀ ସଂଗଠନ ଗୁଡ଼ିକୁ ଦୃଢ଼ କରି ପାରିଛି ଶେଷରେ ପୋଲିସ୍ ହାତରେ ସେ ଧରା ପଡ଼ିଛି । ଏହି ବ୍ୟକ୍ତିତ୍ୱ ପ୍ରତି କବି ଅନ୍ତରର ସମବେଦନା ଜ୍ଞାପନ କରିବାକୁ ଯାଇ ଲେଖିଛନ୍ତି–

"ଖୁକା ଦାସ ଆସିଥିଲା ମାର୍କସ୍ ଓ ଲେନିନ୍‌ର ତତ୍ତ୍ୱ ନେଇ
ମାଓ ଚିନ୍ତା ବହି
ଶ୍ରେଣୀ ସଂଗ୍ରାମର ତତ୍ତ୍ୱ ବୁଝିଥିଲା ସିଏ
ଉଗ୍ର ବଳ ପ୍ରୟୋଗରେ ଏକ ଶ୍ରେଣୀ
ଅନ୍ୟ ଏକ ଶ୍ରେଣୀକୁ ଯେ ଉତ୍‌ଖାତ କରିବ ।" (୧୨୮)

'ଖୁକାଦାସ' ପରି ବିପ୍ଲବୀ ଚରିତକୁ ନେଇ କବିତା ରଚନା କଲାପରି କବି ସମରେନ୍ଦ୍ର ସହୀଦ୍ ବାବୁଲାଲ୍, ଷ୍ଟାଲିନ୍‌ଙ୍କଠାରୁ ଆରମ୍ଭ କରି ପ୍ରଜା ଆନ୍ଦୋଳନରେ ସକ୍ରିୟ ଅଂଶ ଗ୍ରହଣ କରି ଆତ୍ମବଳିଦାନ ଦେଇଥିବା 'ମକରା ପଲେଇ' ନାମ୍ନୀ ଚରିତ୍ରକୁ ମଧ୍ୟ କବିତାରେ ସ୍ଥାନ ଦେଇଛନ୍ତି । ଏହି ତିନୋଟି କବିତା ମାଧ୍ୟମରେ କବି ବିପ୍ଳବର ବାର୍ତ୍ତା ପ୍ରଚାର କରିବାକୁ ପ୍ରୟାସୀ । ଏମାନଙ୍କର କାର୍ଯ୍ୟକଳାପ ବର୍ଣ୍ଣନା ଶତଶତ ବିପ୍ଳବୀପ୍ରାଣରେ ସଂଗ୍ରାମର ବହ୍ନି ପ୍ରଜ୍ୱଳିତ କରାଇଥାଏ ! ଏକାକୀ ଅନ୍ୟାୟ ବିରୋଧରେ ସଂଗ୍ରାମ କରିବାର ଦୁର୍ବାର ଆକାଂକ୍ଷା ଜାତ କରାଏ । ଯାହା ଆମେ ସଂଗ୍ରାମୀ 'ବାବୁଲାଲ୍ ବିଶ୍ୱକର୍ମକାର'ଙ୍କ ଚରିତରୁ ପାଇଥାଉ । ନିଜର ଆଦର୍ଶକୁ ନେଇ ଏକାକୀ ସଂଗ୍ରାମ କରିଥିଲେ ବାବୁଲାଲ୍ । ପୁଲିସ୍ ବାହିନୀ ନିକଟରେ ହାର୍ ମାନିନଥିଲେ । କବିଙ୍କ ବର୍ଣ୍ଣନାରେ –

"ବିପ୍ଳବର କ୍ଲାନ୍ତ ସନ୍ଧ୍ୟା, ଜ୍ୟୋତି, ହରି ପ୍ରତିକ୍ରିୟା ଝଡ଼ର ଝଂକାରେ
ଛାଇଥିବା ବଂଗଳା ଆକାଶ, ତମେ ଠିକ୍ ସେବେ
ଝରିଥିଲ ସକାଳର କାଶତଣ୍ଡୀ
ପୂର୍ବାଶାର ଦୁର୍ବାର ଗୌରବେ ।" (୧୨୯)

'ଷ୍ଟାଲିନ୍'ଙ୍କ ସ୍ମୃତିରେ ରଚିତ କବିତାରେ ସେପରି କିଛି ନୂତନତା ପରିଲକ୍ଷିତ ହୁଏ ନାହିଁ । ଅନ୍ୟାନ୍ୟ ଓଡ଼ିଆ କବିମାନଙ୍କ ପରି କବି ସମରେନ୍ଦ୍ର ମଧ୍ୟ ଷ୍ଟାଲିନ୍‌ଙ୍କୁ

ବିପ୍ଳବର ପ୍ରତୀକ ଭାବରେ ଅଭିହିତ କରିଛନ୍ତି । 'ମକରା ପଲେଇ' କବିତାରେ କବି 'ମକରା' ଚରିତ୍ରକୁ ଲୋକଲୋଚନକୁ ଆଣିବାକୁ ପ୍ରୟାସ କରିଛନ୍ତି । ନୀଳଗିରି ପ୍ରଜା ଆନ୍ଦୋଳନରେ ସକ୍ରିୟ ଅଂଶ ଗ୍ରହଣ କରି ଶେଷରେ ପ୍ରାଣବଳୀ ଦେଇଥିବା ଏହି ଚରିତ୍ରଟିକୁ ଆମର ସମାଜ ଉଚିତ୍ ମର୍ଯ୍ୟାଦା ପ୍ରଦାନ କରିନାହିଁ । କବି ସମରେନ୍ଦ୍ର 'ମକରା ପଲେଇ'ର ଆତ୍ମୋତ୍ସର୍ଗର ଚିତ୍ର ପ୍ରଦାନ କରିବାକୁ ଯାଇ କହନ୍ତି –

"ପାଣି କିଆରୀରେ ଯେବେ ଟୁପ୍‌ଟାପ୍ ବର୍ଷା
ଅଶାନ୍ତ ମଣିଷ ରକ୍ତ, କ୍ଷେତ ଭୂଇଁ, ମେହେନତୀ ଜଳ
କରୁଥିଲା ଏକାକାର
ଟାଣୁଥିଲା ଶିଳ୍ପୀ ହାତେ
କାଦୁଅ ସଲୀଳ ବୁକେ ରକତର ତୂଳୀ
x x x
ଚାଲିଗଲା ଟାଣି ଦେଇ ଜୀବନ କପାଟ
ଲହୁର ଲହରୀ ପ୍ରାନ୍ତେ ନେତା ଯେବେ ଖୋଜୁଥିଲେ
ଶାନ୍ତି, ଢିଙ୍କି, ଅହିଂସା, ଅରଟ ।" (୧୩୦)

ପ୍ରଥମ ପର୍ଯ୍ୟାୟର କବିତା ଗୁଡ଼ିକରେ ପ୍ରଗତିବାଦୀ ଚିନ୍ତାଧାରାକୁ ଏହିପରି ପ୍ରକାଶିତ କରିଥିବା କବି ସମରେନ୍ଦ୍ର, ଦ୍ୱିତୀୟ ପର୍ଯ୍ୟାୟରେ ଗଣସଂଗଠନ ମାଧ୍ୟମରେ ବିପ୍ଳବର ବାର୍ତ୍ତା ପ୍ରଚାର କରିଛନ୍ତି । ବାଲିଆପାଳ କ୍ଷେପଣାସ୍ତ୍ର ବିରୋଧୀ ଆନ୍ଦୋଳନର ପୁରୋଭାଗରେ ଥିଲେ ସେ । ବାଲିଆପାଳର ଦୁଃଖକୁ ସର୍ବସମ୍ମୁଖରେ ଉପସ୍ଥାପିତ କରାଇବାର ବଜ୍ର ଶପଥ ନେଇଥିଲେ କବି ସମରେନ୍ଦ୍ର । ବାଲିଆପାଳ ଅଂଚଳକୁ ସଂଗ୍ରାମୀ ପ୍ରତିନିଧି ଦଳ ନେଇଯିବାରେ ସେ ଅଗ୍ରଗାମୀ ଭୂମିକା ଗ୍ରହଣ କରିଥିଲେ । ଜନତାଙ୍କର ସଂଗ୍ରାମୀ ମନୋଭାବକୁ ସର୍ବଦା ପ୍ରାଧାନ୍ୟ ଦେଉଥିବା କବି ସେଇମାନଙ୍କ ସପକ୍ଷରେ ସ୍ୱର ଉତ୍ତୋଳନ କରିବାକୁ ଯାଇ କହିଛନ୍ତି –

"ମୁଁ ଶ୍ରମଜୀବୀ ମଣିଷ
ମୁଁ ଶାନ୍ତିକାମୀ ମଣିଷ
ମାଛିକୁ 'ମ' ବୋଲି କହେନା
ମୋ ସ୍ୱପ୍ନରେ ନିଆଁ ଲାଗିଲେ
କାହାରି ନିସ୍ତାର ନାହିଁ
ତାହା ଉତ୍‌କ୍ଷେପଣର ଘାଟି ହେଉ
ସେ ପରମାଣୁ କି ତାରକାସୁର ହେଉ

ବା ଆଉ କିଏ
ସେ ଯେତେ ପ୍ରବଳ - ପ୍ରତାପୀ ହେଉ ବରଂ
ଏକଥା ମନେ ରଖିଥିବ
ମନେ ରଖିଥିବ ।" (୧୩୧)

କବି ସମରେନ୍ଦ୍ର ତାଙ୍କ କାବ୍ୟ କବିତାରେ କେବଳ ଯେ ଶ୍ରମଜୀବୀ ମଣିଷର ସଂଗ୍ରାମ ସଂପର୍କରେ ବର୍ଣ୍ଣନା କରିଛନ୍ତି ତାହା ନୁହେଁ, ବରଂ କାବ୍ୟିକ ଜୀବନର ତୃତୀୟ ପର୍ଯ୍ୟାୟରେ, ସଭ୍ୟତାର ଆଲୋକ ଯେଉଁମାନଙ୍କ ପାଇଁ ସ୍ୱପ୍ନ, ଯେଉଁମାନେ ସଦାସର୍ବଦା ବଣଜଂଗଲ ପାହାଡ଼ ଘେରା ଅଂଚଳରେ ବସବାସ କରନ୍ତି ସେଇମାନଙ୍କର ସୁଖ ଦୁଃଖର ସାଥୀ ପାଲଟିଯାଇଛନ୍ତି । ସେମାନଙ୍କୁ ନିଜର ଅଧିକାର ସଂପର୍କରେ ସଚେତନ କରାଇବା ପାଇଁ କବି ସତେଯେପରି ପ୍ରତିଜ୍ଞାବଦ୍ଧ । ଏଠାରେ ଆମେ ବିପ୍ଳବର ଏକଭିନ୍ନ ରୂପକୁ ଅନୁସନ୍ଧାନ କରିପାରିବା । ବିପ୍ଳବୀ କବିତା କେବଳ ପୁଂଜିପତି ଓ ସର୍ବହରା ମଧ୍ୟରେ ଚାଲିଥିବା ସଂଗ୍ରାମର କଥା କହେ ନାହିଁ ବରଂ ସମାଜର ଯେକୌଣସି ସ୍ତରରେ ପରିଲକ୍ଷିତ ହେଉଥିବା ଅବ୍ୟବସ୍ଥା (ଜାତିଗତ, ଧର୍ମଗତ, ଅଂଧବିଶ୍ୱାସ, ବ୍ୟକ୍ତିଗତ ସ୍ୱାର୍ଥ)ର ମୂଳୋତ୍ପାଟନ କରିଥାଏ । Massline vol - (II) ରେ ଉଲ୍ଲେଖ କରାଯାଇଛି–

"The battle of anihilation liberates the people not only from the oppression of the landlord class and its state but also liberaes them from the shackles of backward ideas and removes from the minds of the people poisonous weeds of self-interest, calm-interest, localism, casteism, religious superstitions." (୧୩୨)

ତେଣୁ ଏ ପର୍ଯ୍ୟାୟର କବିତାରେ କବି ଆଦିବାସୀ ସମାଜର ବହୁବିଧ ସମସ୍ୟାକୁ ଉତ୍ଥାପିତ କରିବା ସଂଗେ ସଂଗେ ସେମାନଙ୍କ ପାଇଁ ମୁକ୍ତି ସଂଗ୍ରାମର ଆହ୍ୱାନ ଦେଇଛନ୍ତି । ଅଦ୍ୟାବଧି ମଧ୍ୟ କବି ସେଇମାନଙ୍କ ପାଇଁ ତାଙ୍କର ସଂଗ୍ରାମ ଜାରି ରଖିଛନ୍ତି । ଯୁଦ୍ଧ, ସଂଘର୍ଷ, ହତ୍ୟା, ରକ୍ତପାତ, ସର୍ବଦା ସାହିତ୍ୟକୁ ନୂତନ ଖୋରାକ୍ ଯୋଗାଇ ଆସିଛି । ଏସବୁ ଉପାଦାନକୁ ନେଇ ସାହିତ୍ୟ ତା'ର କଳେବର ବୃଦ୍ଧି କରିଛି । ସମୟାନୁସାରେ ବିପ୍ଳବର ସ୍ୱରୂପ ମଧ୍ୟ ପରିବର୍ତ୍ତିତ ହୋଇଛି । ପ୍ରଥମେ ଥିଲା କୃଷକ ବିପ୍ଳବ କରୁଥିଲା ଜମିଦାର ବିରୋଧରେ, ତତ୍‌ପରେ ଶ୍ରମିକ ବିପ୍ଳବ କଲା ପୁଂଜିପତି ବିରୋଧରେ । ତେଣୁ ବିପ୍ଳବ ପରେ ସାଂପ୍ରତିକ ସମାଜ ବ୍ୟବସ୍ଥାରେ ଯେ ପରିବର୍ତ୍ତନ ଘଟିବ, ଏ ନେଇ ପ୍ରତ୍ୟେକ ସଚେତନ ନାଗରିକ ଆଜି ଦୃଢ଼ ଆଶାବାଦୀ । ତେଣୁ କବି ସମରେନ୍ଦ୍ର ଏଠାରେ ବିପ୍ଳବର ଏକ ଅଭିନବ ପନ୍ଥା ବାଛି ନେଇଛନ୍ତି । ଆଦିବାସୀ ପରି ଏକ ଦଳିତ ବର୍ଗର ଉତ୍ଥାନ ପାଇଁ ନିଜ ଜୀବନକୁ ଉତ୍ସର୍ଗ

କରିଦେଇଛନ୍ତି । ଯାହାଙ୍କର କବିତାର ଆବୃତ୍ତି ଶୁଣୁଶୁଣୁ ଭାରତର ବିଶିଷ୍ଟ ଆଦିବାସୀ ନେତା 'ଗଣଧର ମୁର୍ମୁ' କହନ୍ତି –

"ଆଦିବାସୀଙ୍କ ଉପରେ କ'ଣ ଏଭଳି କବିତା ଲେଖାଯାଇ ପାରେ !!! ପଶ୍ଚିମବଂଗ ତଥା ଦେଶର ବିପ୍ଳବୀ କବିମାନଙ୍କୁ ମୁଁ ଜାଣିଛି । କାହାରି କାହାରି କବିତା ମଧ୍ୟ ଶୁଣିଛି । କିନ୍ତୁ ଏଭଳି କବିତା ମୁଁ କାହାରିଠାରେ ଦେଖିନାହିଁ । ଏହା ଆଦିବାସୀଙ୍କୁ ସଚେତନ ଓ ଜାଗ୍ରତ କରିପାରିବ । ସେମାନଙ୍କୁ ମୁକ୍ତି ସଂଗ୍ରାମ ଦିଗରେ ଭିଡ଼ିନେଇ ପାରିବ । (୧୩୩)

ସଂକଳନସ୍ଥ କବିତା ଗୁଡ଼ିକୁ ଆଲୋଚନା କଲେ କବିଙ୍କର କବିତା କେତେମାତ୍ରାରେ ଦଳିତ ଆଦିବାସୀ ସମାଜ ପାଇଁ ଉତ୍ସର୍ଗୀକୃତ ତାହା ସ୍ପଷ୍ଟ ଜଣାପଡ଼େ । ସଂକଳନସ୍ଥ ପ୍ରଥମ କବିତା 'ତୋର ଏଇ ମହାଭାରତ'ରେ କବି ଆଦିବାସୀ ସମାଜର ବିସ୍ତୃତ ଚିତ୍ର ପ୍ରଦାନ କରିବା ସହିତ ସେମାନଙ୍କୁ କିପରି ସଂଗ୍ରାମ କରିବା ପାଇଁ ପ୍ରେରିତ କରୁଛନ୍ତି ତାହା ଲକ୍ଷ୍ୟ କରାଯାଇପାରେ । ଆଦିଭୂମି ଭାରତବର୍ଷର ଅନ୍ତଃସଲୀଳା ଫଲ୍‌ଗୁ ହେଉଛନ୍ତି ଏଇ ଦଳିତ ଜନଜାତି । ଏ ମଣିଷର ଆଦିମ ଅବସ୍ଥାଠାରୁ ଆରମ୍ଭ କରି ପୁରାଣ ପୃଷ୍ଠାର ଶମ୍ବୁକ, ଜାରା, ବିଶ୍ୱାବସୁ, ଏକଲବ୍ୟ ଏହାର ପ୍ରମାଣ । ଭାରତବର୍ଷର ରାଜନୀତି, ଅର୍ଥନୀତି ବିଶେଷକରି ସମାଜ, ସଂସ୍କୃତି ସହିତ ଏମାନଙ୍କର ଅବିଚ୍ଛେଦ୍ୟ ସଂପର୍କ ରହିଛି । ସଭ୍ୟତା ଓ ସମାଜର ଅଗ୍ରଗତି ପାଇଁ ସମସ୍ତ ଦୁଃଖ କଷ୍ଟକୁ ନିଜ ପୃଷ୍ଠରେ ବହନ କରି ସେମାନେ ଆଜି କୂର୍ମ ପାଲଟି ଯାଇଛନ୍ତି । ଶୋଷଣର ବହ୍ନିରେ ପତଂଗ ପରି ସେମାନେ ପ୍ରତି ମୁହୂର୍ତ୍ତରେ ଝାସ ଦିଅନ୍ତି । ସେମାନଙ୍କର ଆତ୍ମାହୁତି ବିନା ସରକାରୀ କର୍ମଚାରୀମାନଙ୍କର ଆତ୍ମା ଅତୃପ୍ତ ।

ସେ ପ୍ରକୃତିର ସନ୍ତାନ । ପ୍ରକୃତି କୋଳରେ ତାର ଜନ୍ମ, ଲାଳନପାଳନ ଓ ଶେଷରେ ତା'ରି କୋଳରେ ଆଶ୍ରୟ । ଏଇ ହେଉଛି ତାର ଜୀବନ । ତେଣୁ ତା' ଜୀବନ ସହିତ ପ୍ରକୃତି ଓତଃପ୍ରୋତ ଭାବେ ଜଡ଼ିତ । ତା' ଜୀବନରୁ ପ୍ରକୃତିକୁ ବାଦ୍ ଦେଲେ ସମାଜର କଦାପି ଉନ୍ନତି ସାଧିତ ହେବ ନାହିଁ । ଆଜି ବିଜ୍ଞାନ ଯୁଗରେ ପାଦଥାପିଥିବା ମଣିଷକୁ 'ଡଲାର୍'ର ମୋହ ଆକୃଷ୍ଟ କରିଛି । ତେଣୁ ଆମ ଦେଶର ପ୍ରାକୃତିକ ବୈଭବକୁ ଶାଗ ମାଛ ଦରରେ ବିକ୍ରୀ କରିବାକୁ ମଧ୍ୟ କେହି ପଛଘୁଞ୍ଚା ଦେଉନାହାନ୍ତି । ଏଠାରେ କାରଖାନା ସ୍ଥାପନ ପାଇଁ ବହୁ ବିଦେଶୀ କଂପାନୀ ଲାଳାୟିତ । କାହିଁକି ନା' ଓଡ଼ିଶା ରତ୍ନଗର୍ଭା । ସରକାରଙ୍କୁ ଏମାନେ ଜମି ଦେବେ, ବାସଚ୍ୟୁତ ହେବେ, କୂର୍ମପରି ଖଟିବେ । ସରକାର ଜଂଗଲ କାଟିବ, ପର୍ବତ ତାଡ଼ିବ, ଜୀବନର ରସ ଶୋଷଣ କରି ସାମ୍ନାରେ ମରଣର ଦୁନିଆ ଦେଖେଇ ଦେବ । ତେଣୁ ସରକାର

ବିରୋଧରେ କବି ସମଗ୍ର ଆଦିବାସୀ ସମାଜକୁ ଏକ୍‌ଜୁଟ୍ ହୋଇ ସଂଗ୍ରାମ କରିବାକୁ ଆହ୍ୱାନ ପ୍ରଦାନ କରିଛନ୍ତି । କବିଙ୍କ ଭାଷାରେ –

"ସାହୁକାରୀ-ସରକାର ତୋର ଚିର ଶତ୍ରୁ
ବଂଧୁ ଯେ ଦୁନିଆର ମେହେନତି ମଣିଷ
ଆହେ ଗିରିଜନ-ହରିଜନ ପାଦତଳ ବର୍ଗ
କେହି ତୋର ସାହା ନାଇଁ
ନିଜ ପାଇଁ ନିଜେ ତୁହି
ଏକାକାର କୋଟି ମୁଠା
ତେତେବେଳେ ମୁକ୍ତିର ପରଶ
ଆଜି ଗଂଗାରେ ଉଠୁ ଝଡ଼
ଯମୁନାରେ ଝଂଜା
ଗୋଦାବରୀ, ନର୍ମଦା, ତାପ୍ତିରେ ଘୂର୍ଣ୍ଣି
ଆଜି ବ୍ରହ୍ମପୁତ୍ରଠାରୁ ମହାନଦୀ, ସିନ୍ଧୁର ବନ୍ୟା
ଉତ୍ତାଳ କରୁ ମହାସାଗରର ଉର୍ମି,
ପ୍ରଳୟରେ ବୁଡିଯାଉ ହିମାଳୟ-ବିନ୍ଧ୍ୟର ଶିଖର
ମୁଖରିତ ହେଉ ସାରା ଜଗତ;
ଆଜି ମୁକ୍ତି ହୋ ଏକ ପଥ
ଶକ୍ତି ହୋ ସଂଗ୍ରାମୀ ଏକତା
ପ୍ରତି 'ବିଘା' ଭୂମି ତୋର
ହିମାଳୟ କୁମାରୀକା ଏଇ ମହାଭାରତ ।" (୧୩୪)

ପୂର୍ବରୁ ଆମେ କବି ସଚ୍ଚିଦାନନ୍ଦ ରାଉତରାୟଙ୍କର ବିପ୍ଳବୀ କବିତା ସଂପର୍କରେ ଅବଗତ ହୋଇଥିଲେ । କବିଙ୍କର କବିତା କେବଳ "କାଠଯୋଡ଼ୀ ନଦୀକୁ କଥା କୁହାଇବା ପାଇଁ ଉଦ୍ଦିଷ୍ଟ ଥିଲା"(ପାଣ୍ଡୁଲିପି) । ଅନ୍ୟ ଭାଷାରେ କହିଲେ କବିଙ୍କ କବିତାର ବଜ୍ର ଗମ୍ଭୀର ସ୍ୱନ ଶୁଣି କାଠଯୋଡ଼ୀ ମଧ୍ୟ ସଂଗ୍ରାମ କରିବାପାଇଁ ତତ୍ପର ହେଉଥିଲା, କିନ୍ତୁ କବି ସମରେନ୍ଦ୍ର ତାଙ୍କ କବିତାରେ ଆଉ ଦୁଇପାଦ ଆଗକୁ ବଢ଼ିଛନ୍ତି । କବିଙ୍କ କବିତା ମହାନଦୀଠାରୁ ମହାସାଗର ପର୍ଯ୍ୟନ୍ତ ସର୍ବତ୍ର ସଂଗ୍ରାମୀ ବାର୍ତ୍ତାକୁ ପ୍ରଚାରିତ କରିଛି । ବିନ୍ଧ୍ୟ ହିମାଚଳର ଶିଖର ମଧ୍ୟ ପ୍ରଳୟର ବାର୍ତ୍ତାକୁ ବହନ କରିବା ସହିତ, ଏ ମାଟିର ପ୍ରତ୍ୟେକଟି ରେଣୁକଣା ମଧ୍ୟ ବିପ୍ଳବର ବାର୍ତ୍ତାକୁ ମର୍ମେମର୍ମେ ଅନୁଭବ କରିପାରୁଛି । ଏଠାରେ ଆଉ ଗୋଟିଏ କଥା ମଧ୍ୟ ନିର୍ବିବାଦରେ ସ୍ୱୀକାର କରାଯାଇପାରେ, ତାହା

ହେଉଛି ଓଡ଼ିଆ ସାହିତ୍ୟରେ ପ୍ରଗତିବାଦର ଯେଉଁ ଆଦ୍ୟ ଝଙ୍କାର ସୃଷ୍ଟି ହୋଇଥିଲା ଭଗବତୀ ଚରଣ ପାଣିଗ୍ରାହୀଙ୍କର 'ଶିକାର' ଗଳ୍ପ ମାଧ୍ୟମରେ, ସେଥିରେ ମଧ୍ୟ ସରଳ ଆଦିବାସୀ ଯୁବକ 'ଘିନୁଆ' ସଂଗ୍ରାମ କରୁଛି ସାହୁକାର ବିରୋଧରେ । 'ଭଗବତୀ ଚରଣ'ଙ୍କର ଜଣେ ଯଥାର୍ଥ ଉତ୍ତରଦାୟାଦ ଭାବରେ କବି ସମରେନ୍ଦ୍ର ମଧ୍ୟ ସେଇ ଆଦିବାସୀ ଜୀବନକୁ ମୂଳାଧାର ରୂପେ ଗ୍ରହଣ କରି ଆଜି ଶୀର୍ଷ ସ୍ଥାନରେ ଉପନୀତ ହୋଇପାରିଛନ୍ତି ।

ଜୀବନର ଚଲାପଥରେ ଗତି କରିବା ସମୟରେ କବି ସମରେନ୍ଦ୍ରଙ୍କୁ ବହୁ ଘାତପ୍ରତିଘାତର ସାମ୍ନା କରିବାକୁ ପଡ଼ିଛି । 'ଡାଇବେଟିସ୍ ମିଲିୟେଟସ୍'ର କଳା ବାଦଲ କବିଙ୍କୁ ଶାରୀରିକ ସ୍ତରରେ ଦୁର୍ବଳ କରିଦେଇଛି ସତ, କିନ୍ତୁ ମାନସିକ ସ୍ତରରେ ହାର୍ ମାନିଛି । କବି ଆଜି ମଧ୍ୟ ବିପ୍ଳବର ବାର୍ତ୍ତାକୁ ପ୍ରଚାର କରୁଛନ୍ତି । ଆଦିବାସୀମାନଙ୍କୁ ସଚେତନ କରାଉଛନ୍ତି, ଜାଗ୍ରତ କରାଉଛନ୍ତି ସୁଦୂର ମାଲ୍‌କାନଗିରିରେ । ବିପ୍ଳବୀ ଚିନ୍ତାଚେତନାଧର୍ମୀ କବିତା ରଚନା କରିବା ସହିତ 'ବିପ୍ଳବକୁ ମଧ୍ୟ ବାସ୍ତବ ଜୀବନରେ ଆଦର୍ଶବୋଲି ଗ୍ରହଣ କରିନେଇଥିବା କବି ସମରେନ୍ଦ୍ର ନାୟକ 'ପ୍ରଗତିବାଦ'ର ଏକ ନୂତନ ସଂଜ୍ଞା ପ୍ରଦାନ କରିପାରିଥିବା ଏକ ବିରଳ ବ୍ୟକ୍ତିତ୍ୱ ପାଲଟି ଯାଇଛନ୍ତି ।

## କବି ପ୍ରସନ୍ନ କୁମାର ମିଶ୍ର

କବି ପ୍ରସନ୍ନ କୁମାର ମିଶ୍ର ଷାଠିଏ ପରବର୍ତ୍ତୀ କାଳର ପ୍ରଗତିବାଦୀ ଚିନ୍ତାଚେତନାର ଜଣେ ବଳିଷ୍ଠ ସ୍ରଷ୍ଟା । କବିଙ୍କର ପ୍ରତିଭାର ପ୍ରଥମ ସ୍ୱାକ୍ଷର ବହନ କରେ 'ରତ୍ନ ଦ୍ୱୀପର ମାଝି (୧୯୬୧) ନାମକ କବିତା ସଂକଳନ । ଏହାପରେ 'ବସନ୍ତର ସ୍କେଚ୍' (୧୯୬୮), 'ଅଦୃଶ୍ୟ ସଂଗମ' (୧୯୭୬), 'ସାରା ଆକାଶରେ ତାର ଡାକ' (୧୯୭୮), 'ଆପକ୍ଷୀ ଫେରିଆ' (୧୯୮୩), 'ଟ୍ରକ୍ ଡାଲାରେ ସନାତନ' (୧୯୯୧), 'ଚାଲିବାର ଗୀତ' (୧୯୯୨), 'ନିଜ ତରଫରୁ ଶୋକ ପ୍ରସ୍ତାବ' (୧୯୯୭), 'ଷଷ୍ଠ ମହଲାର ସ୍ତ୍ରୀ ଲୋକ' (୧୯୯୮) ଇତ୍ୟାଦି ଗୋଟିଏ ପରେ ଗୋଟିଏ ସଂକଳନ ପ୍ରକାଶିତ ହୋଇ ପାଠକୀୟ ଆଦୃତି ଲାଭ କରିପାରିଛି । ବିଶେଷକରି 'ମନିକାରପ୍ରିୟ' ଏବଂ 'ଟ୍ରକ୍ ଡାଲାରେ ସନାତନ' ଏ ଦୁଇଟି କବିତା ପାଇଁ କବି ପାଠକ ମାନଙ୍କ ନିକଟରେ ବେଶ୍ ଖ୍ୟାତି ଅର୍ଜନ କରିଛନ୍ତି । କବିଙ୍କର ନିଜସ୍ୱ ବକ୍ତବ୍ୟରୁ ଏହା ପ୍ରତିପାଦିତ ହୁଏ ।

"ଗାଳ୍ପିକ, ନାଟ୍ୟକାର, ପ୍ରାବନ୍ଧିକ ବା ଅନ୍ୟାନ୍ୟ ଯେତେ ପରିଚୟ ଅଛି ସେଗୁଡ଼ିକ କବି ଜୀବନର କେବଳ ଉପବିଭାଗ, ଯିଏ କବି ଭାବରେ ପରିଚିତ ଅନ୍ୟାନ୍ୟ ପଦପଦବୀ ତାଙ୍କ ପାଖରେ ଅପାଂକ୍ତେୟ ।" (୧୩୫)

୧୯୬୦-୭୦ ମସିହା ମଧ୍ୟରେ ଲିଖିତ କବିତା ସଂକଳନ ଗୁଡ଼ିକ ବିଶେଷକରି ରତ୍ନଦ୍ୱୀପର ମାଝି, ବସନ୍ତର ସ୍କେଚ୍, ଅଦୃଶ୍ୟ ସଂଗମ ଇତ୍ୟାଦିରେ ଏକ ରୋମାଣ୍ଟିକ୍ ଦୃଷ୍ଟିଭଂଗୀର ପରିଚୟ ମିଳେ । ଏହି ରୋମାଣ୍ଟିକ୍ ଚେତନା ବାସ୍ତବ ନୁହେଁ ବରଂ ଏକ ଇନ୍ଦ୍ରିୟଗ୍ରାହ୍ୟ ରୋମାଣ୍ଟିକ୍ ଚେତନା । କିନ୍ତୁ ବର୍ତ୍ତମାନ ଆଲୋଚନାର ପ୍ରସଂଗ ହେଉଛି କବି ପ୍ରସନ୍ନଙ୍କ କବିତାରେ ପ୍ରଗତିବାଦୀ ଚିନ୍ତାଦର୍ଶକୁ ପ୍ରତିଫଳିତ କରାଇବା । କବିଙ୍କ କାବ୍ୟ ସାଧନାର ମଧ୍ୟବର୍ତ୍ତୀ ପର୍ଯ୍ୟାୟରେ ମଧ୍ୟ ପ୍ରଗତିବାଦୀ ଚିନ୍ତାଦର୍ଶକୁ ଖୋଜିଲେ ଆମକୁ ନିରାଶ ହେବାକୁ ପଡ଼ିବ । ବାସ୍ତବ ପ୍ରେମର ଚିତ୍ର ସାଂଗକୁ ଆଧୁନିକ ଯୁଗର ପ୍ରେମରେ ଯନ୍ତ୍ରଣା, ହତାଶାବୋଧ ଏବଂ ଏଥିପାଇଁ କବି ହୃଦୟର ସମ୍ବେଦନା ପ୍ରକାଶ ପାଇଛି । ୧୯୯୦ ମସିହା ସମୟରୁ ରଚିତ କବିତା ଗୁଡ଼ିକରୁ କବି ଯେ ଜଣେ ସାର୍ଥକ ସାମ୍ୟବାଦୀ ସ୍ରଷ୍ଟା ଏହାକୁ ଅସ୍ୱୀକାର କରାଯାଇନପାରେ ।

୧୯୬୧-୨୦୦୮, ଦୀର୍ଘ ଚାରିଦଶନ୍ଧିରୁ ଉର୍ଦ୍ଧ୍ୱ ସମୟସୀମା ମଧ୍ୟରେ ପ୍ରକାଶିତ ହୋଇଥିବା ଉପରୋକ୍ତ ସଂକଳନ ଗୁଡ଼ିକରୁ ଏହା ପ୍ରତିପନ୍ନ ହୁଏ ଯେ କବି ଏକାଧାରରେ ଜଣେ ରୋମାଣ୍ଟିକ୍-ବିପ୍ଳବୀ କବି । ରୋମାଣ୍ଟିକ୍ କବିତା ରଚନା କରି ଯେମିତି ପାଠକର ହୃଦୟ ଜିତି ପାରିଛନ୍ତି ଠିକ୍ ସେମିତି ସାମ୍ୟବାଦୀ କବିତା ରଚନା କରି ଜନସଚେତନତା ସୃଷ୍ଟି କରିଛନ୍ତି । କବିଙ୍କର ଏ ପ୍ରକାର ଆଭିମୁଖ୍ୟ ସଂପର୍କରେ ମତପ୍ରଦାନ କରିବାକୁ ଯାଇ ଆଲୋଚକ ବାଞ୍ଛାନିଧି ଦାସ କହନ୍ତି -

"ସେ କବିମାନଙ୍କ ମଧ୍ୟରେ ବିପ୍ଳବୀ, ପୁଣି ବିପ୍ଳବୀ ଗହଣରେ ସୂକ୍ଷ୍ମ ଦୃଷ୍ଟିର ଅଧିକାରୀ କବିଟିଏ । ସେ ଓଡ଼ିଶାର ପାବ୍ଲୋ-ନେରୁଦା-ଉଭୟ ପ୍ରେମ ଓ ବିପ୍ଳବୀ କବିତା ଲେଖିବାରେ ଏକାନ୍ତ ସିଦ୍ଧହସ୍ତ ।" (୧୩୬)

ଓଡ଼ିଆ ସାମ୍ୟବାଦୀ ସ୍ରଷ୍ଟା ଅନନ୍ତ ପଟ୍ଟନାୟକଙ୍କ କାବ୍ୟିକ ଚେତନାର ଚୌହଦୀ ଯେମିତି ରୋମାଣ୍ଟିକ୍ ଓ ପ୍ରଗତିବାଦ ମଧ୍ୟରେ ପରିବ୍ୟାପ୍ତ, କବି ପ୍ରସନ୍ନଙ୍କ କ୍ଷେତ୍ରରେ ମଧ୍ୟ ଅନୁରୂପ କାବ୍ୟିକ ଚେତନା ପରିଲକ୍ଷିତ ହୁଏ । ଏହି ରୋମାଣ୍ଟିକ୍‌ଭାବବିଳାସ ସଂପର୍କରେ କବି ଅନନ୍ତ ଦୃଢ଼ ଭାବରେ ଘୋଷଣା କରନ୍ତି –

"ରୋମାଣ୍ଟିକ୍ ଚେତନା ପ୍ରକୃତରେ ଜୀବନଠାରୁ ବିଚ୍ଛିନ୍ନ ନୁହେଁ, ତା'ପରେ ବିପ୍ଳବ କେଉଁଥିପାଇଁ ? କୌଣସି ଆଦର୍ଶ ସୃଷ୍ଟି ଓ ପରିବର୍ତ୍ତନ ପାଇଁ ତ' ବିପ୍ଳବ ? ନାଳ ନର୍ଦ୍ଦମା ଓ ପୂତି ଗନ୍ଧମୟ ଆବର୍ଜ୍ଜନାକୁ ଧ୍ୱଂସ କରି ପଦ୍ମର ସୌରଭ ତା' ମଧ୍ୟରେ କଳ୍ପନା କରିବା ଭୁଲ୍ ନୁହେଁ । ଆଜିର ଯାହା କଳ୍ପନା, ତାହା ଆସନ୍ତାକାଲି ବାସ୍ତବାୟିତ ହୋଇଥାଏ । ସ୍ୱପ୍ନ ଦେଖିଲେ କିମ୍ବା କଳ୍ପନା ନ କଲେ କାହାର ପ୍ରେରଣାରେ ଆପଣ ନୂତନ ସୃଷ୍ଟିରେ ଉଦ୍‌ଯୋଗୀ ହେବେ ?" (୧୩୭)

କବି ପ୍ରସନ୍ନ ସାମ୍ୟବାଦୀ ତତ୍ତ୍ୱର ମୂଳପିଣ୍ଡକୁ ସଠିକ୍ ଭାବେ ହୃଦୟଙ୍ଗମ କରିବା ସହିତ ତାକୁ ନିଜସ୍ୱ ଶୈଳୀରେ କବିତାରେ ଉପସ୍ଥାପିତ କରିଛନ୍ତି । ମାର୍କସ୍‌ବାଦୀ ତତ୍ତ୍ୱ ବିପ୍ଳବକୁ ଏକ ନିର୍ଦ୍ଦିଷ୍ଟ ସୀମା ମଧ୍ୟରେ ଆବଦ୍ଧକରି ନରଖି ଉଦାତ୍ତ ଚିତ୍ତରେ ଘୋଷଣା କରେ "working men of all countries unit" । ଏହି ତତ୍ତ୍ୱର ମୂଳ ଭିତ୍ତିଭୂମି ହେଉଛି ସାଧାରଣ ମଣିଷ ସମାଜ । ମଣିଷ ସମାଜର ସର୍ବାଙ୍ଗୀନ ଉନ୍ନତି ଉପରେ ଏହା ଆଧାରିତ । ଏଠାରେ ଉଚ୍ଚନୀଚ ଭେଦଭାବର ସ୍ଥାନ ନାହିଁ । କବି ପ୍ରସନ୍ନଙ୍କ କବିତାରେ ଏହି ଚିନ୍ତାଦର୍ଶର କିପରି ସଫଳ ରୂପାୟନ ଘଟିଛି ତାହା ନିମ୍ନରେ ପ୍ରଦତ୍ତ –

"ମୋ ଦେଶ ହେବ ସବୁ ଦେଶ
ସବୁ ଦେଶ ହେବ ମୋ ଦେଶ
ସବୁଠି ଶୁଣାଯିବ ଏକ ହିଁ ମଣିଷର ସ୍ୱର
ପୃଥିବୀ ହେବ ଗୋଟିଏ ରକ୍ତରେ ଏକାକାର
ଏଇ ତ' ବୋଧେ ସମୁଦ୍ରକୁ କେଶ କରି
ଯୋଗରେ ବସିଥିବା ମୋ ଦେଶର ଅଂଗୀକାର ।" (୧୩୮)

ପ୍ରଗତିବାଦୀ ତତ୍ତ୍ୱ ଜନସାଧାରଣଙ୍କ ଯାବତୀୟ ସମସ୍ୟାବଳୀର କାରଣ ନିର୍ଦ୍ଧାରଣ କରିବା ସହିତ ଏହା ବିରୋଧରେ ସଂଗ୍ରାମ କରିବାର ଦୃଢ଼ ମାନସିକତା ଜାଗ୍ରତ କରାଏ । ପରିଶେଷରେ ଏକ ସୁସ୍ଥ ସାମାଜିକ ବାତାବରଣର ପରିକଳ୍ପନା କରେ । କିନ୍ତୁ ସାହିତ୍ୟିକମାନେ ଯଦି ସାମାଜିକ ବାସ୍ତବତା ପ୍ରତି ଆଖି ବୁଜି ଦେଇ, ପାଠକ ଚିତ୍ତକୁ ଆମୋଦ ପ୍ରଦାନ କରିବା ସଙ୍ଗେସଙ୍ଗେ କଳ୍ପନା ରାଜ୍ୟରେ ଭାସି ବୁଲିବାର ପ୍ରବଣତା ସୃଷ୍ଟି କରନ୍ତି ତାହା ପ୍ରଗତିବାଦୀ ଧାରାର ଅନ୍ତର୍ଭୁକ୍ତ ହୁଏ ନାହିଁ । କବି ପ୍ରସନ୍ନ ଏହାର ବିରୋଧ କରିବାକୁ ଯାଇ ସେହି ବର୍ଗର ସାହିତ୍ୟିକମାନଙ୍କୁ ଭର୍ତ୍ସନା କରିବାକୁ ମଧ୍ୟ ପଛାନ୍ତି ନାହିଁ ।

କବି କବିତାରେ ପ୍ରଶ୍ନ କରନ୍ତି –

"ମୋତେ ବାଧ୍ୟ କରନା
ସେଇ କବିଗଣଙ୍କ ନାଁ ନେବାକୁ
ଯେଉଁମାନେ କେବଳ
ଲେଖିଛନ୍ତି ରାଜାରାଣୀଙ୍କ ପ୍ରେମଗୀତ
ଦେବଦେବୀଙ୍କ ସ୍ତବ ବା ଜଣାଣ ।
ତାଙ୍କ ଚାରିପଟେ କ'ଣ ନଥିଲେ ମଣିଷ ?

ମା',ମାଉସୀ, ଭାଇ, ଭଉଣୀ-ମୂଲିଆ, କୃଷକ ।
ନାବିକ କି ଶିକ୍ଷକ ?" (୧୩୯)

କବିଙ୍କର ପ୍ରଗତିବାଦୀ ଚିନ୍ତାଦର୍ଶର ପରିପକ୍ୱତା ଅନୁଭୂତ ହୁଏ 'ଟ୍ରକ୍‌ଡାଲାରେ ସନାତନ'ର ଆତ୍ମପ୍ରକାଶ ପରେ । କବିଙ୍କ ସନାତନ କୌଣସି ପୁରାଣର ଦେବତା ନୁହେଁ କି ଇତିହାସର ଖ୍ୟାତନାମା ନାୟକ ନୁହେଁ ଯେ କବି ତା'ର ସ୍ତବ ଗାନ କରିବେ । ସନାତନର ସୃଷ୍ଟି ଏଇ ଧୂଳିଧୂସରିତ ଧରଣୀରୁ । ସାଧାରଣ ଜନଜୀବନ ମଧ୍ୟରୁ ସାଉଁଟି ଆଣିଥିବା 'ସନାତନ' ମାଧ୍ୟମରେ କବି ସାମୂହିକ ଜନକଲ୍ୟାଣର ସ୍ୱପ୍ନ ଦେଖନ୍ତି । କବି ପ୍ରସନ୍ନ ଆଜି ଯଦି ବ୍ୟାପକ ପାଠକୀୟ ଶ୍ରଦ୍ଧାର ଭାଜନ ହୋଇପାରିଛନ୍ତି ତାହା କେବଳ ସମ୍ଭବ ହୋଇପାରିଛି ମାନସ ସନ୍ତାନ ସନାତନ ପାଇଁ । 'ଟ୍ରକ୍ ଡାଲାରେ ସନାତନ' ଗ୍ରନ୍ଥର ମୁଖବଂଧରେ କବି ଉଲ୍ଲେଖ କରିଛନ୍ତି ଯେ –

"ଉଚ୍ଚ ବର୍ଗର ନାୟକ ନାୟିକାଙ୍କୁ ନେଇ କବିତା ରଚନାର ପରଂପରାକୁ ଭାଙ୍ଗି ଦେବାକୁ ଯାଇ ମାଟି ମୂଲିଆ ଚରିତ୍ରକୁ ସାଧାରଣ ପାଠକଙ୍କ ପାଖରେ ପହଞ୍ଚାଇବାର ପ୍ରୟାସ ହିଁ ସ୍ରଷ୍ଟାଙ୍କ ମନରେ ଦ୍ୱନ୍ଦ୍ୱ ସୃଷ୍ଟି କରିଛି ।"(୧୪୦)

ସନାତନ ଚରିତ୍ର ସୃଷ୍ଟି ମୂଳରେ ସାମାଜିକ, ରାଜନୈତିକ, ଆର୍ଥନୀତିକ ପୃଷ୍ଠଭୂମିଟି ନିହିତ ରହିଛି । ଏକ ପକ୍ଷରେ ପ୍ରାକୃତିକ ବିପର୍ଯ୍ୟୟର ପ୍ରଳୟଙ୍କାରୀ ରୂପ, ଅପରପକ୍ଷରେ ଦ୍ରୁତ ଶିଳ୍ପାୟନର ପ୍ରସାର ସମାଜରେ ଦୁଇଟି ଗୋଷ୍ଠୀ ତିଆରି କଲା । ଗୋଟିଏ ପୁଂଜିପତି, ଅପରଟି ସାଧାରଣ ବର୍ଗ । ସାଧାରଣ ଜନତା ଗାଁରେ ଯେମିତି ପ୍ରତିପତ୍ତିଶାଳୀ ଜମିଦାରର ରୋଷର ଶିକାର ହେଉଥିଲା, ସହରକୁ ପଳାୟନ କରିବାଦ୍ୱାରା ତା'ର ଯେ ଏହି ଦୁଃଖର ସମାପ୍ତି ଘଟିଲା ତାହା ନୁହେଁ । ସହରରେ ମଧ୍ୟ ସେ ପୁଂଜିପତି ଗୋଷ୍ଠୀ ଦ୍ୱାରା ହେଲା ଶୋଷିତ । ଏହି ଶୋଷଣ ବିରୋଧରେ ସଂଗ୍ରାମ କରିବାକୁ ସତେଯେପରି ତା'ର ସାମର୍ଥ୍ୟ ନାହିଁ । ସମାଜରେ ଦେଖା ଦେଇଥିବା ଆର୍ଥିକ ଅସଂଗତିର ଚିତ୍ର ସାଙ୍ଗକୁ, ଗରିବ ମଣିଷର ଅସହାୟତାର ଚିତ୍ର ସନାତନ ଚରିତ୍ର ମାଧ୍ୟମରେ ପ୍ରଦର୍ଶିତ । କେବଳ ସେତିକି ନୁହେଁ ସନାତନ ଚରିତ୍ର ସମଗ୍ର ଶୋଷିତ ଜନସାଧାରଣଙ୍କୁ ଶୋଷଣ ବିରୋଧରେ ଏକତ୍ର ସଂଗ୍ରାମ କରିବା ପାଇଁ ପ୍ରେରଣା ପ୍ରଦାନ କରିଥାଏ । ଏ ସଂପର୍କରେ ଆଲୋଚକ 'ଡଃ ଦିଲ୍ଲୀପ କୁମାର ସ୍ୱାଇଁ' ମତ ପ୍ରଦାନ କରିବାକୁ ଯାଇ କହନ୍ତି –

" 'ସନାତନ' ଓଡ଼ିଆ କବିତାର ଦୀର୍ଘ ଦିନର କ୍ରାନ୍ତି, କାମୋଦୀ, କ୍ଳାନ୍ତିର ଶେଷ ଉପଲବ୍ଧି । ପ୍ରସନ୍ନ ମିଶ୍ରଙ୍କ ଉର୍ବର ଓ ଉତ୍ତୀର୍ଣ୍ଣ ଅବବୋଧ ଓ କାବ୍ୟିକ ପରିପକ୍ୱତା । ସନାତନ ଭାଙ୍ଗି ଗଢ଼ିପାରେ । ତା' ଭିତରେ ଆତ୍ମଗୋପନ କରିଛି ଝଡ଼ର ଝଙ୍କାର ଆଉ

ବାତ୍ୟାର ବିକ୍ଷୋଭ । ସେ ସନାତନ । ଓଡ଼ିଆ ପୁଅ । ପାଇକ ପୁଅ । ସେ ଜାଣିଛି ହାତ ଥିଲେ ଭାତର ଅଭାବ ହେବ ନାହିଁ ।"(୧୪୧)

ସନାତନ ନାମ୍ନୀ ଏହି ଚରିତ୍ରଟିକୁ କବି ରାମକୃଷ୍ଣ ନନ୍ଦଙ୍କର 'ଝୁମୁକା' ସଂକଳନରେ ଥିବା ସନାତନ ଚରିତ୍ରରୁ କବି ସାଉଁଟି ଆଣିଛନ୍ତି । ଏହି କଥା କବି ସ୍ୱୟଂ ପୁସ୍ତିକାର ମୁଖବଂଧରେ ସ୍ୱୀକାର କରନ୍ତି । 'ରାମକୃଷ୍ଣ ନନ୍ଦ' ଲେଖିଥିଲେ–

"ସନାତନ ନାମେ ବାଳକଟିଏ ସେ
ଦୂର ଗାଁ ଗଣ୍ଡା ବୁଲି
ମା' ଭାଇ ପାଇଁ ଭିକ ମାଗୁଥିଲା
କାନ୍ଧରେ ପକାଇ ଝୁଲି ।" (୧୪୨)

ଅନୁରୂପ ଢଂଗରେ କବି ସନାତନର ପରିଚୟ ପ୍ରଦାନ କରନ୍ତି –

"ସବୁ ପାପ ତାପ ସହିତ ଲଢ଼ି ଲଢ଼ି
ନିଜେ ବିକଳାଂଗ ହେଲେ ବି
ଯିଏ ମା' ଭଉଣୀ ପତ୍ନୀ ପୁତ୍ରଙ୍କ ପାଇଁ
ଭୁଲି ଯାଇଛି ନିଜର ଜୀବନ ।
ତାରି ନାଁ ତ ସନାତନ ।"(୧୪୩)

କାବ୍ୟ ନାୟକ ସନାତନ କେବଳ ତା'ର ମା; ଭଉଣୀଙ୍କ ପାଇଁ ସଂଗ୍ରାମ କରିବାକୁ ନିଜ ଜୀବନକୁ ବାଜି ଲଗାଇ ଦେଇନାହିଁ । ବରଂ ଏହାରି ଅନ୍ତରାଳରେ ସେ ସମଗ୍ର ମାନବ ସମାଜ ପାଇଁ ସଂଗ୍ରାମ କରିବାକୁ ବଦ୍ଧପରିକର । ସେ ଭଗବତୀ ଚରଣ ପାଣିଗ୍ରାହୀଙ୍କର 'ଘିନୁଆ' ପରି ସଂକଳ୍ପବଦ୍ଧ ସମାଜରୁ ଶୋଷଣର ବିଲୋପ ସାଧନ ପାଇଁ । ସେ କାଉଁରିଆ କାଠି । ଭାଙ୍ଗିଯିବ ପଛେ ନତମସ୍ତକ ହେବ ନାହିଁ । ସେ ବାସ୍ତବିକ୍ ସଂଗ୍ରାମୀ ପୁରୁଷ । ପ୍ରାଣଦେବ ପଛେ ପଛ ଘୁଞ୍ଚା ଦେବ ନାହିଁ । ସନାତନର ସଂଗ୍ରାମୀ ମନୋବଳ ପଛରେ ତା'ର ଦାରିଦ୍ର୍ୟ ହିଁ ମୁଖ୍ୟତଃ ଦାୟୀ । ସମାଜରେ ନିମ୍ନ ମଧ୍ୟବିତ୍ତ ଜନସାଧାରଣଟିଏ ଯେତେବେଳେ ତା'ର ସର୍ବନିମ୍ନ ଆବଶ୍ୟକତା ଖାଦ୍ୟ, ବସ୍ତ୍ର, ବାସଗୃହ ପାଏ ନାହିଁ ସେତେବେଳେ ସେ ବହୁ ବାଧାବିଘ୍ନର ସମ୍ମୁଖୀନ ହୁଏ । ଏକ ପକ୍ଷରେ ଅଭାବଗ୍ରସ୍ତ ଜୀବନ, ଅପରପକ୍ଷରେ ଶୋଷକ ବର୍ଗର ଅତ୍ୟାଚାର । ଶେଷରେ ଏଥିରୁ ମୁକୁଳିବା ପାଇଁ ଭିଟାମାଟି ଛାଡ଼ିଦିଏ । 'ସନାତନ' ମଧ୍ୟ ଶେଷରେ ଭିଟାମାଟି ଛାଡ଼ିଛି । କବିଙ୍କ ଭାଷାରେ –

"ଟ୍ରକ୍ ଡାଲାରେ ବସି କୁଆଡ଼େ ଯାଉଛୁରେ ସନାତନ ?
ଥେଉଭାଲି ନା ଦାମନ ଯୋଡ଼ି ?

ଯୁଆଡ଼େ ଯା' ସବୁଠି ପାହାଡ଼
ସବୁଠି ପାହାଡ଼ ଭାଂଗି କରିବାକୁ ହେବ ଧୂଳି ।" (୧୪୪)

କବିଙ୍କର ଏ ପ୍ରକାର ଦୃଷ୍ଟିଭଂଗୀ କବି ସଚ୍ଚିଦାନନ୍ଦ ରାଉତରାୟଙ୍କର 'ଛୋଟ ମୋର ଗାଁଟି'ରେ ମଧ ପରିଲକ୍ଷିତ ହୁଏ । କିନ୍ତୁ ଏଥିରେ ପ୍ରଗତିବାଦୀ ଚିନ୍ତାଦର୍ଶକୁ ଖୋଜିଲେ ଆମକୁ ନିରାଶ ହେବାକୁ ପଡ଼େ । କେବଳ ସାଧାରଣ ବର୍ଗର ଜନତା କିପରି ଗାଁରେ ପ୍ରତାପଶାଳୀ ଜମିଦାରର ଦୌରାତ୍ମ୍ୟ ସହ୍ୟ କରିନପାରି ସହର ଚାଲିଯାଉଛି ତା'ର ଚିତ୍ର ଏଥିରେ ପ୍ରଦର୍ଶିତ ।

"ପ୍ରତାପଶାଳୀ ସାମନ୍ତରାୟ
ଗାଁରେ କଲେ ଏମନ୍ତ ରାୟ
ଦେଏଣା ଭାରେ ସକଳ ରାୟ
ରେଙ୍ଗୁନ୍ ଭୂଇଁ ଧାଆନ୍ତି ।
ଛୋଟ ମୋର ଗାଁଟି ।" (ପଲ୍ଲିଶ୍ରୀ)

କବି ରାଉତରାୟଙ୍କର କବିତାଟି ଯଦି ଏହି ଚିନ୍ତାଧାରାର ଉନ୍ମେଷ ହୁଏ ପ୍ରସନ୍ନଙ୍କ 'ସନାତନ' ଏହାର ଉତ୍ତରଣ । ସହରରେ ପହଞ୍ଚିବା ପରେ ସନାତନ ହୃଦୟରୁ ରକ୍ତ ନିଗାଡ଼ି ଶ୍ରମ କରିଚାଲେ । ହୀନିମାନି ପରିବାର ମୁଖରେ ଟିକେ ହସ ଫୁଟାଇବା ପାଇଁ ଲହୁ ଲୁହ ଏକାକାର କରିଦିଏ । କବିଙ୍କ ବର୍ଣ୍ଣନାରେ ଏହାର ନିଖୁଣ ଚିତ୍ର କିପରି ପ୍ରଦର୍ଶିତ ହୋଇଛି ଦେଖନ୍ତୁ -

"ସନାତନ ବଞ୍ଚିଛି
ମୋରମ୍ ସଡ଼କର ତଳେ ତା' ଛାତି ଅଛି,
ଦଶ ମହଲା ନିର୍ମାଣ ଲାଗି
ସନାତନ ହାଡ଼ ଦେଇଛି ।" (୧୪୫)

ସନାତନ ଏକ ଗାଉଁଲୀ ସରଳ, ସାଧାରଣ, ସ୍ନେହଶୀଳ ବ୍ୟକ୍ତିତ୍ୱ । ଏ ପ୍ରକାର ସାଦାସିଧା ବ୍ୟକ୍ତିଟିର ହୃଦୟରେ ବିପ୍ଳବର ଉତ୍ତପ୍ତ ଅଗ୍ନିକୁ ମଧ ଲକ୍ଷ୍ୟ କରାଯାଇପାରେ । ସନାତନ ସାହସୀ । ଅସାଧ ସାଧନ କରିବାର ଅମାପ ଶକ୍ତି ତା'ଠାରେ ନିହିତ । ପ୍ରତିହିଂସା ପରାୟଣ ମନୋବୃତ୍ତି ତା' ପାଖରେ ନାହିଁ । ସନାତନ ଏକ ମହତ୍ ମଣିଷ । କବିଙ୍କ ବର୍ଣ୍ଣନାରେ –

"ସନାତନ ! ତୁ ପୁଣି କେବେ ପ୍ରତିଶୋଧ ନେଲୁଣି
ନା ନେବୁ ଏଥରକ,
ଝାଳ ପୋଛି ଦେଲେ ପୋଛି ହୋଇଯାଏ ତୋର ପ୍ରତିହିଂସା

'କଅଁଳ ଆମ୍ବପତ୍ର ଦେଖିଲେ
ତୁ ସବୁ ଖଳଜନଙ୍କର ମୁହଁ ଭୁଲିଯିବୁ ।" (୧୪୬)

ସନାତନ ଏକ ହୃଦୟବାନ୍ ବ୍ୟକ୍ତିତ୍ୱ । ଦାୟିତ୍ୱବାନ୍ ସଚେତନ ମଣିଷଟିଏ । ସେ ନିଜ ଭିତରେ ସମଗ୍ର ମଣିଷ ସମାଜକୁ ଅନୁଭବ କରିପାରୁଛି । ସେ ଧ୍ୱଂସ ଚାହେଁ ନାହିଁ, ସଂଗ୍ରାମ ମାଧ୍ୟମରେ ସୁସ୍ଥ ସମାଜ ଗଠନର ପରିକଳ୍ପନା କରେ । 'ସନାତନ'ର ଆଦର୍ଶ ବ୍ୟକ୍ତିତ୍ୱ ସଂପର୍କରେ କବି ସ୍ୱୟଂ ବକ୍ତବ୍ୟ ପ୍ରଦାନ କରନ୍ତି ଯେ -

"ମୋ ପାଇଁ 'ସନାତନ' ଅଖଣ୍ଡ ସମୟ, ସୁଅ ମୁହଁର ଅମର ମଣିଷ ଓ ଏକ କାବ୍ୟ ବ୍ୟକ୍ତି । ତା'ର ଜନ୍ମ 'ଜାଳି ପୋଡ଼ି ଦେବାକୁ ଧସାଇ ନୁହେଁ, ପୁନଃ ପୁନଃ ଜୀବନ ନିର୍ମାଣ କରିବାକୁ, ଶକ୍ତି ଯୋଗାଇ ଦେବାକୁ, ପ୍ରତିଶୋଧ ନେବାକୁ ନୁହେଁ, ପ୍ରତିଷ୍ଠା କରିବାକୁ ମରଣର ସମସ୍ତ ଷଡ଼ଯନ୍ତ୍ର ଭଣ୍ଡୁର କରିବାକୁ ।"(୧୪୭)

ମାର୍କସ୍ ସମଗ୍ର ବିଶ୍ୱବାସୀଙ୍କୁ ସ୍ଥାନ-କାଳ-ପାତ୍ର ଭେଦରେ ଏକଜୁଟ୍ ହୋଇ ଅନ୍ୟାୟ ବିରୋଧରେ ସଂଗ୍ରାମ କରିବାପାଇଁ ଯେଉଁ ପ୍ରେରଣା ପ୍ରଦାନ କରିଥିଲେ କବି ପ୍ରସନ୍ନ ମଧ୍ୟ ଅନୁରୂପ ଭାବରେ ଯୁଗଯୁଗ ଧରି ବସା ବାନ୍ଧିଥିବା ଯନ୍ତ୍ରଣା ଜର୍ଜ୍ଜରିତ କ୍ଷୋଭ ବିରୋଧରେ ସଂଗ୍ରାମ କରିବାକୁ ସନାତନକୁ ଛିଡ଼ା କରାଇଛନ୍ତି । ସନାତନ ହୃଦୟରେ ସମାଜ ବ୍ୟବସ୍ଥା ବିରୋଧରେ ପ୍ରତିକ୍ରିୟା ସୃଷ୍ଟି ହେଉଛି କିନ୍ତୁ ପ୍ରତିହିଂସା ନାହିଁ । ସନାତନ ଯଦି ଏକାକୀ ଚାହେଁ ତା' ହେଲେ ମଧ୍ୟ ସମାଜରେ ପରିବର୍ତ୍ତନ ଆଣିପାରିବ ନାହିଁ । ତେଣୁ କବି ସନାତନକୁ ଏଠାରେ ସଂଗ୍ରାମର ଏକ ପ୍ରତୀକ ଭାବରେ ଉପସ୍ଥାପିତ କରିଛନ୍ତି । ସନାତନ ଏକ ଆହ୍ୱାନ । ଏକ ଅଂଗୀକାରବଦ୍ଧତାର ପ୍ରତୀକ । ସନାତନ ଏକ ନୁହେଁ ବହୁ ବିପୁଳ ଜୀବନର ଐକ୍ୟତାନ । ତେଣୁ ସନାତନ କଣ୍ଠରେ କବି ଆହ୍ୱାନ କରୁଛନ୍ତି -

"ଆସ ମୋର ଝୁମ୍ପୁଡ଼ିବାସୀ ଭାଇମାନେ
ଆସ ମୋର ଶୁଷ୍କ-ବିଲର ମୂଲିଆମାନେ
ଖଣିରୁ ଆସ, ଖଳାରୁ ଆସ
ବଣରୁ ଆସ, ପାହାଡ଼ରୁ ଆସ
ଗାଁରୁ ଆସ, ନଗରରୁ ଆସ
ଆସ ଉତ୍ତରରୁ, ଦକ୍ଷିଣରୁ, ପୂର୍ବରୁ ପଶ୍ଚିମରୁ
ଆସ ଆଫ୍ରିକାରୁ, ଅଷ୍ଟ୍ରେଲିଆରୁ, କାମ୍ପୁଚିଆରୁ
ଆସ ଆସ, ଆସ ଆସ ।" (୧୪୮)

ସମଗ୍ର ଶୋଷିତ ବର୍ଗକୁ ଏକାଠି କରି ସାମ୍ୟ, ମୈତ୍ରୀର ବାର୍ତ୍ତା ପ୍ରଚାର କରୁଛି

ସନାତନ । ସ୍ୱାଧୀନତା ସଂଗ୍ରାମ କାଳରେ ସୁଭାଷ ବୋଷ ଦେଇଥିବା ଆହ୍ୱାନ- "ମୋତେ ରକ୍ତ ଦିଅ, ମୁଁ ତୁମକୁ ସ୍ୱାଧୀନତା ଆଣି ଦେବି ।" ପରି ସନାତନ ମଧ୍ୟ ପ୍ରତିଜ୍ଞାବଦ୍ଧ । ଏଠାରେ 'ରକ୍ତ ଦିଅ' - ସାହଚର୍ଯ୍ୟକୁ ହିଁ ସୂଚାଉଛି । ତଥାକଥିତ ସମାଜ ବ୍ୟବସ୍ଥାରେ ପରିବର୍ତ୍ତନ ଆଣିବାକୁ ହେଲେ ସମଗ୍ର ବିଶ୍ୱର ଜନସାଧାରଣଙ୍କୁ ସନାତନର ସାଥ୍ ଦେବାକୁ ପଡ଼ିବ । ସନାତନ ଭିତରେ ସବୁ ଅବହେଳିତ, ଶୋଷିତ ଓ ନିର୍ଯ୍ୟାତିତ ମଣିଷଙ୍କ ଚେହେରାକୁ ଯେ କେହି ଅନୁଭବ କରିପାରିବ । ସନାତନ ଏଇ ବିଶ୍ୱର ଅସହାୟ ଜନତାଙ୍କର ପ୍ରତିନିଧି । ଯିଏ ନାନା ଅବସ୍ଥାରେ ନାନା ରୂପରେ ବିଦ୍ୟମାନ । ସେ ମଧ୍ୟ ମଣିଷ ହୃଦୟରେ ଆତ୍ମବିଶ୍ୱାସ ଭରିଦେବା ପାଇଁ ସଦାତତ୍ପର ।

ଓଡ଼ିଆ କବିତାର ଏହି ବହୁଚର୍ଚ୍ଚିତ ନାୟକଟି ଏକ ପବିତ୍ର ଜୀବନବୋଧର ଅନୁସଂଧାନରେ ବ୍ୟତିବ୍ୟସ୍ତ । ମନୁଷ୍ୟକୁ ତା'ର ସର୍ବନିମ୍ନ ଆବଶ୍ୟକତା ହାସଲ କରିବା ପାଇଁ ପ୍ରବର୍ତ୍ତାଇବା ତା'ର ଏକାନ୍ତ ଲକ୍ଷ୍ୟ । 'ସନାତନ' ଉପରେ କବିଙ୍କର ରହିଛି ଶତପ୍ରତିଶତ ଆସ୍ଥାଭାବ । ତେଣୁ କବି ମତବ୍ୟକ୍ତ କରନ୍ତି –

"ଟ୍ରକ୍ ଡାଲାରେ ସନାତନ' କେତେକଙ୍କୁ ପ୍ରଭାବିତ କରିଥାଏ । ତେବେ ମୁଁ ନିଶ୍ଚୟ 'ଶ୍ରମ-ସାର୍ଥକ ମଣିବି । କିନ୍ତୁ ସେ ଗୌରବ ଟିକକ ସନାତନର ପ୍ରାପ୍ୟ । ସନାତନ ମୁଣ୍ଡ ଟେକି ଠିଆ ହେଲେ ଓଡ଼ିଆ ପୁଅ, ଓଡ଼ିଆ ଜାତିର ସର୍ବହରା, ଖଟିଖିଆ, କୃଷକ, ଶ୍ରମିକ, ଶିକ୍ଷକାଦି ମାନେ ମୁଣ୍ଡଟେକି ଠିଆ ହେବେ, ଓଡ଼ିଆ କବିତା ସମ୍ମାନ ପାଇବ । ସନାତନକୁ ମୁଁ କେଉଁ ଋଷିଆ, କିମ୍ବା ଚୀନ୍ ଦେଶରୁ ଧାର୍ କରି ଆଣିନି । ସେ ଏଇ ମାଟିର ।" (୧୪୯)

ସନାତନକୁ କବି ପାଠକ ସମାଜ ହାତରେ ଟେକି ଦେଇଛନ୍ତି । ସେଇମାନେ ହିଁ ଦିନେ ନା ଦିନେ ଉଚିତ୍ ମର୍ଯ୍ୟାଦା ପ୍ରଦାନ କରିବେ । ଏଠାରେ ଗୋଟିଏକଥା ଲକ୍ଷ୍ୟକରାଯାଇପାରେ ଯେ, କବିଙ୍କର ବୈପ୍ଳବାତ୍ମକ ଆଭିମୁଖ୍ୟ ମୁଖ୍ୟତଃ ସାମାଜିକ ଅଂଗୀକାରବଦ୍ଧତାକୁ ନେଇ ପରିପୁଷ୍ଟ ହୋଇପାରିଛି । କେବଳ ଯେ ସମାଜରେ ସୁସ୍ଥ ବାତାବରଣର ଆନୟନ ପାଇଁ କବି ସନାତନକୁ ଉପସ୍ଥାପିତ କରିଛନ୍ତି ତାହା ନୁହେଁ, ଜନଗଣଙ୍କ ହୃଦୟରେ ପ୍ରେରଣା ସୃଷ୍ଟି କରିବାପାଇଁ ଆହ୍ୱାନ ପ୍ରଦାନ କରିଛନ୍ତି । ପୁଂଜିପତି ଗୋଷ୍ଠୀଙ୍କୁ କୈଫିୟତ୍ ମାଗିଛନ୍ତି । କବିଙ୍କ ଭାଷାରେ –

"ଚଳାଇ କଳ ଆମେ ସାରିଲୁ ବଳ
ବଢ଼ିଲା ଧନ ତୁମ ଅଚଳା ଚଳ
ଖଟି ଖଟି ଆମେ ହେଲୁ ଦୁଃଖୀ ମଲୁ
ଆମରି ଲୁହ ତୁମେ କରିଲ ଚଳୁ

ପିନ୍ଧି ବୁଲ
ରତ୍ନହାର ଦିଶେ ଚମତ୍କାର
ଯେ' କି କାରବାର, ମାଲିକ ହେ ?
ଆଜି ହିସାବ୍ କର । " (୧୫୦)

କବିଙ୍କର ଏ ପ୍ରକାର ଆହ୍ୱାନ, ଶ୍ରମିକ ଶ୍ରେଣୀ ସପକ୍ଷରେ ଏବଂ ପୁଂଜିପତି ମାନଙ୍କ ବିରୋଧରେ ଏକ ଶକ୍ତ ଚେତାବନୀ । ଏହା କଦାପି ବ୍ୟର୍ଥ ହେବ ନାହିଁ । ଅଂଗୀକାରବଦ୍ଧ ସ୍ରଷ୍ଟା ସମାଜରେ କିଞ୍ଚିତ ବ୍ୟତିକ୍ରମକୁ କଦାପି ବରଦାସ୍ତ କରିପାରେ ନାହିଁ । ସମୟ ଓ ପରିବେଶକୁ ସଜାଡ଼ିବାକୁ ଯାଇ କୁହେ-

"ଆଉ ଅଂଗୁଳି ଚୋଟମିଲେ
ଚଳିବ ନାହିଁରେ ବାବୁ
ଏଥର କିଛି କରିବାକୁ ହେବ ।

x x x x x x

ତୋତେ ତ' ଆତ୍ମରକ୍ଷା କରିବାକୁ ହେବ
ପଥର ତାଡ଼ିବା ଶିଖିନେ,
ଦିନେ ତୋତେ ପାହାଡ଼ ଟାଳିବାକୁ ହେବ ।" (୧୫୧)

'ଟ୍ରକ୍ ଡାଲାରେ ସନାତନ' ସଂକଳନରେ କବିଙ୍କର ଦୃଷ୍ଟିଭଂଗୀରେ ଯେଉଁ ସାମାଜିକ ଅଂଗୀକାରବଦ୍ଧତା ପରିଲକ୍ଷିତ ହେଉଥିଲା, ଟାଳିବାର ଗୀତ'ରେ ଏକ ଆହ୍ୱାନୀ ମାନସିକତାକୁ ଲକ୍ଷ୍ୟ କରାଯାଇପାରେ । 'ସନାତନ' ଯେମିତି ପଥର ଟାଳିବାକୁ ସମର୍ଥ ଥିଲା 'ଟାଳିବାର ଗୀତ'ର ନାୟକକୁ ମଧ୍ୟ କବି ପାହାଡ଼ ଟାଳିବାକୁ ସମର୍ଥ କରାଇବାକୁ ଚେଷ୍ଟା କରିଛନ୍ତି । କବି ପ୍ରସନ୍ନ ତାଙ୍କର କାବ୍ୟିକ ଚରିତ୍ରମାନଙ୍କଠାରେ ଏତେ ଶକ୍ତି ଓ ସାହସ ଭରିଦେଇଛନ୍ତି ଯେ ସମାଜର ଯାବତୀୟ ବାଧାବିଘ୍ନର ପ୍ରାଚୀରକୁ ମୁହୂର୍ତ୍ତକ ମଧ୍ୟରେ ଧୂଳିସାତ୍ କରିଦେବାପାଇଁ ସେମାନେ ସମର୍ଥ । କବିଙ୍କର କାବ୍ୟିକ ପ୍ରତିଭାର ବୈଶିଷ୍ଟ୍ୟ ନିରୂପଣ କରିବାକୁ ଯାଇ ଆଲୋଚକ 'ବାଞ୍ଛାନିଧି ଦାସ' କହନ୍ତି–

"ତାଙ୍କ କବିତାରେ ଅଛି ଅଫୁରନ୍ତ ଆଶାବାଦ, ମାନବିକ ମୂଲ୍ୟବୋଧର ଝଣ୍ଡାକୁ ଊର୍ଦ୍ଧ୍ୱେ ଟେକି ପଦଚାରଣ କରିବାର ଝୁଙ୍କ୍ । କବିତାର ଭିତ୍ତିଭୂମି କିନ୍ତୁ ଏଇ ମାଟି ଓ ତା'ର ବାସ୍ତବତା । ସମାଜ ଭିତରେ କବିଙ୍କର ଚେତନାର ଚେର ରହିଅଛି । ଲୋକଙ୍କର ଆଶା ଓ ପ୍ରତ୍ୟାଶାର ବଳୟକୁ ସ୍ପର୍ଶ କରିପାରିଥିବାରୁ କବି ଜନଗଣର କାବ୍ୟକାର ରୂପେ ଚିରକାଳ ଆଦୃତି ଲଭିବେ ।" (୧୫୨)

ଷାଠିଏ ଦଶକରୁ କାବ୍ୟକବିତା ରଚନା କ୍ଷେତ୍ରରେ କବି ପ୍ରସନ୍ନ ପାଦଥାପିଥିଲେ ସତ, କିନ୍ତୁ ନବେ ଦଶକ ପରେ ଜନମାନସରେ ବେଶ୍ ଆଦୃତି ଲାଭ କରନ୍ତି । 'ସନାତନ' ହିଁ କବିଙ୍କୁ ଏହି ମର୍ଯ୍ୟାଦା ପ୍ରଦାନ କରିଛି କହିଲେ ଅତ୍ୟୁକ୍ତି ହେବ ନାହିଁ । ତାଙ୍କର କବିତା ସମାଜ ପ୍ରତି ଯେତିକି ଅଂଗୀକାରବଦ୍ଧ, ମାନବିକ ମୂଲ୍ୟବୋଧରେ ସେତିକି ରସାଣିତ ।

## କବି ଆଶୁତୋଷ ପରିଡ଼ା

୧୯୫୦ ମସିହା ପରବର୍ତ୍ତୀ ସମୟରେ ଯେତେବେଳେ ସାମ୍ୟବାଦର ସୁସ୍ଥ, ସୁନ୍ଦର ଧାରାଟି ଶୁଷ୍କ ହୋଇ ଆସୁଥିଲା, ଏପରି ଏକ ସନ୍ଧିକ୍ଷଣ କାଳରେ ଓଡ଼ିଆ ସାହିତ୍ୟରେ କବି ଆଶୁତୋଷଙ୍କର ଆବିର୍ଭାବ ଘଟେ । ଏହି ସମୟ ମଧ୍ୟରେ ଦୃଷ୍ଟିଗୋଚର ହେଉଥିବା ସାହିତ୍ୟକୃତିର କଞ୍ଚାମାଲ୍ ଥିଲା ସ୍ୱାଧୀନତା ପରବର୍ତ୍ତୀକାଳର ବିଭଂଗ ମାନସିକତା ଏବଂ ଜୀବନବାଦୀ ଦୃଷ୍ଟିକୋଣ । ଏହାକୁ ହିଁ ଆଧାର କରି ସ୍ରଷ୍ଟା ସମାଜରେ ସୁସ୍ଥ ବାତାବରଣର ଆନୟନପାଇଁ ପ୍ରଚେଷ୍ଟା କରନ୍ତି । ଏହି ପରିକଳ୍ପନା ଓ ପ୍ରଚେଷ୍ଟା ମଧ୍ୟରେ ନିହିତ ହୋଇରହିଛି 'ପ୍ରଗତିବାଦର' ଅନ୍ତଃସ୍ୱର । 'ପ୍ରଗତିବାଦ' ଯଦି ମୁକ୍ତି, ମୈତ୍ରୀ, ମାନବିକତାର ସ୍ୱର ଉତ୍ତୋଳନ କରେ, ତା' ହେଲେ ୧୯୫୦ ପରବର୍ତ୍ତୀକାଳର ସ୍ରଷ୍ଟାମାନଙ୍କର ସୃଜନଶୀଳ ଲେଖନୀ ଏହି ମହାମନ୍ତ୍ରକୁ ବହନ କରିନେଇଛି । ଏହି ଚିନ୍ତାଧାରାର ପ୍ରତିନିଧିତ୍ୱ କରୁଥିବା ଅସାମାନ୍ୟ ପ୍ରତିଭାଧର କବି ଆଶୁତୋଷଙ୍କ କାବ୍ୟିକ ଦିଗ୍‌ବଳୟକୁ ଆମେ ଉପରୋକ୍ତ ମତାନୁଯାୟୀ ଆଲୋଚନା କରିବା । ଛାତ୍ରାବସ୍ଥାରୁ କବି କାବ୍ୟକବିତା ରଚନା କ୍ଷେତ୍ରରେ ମନୋନିବେଶ କରନ୍ତି । ସାମୟମାୟିକ କାଳର ବହୁ ଓଡ଼ିଆ ପତ୍ରପତ୍ରିକାରେ କବିଙ୍କର ରାଶିରାଶି କବିତାମାନ ପ୍ରକାଶିତ ହୋଇ ପାଠକ ମହଲରେ ଉଚ୍ଚପ୍ରଶଂସିତ ହୋଇପାରିଛି । କବିତା ମାଧ୍ୟମରେ ମୁକ୍ତିର ସ୍ୱପ୍ନ ଦେଖୁଥିବା କବି ଆଶୁତୋଷଙ୍କର 'ଉପସିତ କ୍ରୋଧ', 'ଚଣ୍ଡାଳ', 'ଶବ୍ଦଭେଦୀ', 'ରକ୍ତବର୍ଣ୍ଣବାଲି', 'ଅଂଗାରଗାର' ଇତ୍ୟାଦି ପ୍ରକାଶିତ ହୋଇ କବିଙ୍କର କାବ୍ୟିକ ପ୍ରତିଭାର ପରିଚୟ ବହନ କରିଛି । ଆଲୋଚକ ଡଃ ଭରତ ବେହେରାଙ୍କ ମତରେ –

"ଆଶୁତୋଷୀୟ ସାରସ୍ୱତ ଦୃଷ୍ଟି ଓ ସୃଷ୍ଟି , ଗତି ଓ ପ୍ରକୃତି ପ୍ରତିଶ୍ରୁତିବଦ୍ଧ । କେବେ କୌଣସି ପରିସ୍ଥିତିରେ ଆଶୁତୋଷୀୟ କାବ୍ୟଜିଜ୍ଞାସା ବହୁଧା ବିଭକ୍ତ ହୋଇନାହିଁ । ସବୁଠୁ ତାତ୍ପର୍ଯ୍ୟପୂର୍ଣ୍ଣ ବିଷୟ ହେଲା ଅନ୍ୟ ଯେ କୌଣସି ଓଡ଼ିଆ କବିଙ୍କଠାରୁ ଆଶୁତୋଷଙ୍କ କାବ୍ୟ ସଂଭାର ନିଆରା । କବିଙ୍କର ନିଜସ୍ୱ ବିଚାରବୋଧ ଅଛି । ଅଛି ମଧ୍ୟ ନିଜସ୍ୱ ଦୃଷ୍ଟିଭଂଗୀ । ତାଙ୍କ ଚେତନାର ଅପୂର୍ବ ଦିଗନ୍ତ ଓ ସ୍ୱାତନ୍ତ୍ର୍ୟ ବସ୍ତୁତଃ ଅଲଗା । ଅଭିନବ

ଉପସ୍ଥାପନା ଶୈଳୀ ରଂଗ ତୂଳୀରେ ଜୀବନର କାନ୍‌ଭାସ୍ ଉପରେ ଆଙ୍କିଛନ୍ତି ସାମାଜିକ ବିପ୍ଳବର ନକ୍‌ସା । (୧୫୩)

କବିଙ୍କର କବିତାର ପ୍ରତ୍ୟେକ ପଂକ୍ତି ପାଠକର ମନରେ ଭରିଦିଏ ଅସରନ୍ତି ପ୍ରେରଣା । ବିପ୍ଳବୀ ଜନମାନସକୁ ସଂକଳ୍ପବଦ୍ଧ ଓ ସଚେତନ କରାଇବା ସହିତ ସାମାଜିକ ଅବ୍ୟବସ୍ଥାକୁ ସଜାଡ଼ିବା ଓ କର୍ତ୍ତବ୍ୟ ପରାୟଣ ହେବା ପାଇଁ ପ୍ରେରଣା ପ୍ରଦାନ କରେ । କଳାତ୍ମକ ଢଂଗରେ କବି ନିଜର ବୈପ୍ଳବିକ ଚିନ୍ତାଦର୍ଶକୁ କବିତାରେ ପ୍ରକାଶ କରନ୍ତି । ପ୍ରଥମ କବିତା ସଂକଳନ 'ଈପ୍‌ସିତ କ୍ରୋଧ' ୧୯୮୭ ମସିହାରେ ପ୍ରକାଶିତ ହୁଏ । ନାମକରଣରୁ ପ୍ରତିପାଦିତ ହୁଏ ଯେ, ସମାଜ ମଧ୍ୟରେ ପରିଲକ୍ଷିତ ହେଉଥିବା ଅତ୍ୟାଚାର, ଶୋଷଣ ବିରୋଧରେ କବି ହୃଦୟର କ୍ରୋଧ ବ୍ୟକ୍ତ କରିଛନ୍ତି । ଏ ସଂପର୍କରେ କବି ବଜ୍ରନାଥ ରଥଙ୍କ ମନ୍ତବ୍ୟକୁ ଏଠାରେ ଉଲ୍ଲେଖ କରାଯାଇପାରେ ।

"ଏଇଭଳି ଏକ କ୍ରୋଧକୁ ବଢ଼ାଇ କୁଢ଼ାଇ ନିଜ ଭିତରେ ସଯତ୍ନ ଲାଳନପାଳନ କରି ତା'ରି ଜରିଆରେ ଏକ ଅଭିନବ କାବ୍ୟକୋଣାର୍କ ଗଢ଼ି ଦେଇଛନ୍ତି କବି ଆଶୁତୋଷ ପରିଡ଼ା । (୧୫୪)

ସଂକଳନସ୍ଥ ପ୍ରଥମ କବିତା 'ଭାରତମାତା' । ଯେଉଁଥିରୁ କବିଙ୍କର ସମାଜମନସ୍କ ମନୋବୃତ୍ତି, ଗଣ ଜୀବନାଭିମୁଖୀ ଚିନ୍ତାଦର୍ଶ ପ୍ରତିପାଦିତ ହୋଇଥାଏ । ଭାରତମାତା ଦୀର୍ଘବର୍ଷଧରି ବିଦେଶୀ ଶାସନର ଯନ୍ତାରେ ନିଜକୁ ସମର୍ପି ଦେଇଛି । ସମସ୍ତଙ୍କ ଦ୍ୱାରା ସେ ହୋଇଛି ଭୂଲୁଣ୍ଠିତା । ଧନ ଲାଳସା ହିଁ ବିଦେଶୀ ଶକ୍ତିକୁ ସଦାସର୍ବଦା ଆସକ୍ତ କରିଛି । ଭାରତମାତା ଏହି ବିଦେଶୀ ଶକ୍ତି ଦ୍ୱାରା ଅପହୃତା ହେବା ପରେ ନିଜସ୍ୱ ସନ୍ତାନମାନଙ୍କ ପାଇଁ ତା' ପାଖରେ ଆଜି କିଛି ନାହିଁ । ସେ ଆଜି ନିଃସ୍ୱା ପାଲଟି ଯାଇଛି । ଏହିପରି ଏକ ନିଅଁଟିଆ ସମାଜ ବ୍ୟବସ୍ଥାର ନିଛକ ଚିତ୍ର ଏଠାରେ କିପରି ରୂପ ପାଇଛି ଦେଖିବା ଆସନ୍ତୁ –

"ନିଶ୍ଚଳ ପାଳ ମୂର୍ତ୍ତି ପରି
କେଉଁ ମୂଲିଆ ପୁଅର ଉଜୁଡ଼ା କ୍ଷେତକୁ ଜଗିଛୁ
ଅଂଧାରରେ ଚୋରମାନେ
ସବୁ ଶସ୍ୟ ଲୁଟି ନେବା ପରେ
ଫୁଙ୍କି ଫୁଙ୍କି କେଉଁ କୁହୁଳା ଚୁଲିକୁ
ତୋ ମୁହଁରେ ଛାଇ ଯାଇଛି ବିଷାଦର ଧୂଆଁ ।
ପେଟର ଭୋକ ନେଇ
ତୁ'ତ ପୋଇଲି ହୋଇ ଯାଇଛୁ ନିଜ ଘରେ ମା !" (୧୫୫)

ଭାରତବର୍ଷର ଏ ପ୍ରକାର ଦୈନ୍ୟ ଅବସ୍ଥା କବିଙ୍କ ମନରେ ଗଭୀର ଭାବାନ୍ତର ସୃଷ୍ଟି କରିଛି । ଯେଉଁ ଦେଶ ଦିନେ ଧନଧାନ୍ୟରେ ପରିପୂର୍ଣ୍ଣ ଥିଲା, 'ସୁନାର ଭାରତବର୍ଷ' ବୋଲି ଦେଶ ବିଦେଶରେ ଖ୍ୟାତି ଥିଲା, ସେ ଆଜି କାଂଗାଳ ପ୍ରାୟ । ଏ ପ୍ରକାର ଅବସ୍ଥାରୁ କବି ହୃଦୟରେ ଜାଗ୍ରତ ହୋଇଥିବା କ୍ଷୋଭ ଏବଂ ଏଥିରୁ ସଂଜାତ କ୍ରୋଧ ଭାରତମାତାଙ୍କୁ ଭୀମ ଭୈରବ ରୂପ ଧାରଣ କରିବାକୁ ଆହ୍ୱାନ ପ୍ରଦାନ କରୁଛି ।

"କାହିଁ ତୋର ଦେବୀ ଦୁର୍ଗାର ଲୋହିତ ବସନ ମା ?
ଯାହା ଗ୍ରାସ କରେ ସବୁ ଅଂଧାରର ରଂଗକୁ ।" (୧୫୬)

ଭାରତବର୍ଷକୁ ଏ ପ୍ରକାର ଦୁଃଖାତ୍ମକ ପରିସ୍ଥିତିରୁ ମୁକୁଳାଇବାକୁ ହେଲେ ପ୍ରତ୍ୟେକ ଜନସାଧାରଣଙ୍କୁ ସଚେତନ ହେବାକୁ ପଡ଼ିବ । ସମାଜରୁ ବୈଷମ୍ୟର ପ୍ରାଚୀର ହଟାଇ ଦେଇ ସାମ୍ୟବାଦର ଜୟଗୀତି ଗାନ କରିବାକୁ ପଡ଼ିବ । ସମସ୍ତ ଅଧିକାରରୁ ବଞ୍ଚିତ ହୋଇ ଲାଞ୍ଛିତ ଜୀବନ ବିତାଉଥିବା ଶ୍ରମିକ, କୃଷକଗୋଷ୍ଠୀଙ୍କୁ ନିଜର ଅଧିକାର ସଂପର୍କରେ ସଚେତନ ହେବାକୁ ପଡ଼ିବ। ଯେତେବେଳେ ମଣିଷ ସଚେତନ ହେବ ସେତେବେଳେ ପ୍ରତିବଂଧକ ସୃଷ୍ଟିକାରୀ ଗୋଷ୍ଠୀ ବିରୋଧରେ ଦୁର୍ବାର ସଂଗ୍ରାମ କରିବାପାଇଁ ବଦ୍ଧପରିକର ହେବ । କବିଙ୍କ ଭାଷାରେ-

"ପ୍ରତ୍ୟେକ ପ୍ରବେଶ ଦ୍ୱାରରେ ରକ୍ଷୀ
ପ୍ରତ୍ୟେକ ରାସ୍ତାରେ, ଛକରେ, ଅବରୋଧ
ସଜ୍ଜିତ ହୋଇଯିବା ପାଇଁ ବ୍ୟୁହରେ
ଭଡ଼ାଟିଆ ସାଧୁମାନେ ସଜାଇ ରଖିଛନ୍ତି
ମୋହ ମନ୍ତର ହାବେଳି ।"(୧୫୭)

ସାଂପ୍ରତିକ ସମାଜ ବ୍ୟବସ୍ଥାରେ ପରିଲକ୍ଷିତ ହେଉଥିବା ଅନ୍ୟାୟ, ଅନୀତିର ଚରମ ରୂପ ଆମେ ଦେଖିବାକୁ ପାଇବା 'କଂକାଳ' କବିତାରେ । ପୁଂଜିବାଦୀ ସମାଜ ବ୍ୟବସ୍ଥାର ସମସ୍ତ କ୍ଷମତା ଶୋଷକ ଗୋଷ୍ଠୀ ହାତରେ ନିହିତ ଥାଏ । ଲହୁ ଲୁହ ଦେଇ ଶ୍ରମିକ, କୃଷକ ଉତ୍ପାଦନ କରନ୍ତି । କିନ୍ତୁ ସେଥିରେ ତାଙ୍କର କୌଣସି ଅଧିକାର ନଥାଏ । ଧନର ପ୍ରାଚୁର୍ଯ୍ୟ ବଢ଼ାଇବା ପାଇଁ ମଣିଷ ସବୁକିଛି କରିପାରେ । ସରଳ, ନିରୀହ, ନିଷ୍ପାପ ଶିଶୁକୁ ହତ୍ୟା କରିଦେଇ ତାର କଂକାଳକୁ ମଧ୍ୟ ବିକ୍ରୀ କରିଦେଇପାରେ । ଶେଷରେ କ୍ଷୋଭରେ ଜାଗ୍ରତ କବି ଆତ୍ମା, କ୍ଷୁଧାରେ ଆତୁର ହେଉଥିବା ସନ୍ତାନମାନଙ୍କୁ ଆଉ ଜନ୍ମ ନ ଦେବା ପାଇଁ ଭାରତମାତାଙ୍କୁ ବନ୍ଧ୍ୟା ହୋଇଯିବାପାଇଁ ନିବେଦନ କରୁଛି । କବିଙ୍କ ଭାଷାରେ –

"ତୁ ବନ୍ଧ୍ୟା ହୋଇଯା ଭାରତ ମାତା
ତୋର ଶିଶୁ ମାନଙ୍କର କଂକାଳ
ଆଉ ଥରେ ଆବିଷ୍କାର କରିବା ପୂର୍ବରୁ ।" (୧୫୮)

ସେହିପରି ସାମସମୟିକ କାଳରେ ତୀବ୍ର ଆଲୋଡ଼ନ ସୃଷ୍ଟି କରିଥିବା 'ବାଲିଆପାଳ ଘାଟୀ' ପ୍ରସଂଗମଧ କବିଙ୍କ ଲେଖନୀରୁ ବାଦ୍ ଯାଇନାହିଁ । କବି ସରକାର ବିରୋଧୀ ଚିନ୍ତାଧାରାକୁ ଏଠାରେ କିପରି ଅଭିନବଢଂଗରେ ପ୍ରକାଶ କରିଛନ୍ତି ଦେଖନ୍ତୁ -

"ତୁ ହିଁ ତାହାର ଯିଏ
ହଳ ଓ ବିହନ ନେଇ ଚାଲିଯାଉଥାଏ ତୋ ଉପରେ
ତୁ ହିଁ ତାହାର ଯିଏ ଚେର ମାଡ଼ି ଠିଆ ହୋଇଥାଏ ।
ତୋ ଆର୍ଦ୍ର ଛାତିର ଆଲିଙ୍ଗନରେ ।" (୧୫୯)

କୃଷକ ଯେଉଁ ମାଟିକୁ ଆଶ୍ରାକରି ତା'ର ଜୀବନ ନିର୍ବାହ କରେ, ତା' ଉପରେ ସରକାରଙ୍କର କୌଣସି ଅଧିକାର ନାହିଁ । ମାଟିକୁ କର୍ଷଣ କରି ଫସଲ ଫଳାଇ ଅଗଣିତ ଦେଶବାସୀଙ୍କ ମୁଖରେ ହସ ଫୁଟାଇବାକୁ ଚାହେଁ । ଘାଟୀ ସ୍ଥାପନ କରି ସବୁଜିମାକୁ ନଷ୍ଟ କରିବାକୁ ନୁହେଁ । ସଂକଳନସ୍ଥ ପ୍ରତ୍ୟେକ କବିତା ସାମାଜିକ ଅବ୍ୟବସ୍ଥାର ବିରୋଧ କରିବାକୁ ଯାଇ କବି ହୃଦୟରେ ସଂଜାତ କ୍ରୋଧରୁ ଉନ୍ମେଷ ଲଭିଛି । ଶେଷରେ କବି ଘୋଷଣା କରିଛନ୍ତି, ତାଙ୍କର ଏଇ କ୍ରୋଧିତ ଆତ୍ମା ଶାନ୍ତି ପାଇବ ମଣିଷର ମୁକ୍ତିରେ କିମ୍ବା ସମାଜରେ ସାମ୍ୟବାଦର ଆନୟନ ଘଟିବା ପରେ । ତେଣୁ କବି ଘୋଷଣା କରନ୍ତି --

"କ୍ରୋଧ, ତୁମେ ମହୀୟାନ ହୁଅ ମଣିଷର ମୁକ୍ତିରେ ।"

ଈପ୍‌ସିତ କ୍ରୋଧରେ ଜାତ ହୋଇଥିବା କ୍ରୋଧିତ କଣ୍ଠସ୍ୱର ପରିପୂର୍ଣ୍ଣ ରୂପ ଲଭିଛି 'ଚଣ୍ଡାଳ' ସଂକଳନରେ । ସଂକଳନଟି କବିଙ୍କର ଦ୍ୱିତୀୟ କବିତା ଗ୍ରନ୍ଥ । ୩୧ଟି କବିତାର ସମାହାରରେ ଗଠିତ 'ଚଣ୍ଡାଳ'ର ଅଂଗସୌଷ୍ଠବ । ପ୍ରଥମ ସଂକଳନରେ ଜନସମୂହର କଲ୍ୟାଣପାଇଁ କବି ହୃଦୟରେ ଉପୁଜୁଥିବା କ୍ରୋଧ, ଚଣ୍ଡାଳରେ ଗୋଟିଏ ଅବହେଳିତ ଅସ୍ପୃଶ୍ୟ ଚରିତ୍ର ମାଧ୍ୟମରେ ପ୍ରଦର୍ଶିତ ହୋଇଛି । କବି ଏଠାରେ ଗୋଟିଏ ମଣିଷର ଦୁଃଖ ମାଧ୍ୟମରେ କୋଟିଏ ମଣିଷକୁ ଉପସ୍ଥାପନ କରୁଛନ୍ତି । ଆଶୁତୋଷଙ୍କ ଚଣ୍ଡାଳ ନିମ୍ନବର୍ଗର ଏକ ଅସ୍ପୃଶ୍ୟ, ଅବହେଳିତ ଚରିତ୍ର । ଉଭୟ ଅର୍ଥନୈତିକ ଓ ସାମାଜିକ ସ୍ତରରେ ସେ ଶୋଷିତ । କେଉଁ ଅନାଦି କାଳରୁ ତା'ର ଦେହ ମନ ସବୁକିଛି ଶୃଙ୍ଖଳାବଦ୍ଧ । ଯେଉଁ ବୃତ୍ତିକୁ ସେ ଅବଲମ୍ବନ କରୁଛି ସମାଜ ଦୃଷ୍ଟିରେ ତାହା ହୀନ ବୃତ୍ତି । ତେଣୁ ସମାଜର ବଡ଼ପଣ୍ଡାମାନେ ତା ଦେହରେ ଅସ୍ପୃଶ୍ୟର ମୋହର ମାରିଛନ୍ତି ।

ସବୁ ମଣିଷଙ୍କ ପରି ତା'ର ମଧ୍ୟ ଇଚ୍ଛା-ମୁଖ୍ୟ ସାମାଜିକ ସ୍ରୋତ ସହିତ ସାମିଲ୍ ହୁଅନ୍ତା । ମାତ୍ର ଆଜିର ସମାଜ ତାକୁ ଘୃଣା ଚକ୍ଷୁରେ ଦେଖେ । ତେଣୁ ସେ ହିଁ ଆଜିର ସମାଜରେ ପ୍ରକୃତରେ ସର୍ବହରା । କବିଙ୍କର ଏହି କାଳଜୟୀ ସୃଷ୍ଟି ସଂପର୍କରେ ଡଃ ବାସୁଦେବ ସାହୁ କହନ୍ତି –

"ଚଣ୍ଡାଳର ଦାର୍ଶନିକ ଦୃଷ୍ଟିଭଂଗୀ, ସାମାଜିକ ମୂଲ୍ୟବୋଧ, କାବ୍ୟିକ ଆବେଦନ, ମାନବିକ ସମ୍ବେଦନା ଓ ସର୍ବୋପରି ଶିଳ୍ପକଳାର ଉତ୍କର୍ଷ ଅତ୍ୟନ୍ତ ଉଚ୍ଚମାନର । ଏହାର ସମକକ୍ଷ ହେଲାଭଳି କବିତା ଓଡ଼ିଆ ସାହିତ୍ୟରେ ବିରଳ ।" (୧୬୦)

ସାମାଜିକ ଅଂଗୀକାରବଦ୍ଧ ସ୍ରଷ୍ଟାର ହୃଦୟରେ ନିମ୍ନବର୍ଗର ଦଳିତ ଚରିତ୍ରମାନଙ୍କ ପ୍ରତି ସମବେଦନା ରହିବା ସ୍ୱାଭାବିକ । ଆଜନ୍ମ ଦରିଦ୍ର ଏହି ଚରିତ୍ରର ସମସ୍ତ ପ୍ରାପ୍ୟ, ସମସ୍ତ ହକ୍ ଆଜି ଅପହୃତ । ସମାଜରେ ବିତ୍ତଶାଳୀ ଗୋଷ୍ଠୀ ସମସ୍ତ ସୁବିଧା ସୁଯୋଗ ହାସଲ୍ କରୁଥିବାବେଳେ 'ଚଣ୍ଡାଳ' ପାଇଁ କେବଳ ରହିଛି ଉଚ୍ଛିଷ୍ଟ, ମଳ, ମୂତ୍ର, ଦୁନିଆ ଯାକର ବାନ୍ତି ଓ ଖଂକାର ଇତ୍ୟାଦି । କବିଙ୍କ ଭାଷାରେ –

"ଏପରି ଥିଲା ମୋ ଜନ୍ମ ମୁହୂର୍ତ୍ତ
ଦୂର ହୋଇ ସାରିଥିଲା ସବୁ ପ୍ରାପ୍ୟ
କେବଳ ଥିଲା ଏକ ପାଣ୍ଡୁର ଦେହ
କେବଳ ଥିଲା ଉଚ୍ଛିଷ୍ଟ ମଳ ମୂତ୍ର
ଦୁନିଆ ଯାକର ବାନ୍ତି ଓ ଖଂକାର ।" (୧୬୧)

ଏହିପରି ଏକ ଚରିତ୍ରକୁ କବିତାରେ ସ୍ଥାନ ଦେଇ କବି ସାମାଜିକ ଅଧଃପତନ, ମାନବିକ ମୂଲ୍ୟବୋଧର ଅବକ୍ଷୟୀ ରୂପକୁ ସମାଜ ସମ୍ମୁଖରେ ଉନ୍ମୋଚନ କରିଦେଇଛନ୍ତି । ସେଥିପାଇଁ କବିଙ୍କୁ ଆବଶ୍ୟକ ପଡ଼ିଛି – ଚଣ୍ଡାଳ ସହିତ ଏକାତ୍ମତା କବି କହୁଛନ୍ତି-

"ଚଣ୍ଡାଳ ସହିତ ଏକାତ୍ମ ହେବାକୁ ପଡ଼ିବ । ତା'ର ଅନୁଭବ ଓ ଦୃଷ୍ଟି ନେଇ ସାମାଜିକ ସଂପର୍କ ଓ ମଣିଷ ମାନଙ୍କ ଅବଚେତନର ଅନ୍ତଃସ୍ଥଳ ଭିତରକୁ ପ୍ରବେଶ କରିବାକୁ ପଡ଼ିବ । କେବଳ ଭୌତିକ ସ୍ତରରେ ନୁହେଁ, ଅତି ଭୌତିକ ସ୍ତରରେ ମଧ୍ୟ ସାମାଜିକ ଓ ମାନବିକ ସତ୍ତାକୁ ସାଉଁଟା ଯାଇପାରିବ । (୧୬୨) ଚଣ୍ଡାଳ ଆଜନ୍ମରୁ ଦାରିଦ୍ର୍ୟ ସହିତ ସଂଘର୍ଷରତ । ପ୍ରତିମୁହୂର୍ତ୍ତରେ ଯନ୍ତ୍ରଣାମୟ ଜୀବନକୁ ସାମ୍ନା କରିବାକୁ ପଡୁଛି । ସଂସାରଯାକର ମଇଳା, ଆବର୍ଜନା, ପରିଷ୍କାର କରିବାର ଭାର ତା'ରି ଉପରେ ନ୍ୟସ୍ତ । ପାଣି, ପବନ, ରାସ୍ତାଘାଟ, ଭୂମି ସବୁଠି ତାରି ସ୍ଥିତି । ସବୁକୁ ସେ ସଫା କରେ । କିନ୍ତୁ କୌଣସିଟି ଉପରେ ତା'ର ଅଧିକାର ନାହିଁ । ବିଡ଼ମ୍ବିତ ଭାଗ୍ୟକୁ ନେଇ, ବିତ୍ତଶାଳୀ ଗୋଷ୍ଠୀଙ୍କର ଗୋଇଠାମାଡ଼ ଖାଇ, ଅନାର୍ଯ୍ୟ ମ୍ଳେଚ୍ଛ କହି ନାସିକା କୁଞ୍ଚନ

କରୁଥିବା ବ୍ୟକ୍ତିବିଶେଷମାନଙ୍କର ମୁଖକୁ ଚାହିଁ ନିର୍ବିବାଦରେ ଗଡ଼ିଚାଲେ ତାର ଜୀବନ ପ୍ରବାହ । କାହାକୁ ପ୍ରଶ୍ନ କରିବ ? କିଏ ତାକୁ ଏ ଯନ୍ତ୍ରଣାର କାଳ ଗହ୍ୱର ମଧ୍ୟରୁ ମୁକ୍ତି ଦେଇପାରିବ ? ଏପରି ଅନେକ ଅସମାହିତ ପ୍ରଶ୍ନକୁ ନେଇ ଊର୍ଦ୍ଧ୍ୱକୁ ଚାହିଁ, ଦୀର୍ଘଶ୍ୱାସ ଛାଡ଼ି ଚଣ୍ଡାଳଟି କହେ –

"ଏବେ ବତାଇ ଦିଅ
ମତେ ଗୋଇଠା ମାରିଥିବା ଗୋଡ଼ ମାନଙ୍କୁ ନେଇ
କରିବି କ'ଣ ?
ମତେ ଥୁ କରିଥିବା ଜିଭମାନଙ୍କୁ ନେଇ
କରିବି କ'ଣ
କାଳକାଳର ସଞ୍ଚିତ ପ୍ରଶ୍ନ ମାନଙ୍କୁ
ପଚାରିବି କାହାକୁ
ମତେ ବତାଇ ଦିଅ
ସଲାମ୍ କରିବି କାହାକୁ ? (୧୬୩)

ଏ ସମାଜ ଆଜି ସ୍ୱାର୍ଥବାଦୀ ପାଲଟି ଯାଇଛି । ମଣିଷର ହୃଦୟରୁ ମାନବିକତାଲୋପ ପାଇଛି । ସମସ୍ତେ ନିଜ ନିଜର ସ୍ୱାର୍ଥ ପାଇଁ ଲଢ଼େଇ କରୁଛନ୍ତି । ଚଣ୍ଡାଳ ପାଇଁ କାହାରି ହୃଦୟରେ ସମବେଦନା ନାହିଁ । କେହି ବିନା ଦ୍ୱିଧାରେ ତା' ମୁଖରେ ହସ ଫୁଟାଇବାକୁ ସଂକଳ୍ପବଦ୍ଧ ନୁହଁନ୍ତି । ସମାଜର ମୁଖ୍ୟ ସ୍ରୋତ ସହିତ ସାମିଲ୍ ହେବା ପାଇଁ ଚଣ୍ଡାଳଟିଏ ତଥାପି ମଧ୍ୟ ଯଥାସମ୍ଭବ ପ୍ରଚେଷ୍ଟା ଜାରି ରଖିଛି । ନର୍କ ଯନ୍ତ୍ରଣାରେ ଛଟପଟ ହେଉଥିବା ଏ ଚରିତ୍ରଟି ସେଥିରୁ ମୁକ୍ତି ପାଇବା ପାଇଁ ତ୍ରାହି ତ୍ରାହି ଡାକ ଛାଡ଼ୁଛି । ହେଲେ ତା'ର ଏ ଆର୍ତ୍ତ ଚିତ୍କାର କାହାରି କର୍ଣ୍ଣ ଭେଦ କରୁ ନାହିଁ । ଶେଷରେ ଭାଗ୍ୟକୁ ନିନ୍ଦା କରିବାକୁ ଯାଇ ଚଣ୍ଡାଳଟି କହୁଛି –

"କାନ୍ଥଭଳି ମୁହଁମାନଙ୍କୁ ପଚାରିଲି
ଅଂଧ ଦ୍ୱାର ମାନଙ୍କୁ ପଚାରିଲି
ବଧୀର ପର୍ବତ
ବୁଡ଼ି ଯାଉଥିବା ଜହ୍ନ
ଓ ଘୁଞ୍ଚି ଯାଉଥିବା ମେଘକୁ
ପଚାରିଲି – ମୋର ଅପରାଧ କ'ଣ ?
ଅପରାଧୀ ହାତ ମାନେ
ମୋତେ ଚଣ୍ଟିଚିପି ମାରି ସାରିଥିଲେ

ତଥାପି ମୁଁ ବାରମ୍ବାର ଜନ୍ମ ହେଉଥିଲି
ତାହା ହିଁ କ'ଣ ମୋର ଏକମାତ୍ର ଅପରାଧ ଥିଲା ?" (୧୬୪)

ଦୁଃଖ ଯନ୍ତଣାକୁ ଜନ୍ମରୁ ମରମେ ମରମେ ଅଂଗେ ନିଭାଉଥିବା ଏହି ଚରିତ୍ରଟି ସମାଜକୁ ପୁନଃଶ୍ଚ ପ୍ରଶ୍ନ କରୁଛି–

"ଆଉ କ'ଣ ନୂଆ ଉପାୟ ଅଛି କୁହ
X X X X X
ଆଉ କ'ଣ ଅସ୍ତ୍ର ଅଛି
ଯାହା ଯଥେଷ୍ଟ ହେବ ମତେ ମାରିବାକୁ ।" (୧୬୫)

ଦୁଃଖକୁ ସାମ୍ନା କରିବା ପାଇଁ ଚଣ୍ଡାଳଟି ଆଜି ନିଜକୁ ଅସମର୍ଥ ମଣୁନି । ଦୁଃଖରୁ ଯାହାର ଜନ୍ମ ଏବଂ ପ୍ରତି ମୁହୂର୍ତ୍ତରେ ମଶାଣି ଭୂଇଁରେ ଯିଏ ନିଷ୍ଠୁର ବାସ୍ତବତାକୁ ସାମ୍ନା କରୁଛି ତା' ପାଖରେ ବଞ୍ଚିବାର ଅର୍ଥ ମୂଲ୍ୟହୀନ । ଦଳିତ ବର୍ଗକୁ ବିପ୍ଳବର ସଂଗ୍ରାମୀ ମନ୍ତ୍ରରେ ଦୀକ୍ଷିତ କରିବା 'ପ୍ରଗତିବାଦ'ର ମୁଖ୍ୟ ଉଦ୍ଦେଶ୍ୟ । ତେଣୁ କବି ଆଶୁତୋଷ 'ଚଣ୍ଡାଳ'ଠାରେ ବିପ୍ଳବ କରିବା ପାଇଁ ଦୃଢ଼ ଆତ୍ମଶକ୍ତି ଭରି ଦେଇଛନ୍ତି । 'ଚଣ୍ଡାଳ' ପ୍ରତିଜ୍ଞା କରୁଛି ମୁଁ ମଧ୍ୟ ନିଶ୍ଚେ ଦିନେ ନା ଦିନେ ଯନ୍ତ୍ରଣାର ଗହ୍ୱର ମଧ୍ୟରୁ ମୁକ୍ତି ଲଭିବି । ସମାଜର ମୁଖ୍ୟ ସ୍ରୋତ ସହିତ ସାମିଲ୍ ହେବି । ଚଣ୍ଡାଳର ଉଦାତ୍ତ କଣ୍ଠରୁ ନିସୃତ ହେଉଛି –

"ମୋ ଛାତି ଭିତରେ ମାଟି ଅଛି
ନିଆଁ ଅଛି
କେହି ଦେଖି ନଥିବା ଏକ ଅସ୍ଥିର ହୃଦୟ ଅଛି,
କ୍ଷେତର ଆଗ୍ନେୟଗିରି
କ୍ଷତିର ହିସାବ ଅଛି
ମୋ ଛାତିରେ ଇତିହାସ ଅଛି ।" (୧୬୬)

ସେହିପରି ସଂକଳନସ୍ଥ ଅନ୍ୟାନ୍ୟ କବିତା ଯଥା – 'ମୁହଁମାନେ', 'କଳାହାଣ୍ଡି' 'ଜିହ୍ୱାଛେଦନ' ଇତ୍ୟାଦିରେ ମଧ୍ୟ ଦଳିତବର୍ଗ ପ୍ରତି ସମବେଦନା ପ୍ରକାଶ ପାଇଛି । ଉଚ୍ଚକୋଟୀର ବିପ୍ଳବୀ ସାହିତ୍ୟ ସୃଷ୍ଟି କରିବାରେ ଯେ କବି ଆଶୁତୋଷ ଜଣେ ଅଗ୍ରଗାମୀ ସ୍ରଷ୍ଟା ଏହା ତାଙ୍କ କାବ୍ୟ କବିତାରୁ ସ୍ପଷ୍ଟ ଅନୁମିତ ହେଉଛି । ଆଲୋଚକ ପ୍ର. ବୈଷ୍ଣବ ଚରଣ ସାମଲଙ୍କ ମତରେ –

"କହିବା ବାହୁଲ୍ୟ ଆଶୁତୋଷୀୟ କାବ୍ୟଜିଜ୍ଞାସା ବିଶାଳଗଣସମୁଦାୟର ବ୍ୟଥାବେଦନା, ସଂଘର୍ଷ ସଂଗ୍ରାମକୁ କଳାତ୍ମକ ରୂପ ବୈଭବରେ ନିଷ୍କପଟମନନେଇ

ପ୍ରକାଶ କରିଛି । କାରଣ ମନେ ରଖିବାକୁ ହେବ ଯେ ସମାଜର ବିପୁଳ ଜନସମୁଦାୟ ଏହି ସାଧାରଣ ମଣିଷର ଅନ୍ତର୍ଭୁକ୍ତ ଓ ସେହିମାନେ ହିଁ ସଭ୍ୟତା ଓ ସଂସ୍କୃତିର ନିର୍ମାତା । ସେମାନଙ୍କୁ ଅବହେଳା କରିଦେଇ ସାହିତ୍ୟ ସୃଷ୍ଟି କଲେ ତାହା ମୁଷ୍ଟିମେୟ ଗୋଷ୍ଠୀ ଭିତରେ ଆବଦ୍ଧ ରହିଯିବ ।" (୧୬୭)

'ଚଣ୍ଡାଳ' ସଂକଳନରେ ଯେଉଁ ସଂଗ୍ରାମୀ ମନୋବୃତ୍ତିକୁ ଲକ୍ଷ୍ୟ କରାଯାଏ, 'ଶବଦଭେଦୀ'ରେ ମଧ୍ୟ ଅନୁରୂପ କାବ୍ୟ ସ୍ୱରର ଝଙ୍କାର ଶୁଣିବାକୁ ମିଳେ । 'ଚଣ୍ଡାଳ' ପରି ଏହାର କାବ୍ୟନାୟକ ମନରେ ମଧ୍ୟ ଅଶାନ୍ତି ଅସନ୍ତୋଷ କୁହୁଳି ଉଠେ ପୁଂଜିପତି ଓ ଧନୀକ ଗୋଷ୍ଠୀର ବିରୋଧରେ । 'ଚଣ୍ଡାଳ' ଯେମିତି ଭୂମିଠାରୁ ଆରମ୍ଭ କରି ସବୁ ଜିନିଷକୁ ପରିଷ୍କାର କରେ, କିନ୍ତୁ କୌଣସିଟିରେ ତା'ର ଅଧିକାର ନଥାଏ, ଠିକ୍ ସେମିତି ଶବ୍‌ଦଭେଦୀର କାବ୍ୟନାୟକ ନିଜର ଅଧିକାର ସାବ୍ୟସ୍ତ କରିବାକୁ ଯାଇ ବିପ୍ଳବର ଆଶ୍ରୟ ନିଏ । ସେ କହେ ମୁଁ ଯେଉଁ ଭୂମି ଉପରେ ପାଦଥାପିଛି, ବସବାସ କରୁଛି, ଜୀବିକା ନିର୍ବାହ କରୁଛି, ସେ ସବୁ ମୋର । ତା' ଉପରେ କାହାର ଅଧିକାର ନାହିଁ । ମୁଁ ଯାହା ଉପାର୍ଜନ କରୁଛି ତା' ଉପରେ ସଂପୂର୍ଣ୍ଣ ଅଧିକାର କେବଳ ମୋର ଅଛି । ପୁଂଜିପତିର ଚାବୁକ୍ ପ୍ରହାରକୁ ମୋର ଭ୍ରୂକ୍ଷେପ ନାହିଁ । ସ୍ପର୍ଦ୍ଧିତ କଣ୍ଠରେ କାବ୍ୟନାୟକ ଘୋଷଣା କରେ:-

"ଚାବୁକ୍ ତଳେ ଶୋଇରହି ଫାଟିଯାଇଥିଲା ଗୋଟେ ପିଠି
ପଦାଘାତରେ ଦଳି ହୋଇ ଲୋଟି ଯାଇଥିଲା ଗୋଟେ ପ୍ରତିବାଦ
ମାଟି ଉପରେ ଦି'ଗଡ଼ ହୋଇ ପଡ଼ି ଯାଇଥିଲା
ଗୋଟେ ମଣିଷ ।" (୧୬୮)

କବି ଆଶୁତୋଷ ମଧ୍ୟ ଧର୍ମ ଓ ଈଶ୍ୱର ବିଶ୍ୱାସ ପ୍ରତି ଅନାସ୍ଥାଭାବ ପ୍ରକଟ କରିଛନ୍ତି । ଯାହା କି ସାମ୍ୟବାଦୀ କବିତାର ଏକ ପ୍ରମୁଖ ବୈଶିଷ୍ଟ୍ୟ । ଏହି ଚିନ୍ତାଧାରାକୁ ପରିପ୍ରକାଶ କରିବାରେ କବି ରବି ସିଂଙ୍କ ପରି aggressive ନୁହଁନ୍ତି ତାହା ତାଙ୍କ କବିତାରୁ ସ୍ପଷ୍ଟ ପ୍ରମାଣିତ ହୋଇଥାଏ ।

"ଏବେ ମୋର ଧର୍ମ କିଛି ନାହିଁ
ଏବେ ମୋର ପ୍ରାର୍ଥନା କରିବାକୁ ନାଇଁ କେଉଁଠି
ଏବେ ମୋର ତିଆରି କରିବାକୁ ନାଇଁ ତୀର୍ଥ
ମୋର ନାହିଁ ଅନ୍ୟ କେଉଁ ପରିଚୟ
ଦୁନିଆଁର ସବୁ ଅସ୍ପୃଶ୍ୟ ମାନଙ୍କ ବାସ୍ନା ମୋ' ଦେହରେ
ସବୁ ବିଧର୍ମୀ ମାନଙ୍କ ରକ୍ତ ମୋ' ଶିରାରେ ଅଯୋଧ୍ୟା
ତେଣୁ ତୋ ମାଟି ଉପରେ କେବେ ପଡ଼ିବ ନାହିଁ ମୋର ପାଦ ।" (୧୬୯)

ଏ ପର୍ଯ୍ୟନ୍ତ ପ୍ରକାଶିତ କବିଙ୍କର ପ୍ରାୟ ପ୍ରତ୍ୟେକଟି ସଂକଳନରେ ସାମ୍ୟବାଦୀ କାବ୍ୟ ସ୍ୱର ବେଶ୍ ସ୍ପଷ୍ଟ ଭାବେ ପରିଲକ୍ଷିତ । କିନ୍ତୁ 'ରକ୍ତବର୍ଣ୍ଣ ବାଲି' ଓ 'ଅଂଗାରଗାର'ରେ ଏ ଦେଶର ଦୟନୀୟ ଅବସ୍ଥାର ଚିତ୍ର ଉଦ୍‌ଘାଟିତ କରିବା ସଂଗେସଂଗେ ତନ୍ମଧ୍ୟରେ ମଣିଷର ସ୍ଥିତି କ'ଣ ତାହା ଦେଖାଇଛନ୍ତି । ସାମସମୟିକ ସାଂପ୍ରତିକ ପରିସ୍ଥିତିର ଦୟନୀୟ ଚିତ୍ର ଓ ଏଥିରୁ ମୁକୁଳିବାର ପ୍ରୟାସ ମଧ୍ୟରେ କବିଙ୍କର ପ୍ରଗତିବାଦୀ ଆଭିମୁଖ୍ୟ ଆତ୍ମପ୍ରକାଶ କରିଛି । 'ରକ୍ତ ବର୍ଣ୍ଣ ବାଲି' ସଂକଳନ ଉପରେ ପ୍ରା. ଡଃ ନିତ୍ୟାନନ୍ଦ ଶତପଥୀ ମତପ୍ରକାଶ କରନ୍ତି ଯେ - " ଏ ସଂକଳନସ୍ଥ ପ୍ରାୟ ସମସ୍ତ କବିତା ଦେଶକୁ ନେଇ ଓ ଦେଶର ମଣିଷମାନଙ୍କୁ ନେଇ ଯଦିଓ ଅତୀତର ଦେଶାତ୍ମବୋଧମୂଳକ କବିତାର ଉଦ୍‌ବୋଧନଶୀଳତା ଏସବୁ କବିତାରେ ନାହିଁ; ଅଛି କିନ୍ତୁ ଦେଶକୁ ଦେଖି ବୁଝିଥିବା ଜଣେ ସଚ୍ଚା କବିର କାରୁଣ୍ୟ ଓ ଅଂଗୀକାର । (୧୭୦)

ଭାରତ ବର୍ଷର ସାଂପ୍ରତିକ ସମୟର ଚିତ୍ର ନିମ୍ନୋକ୍ତ ପଂକ୍ତିରୁ ଲକ୍ଷ୍ୟ କରାଯାଇପାରେ ।

"ଦାରିଦ୍ର୍ୟର ଦେବୀଟି ଏପରି ତୁ
ଗଳାରେ ପିନ୍ଧିଥାଉ
ଦୁଃଖକୁ ଫୁଲମାଳ କରି,
ସଜାଇ ହୋଇଥାଉ
ଶୁଖିଲା ଋତୁମାନଙ୍କ ରଂଗରେ,
ଓ ଅନେକ ପ୍ରାର୍ଥନା ପରି
ତୋ ପାଖରେ / ଜଡ଼ ହୋଇଥାନ୍ତି / ଶତାବ୍ଦୀ ମାନେ ।" (୧୭୧)

ଯେଉଁ ଦେଶ ଦିନେ ଧନଧାନ୍ୟରେ ପରିପୂର୍ଣ୍ଣ ଥିଲା ସେହି ଦେଶ ଆଜି ଦାରିଦ୍ର୍ୟକୁ ଗଳାରମାଳା କରି ବେକରେ ପିନ୍ଧିଛି । ଦୁଃଖ, ଯନ୍ତ୍ରଣାରେ ମନୁଷ୍ୟ ଜୀବନ ଏଠାରେ ଛଟପଟ ହେଉଛି । ଏକ ଶୁଷ୍କ ଜୀବନ ଧାରାକୁ ନେଇ ମଣିଷ ତଥାପି ଆଗେଇ ଚାଲିଛି ଜୀବନର ଗତିପଥରେ । ଏହି ଗତିପଥରେ ଗତି କରୁ କରୁ କେତେବେଳେ ଯେ ଶୋଷକ ଗୋଷ୍ଠୀର ଚକ୍ରାନ୍ତରେ କବଳିତ ହେଉଛି ତା'ର ସାମାନ୍ୟ ସୂଚନା ମଧ୍ୟ ସେ ପାଏ ନାହିଁ । କବିଙ୍କ ଭାଷାରେ -

"କାହାର ଅତୃପ୍ତ ସ୍ୱାର୍ଥ
କାଳକାଳରୁ ଜଗି ବସିଥିବ
ନିର୍ମମ ଶିକାରୀ ଭଳି,
ଯେତେବେଳେ ଜଳ, ସ୍ଥଳ

ଆକାଶରେ
ଅଦୃଶ୍ୟ ଭାଗ୍ୟ ଭଳି ଝୁଲୁଥିବ
ସେ ଜାଲ
ନଦୀ ମାନଙ୍କ ସରଳ ସ୍ରୋତ ଭିତରେ
ବଂଧା ହୋଇଥିବ
ଆଚ୍ଛାଦିତ କରିଥିବ ବାୟୁର ତରଂଗକୁ
ପୃଥିବୀର ସବୁ ଚିହ୍ନିତ ରାସ୍ତାଘାଟକୁ ।" (୧୭୨)

ସମାଜରେ ପରିଲକ୍ଷିତ ହେଉଥିବା ଅବ୍ୟବସ୍ଥାର ନିଚ୍ଛକ ଚିତ୍ର ବହନ କରେ 'ଅମର୍ତ୍ତ୍ୟସେନ୍' କବିତା ।

"ସୁଦୂର ଅଟ୍ଟାଳିକାରୁ
ତୁମେ କ'ଣ ଦେଖିପାର
କିପରି ପିଲାଟିଏ ଫେରିଆସୁଚି
ଭଂଗା ସ୍କୁଲ ଘରର କାନ୍ଥ ପାଖରୁ
ଫେରି ଆସୁଚି ତିଆରି କରିବାକୁ
ଗାଲିଚା ଆଉ ବିଡ଼ି ।" (୧୭୩)

ନୋବେଲ୍ ବିଜେତା ଅମର୍ତ୍ତ୍ୟ ସେନ୍ ଏ ଦେଶର ଆଗାମୀ ଭବିଷ୍ୟତକୁ ଶିକ୍ଷା ଲାଭ ପାଇଁ ପ୍ରେରଣା ପ୍ରଦାନ କରନ୍ତି । ଯେଉଁ ଦେଶର ଜନତା ଅନାହାରରେ କାଳାତିପାତ କରୁଛି, ବିଦ୍ୟା ଅର୍ଜନ ଆଶା ତା' ପାଇଁ ଆକାଶକୁସୁମ । ସେଠାରେ ପ୍ରଗତିର ସ୍ୱପ୍ନ ଦେଖିବା ନିଷ୍ଫଳ ଅଟେ । ସଂକଳନସ୍ଥ ଅନେକ କବିତା 'ସ୍ମିତହାସ', 'ଦିଲ୍ଲୀ' 'ଦେଶ ଦ୍ରୋହୀ' ଇତ୍ୟାଦିରେ ମଧ୍ୟ ସାଂପ୍ରତିକ ସମାଜରେ ଜନ ସାଧାରଣଙ୍କ ସ୍ଥିତିକୁ ନିରୂପିତ କରୁଥିଲେ ମଧ୍ୟ କବି ପ୍ରାୟ କୌଣସି ସ୍ଥାନରେ ଏହି ସ୍ଥିତାବସ୍ଥାରେ ପରିବର୍ତ୍ତନ ପାଇଁ ଆହ୍ୱାନ ଦେଇ ନାହାଁନ୍ତି । ଯାହା କି ପ୍ରଗତିବାଦର ଏକ ମୁଖ୍ୟ ବୈଶିଷ୍ଟ୍ୟ ରୂପେ ପରିଗଣିତ ହୁଏ । ସଂକଳନସ୍ଥ କବିତା ସଂପର୍କରେ କେବଳ ଏତିକି କୁହାଯାଇପାରେ ଯେ - କବିତାଗୁଡ଼ିକ 'ମହାକାଳଫଳ ସଦୃଶ ପ୍ରତୀୟମାନ ହେଉଥିବା ଭାରତବର୍ଷର ସୁନ୍ଦର ରୂପର ଅନ୍ତରାଳରେ ଛପି ରହିଥିବା ନଗ୍ନ ବିଭତ୍ସ ଅଂଗାର ରୂପକୁ ଉଦ୍‌ଘାଟନ କରିଛି । କିନ୍ତୁ ପ୍ରଗତିବାଦର ଲକ୍ଷଣ ଓ ବୈଶିଷ୍ଟ୍ୟ ଏଥିରେ ଖୋଜିଲେ ଆମକୁ ନିରାଶ ହେବାକୁ ପଡ଼େ ।

ପ୍ରାବନ୍ଧିକ ଡଃ ନିତ୍ୟାନନ୍ଦ ଶତପଥୀଙ୍କ ମତରେ –

"କବି ପରିଡ଼ାଙ୍କ ଏ ସଂକଳନସ୍ଥ ସମସ୍ତ କବିତା ଏହିପରି ଏକ ବୈଚାରିକ ସିଦ୍ଧାନ୍ତ ଉପରେ ଠିଆ ହୁଏ ଓ ଆମ ଦେଶର ନଗ୍ନ ବିଷଦୃଶ ଚେହେରାକୁ ବାରମ୍ବାର

ଚିହ୍ନେଇ ଦିଏ । ଦେଶକୁ ଭଲ ପାଉଥିବା ଜଣେ କବିର ସ୍ୱରରେ ହିଁ ଏପରି ଆତ୍ମାହ୍‍ଵାନ ପ୍ରକାଶ ପାଇପାରେ ।" (୧୭୪)

ସେହିପରି 'ଅଂଗାରଗାର' ସଂକଳନରେ ମଧ୍ୟ ଏହି ଚିନ୍ତାଧାରା ପରିଲକ୍ଷିତ ହୁଏ । ସଂକଳନସ୍ଥ ସମସ୍ତ କବିତାରେ ଦୁର୍ନୀତିଗ୍ରସ୍ତ ଦେଶର ଚିତ୍ର ଆଂକିଆଂକି କବି ଏକ ବିଷାଦଗ୍ରସ୍ତ ମନ ନେଇ ବର୍ଣ୍ଣନା କରନ୍ତି –

"ରଂଗ ଭର୍ତ୍ତି ସବୁଠି
କେବଳ ତୂଳୀ ହଜିଯାଇଛି ଚିତ୍ରକରର ।
ଦୁଃଖ ଭର୍ତ୍ତି ସବୁଠି
କେବଳ ଶବ୍‌ଦ ହଜିଯାଇଛି କବିର:
କେଉଁ ଦୁଃଖର ରଂଗରେ ପୁଣି
ଚିତ୍ରଟିଏ ଆଂକିବାକୁ ଅଛି,
କେଉଁ ସ୍ୱପ୍ନର ହାହାକାରରେ
ଲେଖିବାକୁ ଅଛି ଅକ୍ଷର ?(୧୭୫)

କବି କେବଳ ଯେ ସମସ୍ୟା ବହୁଳ କ୍ଷତାକ୍ତ ଦେଶର ଚିତ୍ର ଅଂକନ କରିଛନ୍ତି ତାହା ନୁହେଁ, କବି ଆଶାପୋଷଣ କରିଛନ୍ତି ଦୁଃଖ, ଦୈନ୍ୟ ରୂପକ କାଳରାତ୍ରୀର ନିଶ୍ଚେ ଦିନେ ନା ଦିନେ ପରିସମାପ୍ତି ଘଟିବ । କିନ୍ତୁ ଏହା ପୂରଣ ହେବା ପାଇଁ ଯେଉଁ ପ୍ରଚେଷ୍ଟା ଓ ଯେଉଁ ଦୃଢ଼ ଆତ୍ମଶକ୍ତି ଆବଶ୍ୟକ ତାହା କବିଙ୍କର କବିତାରୁ ପ୍ରତିପନ୍ନ ହେଉ ନାହିଁ ।

କବିଙ୍କର କବିତାଗୁଡ଼ିକ ଉନ୍ନତ କାବ୍ୟଶୈଳୀ ଓ ସ୍ୱଚ୍ଛ ପ୍ରକାଶଭଂଗୀ ମାଧ୍ୟମରେ ଗଭୀର ଅନୁଭୂତିର ପରିପ୍ରକାଶ ଘଟାଇଛି । ଗଭୀର ଅନୁଭବରୁ ସଂଜାତ ହୋଇଛି କବିଙ୍କର ବୈପ୍ଳବାତ୍ମକ ମନୋବୃତ୍ତି । ତାହା ପୁଣି ଉଚିତ୍ ଶବଦ୍ ଚୟନ ମାଧ୍ୟମରେ ରୂପାୟିତ ହୋଇଛି । 'ଈପ୍‌ସିତ କ୍ରୋଧ' 'ଚଣ୍ଡାଳ', 'ଶବ୍‌ଦଭେଦୀ'ରେ ବୈପ୍ଳବାତ୍ମକ ଚିନ୍ତାଧାରାର ଯେଉଁ ପରିପ୍ରକାଶ ଘଟିଛି 'ରକ୍ତବର୍ଣ୍ଣ ବାଲି' ଓ 'ଅଂଗାରଗାର' ରେ ତାହା ଖୋଜିଲେ ନିରାଶ ହେବାକୁ ପଡ଼େ । କିନ୍ତୁ କବିଙ୍କର ମାନସ ପରିକଳ୍ପନାରେ 'ଚଣ୍ଡାଳ' ଯେ ପ୍ରଗତିବାଦୀ ଓଡ଼ିଆ କବିତା କ୍ଷେତ୍ରରେ ଏକ ମାଇଲ୍‌ଖୁଣ୍ଟ ଏହାକୁ ନିର୍ବିବାଦରେ ସ୍ୱୀକାର କରାଯାଇପାରେ ।

## କବି ବ୍ରହ୍ମାନନ୍ଦ ଦାସ

ସାଂପ୍ରତିକ ଓଡ଼ିଆ କବିତା କ୍ଷେତ୍ରରେ କବି ବ୍ରହ୍ମାନନ୍ଦ ଦାସ ଗଣମୁଖୀ କାବ୍ୟାଦର୍ଶର ଜଣେ ସଫଳ ରୂପକାର । ଏହି ପ୍ରତିଭାସଂପନ୍ନ ସ୍ରଷ୍ଟା ୧୯୩୯ ମସିହା ଏପ୍ରିଲ୍ ୩ ତାରିଖରେ ବାଲେଶ୍ୱର-ନିକଟସ୍ଥ ବାମପଦା ଗ୍ରାମରେ ଜନ୍ମ ଗ୍ରହଣ କରନ୍ତି । ୧୯୬୫

ମସିହାରେ 'ଧରଣୀ ଓ ଝରଣା' ନାମରେ ଏକ କବିତା ସଂକଳନ ପ୍ରକାଶ ପାଏ । ଏହାପରେ ଦୀର୍ଘ ସମୟର ନୀରବତା । ତା' ପରେ କବିଙ୍କର 'ତାଳଗଛ', 'ଝର୍କା ବାହାରେ', 'ଜୀବନ ଯେମିତି', 'ଅନ୍ତରଂଗ ପୃଥିବୀ', 'ମାଟିର ମହୁରୀ', 'ସକାଳ ଆସନ୍ନ', 'ଯାତ୍ରା ସରେନା', 'ଜଣେ ପଦାତିକର କବିତା', 'ମଣିଷ ତୁମ ସାଥିରେ' ଇତ୍ୟାଦି ସଂକଳନ ପ୍ରକାଶିତ ହୋଇ ଉତ୍ତର ଅଶୀ ଓଡ଼ିଆ କବିତାକୁ ବହୁ ଦିଗରୁ ପରିପୁଷ୍ଟ କରିଛି । କବିଙ୍କ କବିତାରେ ପ୍ରଗତିବାଦର ଏକ ଭିନ୍ନ ରୂପକୁ ଲକ୍ଷ୍ୟ କରିପାରିବା । ଯାହା କ୍ୱଚିତ୍ ସ୍ରଷ୍ଟାଙ୍କ କବିତାରେ ପରିଲକ୍ଷିତ ହୁଏ । କବିଙ୍କ କବିତା ପ୍ରଗତିବାଦୀ ଚିନ୍ତାଧାରା ସମ୍ବଳିତ ବିଦ୍ରୋହ, ବିକ୍ଷୋଭ କିମ୍ବା ଉଗ୍ର ଆହ୍ୱାନଧର୍ମୀ ନୁହେଁ । ଏଥିରେ ରହିଛି ପ୍ରଚଳିତ ସମାଜବ୍ୟବସ୍ଥା ବିରୋଧରେ ପ୍ରତିବାଦ ଏବଂ ଆଗାମୀ କାଲିକୁ ସ୍ୱର୍ଣ୍ଣାଭ, ସଜଳ କରିବାର ବହୁମୂଲ୍ୟ ପ୍ରଚେଷ୍ଟା । ଏହା ପ୍ରଗତିବାଦର ବହିରାବରଣ ନହେଲେ ମଧ୍ୟ ଏହାକୁ ପ୍ରଗତିବାଦର ଅନ୍ତଃଆବରଣ କୁହାଯାଇପାରିବ । ଅନ୍ୟ ଭାଷାରେ କହିଲେ କବିଙ୍କ କବିତାରେ ପ୍ରଗତିବାଦର ଉଷ୍ଣତା ପରିବର୍ତ୍ତେ ଏକ ଶୀତଳତାକୁ ଅନୁଭବ କରାଯାଇପାରେ । ତେଣୁ ପ୍ରଗତିବାଦର ଏକ ଶାନ୍ତ ସଲୀଳ ରୂପ କବିଙ୍କ କବିତାର ଅନ୍ତଃସ୍ୱର । ଏହାକୁ ମଧ୍ୟ ପ୍ରଗତିବାଦର ଏକ ଦିଗ ଭାବରେ ବିବେଚନା କରାଯାଇପାରେ । ଏହି ଚିନ୍ତାଧାରା ସଂପର୍କରେ କବି ରଘୁନାଥ ଦାସ' ମତବ୍ୟକ୍ତ କରନ୍ତି –

"ଯେଉଁ ସାହିତ୍ୟ ସ୍ଥିତାବସ୍ଥାକୁ ଭାଂଗିରୁଜି ଚୁର୍‌ମାର୍ କରିବାକୁ ଆହ୍ୱାନ ଦିଏ, ସେ ସମସ୍ତ କିନ୍ତୁ ବିପ୍ଳବୀ ସାହିତ୍ୟ ନୁହେଁ । କାରଣ ଏହା କେବଳ ଧ୍ୱଂସାତ୍ମକ, ନାସ୍ତିବାଚକ ଚିନ୍ତାଧାରା ଉପରେ ପର୍ଯ୍ୟବେସିତ । ଭାବର ପ୍ରଖରତା ବା ଭାଷାର ତେଜସ୍ୱୀତା ବିପ୍ଳବୀ ସାହିତ୍ୟର ବହିଃଆବରଣ ମାତ୍ର । ଧ୍ୱଂସାତ୍ମକ ସାହିତ୍ୟ ବିପ୍ଳବୀ ସାହିତ୍ୟ ନୁହେଁ । X X X ବିପ୍ଳବୀ ଆଖିରେ ଆଗାମୀର ସ୍ୱପ୍ନଟା ବଡ଼ କଥା । ସେହି ସ୍ୱପ୍ନ ବିହ୍ୱଳତା ବିପ୍ଳବୀ ସାହିତ୍ୟର ଜନ୍ମଦାତ୍ରୀ ।" (୧୭୬)

ପରିବର୍ତ୍ତନ ପିପାସୁ ସ୍ରଷ୍ଟାଟିଏ ଯେ କେବଳ ସ୍ଥିତାବସ୍ଥାକୁ ଭାଂଗି ଦେବା ପାଇଁ ଆହ୍ୱାନ ଦେବ ତାହା ନୁହେଁ । ପ୍ରଥମେ ସ୍ରଷ୍ଟା ଜଣକ ମଣିଷର ହୃଦୟକୁ ଚିହ୍ନିବା ଦରକାର । ତାକୁ ଅନୁଭବ କରିବା ଦରକାର । ତାର ଦୁଃଖ ସହିତ ନିଜକୁ ସେତିକି ସଂଶ୍ଳିଷ୍ଟ କରିବା ଆବଶ୍ୟକ । ଏହାପରେ କିପରି ଏଥିରୁ ମୁକ୍ତି ମିଳିବ ଏଥିପାଇଁ କି ପ୍ରକାର ପ୍ରୟାସ କରଣୀୟ, ସେ ସଂପର୍କରେ ସତ୍‌କବିଟିଏ ଉଚିତ୍ ମାର୍ଗ ପ୍ରଦର୍ଶନ କରାଇବା ଆବଶ୍ୟକ । ଏ ସଂପର୍କରେ କବି ସ୍ୱୟଂ 'ଝର୍କା ବାହାରେ' ସଂକଳନର ମୁଖବଂଧରେ ପ୍ରକାଶ କରନ୍ତି –

"ମୁଁ ବୁଝିଛି, କବିତା ମଣିଷଠାରୁ ଦୂରେଇ ଯାଉଛି । କାରଣ ପରଂପରାଗତ ଭାବ ଓ କଳ୍ପନା ବିଳାସ, ରହସ୍ୟବାଦ, ବିକଳ ରୋମାଣ୍ଟିକ୍ ମାନସିକତା, ବ୍ୟକ୍ତିଗତ ଅଳି-କଳି-ଉପାଖ୍ୟାନ, ଶୈଳୀ ଓ ଅଳଂକାରର ଚମକ ବା ବିସ୍ତୃତ ଭାବରେ କହିବାର ଢଂଗ ଆଉ ମୋ ଜୀବନରେ ନାହିଁ । X X X। ମୋର କହିବାର କଥା ଆମ ମାଟିର ବାସ୍ନା ରହୁ । ସାମସମୟିକ ସମାଜ ଜୀବନ ଓ ମଣିଷର ବାସ୍ତବ କଥା ରହୁ ।" (୧୭୭)

ବ୍ରହ୍ମାନନ୍ଦଙ୍କ କବିତାର ଏକ ବିଶେଷତ୍ୱ ହେଉଛି ସହଜ, ସରଳ ବୋଧଗମ୍ୟ ଭାଷାରେ ନିଜସ୍ୱ ଭାବକୁ ବ୍ୟକ୍ତ କରିବା । ଦୀର୍ଘବର୍ଷର ନୀରବତା ପରେ ସମ୍ଭବତଃ କବିତାକୁ ଜନସାଧାରଣଙ୍କର ନିକଟବର୍ତ୍ତୀ କରାଇବାର ପ୍ରତିଶ୍ରୁତି ନେଇ କବି ବ୍ରହ୍ମାନନ୍ଦଙ୍କର କବିତା ରାଜ୍ୟକୁ ପୁନରାଗମନ ଘଟେ । କବିଙ୍କର କବିତା କିପରି ଦଳିତ ବର୍ଗର ଦାରିଦ୍ର୍ୟ ପ୍ରତି ସମବେଦନା ବ୍ୟକ୍ତ କରୁଛି, ତାହା ନିମ୍ନୋକ୍ତ ପଂକ୍ତିରୁ ହୃଦୟଙ୍ଗମ କରିହୁଏ ।

"ମାତ୍ର ଦେଖ ସେଇ ସ୍ତ୍ରୀଟିକୁ
ସାତ ଛିଣ୍ଡା ଶାଢ଼ୀର କାନିକୁ
ଅଣ୍ଟାରେ ଟାଣ କରି ଖୋସି ଦେଇ
ଖଣ୍ଡିଆ ପହଁରାଟିରେ ଖରକି ଆଣେ ସାରା ଗଛମୂଳ
ଆଖିରେ ତାର ଜଳି ଉଠେ
ଘର କୋଣର ଚୁଲିକି
ଫୁଟନ୍ତା ଭାତର ବାସନା
ପହଁରି ଯାଏ ପବନରେ
ପତ୍ର ସାଉଁଟୁଥିବା ସ୍ତ୍ରୀ ଲୋକ ? (୧୭୮)

ସାଂପ୍ରତିକ କାଳର ଭାରତବର୍ଷ ଆଜି ଭ୍ରଷ୍ଟ ରାଜନୈତିକ ନେତାମାନଙ୍କର ଉପଦ୍ରବର ଉପତ୍ୟକାରେ ଉପନୀତ ହୋଇଛି । ଭ୍ରଷ୍ଟାଚାର ଏବଂ ବ୍ୟଭିଚାର ମଧ୍ୟରେ ମାନବିକ ମୂଲ୍ୟବୋଧ ଆଜି ବନ୍ଦୀ ହୋଇଯାଇଛି । ସାଂପ୍ରତିକ ସମାଜ ବ୍ୟବସ୍ଥାର ବଡ଼ପଣ୍ଡାମାନେ ଆଜି ଗଣତନ୍ତ୍ରକୁ ଗଣିକାରେ ପରିଣତ କରିଦେଇଛନ୍ତି । ଏକଦା ଜନସାଧାରଣଙ୍କ ଦୁଃଖ ଦାରିଦ୍ର୍ୟ ଦୂର କରିବାପାଇଁ ସଂକଳ୍ପବଦ୍ଧ ହୋଇଥିବା ନେତୃଗଣଙ୍କ ପାଖରେ ଏହାର କୌଣସି ମୂଲ୍ୟ ନାହିଁ । ତେଣୁ ପଚାଶ ବର୍ଷ ପୂର୍ବେ ଗାଉଁଲୀ ନାରୀଟି ଯେମିତି ଚିରା ଛିଣ୍ଡା ସାତସିଆଁ ଲୁଗାଟିକୁ ଅଣ୍ଟାରେ ଖୋସି ପତ୍ର ଗୋଟାଉଥିଲା ଆଜି

ମଧ୍ୟ ଏହି ଅବସ୍ଥାରେ କୌଣସି ପରିବର୍ତ୍ତନ ଦେଖାଯାଇନାହିଁ । ଗଣତନ୍ତ୍ରିକ ସମାଜ ବ୍ୟବସ୍ଥାରେ ଏହାର ଅବସାନ ଘଟିବା କଷ୍ଟସାଧ୍ୟ ନିଶ୍ଚୟ। କାହିଁକି ନା ଏଠାରେ ମଣିଷର ସଂଗ୍ରାମ କରିବାର ମନୋବୃତ୍ତି ନାହିଁ । କବିଙ୍କ ଭାଷାରେ–

"ଆମେ କିନ୍ତୁ କାହାରି କଥା ଶୁଣୁନା
ଶବକୁ ଖାଇ ଗୋଟି ଖଟୁ
ଦେଶ ଛାଡ଼ି ଦାଦନ ଯାଉ
କାନ୍ଦୁ ଖାଲି କାନ୍ଦୁ
ମହାନଦୀ ପାଣି ହୋଇ ବହିଯାଏ ।" (୧୭୯)

ସାଧାରଣ ମଣିଷ ଅନ୍ୟାୟ ବିରୋଧରେ ପ୍ରତିକ୍ରିୟା ପ୍ରକାଶ କରୁନାହିଁ । କବିଙ୍କର ଏ କବିତା ମଧ୍ୟ ଏଠାରେ ମଣିଷ ସମାଜକୁ ପ୍ରତିବାଦ କରିବା ପାଇଁ ପ୍ରେରଣା ପ୍ରଦାନ କରୁନାହିଁ । କବି କେବଳ ମଣିଷ ସମାଜର ଦୟନୀୟ ଅବସ୍ଥା ଦେଖି ସମବେଦନା ବ୍ୟକ୍ତ କରୁଛନ୍ତି । ଦାୟୀ କରୁଛନ୍ତି ତଥାକଥିତ ଅମଲାତାନ୍ତ୍ରିକ ରାଜନୈତିକ ଶାସନ ବ୍ୟବସ୍ଥାକୁ । ସଭାସମିତି ମାଧ୍ୟମରେ ଜନସାଧାରଣଙ୍କୁ ସଚେତନ କରାଇବାର ପ୍ରୟାସ କରୁଛନ୍ତି । ଯାହାର ପ୍ରତିଫଳନ ଘଟିଛି ' ସଭା' କବିତାରେ ।

"ଆମର ଏକମାତ୍ର ବ୍ରତ ହେଉ
ଲୋକଙ୍କୁ ଛୁଇଁବା
ଜାଗାଜାଗା ସଭା କରିବା
ପ୍ରଥମ ସଭା ହେବ
ପଶ୍ଚିମ ବଣ ଘେରା ପାହାଡ଼ ଉପରେ
ଅନାହାର ଓ ରୋଗ
ଯହିଁ ମଣିଷକୁ ବ୍ୟତିବ୍ୟସ୍ତ କରେ
ଦ୍ୱିତୀୟ ସଭାହେବ
ସାତଭାୟା ଜମ୍ବୁ ଦ୍ୱୀପରେ
ଦାରିଦ୍ର୍ୟ ଓ ସମୁଦ୍ର ।" (୧୮୦)

ସମାଜର ସୁବିଧାବାଦୀ ଗୋଷ୍ଠୀ ସମସ୍ତ ପ୍ରକାର ଶାସନ କ୍ଷମତାକୁ ନିଜ ହାତମୁଠାରେ ଜାବୁଡ଼ି ଧରିଛନ୍ତି । ସଭ୍ୟତା, ସଂସ୍କୃତି ସବୁକିଛି ତାଙ୍କରି କବ୍ଜାରେ । ଭଦ୍ରତାର ମୁଖା ପିନ୍ଧି ଏମାନେ ସର୍ବସ୍ୱ ଶୋଷଣ କରିଚାଲନ୍ତି । ଅପସଂସ୍କୃତିକୁ ପ୍ରଶୟ ଦେଇ ସଭାସମିତିରେ ମହାନ୍ ସଂସ୍କୃତିକୁ ବଜାୟ ରଖିବା ପାଇଁ ଆହ୍ୱାନ ଦିଅନ୍ତି । ଏ ପ୍ରକାର ଛଳନା ଓ କପଟତାକୁ କବିଙ୍କର ନିମ୍ନୋକ୍ତ କବିତାର ପଂକ୍ତି ବହନ କରିଛି ।

"ମହାମନ୍ତ୍ରୀ କହନ୍ତି
ମନ୍ତ୍ରୀ ଓ ନିର୍ବାଚିତ ପ୍ରତିନିଧି ଗଣଙ୍କୁ
ଆମର ମହାନ ସଂସ୍କୃତିକୁ ଧରିରଖ
ଆଦର୍ଶ ଜୀବନଯାପନ କର ।
ସେମାନେ ଜନସାଧାରଣଙ୍କୁ
ନିଜ ନିଜ ଅଞ୍ଚଳରେ ସଭାକରି କହନ୍ତି
ଶିକ୍ଷକମାନେ ଛାତ୍ରଙ୍କୁ
ବାବୁ ମାନେ ଚାକରଙ୍କୁ ।
କହି ଚାଲନ୍ତି ସେହି ଏକା କଥା ।" (୧୮୧)

ସାଂପ୍ରତିକ ସମୟର ରାଜନୈତିକ ଚିତ୍ରପଟକୁ ଆହୁରି ଉତ୍କଟ ଓ ନଗ୍ନ ଭାବରେ ଚିତ୍ରଣ କରିବାକୁ ଯାଇ କବି ଆକ୍ଷେପ କରୁଛନ୍ତି –

"ଶାସନ କରିବା
ବଡ଼ ସହଜ
ଭାଗ ଭାଗ କରିଦିଅ
ମଣିଷରୁ ମଣିଷକୁ
ସେମାନଙ୍କୁ ଦରିଦ୍ର
କରିରଖ
ବନ୍ଦକର ଶିକ୍ଷାର ଦ୍ୱାର
ସେମାନଙ୍କ ପାଇଁ
ଆଉ ଧର୍ମ ନାମରେ ବୁଣିଦିଅ
କିଛି ଅଂଧ ବିଚାର ।" (୧୮୨)

ସାଂପ୍ରତିକ ସମାଜରେ ଶାସନ ବ୍ୟବସ୍ଥା କଳୁଷିତ । ନେତୃବର୍ଗଙ୍କର ସଂକୀର୍ଣ୍ଣସ୍ୱାର୍ଥ ନିକଟରେ ସମୂହସ୍ୱାର୍ଥ ଆଜି ମୂଲ୍ୟହୀନ । ଦେଶ ସ୍ୱାଧୀନତାପ୍ରାପ୍ତି ପୂର୍ବରୁ ପରିଲକ୍ଷିତ ହେଉଥିବା ମାନସିକତା ଧିରେଧିରେ ଅପସରି ଯାଉଛି । ଏଠାରେ କ୍ଷମତା ପାଇଁ ଗୋଷ୍ଠୀ କନ୍ଦଳ ଦେଖାଦେଉଛି । ଜାତିଆଣ ଭାବ, ଦଂଗା, ସାଂପ୍ରଦାୟିକତା ଦ୍ୱାରା ଏ ଭାରତବର୍ଷ ଆଜି ଭୂଲୁଣ୍ଠିତ । କେବଳ ଜନସାଧାରଣଙ୍କ ଭୋଟ୍‌କୁ ଅକ୍ତିଆର କରିବା ନେତୃବର୍ଗଙ୍କର ପ୍ରଧାନ କାର୍ଯ୍ୟ । ତେଣୁ ସ୍ୱାଧୀନତା ପ୍ରାପ୍ତି ସମୟର ଅବସ୍ଥା ସହିତ ବର୍ତ୍ତମାନ ଅବସ୍ଥାର ଏକ ତୁଳନାତ୍ମକ ଚିତ୍ର 'ସୂତାକଟା' କବିତାରେ ଦେଖିବାକୁ ପାଇବା । ପ୍ରଗତିବାଦୀ କାବ୍ୟ ଚେତନା କେବଳ ଯେ ଶୋଷଣ ବିରୋଧୀ ସ୍ୱର ଉତ୍ତୋଳନ କରେ ତାହା

ନୁହେଁ, ବରଂ ସମାଜରେ ପରିଲକ୍ଷିତ ହେଉଥିବା ଯେକୌଣସି ଅବ୍ୟବସ୍ଥା ବିରୋଧରେ ପ୍ରତିବାଦ କରେ । କବିଙ୍କ ଭାଷାରେ -

"ସ୍ୱାଧୀନତା ପାଇବାର
ଠିକ୍ ପରଠାରୁ
ଆମ ରୁଟିନ୍‌ରେ ନିୟମିତ
ସୂତା କଟା କ୍ଲାସ୍

X X X

ସୂତାକଟା ଚାଲିଲା
ଖଦଡ଼ ପିନ୍ଧି ନୂଆସାର୍
ଅତି ଆପଣାର ହୋଇଗଲେ
ଆମର
ଖଦଡ଼ ପିନ୍ଧା ସାର
ନେତା ବନିଗଲେ
ଉଠିଗଲା ଆମ ରୁଟିନ୍‌ରୁ
ସୂତାକଟା କ୍ଲାସ୍ ।" (୧୮୩)

ସମୟାନୁସାରେ ମଣିଷର ଚିନ୍ତାଧାରା ମଧ୍ୟ ପରିବର୍ତ୍ତିତ ହୁଏ । କିନ୍ତୁ ଏହା ଯଦି ସମାଜର ମଂଗଳ ସାଧନ ପରିବର୍ତ୍ତେ ଅମଂଗଳକୁ ପାଛୋଟି ଆଣେ, ତା' ହେଲେ ଏହାର ସମାଧାନର ସୂତ୍ରଟି କେଉଁଠାରେ ନିହିତ ? ତାହା କହିବା ଅତ୍ୟନ୍ତ 'କଷ୍ଟକର ହୋଇପଡ଼େ । ଏ ପ୍ରକାର ବିଭ୍ରାନ୍ତ ବ୍ୟବସ୍ଥାକୁ କବିଟିଏ କ'ଣ ଏକାକୀ ସଜାଡ଼ି ପାରିବ ? ତେଣୁ ଏକ ଅତିଷ୍ଠ ମାନସିକତାକୁ ନେଇ କବି କହନ୍ତି –

"ଫକୀର ମୋହନ କହିଲେ
ଭଲକରି ଚିହ୍ନି ରଖ ସମାଜ
ଭିତରେ ଥିବା ଶୟତାନ୍‌ଙ୍କୁ
ଆଜି ଆମର ପାଳି
କଣ କହିବା ଆମେ'
ଆମ ପ୍ରିୟ ପାଠକ ମାନଙ୍କୁ ?" (୧୮୪)

ପ୍ରଗତିବାଦୀ ସ୍ରଷ୍ଟାଟିଏ ସଦାସର୍ବଦା ଜନସାଧାରଣଙ୍କ ହୃଦୟର ବ୍ୟଥାକୁ ହିଁ ଭାଷାରେ ରୂପ ପ୍ରଦାନ କରେ । ପାରିପାର୍ଶ୍ୱିକ ସମାଜବ୍ୟବସ୍ଥାକୁ ଟିକିନିଖି ପରୀକ୍ଷା କରିବା ଭିତରେ କବିଟିଏ ନିଜକୁ ଏହା ମଧ୍ୟରେ ସଂଶ୍ଳିଷ୍ଟ କରିବାର ମଉକା ପାଏ ।

ଏହାପରେ ସେ ଜନତାଙ୍କୁ ସଚେତନ କରାଇବାକୁ ପ୍ରେରଣା ପ୍ରଦାନ କରେ । ଏହା ହିଁ ଜଣେ ପ୍ରଗତିବାଦୀ କବିର ପ୍ରଥମ କର୍ତ୍ତବ୍ୟ ହେବା ଉଚିତ୍ । କବିଙ୍କର କବିତା ଏ କ୍ଷେତ୍ରରେ ଏକ ଆହ୍ୱାନୀ ମାନସିକତାକୁ ଗ୍ରହଣ କରିନାହିଁ । ବରଂ ଏକ ମାର୍ଜିତ ରୀତିରେ କବି ଏହାର ପରିପ୍ରକାଶ କରିଛନ୍ତି । ଦୃଷ୍ଟାନ୍ତ ରୂପେ 'ମାଙ୍କଡ଼ସା' କବିତାକୁ ଗ୍ରହଣ କରାଯାଇପାରେ ।

"ସୁନ୍ଦର ଅଠାଳିଆ ଜାଲ ବୁଣିଦେଇ
ଚୁପ୍‌କିନା ଛକିଥାନ୍ତି
କାରଖାନାଟେ ଗଢ଼ି ଦେଇ
ଶିଳ୍ପପତି ପରି
ଦଳଦଳ ମାଛପରି ଶ୍ରମିକ ଉଡ଼ିଆସି ପଡ଼ନ୍ତି
ଆଉ ସେ ଗୋଟି ଗୋଟି ଗିଳୁଥାନ୍ତି
ସେମାନଙ୍କ ରକ୍ତ ମାଂସ ଓ ନରମ ହାଡ଼ ।" (୧୮୫)

କବିଙ୍କର ଏ ପ୍ରକାର ଚିନ୍ତାଦର୍ଶ ସଂପର୍କରେ ଡଃ ଦିଲ୍ଲୀପ କୁମାର ସ୍ୱାଇଁ ମତପ୍ରଦାନ କରନ୍ତି –

"ପ୍ରୋଗେସିଭ୍ କବି ପରି ଏ କବିତାରେ ଶ୍ରମିକମାନଙ୍କ ପାଇଁ କବିର କିଛି ଉପଦେଶ ନାହିଁ । ଅଂଗୀକାର ନାହିଁ । କେବଳ ସେମାନଙ୍କ ଦୁଃଖକୁ ପାଠକ ପାଖରେ ପହଞ୍ଚାଇବା ଅଛି । ଏହା ସହ କବି ଚିତ୍ତର ଆଶ୍ୱାସନା ଟିକକ ରହିଛି । ପ୍ରୋଗ୍ରେସିଭ୍ କବିତାର ଭାଷଣ ବାଜିକୁ କବି ଏଠାରେ ବର୍ଜନ କରିଛନ୍ତି ।" (୧୮୬)

ପ୍ରଗତିବାଦର ଉଗ୍ର ରୂପକୁ ପରିହାର କରିଥିବା କବି ବ୍ରହ୍ମାନନ୍ଦ ଜଣେ ସଫଳ ସାମାଜିକ ଅଂଗୀକାରବଦ୍ଧ ସ୍ରଷ୍ଟା ଭାବରେ ଶାସନ କର୍ତ୍ତା ମାନଙ୍କର ମୁଖା ଉନ୍ମୋଚନ କରିଛନ୍ତି । କବିଙ୍କ ଭାଷାରେ -

"ପ୍ରଭୁ, ତୁମ୍ଭେ ଚିରକାଳ
ମୋ ପାଇଁ ଆଖି ବୁଜି ରହିଥାଅ,
ମୁଁ କରିବି ଛୋଟ ବଡ଼
ଲକ୍ଷେ ଅପରାଧ
ତୁମରି ନାମରେ ।" (୧୮୭)

ପ୍ରଗତିବାଦୀ ତତ୍ତ୍ୱ ଧର୍ମ ବିରୋଧି ଚିନ୍ତାଦର୍ଶକୁ ପ୍ରକଟିତ କରିଥାଏ, କାହିଁକିନା ଧର୍ମକୁ ଆୟୁଧ ଭାବରେ ଗ୍ରହଣ କରି ଶୋଷକ ଗୋଷ୍ଠୀ ତା'ର ମାୟାଜାଲ ବିସ୍ତାର କରେ । ଶୋଷିତ ଜନତା ମଧ୍ୟ ଅଂଧ ଭାବରେ ଧର୍ମ ପ୍ରତି ଆସ୍ଥା ସ୍ଥାପନ କରେ ।

ଧର୍ମ ଓ ଈଶ୍ୱରଙ୍କ ପାଇଁ ସେ ସର୍ବସ୍ୱ ତ୍ୟାଗ କରିପାରେ । ଧର୍ମୀୟ ବିଶ୍ୱାସ ନାମରେ ଶୋଷକ ବର୍ଗ କିପରି ଦୁର୍ନୀତି କରିଚାଲେ, ତା'ର ନିଛକ ଚିତ୍ର କବିଙ୍କର 'ମନ୍ତ୍ରୀ ଉବାଚ' କବିତାରେ ଦେଖିବାକୁ ପାଇବା । କିନ୍ତୁ ଏଠାରେ ଗୋଟିଏ କଥା ଲକ୍ଷ୍ୟ କରାଯାଇପାରେ ଯେ, କବି ଶୋଷକଗୋଷ୍ଠୀର ଯାବତୀୟ କୁତ୍ସିତ କାର୍ଯ୍ୟକଳାପ ସଂପର୍କରେ ଜନସାଧାରଣଙ୍କୁ ସୂଚାଇ ଦେଉଛନ୍ତି । ମାତ୍ର କେଉଁଠି ହେଲେ ମଧ୍ୟ ଏହା ବିରୋଧରେ ସ୍ୱର ଉତ୍ତୋଳନ କରିବା ପାଇଁ ଜନସମୁଦାୟଙ୍କୁ ଆହ୍ୱାନ ପ୍ରଦାନ କରିନାହାନ୍ତି । କବିତାକୁ ମଣିଷ ହୃଦୟର ନିକଟତର କରାଇବା ପାଇଁ ଯଥାସମ୍ଭବ ପ୍ରୟାସ କରିଛନ୍ତି କବି । ବ୍ୟାବହାରିକ ବସ୍ତୁ ଓ ସାଧାରଣ କ୍ରିୟାକଳାପ ଭିତରେ ଛପି ରହିଥିବା ଅସାଧାରଣ ଭାବ ବିନ୍ଦୁଟିକୁ ଉଦ୍‌ଘାଟନ କରିବାରେ କବି ସର୍ବଦା ଚେଷ୍ଟିତ । 'ରୁଟି' କବିତାରେ ଏହି ଚିନ୍ତାଧାରା କିପରି ପ୍ରତିଫଳିତ ହୋଇଛି ଦେଖନ୍ତୁ –

"ଜଳଖିଆ ଖାଇବା ପରେ ଦେଖେ
ପିମ୍ପୁଡ଼ିଟେ ବୋହି ନେଉଛି
ଝଡ଼ି ପଡ଼ିଥିବା ରୁଟିର ଛିଣ୍ଡା ଟୁକୁରା
ବଡ଼ କଷ୍ଟରେ
ସେତକ କାମୁଡ଼ି ଧରି
ପ୍ରାଣପଣେ ଓହ୍ଲାଉଛି ସେ
ପାହାଚ ପରେ ପାହାଚ
ସତରେ ବୋକା ପିମ୍ପୁଡ଼ିଟି
ରୁଟି ଟୁକୁରାଟିକୁ ଫିଙ୍ଗି ପାରନ୍ତା

x x x x

କ'ଣ ବାକି ରହିବ
ତା' ପିଲାଛୁଆ ପାଇଁ ?
ଏଇ ପିମ୍ପୁଡ଼ି ପରି
ଆମ ଭିତରେ ଥିବା
ଶହ ଶହ ଗରିବର ଦୁଃଖ,
ଠଉରନା ଏତେ ହାଲ୍‌କା ଭାବେ ।"(୧୮୮)

କବିତାରେ କବି 'ପିମ୍ପୁଡ଼ି' ପ୍ରତୀକ ମାଧ୍ୟମରେ ସାଧାରଣ ଜନତାର ବ୍ୟଥା ବେଦନାକୁ ରୂପାୟିତ କରିଛନ୍ତି । କବିଙ୍କର କବିତାଗୁଡ଼ିକୁ ଅନୁଧ୍ୟାନ କଲେ ସ୍ପଷ୍ଟ ଭାବରେ ସ୍ୱୀକାର କରାଯାଇପାରେ ଯେ, ଦଳିତ ଗୋଷ୍ଠୀ ପ୍ରତି କବି ପ୍ରାଣର ସମବେଦନା

କାବ୍ୟ କବିତାର ମୁଖ୍ୟ ଆଧାର ପାଲଟିଥିଲେ ମଧ ଏହାର ସମାଧାନ ପାଇଁ କବି କୌଣସି ଚେଷ୍ଟା କରିନାହାନ୍ତି । କବିଙ୍କର କବିତା ବିଶ୍ୱର ମୁକ୍ତିକାମୀ ଜନଗଣଙ୍କ ଉଦ୍ଦେଶ୍ୟରେ ସମର୍ପିତ ହୋଇପାରେ ସତ କିନ୍ତୁ ବିପ୍ଳବ ଆନୟନ ପାଇଁ ଯେଉଁ ଦୃଢ଼ ମାନସିକତା କବିତାରେ ରହିବା କଥା ତାକୁ ଖୋଜିଲେ ଆମକୁ ନିରାଶ ହେବାକୁ ପଡ଼ିବ । ଏକଥା ମଧ ସ୍ୱୀକାର କରାଯାଇପାରେ ଯେ, କବିଙ୍କର କବିତା ସଦାସର୍ବଦା ସାଂପ୍ରତିକ ସମାଜର ଅବ୍ୟବସ୍ଥା ଓ ପ୍ରଚଳିତ ଅପସଂସ୍କୃତି ସଂପର୍କରେ ଜନସାଧାରଣଙ୍କୁ ଜଣାଇବାର ପ୍ରୟାସ କରିଛି । ପ୍ରାଂବଧିକ ବାଞ୍ଛାନିଧି ଦାସଙ୍କ ମତରେ –

"ଓଡ଼ିଆ ସାହିତ୍ୟରେ ପ୍ରଚଳିତ ଅପସଂସ୍କୃତିର ମହାସ୍ରୋତରୁ ବାହାରି ଆସି ଜନଗଣ ପାଇଁ ଜୀବନ ସଂଗୀତ ରଚନା କରିବା କମ୍ ସାହସିକତାର କଥା ନୁହେଁ। ବିପ୍ଳବୀ ଭବିଷ୍ୟତ ଗଠନ ପାଇଁ କମ୍ ଉତ୍ସାହଜନକ କଥା ନୁହେଁ । ମଣିଷର ଅନ୍ତରକୁ ସ୍ପର୍ଶ କରୁଥିବାରୁ କବିଙ୍କର ପ୍ରତ୍ୟେକ କବିତା ସ୍ମରଣ ଯୋଗ୍ୟ ।" (୧୮୯)

ପରିଶେଷରେ କବି ବ୍ରହ୍ମାନନ୍ଦଙ୍କ କବିତା ସଂପର୍କରେ ଏତିକି କୁହାଯାଇପାରେ ଯେ, କବିତାରେ ବିପ୍ଳବର ଉଷ୍ମତା ଅନୁଭୂତ ନହେଲେ ମଧ ସହଜ, ସରଳ, ଭାଷା ମାଧମରେ, କବି ନିଜର ଭାବରୂପକୁ ଏପରି ବର୍ଣ୍ଣନା କରିଛନ୍ତି ଯେ ଯାହା ସାଧାରଣ ମଣିଷର ଅନ୍ତରକୁ ସ୍ପର୍ଶ କରିଥାଏ ଓ ସେଥିରେ ପ୍ରଗତିବାଦର ଝଲକ ମଧ ଅନୁଭୂତ ହୁଏ ।

## କବି ତ୍ରିଲୋଚନ ଭୋଳ :-

"ହାତ ମୋର ବଢ଼ାଇଲି-ଦିଅ ମୋତେ ଆଗ୍ନେୟର ଏକ ଅଂଗୁରୀୟ
ପାଦ ମୋର ବଢ଼ାଇଲି କର ମୋତେ ଅସରନ୍ତି ପଥର ପାଥେୟ ।
ହୃଦୟ ମୋ ଢାଳିଦେଲି-ଦିଅ ତାକୁ ଜୀବନ ଯଜ୍ଞରେ ଆହୁତି
ମୋ ନିଜକୁ ତୁମରେ ମୁଁ ସମର୍ପିଲି
କର ମତେ ଅନାଗତ
ଶତାବ୍ଦୀର ସ୍ମୃତି ।
କର ମୋତେ, କର ସିଉକାର
ମୁଁ ହେବି ଶୋଷକ ବୁକେ-
ଶୋଷିତର ବେସାଲିସ୍ ରଙ୍ଗର ସ୍ୱାକ୍ଷର ।(୧୯୦)

ଅବଧୂତ ଯୁଗର ଅନ୍ୟତମ ବହ୍ନିମାନ ସ୍ରଷ୍ଟା ହେଉଛନ୍ତି କବି ତ୍ରିଲୋଚନ ଭୋଳ । ଚିଲିକା କୂଳର ବାଣପୁରର ଏକ ସାଧାରଣ ପରିବାରରେ ଜନ୍ମଗ୍ରହଣ କରିଥିଲେ କବି । ଏ ତରୁଣ କବି ଯୁବଲେଖକ ସମ୍ମେଳନର ଜଣେ ସକ୍ରିୟ ସଦସ୍ୟ ଥିଲେ । 'ଆଭା',

'ବେଳା' ଗୋଷ୍ଠୀର ସାମସମୟିକ ହେଉଛନ୍ତି କବି ଶ୍ରୀଯୁକ୍ତ ଭୋଳ । ଦରିଦ୍ର, ଖଟିଖିଆ ଶ୍ରମଜୀବୀମାନଙ୍କ ପାଇଁ ସର୍ବସ୍ୱ ସମର୍ପଣ କରିବା ପାଇଁ ପ୍ରସ୍ତୁତ ଥିବା କବି ଶ୍ରୀଯୁକ୍ତ ଭୋଳ । ଦରିଦ୍ର ଖଟିଖିଆ ଶ୍ରମଜୀବୀମାନଙ୍କ ପାଇଁ ସର୍ବସ୍ୱ ସମର୍ପଣ କରିବା ପାଇଁ ପ୍ରସ୍ତୁତ ଥିବା କବି ଶ୍ରୀଯୁକ୍ତ ଭୋଳ ଆଜି ମଧ ସମାଲୋଚକମାନଙ୍କର ଦୃଷ୍ଟିର ପରିସର ମଧ୍ୟକୁ ଆସିନାହାନ୍ତି । କବିତାରେ ଅଗ୍ନିବର୍ଷୀ ବାଣୀର ଝଙ୍କାର ସାଙ୍ଗକୁ ଛନ୍ଦମୟ ଶବ୍ଦ ଯୋଜନା କବିଙ୍କର କବିତାରେ ବେଶ୍ ମନୋରମ ଭାବେ ପରିସ୍ଫୁଟିତ ହୋଇଛି । ଶୋଷିତ ଜନଗଣଙ୍କ ସ୍ୱାର୍ଥରକ୍ଷା ପାଇଁ ବଦ୍ଧପରିକର ମନେହୁଅନ୍ତି ଆମର ବିପ୍ଳବୀ କବି ତ୍ରିଲୋଚନ ଭୋଳ ।

ସାମ୍ୟବାଦୀ ସ୍ରଷ୍ଟା ସଦାସର୍ବଦା ଅତ୍ୟାଚାର ବିରୋଧରେ ସ୍ୱର ଉତ୍ତୋଳନ କରେ । ଯୁଗାନ୍ତକାରୀ ପରିବର୍ତ୍ତନ ଆଣିବା ପାଇଁ ବିପ୍ଳବର ରକ୍ତରଂଗା ବେଦୀରେ ଆତ୍ମନିବେଦନ କରେ । ଶୋଷକର କାରାଗାରରେ ଦୀର୍ଘ ଦିନ ତପସ୍ୟାରଚି ନବ୍ୟ ଚେତନାର ଅଗ୍ରଗାମୀମାନଙ୍କୁ ପ୍ରେରଣା ପ୍ରଦାନ କରେ । ଶୋଷଣ ବିହୀନ ସମାଜ ଗଠନ କରିବା ପାଇଁ, ନିଜର ଅଧିକାର ହାସଲ କରିବା ପାଇଁ ଶୋଷିତ ଦଳିତ ମାନଂକୁ କବି ତ୍ରିଲୋଚନ 'ଯମଦଗ୍ନି' ଭାବରେ ସଜାଇ ଦେଇ ବିପ୍ଳବର ବହ୍ନି ପ୍ରଜ୍ୱଳିତ କରିଦେଇପାରନ୍ତି । Long March (II) ରେ ପ୍ରକାଶିତ କବିତା ଏହାର ସ୍ୱାକ୍ଷର ବହନ କରେ ।

"Make us fire
We're Jamadagni
Give us the sword red with blood
The all killing sword
Give us in our struggle
The banner of equality
That thrilling demand of life
Our broken hut has turned
A fire emitting urn
Make us fire
Let us burn" (191)

(Long march-II 1st edition Nov. 1971)

ଏକ ଯୁବ ସୁଲଭ ଉଦ୍ଦାମତାକୁ ନେଇ, ମାର୍କସ୍‌ବାଦୀ ଚିନ୍ତାରେ ଉଦ୍‌ବୁଦ୍ଧ ହୋଇ, କବି ତ୍ରିଲୋଚନ ଲେଖନୀ ଚଳାଇଥିଲେ ଏକ ନୂତନ ସମାଜଗଠନ ପାଇଁ । ଅଗଣିତ ମୁମୂର୍ଷୁ ଜନତାର ଅନ୍ତରର ପ୍ରତିଧ୍ୱନି କବିଙ୍କ କବିତାରେ ମର୍ମରିତ ହେଉଥିଲା । ଦୁଃଖ ଦୁର୍ଦ୍ଦଶାରେ ପ୍ରତିମୁହୂର୍ତ୍ତରେ ଛଟପଟ ହେଉଥିବା ମଣିଷମାନଙ୍କ ପ୍ରତି କବି ହୃଦୟର

ଗଭୀର ସମବେଦନା ପ୍ରକାଶ ପାଇଛି ତାଂକର ବହୁ କବିତାରେ । ବିପ୍ଳବୀ ଚିନ୍ତାଧାରା କବି ଯେପରି ସସମ୍ମାନେ ଗ୍ରହଣ କରିଛନ୍ତି, ବିପ୍ଳବୀ ସଂଗ୍ରାମୀ ମୁକ୍ତି ଯୋଦ୍ଧାଙ୍କ ପ୍ରତି ମଧ୍ୟ କବି ଆପଣା ହୃଦୟର ଭକ୍ତି ଅର୍ଘ୍ୟ ଅର୍ପଣ କରିଛନ୍ତି । ଇରେଜ୍ ଅମଳର ଜଣେ ମୁକ୍ତିଯୋଦ୍ଧା, ନାମ ତାଂକର 'କୃତ୍ତିବାସ' ଯିଏକି କଳାପାଣିରେ ବନ୍ଦୀଥିବା ସମୟରେ ତାଂକର ଜୀବନବସାନ ଘଟିଥିଲା, ସେହି ସଂଗ୍ରାମୀ ନାୟକ କୃତ୍ତିବାସଙ୍କ ଉଦ୍ଦେଶ୍ୟରେ କବିଙ୍କର ହୃଦୟର ପ୍ରତିକ୍ରିୟା କିପରି ତାହା ନିମ୍ନ ପଂକ୍ତିରେ ପ୍ରଦତ୍ତ :-

"ତୁମର ମରଣେ ହୁଏ ଆଜିର ଜୟନ୍ତୀ
ଯେତେବେଳେ ଅଶାନ୍ତିର କୋଟି ଲାଲ୍‌ବତୀ
ଜଳି ଉଠେ ମଣିଷର ବିଦୀର୍ଣ୍ଣ ଛାତିରେ
ସେତେବେଳେ ହେ ବିପ୍ଳବୀ କୃତ୍ତିବାସ
ମୁଁ ତୁମକୁ ନମସ୍କାର କରେ ।।" (୧୯୨)

କବି ତ୍ରିଲୋଚନ ଭୋଳଙ୍କ ପରି ବହୁ ପ୍ରତିଭାଙ୍କୁ ଓଡ଼ିଆ ସମାଲୋଚକମାନେ ଦୃଷ୍ଟି ସମ୍ମୁଖକୁ ନ ଆଣିବା ଅତ୍ୟନ୍ତ ପରିତାପର ବିଷୟ । କବି ଷଷ୍ଠ ଦଶକରୁ ବହୁ କବିତା, ପ୍ରଗତିବାଦୀ ଚିନ୍ତାଚେତନା ସମ୍ବଳିତ ବହୁ ପ୍ରବନ୍ଧ ରଚନା କରି ପ୍ରଗତିବାଦୀ ସାହିତ୍ୟକୁ ପରିପୁଷ୍ଟ କରିଛନ୍ତି । କବିଙ୍କର କବିତା ସଂଗ୍ରାମୀ ଜୀବନର ମାର୍ମିକ ଚିତ୍ରକୁ ଯେପରି ବହନ କରିଛି ଜୀବନ ବାଦୀ ଦୃଷ୍ଟିଭଙ୍ଗୀକୁ ମଧ୍ୟ ସେମିତି ଗ୍ରହଣ କରିନେଇଛି । ସେଥିପାଇଁ କବି 'ସ୍ୱଗତୋକ୍ତି' କରୁଛନ୍ତି :-

"ଦି ଦିନର କୁଣିଆ ମୁଁ ଏ ଧରାର ଫୁଲ ଅଭିସାର
ସରିଛି; ଯାଉଛି ମୁହିଁ ବରିବାକୁ ଅନ୍ୟ ସ୍ୱୟଂବର
ମଶାଣିର ଯଜ୍ଞବେଦୀ ମୋହ ପାଇଁ ଶୂନ୍ୟ ଅଛି ପଡ଼ି
ଜୀବନକୁ ଛାଡ଼ପତ୍ର ଦେଇ ଆଜି ଯାଏ ମୁଁ ବାହୁଡ଼ି ।" (୧୯୩)

କବିଙ୍କୁ ଅଧ୍ୟୟନ କଲେ, ଜାଣିହୁଏ ତତ୍‌କାଳୀନ ଓଡ଼ିଶାର ବିପ୍ଳବୀ ପ୍ରାଣର ସ୍ପନ୍ଦନକୁ । ଭାଷା, ଭାବ, ବର୍ଣ୍ଣନା ବୈଚିତ୍ର୍ୟ କୌଣସିଥିରେ କବି କମ୍ ନୁହଁନ୍ତି । ପରିଶେଷରେ କବିଙ୍କ କବିତା ସଂପର୍କରେ ଏତିକି କୁହାଯାଇପାରେ ଯେ, ଯେତେଦିନ ପର୍ଯ୍ୟନ୍ତ ଏ ପୃଥିବୀରେ ମୁକ୍ତିର ସୂର୍ଯ୍ୟ ଉଦିତ ନହୋଇଛି ସେତେଦିନ ପର୍ଯ୍ୟନ୍ତ କବିଙ୍କର କବିତା ଦିଗ ବାରେଣୀ ସଦୃଶ ବିପ୍ଳବ ପାଇଁ ଚ୍ୟବନ ଯୋଗଉଥିବ ।

## କବି ପରମାନନ୍ଦ ମୁଦୁଲୀ

ଉତ୍ତର ସତୁରୀ ଓଡ଼ିଆ କବିତା କ୍ଷେତ୍ରରେ କବି ପରମାନନ୍ଦ ମୁଦୁଲୀ ଜଣେ ଅନ୍ୟତମ ସଫଳ ସ୍ରଷ୍ଟା । ଯାହାଙ୍କର କବିତାରେ ପ୍ରତିଧ୍ୱନିତ ହୁଏ ସଦା ନିପୀଡ଼ିତ

ମଣିଷର ଜୀବନ ଗୀତି । ଧୂପ ପରି ଯିଏ ବାସ୍ନାମୟ ସୂର୍ଯ୍ୟସମ ଯିଏ ତେଜୋଦୀପ୍ତ ସିଏ ହେଉଛନ୍ତି ଉତ୍ତର ସତୁରୀ କାଳର ମହାନ୍ କବି ପରମାନନ୍ଦ ମୁଦୁଲୀ । ପ୍ରାକୃତିକ ଶୋଭାର ଗନ୍ତାଘର ନୀଳାମ୍ବୁ ଚିଲିକା ନିକଟସ୍ଥ ଭାଲେରୀ ପାଦଦେଶର ଓସ୍ତାପଲ୍ଲୀ ଗ୍ରାମରେ ଏକ ଦରିଦ୍ର କୃଷକ ପରିବାରରେ କବିଙ୍କର ଜନ୍ମ । କୃଷିକର୍ମ ଉପରେ ହିଁ ସମଗ୍ର ପରିବାର ନିର୍ଭରଶୀଳ । ପ୍ରତିଦିନ ଗାଁଠାରୁ ଦଶ କି.ମି. ବାଟ ଚାଲି ଚାଲି ଯିବାକୁ ପଡ଼େ ପାଠ ଦି' ଅକ୍ଷର ପଢ଼ିବା ପାଇଁ । ପାଠପଢ଼ା ସମାପ୍ତି ପରେ କବି ଗୋଟିଏବର୍ଷପାଇଁ ଶିକ୍ଷକତାକୁ ଆଦରି ନିଅନ୍ତି । ରାଜନୀତି ଓ ସାହିତ୍ୟରେ ଯୋଗ ଦେବାପରେ ଶିକ୍ଷକତାରୁ ସନ୍ନ୍ୟାସ ନିଅନ୍ତି । ସାମସମୟିକ କାଳରେ ମାର୍କସ୍‌ବାଦୀ ଚିନ୍ତାଚେତନାଧର୍ମୀ ପତ୍ରିକା 'ବେଳା', 'ଆଭା', 'ପିୟୁଷ', 'ଜବାବ୍' ଇତ୍ୟାଦିର ପ୍ରକାଶନ କ୍ଷେତ୍ରରେ ପୂର୍ଣ୍ଣସହଯୋଗ କରନ୍ତି । କବି ନିଜେ ମଧ୍ୟ କମ୍ୟୁନିଷ୍ଟ ଆଦର୍ଶରେ ଅନୁପ୍ରାଣିତ ହୋଇ ବହୁ ଆନ୍ଦୋଳନରେ ଯୋଗ ଦିଅନ୍ତି । ଏଥିପାଇଁ ୧୯୭୩ ମସିହାରେ କବିଙ୍କୁ ଦୁଇବର୍ଷ ପାଇଁ ଜେଲ୍ ଦଣ୍ଡ ଭୋଗିବାକୁ ପଡ଼େ ।

୧୯୭୫ ମସିହାରେ ବିବାହ ଓ ୭ ବର୍ଷ ପରେ ପିତୃ ବିୟୋଗ କବିଙ୍କୁ ସଂସାରର ଦାୟିତ୍ୱ ସମ୍ଭାଳିବାକୁ ବାଧ୍ୟ କରେ । ଜୀବିକାର୍ଜ୍ଜନର ପନ୍ଥା ବନ୍ଦ ହୋଇ ଯାଇଥିବାରୁ ଜମିରେ ଖଟିଖଟି ଦାନା ସଂଗ୍ରହ କରିବାକୁ ପଡ଼େ । ଏମିତି ବହୁ ଘାତପ୍ରତିଘାତ ଅତିକ୍ରମ କରି କବି ଦୀର୍ଘ ୫୦ ବର୍ଷର ସାହିତ୍ୟ ଓ ରାଜନୈତିକ ଜୀବନ ବିତାନ୍ତି । କବିତା ସଂକଳନଟିଏ ପ୍ରକାଶ ପାଇବା କ୍ଷେତ୍ରରେ ପ୍ରତିବଂଧକ ସାଜେ 'ଅର୍ଥ' । ଶେଷରେ ୨୦୦୮ ମସିହା ଡିସେମ୍ବର ୫ ତାରିଖରେ ଜନ୍ମଲାଭ କରେ କବିଙ୍କର ପ୍ରଥମ ମାନସ ସନ୍ତାନ 'ସୁପ୍ତ ମଣିଷ ଜାଗି ଉଠ' । ସମୁଦାୟ ୪୧ଟି କବିତାର ସମାହାର ଏହି ସଂକଳନଟିର ନାମକରଣରୁ ଏହା ଯେ ସମାଜର ଅବହେଳିତବର୍ଗଙ୍କ ଉଦ୍ଦେଶ୍ୟରେ ସମର୍ପିତ ତାହା ପ୍ରତୀୟମାନ ହୁଏ । ଯେଉଁମାନେ ଆଖିର ଲୁହ, ବୁକୁର ଝାଳ ଦେଇ ଏ ଦୁନିଆଁକୁ ଗଢ଼ିଛନ୍ତି ସେମାନଙ୍କ ପାଇଁ କବି ସଂକଳନସ୍ଥ କବିତା ମାଧ୍ୟମରେ ବିଦ୍ରୋହ କରନ୍ତି । ସମୟର ରଥଚକ ହୁଏତ ଅଟକି ଯାଇପାରେ କିଛି ସମୟ ପାଇଁ କିନ୍ତୁ କବିଙ୍କର ସଂଗ୍ରାମର ଆହ୍ୱାନ ଲିପିବଦ୍ଧ ହୋଇରହିବ କାଳକାଳପାଇଁ । କବି ସ୍ୱୟଂ ନିଜ କବିତା ସଂପର୍କରେ ମତପ୍ରଦାନ କରିବାକୁ ଯାଇ କହନ୍ତି – 'ମୋର କବିତାଗୁଡ଼ିକରେ ବର୍ତ୍ତମାନ ଶ୍ରେଣୀ ସମାଜରେ ଶାସକ ଶୋଷକ ଶ୍ରେଣୀର ଶୋଷିତ ଜନଗଣଙ୍କ ଉପରେ ଚାଲିଥିବା ସାମାଜିକ ତଥା ସବୁପ୍ରକାର ଅର୍ଥନୈତିକ ଶୋଷଣ ବିରୁଦ୍ଧରେ ସଂଗ୍ରାମ କରିବାପାଇଁ ଆହ୍ୱାନ ଦିଆଯାଇଛି । ସମାଜର ସମସ୍ତ ନିଷ୍ପେଷିତ ଜନସାଧାରଣ ବଂଚିବାର ଅଧିକାର ଖାଦ୍ୟ, ବସ୍ତ୍ର, ଗୃହ, ଶିକ୍ଷା, ସ୍ୱାସ୍ଥ୍ୟ

ଓ ଅର୍ଥନୈତିକ ସମାନତା ପାଇଁ ଶ୍ରେଣୀ ସଂଗ୍ରାମ ଗଢ଼ି ତୋଳି ଆଗାମୀ ଦିନରେ ଶୋଷଣ ବିହୀନ ଶ୍ରେଣୀହୀନ ସାମ୍ୟବାଦ ସମାଜ ଗଠନ ଦିଗରେ ଆଗେଇ ଆସିଲେ ମୋର ସମସ୍ତ ଶ୍ରମ ସାର୍ଥକ ହେବ ।"(୧୯୪)

କବିଙ୍କର ରଚିତ କବିତା ସଂକଳନର ମୁଖବଂଧରୁ ପ୍ରତିପାଦିତ ହୁଏ ଯେ କବିତା ଗୁଡ଼ିକ ଶ୍ରେଣୀସଂଗ୍ରାମ ଉପରେ ଆଧାରିତ । ସଂକଳନସ୍ଥ ପ୍ରଥମ କବିତା 'ମାର୍ ତୁ ଯେତେ ଗୁଳି'ର ନାମକରଣରୁ ଏହା ଯେ ଏକ ମାର୍କସୀୟ ଚିନ୍ତାଚେତନାଧର୍ମୀ କବିତା ତାହା ଜଣାପଡ଼େ । ଏହି ନାମରେ କବି ସଚ୍ଚିଦାନନ୍ଦ ରାଉତରାୟଙ୍କର ଏକ କବିତା 'ଭଗବତୀ ଚରଣ ପାଣିଗ୍ରାହୀ'ଙ୍କ ସଂପାଦନାରେ ପ୍ରକାଶିତ 'କୃଷକ' ପତ୍ରିକାରେ ପ୍ରକାଶ ପାଇଥିଲା । କବିତାରେ କବି ଯେମିତି ଶତଶତ ବୁଭୁକ୍ଷୁ ଜନତା ଯେଉଁମାନେ କି ଶାସକର ରକ୍ତ ଆଖି ନିକଟରେ ହାର୍ ମାନି ଯାଇଛନ୍ତି ସେଇମାନଙ୍କ ପ୍ରାଣର ଭାଷାକୁ କବି ବ୍ୟକ୍ତ କରିଛନ୍ତି । ଅବହେଳିତ ଜନତା ଯେଉଁମାନେ କି ଭାତ ରୁଟି ପାଇଁ ଦିବାରାତ୍ର ସଂଗ୍ରାମ କରୁଛନ୍ତି ମାତ୍ର ସେ ସଂଗ୍ରାମର ଅନ୍ତ ଘଟୁ ନାହିଁ । ଯେଉଁ ଭୋକିଲା ଅବସ୍ଥାକୁ ସେହି ଅବସ୍ଥା । ସେଇ ମଣିଷମାନଙ୍କର କଥା କବି 'ମାର୍ ତୁ ଯେତେ ଗୁଳି'ରେ କହିଛନ୍ତି –

"ଦିବା ନିଶିତ ଖଟିଲୁ ବେଠୀ
ପେଟ ପୁରିଲା ନାହିଁ
ଧର୍‌ତୁ ଅସ୍ତ୍ର ଧର୍‌ତୁ ଲାଠୀ
ହଟାଇ ଦେବା ପୁଂଜିବାଦୀ
ସଇତାନ୍‌ଙ୍କ ଖଟି ।" (୧୯୫)

ପଲ୍ଲୀଭୂଇଁର ମଣିଷ ସରଳ, ନିରୀହ । ଛନ୍ଦକପଟ କ'ଣ ସେ ବୁଝେ ନାହିଁ । ବଞ୍ଚିବାର ଆଶା ନେଇ ଜୀବନଟାକୁ ତିଳ ତିଳ କରି ଏମାନେ ଜାଳି ଦିଅନ୍ତି । ଖଟିଖଟି ନିସ୍ତେଜ ହୋଇ ଶୋଇରହିଥିବା ସମୟରେ ଏ ଅତ୍ୟାଚାରୀ ସମାଜ ସେମାନଙ୍କର ରକ୍ତ ଶୋଷି ନିଏ । ସମାଜ ନିର୍ମାଣରେ ନିଜକୁ ହଜାଇ ଦେଇଥିବା ସର୍ବହରା ଦଳକୁ ଦେଖି ଯାହାର ଲେଖନୀ ସ୍ୱତଃ କଂପି ଉଠେ, ସେହି କବି ବଜ୍ର କଣ୍ଠରେ ବିପ୍ଲବୀ ସଂଗୀତ ଉଚ୍ଚାରଣ କରନ୍ତି । ସୁପ୍ତ ମଣିଷ ଜାତିକୁ ଜାଗ୍ରତ କରିବା ପାଇଁ କହନ୍ତି –

"ସମାଜରେ ଯଦି ବଞ୍ଚିବା ଚାହୁଁ
ଜାଗିଉଠ ତୁହି ପଲ୍ଲୀଭୂଇଁର ହେ ମଣିଷ
ଜୀବନକୁ ଏଠି ବାଜି ରଖି ତୁହି

ହାରିବାକୁ ହେବ ବଂଧନ ଫାସ
ଜିଣିବାକୁ ହେବ ଏହି ଦେଶ ।" (୧୯୬)

ପ୍ରଗତିର ରାଜରାସ୍ତାରେ କ୍ରାନ୍ତିର ଅଶ୍ୱାରୋହୀ କବି ପରମାନନ୍ଦ ଆଜି ବି ମଣିଷ ପାଇଁ ମୁକ୍ତିର ସଂଗ୍ରାମ ଆହ୍ୱାନ କରନ୍ତି ।

ବଜ୍ରଠାରୁ ଗମ୍ଭୀର ତାଙ୍କର ସ୍ୱର ଆଜି ଉଚ୍ଚାରଣ କରେ –

"ଲଢ଼ାଇ ପାଇଁ ହୁଅ ସଜବାଜ
ମାଗିଲେ କି ମିଳେ ଏଠି
ବଂଚିବାର ସର୍ବ ଅଧିକାର
ଶୋଷକ ଶାସକର
ଯେତେ ଅସ୍ତ୍ର କାରବାର
ମୁକାବିଲା କରିବାକୁ ହେବ
ଭୋଗିବାକୁ ଖାଦ୍ୟ, ବସ୍ତ୍ର ଗୃହେ
ସମ ଅଧିକାର
ଜିଣିବାକୁ
ଏ ସାରା ସଂସାର ।" (୧୯୭)

ଯେ କୌଣସି ଦେଶ ପାଇଁ ତା'ର ସର୍ବଶ୍ରେଷ୍ଠ ଦିନ ହେଉଛି ଯେଉଁଦିନ ତାକୁ ପରତନ୍ତ୍ରରୁ ମିଳିଥାଏ ମୁକ୍ତି । ଏହିପରି ଏକ ଶୁଭ ମୁହୂର୍ତ୍ତରେ ଭାରତବର୍ଷକୁ ମଧ ପରାଧୀନତାରୁ ମୁକ୍ତି ମିଳିଥିଲା । ବହୁ ମହାମନୀଷୀମାନେ ସ୍ୱାର୍ଥ: ଭୋଗବିଳାସକୁ ତ୍ୟାଗ କରି, ଲହୁ ଲୁହକୁ ଏକାକାର କରି ସ୍ୱାଧୀନତାର ସ୍ୱାଦ ଚଖାଇଥିଲେ । ମାତ୍ର ଏଇ ସ୍ୱାଧୀନତାର ସ୍ୱରୂପ ଦେଶବାସୀଙ୍କ ପାଇଁ କେତେ ଉଜ୍ଜ୍ୱଳ, କେତେ ମଳିନ ତାହା ବର୍ତ୍ତମାନର ପରିସ୍ଥିତିରୁ ସ୍ପଷ୍ଟ ପ୍ରତୀୟମାନ ହୁଏ । ଗଣତନ୍ତ୍ର ଶାସନରେ ଯେଉଁମାନେ ଆଜି ଶୋଷିତ ସେଇମାନଙ୍କ ଦୈନ୍ୟ ଅବସ୍ଥାକୁ କବି "ଭଲା ସ୍ୱାଧୀନତା ଭଲା" କବିତାରେ ବର୍ଣ୍ଣନା କରିଛନ୍ତି ।

"ଭଲା ସ୍ୱାଧୀନତା ଭଲାରେ
ରାମ ରାଇଜର ବାହାନା ବତାଇ
ଗାନ୍ଧୀ ବୁଢ଼ା ଚାଲି ଗଲାରେ ।
ରାମ ରାଇଜତ ରଜାର ଶାସନ
ଶାସନ ନାମରେ
ସବୁ ଠକି, ଠାକି ନେଲାରେ

ରଜା ନାହିଁ ଏଠି ମନ୍ତ୍ରୀ ଯେ ଭାଇ
  ଦେଶ ଉନ୍ନତିର ନାମେ
ଭାଷଣ, ଯେ ଏଠି ଦେଲାରେ ।"(୧୯୮)

ଗଣତନ୍ତ୍ର ଶାସନ ଜନତାଙ୍କ ହିତ ଉଦ୍ଦେଶ୍ୟରେ ଉଦ୍ଦିଷ୍ଟ । ଏହାର ମୂଳଲକ୍ଷ୍ୟ ହେଉଛି ସମସ୍ତ ଜନସାଧାରଣ ସମାନ । ପରସ୍ପର ମଧ୍ୟରେ କୌଣସି ଭେଦଭାବର ପ୍ରାଚୀର ଯେଉଁଠି ନଥାଏ । ଆତ୍ମୋନ୍ନତି ପାଇଁ ସମସ୍ତେ ଯେଉଁଠାରେ ସମାନ ସୁଯୋଗ ପାଇଥାଆନ୍ତି କିନ୍ତୁ ଆଜିର ଗଣତନ୍ତ୍ର କବି ଦୃଷ୍ଟିରେ ବାଂଝ ପାଲଟି ଯାଇଛି । ଆଇନ୍ ଆଜି ଅବ୍ୟବହାରିକ । ସମାଜ ଆଜି ଭାରସାମ୍ୟହୀନ । ରୁଟି, କପଡ଼ା, ମକାନ୍ ଆଜିର ମଣିଷର ଭାଗ୍ୟରେ ନାହିଁ । ତେଣୁ ଜଣେ ସଚେତନଶୀଳ ନାଗରିକ ଭାବେ କବି ଗଣତନ୍ତ୍ର ଶାସନ ତଳେ ଚାଲିଥିବା ବ୍ୟଭିଚାରର ମୁଖା ଖୋଲି ଦେବାକୁ ପ୍ରଚେଷ୍ଟା କରିଛନ୍ତି । କବିଙ୍କ ଭାଷାରେ –

"ଗଣତନ୍ତ୍ର ବାଂଝ ଯେ ଏଠି
  ଜୀବନ ମନ୍ଥର ଗତି
ଶାସକ ଶୋଷକ ଆଇନ୍ ଯେ କଲେ
  ଠକିବା ତାହାଙ୍କ ନୀତି ।" (୧୯୯)

କବିଙ୍କୁ ସ୍ୱାଧୀନତା ପରବର୍ତ୍ତୀକାଳୀନ ବିପର୍ଯ୍ୟସ୍ତ ଅବସ୍ଥା ତୀବ୍ର ଆଘାତ ଦେଇଛି । ସେ ଉପଲବ୍ଧି କରିଛନ୍ତି ସ୍ୱାଧୀନତାର ସେ ସ୍ୱର୍ଣ୍ଣପ୍ରସୂଫଳ ଆଜି ଦେଶବାସୀଙ୍କ ପାଇଁ ଅପହଞ୍ଚ । କଷ୍ଟଅର୍ଜିତ ସ୍ୱାଧୀନତାର ଗୌରବକୁ ପୁଣିଥରେ ଫେରାଇ ଆଣିବା ପାଇଁ କବି ସଂକଳ୍ପବଦ୍ଧ । କବିଙ୍କର ଅନୁଚିନ୍ତାରୁ ଜଣାପଡେ ଯେ, କବି ସ୍ୱାଧୀନତାର ସ୍ୱପ୍ନଭଂଗ ଅବସ୍ଥାକୁ ସଜାଡ଼ିବା ଉଦ୍ଦେଶ୍ୟରେ ତାଙ୍କର ବିପ୍ଳବୀ ଅନୁଚିନ୍ତାକୁ ବ୍ୟକ୍ତ କରିଛନ୍ତି । ଏହି ପ୍ରକାର ଚିନ୍ତାଧାରା ମଧ୍ୟ ବିପ୍ଳବୀ ଚିନ୍ତାଦର୍ଶର ଏକ ଅଂଶବିଶେଷ । କେବଳ ଯେ ପୁଂଜିପତି ଓ ଶ୍ରମିକର ସଂଘର୍ଷ ବିପ୍ଳବୀ ସାହିତ୍ୟର ମାନ୍ୟତା ପାଏ ତାହା ନୁହେଁ, ସମାଜର ଯେକୌଣସି ସ୍ତରରେ ପରିଲକ୍ଷିତ ହେଉଥିବା ଅନ୍ୟାୟ, ବୈଷମ୍ୟ ବିରୋଧରେ ବିପ୍ଳବୀ ସାହିତ୍ୟ ସ୍ୱର ଉତ୍ତୋଳନ କରେ । ଏ ସଂପର୍କରେ କବି ରଘୁନାଥ ଦାସଙ୍କର ମନ୍ତବ୍ୟଟି ଏଠାରେ ଉଲ୍ଲେଖ ଯୋଗ୍ୟ । କବି ସ୍ୱୀକାର କରନ୍ତି ଯେ, "ମୋର ଆଶଙ୍କା ସତ୍ୟ ହେଲା; ଗଣ ସଂଗ୍ରାମର ଶିକାର ହେଲା । ନେତୃତ୍ୱର ଧୋକାବାଜ୍‌ରେ ବାରମ୍ବାର ମୁକ୍ତିର ସ୍ୱପ୍ନ ପରାହତ ହେଲା । ଜନସାଧାରଣ ନେତୃତ୍ୱ ଉପରୁ ଆସ୍ଥା ହରାଇ ବସିଲେ । ପ୍ରଗତି ପରିବର୍ତ୍ତେ ଦୁର୍ଗତି ସେମାନଙ୍କୁ ଗ୍ରାସ କଲା । ଦୁର୍ନୀତି, ଦୁରାଚାର, ଦୁଃଶାସନ, ଦୁଃଖ, ଦୈନ୍ୟ ଭିତରେ ଜନଗଣ ଭାଂଗି ପଡ଼ିଛନ୍ତି । ଆଶ୍ରା କରିବାର ସଂଗଠିତ ଶକ୍ତି

ନାହିଁ । ପ୍ରତିରୋଧ କରିବାକୁ ମନୋବଳ ନାହିଁ । କିନ୍ତୁ ସେମାନଙ୍କ ପ୍ରତି ଆନ୍ତରିକ ସହାନୁଭୂତି ତ' ପ୍ରକାଶ କରାଯାଇପାରେ । ହତାଶ ପ୍ରାଣରେ ଆଶାର ସଂଚାର କରିବା ପୁଣି ତ ଏକ ବୈପ୍ଳବିକ ପଦକ୍ଷେପ ।" (୨୦୦)

ତେଣୁ କବି ପରମାନନ୍ଦଙ୍କର କବିତା ଯେ ବିପ୍ଳବର ଆବାହନୀ ମନ୍ତ୍ର ଶୁଣାଏ ତାହା ନୁହେଁ, ସହଜ ସରଳ ଶବ୍‌ଦର ଛନ୍ଦରେ ରକ୍ତର ରାଗିଣୀ ସାଂଗକୁ, ଆହ୍ୱାନ ଦିଏ ବିପ୍ଳବ ପାଇଁ । ଭାବନାରେ ସୀମାହୀନ ସଂଗ୍ରାମର ଖୋରାକ୍ ଯୋଗାଇବା ସାଙ୍ଗକୁ ସଂକଳ୍ପବଦ୍ଧ କରାଏ ଧ୍ୱଂସ କରିବାକୁ ପୁଂଜିବାଦୀ ସଭ୍ୟତାକୁ ଓ ସାଧାରଣ ମଣିଷର ହାତ ମୁଠାରେ ଧରାଇ ଦେବାକୁ ସ୍ୱାଧୀନ ଭାବରେ ବଞ୍ଚିବାର ସମସ୍ତ ଅଧିକାର । ଏପରି ଜଣେ ସଂଗ୍ରାମୀ ସାରସ୍ୱତ ସାଧକଙ୍କୁ ଆମ ସାହିତ୍ୟର ସମାଲୋଚକମାନେ ଆଲୋଚନାର ପରିସର ମଧ୍ୟକୁ ଆଣିନାହାଁନ୍ତି । ମାତ୍ର ଯେତେଦିନ ପର୍ଯ୍ୟନ୍ତ ବିପ୍ଳବୀ ସାହିତ୍ୟ ବଞ୍ଚିରହିଥିବ, ସେତେଦିନ ପର୍ଯ୍ୟନ୍ତ କବିଙ୍କର ସୃଷ୍ଟି ଯେ ପାଠକ ହୃଦୟରେ ଆନ୍ଦୋଳନ ସୃଷ୍ଟି କରୁଥିବ, ଏହା ନିଃସନ୍ଦେହରେ କୁହାଯାଇପାରେ ।

## କବି ବିବେକାନନ୍ଦ ନାୟକ

ଚଳନ୍ତି ସମୟର ଅନ୍ୟତମ ସଫଳ ସାମ୍ୟବାଦୀ ସ୍ରଷ୍ଟା କବି ବିବେକାନନ୍ଦ ନାୟକ ବାଲେଶ୍ୱରର କାଶୀଡିହା ଗ୍ରାମରେ ଜନ୍ମଗ୍ରହଣ କରିଥିଲେ । ଛାତ୍ର ଜୀବନରେ ଜଣେ ସୁଦକ୍ଷ ଭଲିବଲ୍ ଖେଳାଳୀ ଭାବେ ଉତ୍କଳ ବିଶ୍ୱବିଦ୍ୟାଳୟ ତରଫରୁ ସର୍ବଭାରତୀୟ ସ୍ତରରେ ପ୍ରତିନିଧିତ୍ୱ କରିଥିଲେ । students federation of India (S.F.I.) ର ଜଣେ ସକ୍ରିୟ ସଦସ୍ୟ ଭାବରେ ବହୁ ସାଂଗଠନିକ କାର୍ଯ୍ୟ ସହିତ କବି ସଂପୃକ୍ତ ଥିଲେ । ଛାତ୍ରାବସ୍ଥା ପରେ କବି ପ୍ରଥମେ ଆଖୁଆପଦା ନିକଟସ୍ଥ ଯଶୋଟିକିରି ଉଚ୍ଚ ବିଦ୍ୟାଳୟରେ ଶିକ୍ଷକ ଜୀବନ ଆରମ୍ଭ କରନ୍ତି । ଏହି ଅବସରରେ କବି ଶିକ୍ଷକ ସଂଘ ସହିତ ନିଜକୁ ସାମିଲ୍ କରିନିଅନ୍ତି । ବିଭିନ୍ନ ପ୍ରକାରର ସାଂଗଠନିକ ନେତୃତ୍ୱ କବିଙ୍କୁ ବହୁ ଜନସାଧାରଣଙ୍କ ସଂସ୍ପର୍ଶରେ ଆସିବାର ସୁଯୋଗ ସୃଷ୍ଟି କରିଛି । ସେମାନଙ୍କ ସୁଖ ଦୁଃଖ ସହିତ ଭାଗିଦାର୍ ହେବାର ମଉକା ମିଳିଛି । ଜଣେ ସ୍ୱାଧୀନଚେତା ଶିକ୍ଷାବିତ୍ ଭାବରେ କବି ସର୍ବଦା ସରକାରଙ୍କ ନିକଟରେ ଦାବୀ ଉପସ୍ଥାପନ କରିଆସିଛନ୍ତି । ଏସବୁ ବ୍ୟତୀତ ପିତାମହ 'ପଣ୍ଡିତ ପଦ୍ମଲୋଚନ'ଙ୍କର ଆଦର୍ଶ କବିଙ୍କୁ ଗଭୀର ଭାବରେ ପ୍ରଭାବିତ କରିଛି । ଏ କଥା କବି ନିଜେ 'ଗଣିକା ଗଣତନ୍ତ୍ର' ପୁସ୍ତକର ମୁଖବଂଧରେ ସ୍ୱୀକାର କରିଛନ୍ତି । କବିଙ୍କ ଭାଷାରେ –

"ବ୍ୟାପକ ଲୋକସାଧାରଣ ସହ ଏକାତ୍ମ ହେବାର ଚେତନା ନୂତନ ଅର୍ଥରେ ଗଣତନ୍ତ୍ରକୁ ବୁଝିବାର ଶକ୍ତି, ଜୀବନ ସଂବଧରେ ନୂଆ ଦୃଷ୍ଟିଭଂଗୀ, ମୋ ଭିତରେ

ପ୍ରାଥମିକ ଅବସ୍ଥାରୁ ଭ୍ରୁଣିତ କରାଇଥିବା, ବ୍ରିଟିଶ୍ ଶାସନ କାଳରେ ବହୁଧା ଲାଞ୍ଛିତ ସ୍ୱାଧୀନ ଚେତା ଶିକ୍ଷାବିତ୍ ବିହାରସ୍ଥିତ ଓଡ଼ିଶା ବିଚ୍ଛିନ୍ନାଞ୍ଚଳରେ ଓଡ଼ିଆ ଶିକ୍ଷା ବିସ୍ତାର ଲାଗି ପ୍ରଭୂତ ଶ୍ରମଦାନ କରିଥିବା ଉତ୍କଳମଣି ଗୋପବଂଧୁଙ୍କ ସହଯୋଗୀ ମୋର ପିତାମହ ପଣ୍ଡିତ ପଦ୍ମଲୋଚନଙ୍କ ପ୍ରିୟ ସ୍ମୃତି ଉଦ୍ଦେଶ୍ୟରେ ...... ।" (୨୦୧)

କବିଙ୍କର ସାଂଗଠନିକ ଦକ୍ଷତାର ପ୍ରମାଣ ମିଳେ, ଯେତେବେଳେ କବି ଗୁରୁ ଗମ୍ଭୀର ସ୍ୱରରେ ଶିକ୍ଷକ ସଭାକୁ ସମ୍ବୋଧନ କରନ୍ତି ଓ ତାଙ୍କର ଆହ୍ୱାନରେ ଶତାଧିକ କର୍ମୀ ଆନ୍ଦୋଳନରେ ଝାସ ଦିଅନ୍ତି । ଜୀବନରେ ଏ ପ୍ରକାର ଆହ୍ୱାନୀ ମନୋବୃତ୍ତି କବିଙ୍କୁ ବହୁ ବୈପ୍ଳବିକ କବିତା ଓ ଉପନ୍ୟାସ ରଚନା କରିବା ପାଇଁ ପ୍ରେରଣା ପ୍ରଦାନ କରିଛି ।

କବି ବିବେକ ରଚନା କରିଥିବା କବିତା ଗୁଡ଼ିକରେ ପ୍ରଗତିବାଦର ଏକ ଭିନ୍ନ ରୂପକୁ ଲକ୍ଷ୍ୟ କରାଯାଇପାରେ । ତାଙ୍କର ସମସ୍ତ କବିତା ଯଦିଓ ଚିରାଚରିତ ପ୍ରଗତିବାଦୀ ଚିନ୍ତାଧାରା ସମ୍ବଳିତ କବିତା ଗୁଡ଼ିକ ପରି ଶ୍ରେଣୀ ସଂଘର୍ଷର ନଗ୍ନ ବାସ୍ତବତାକୁ ପ୍ରକଟିତ କରିନାହିଁ, କିନ୍ତୁ ତାଙ୍କ କବିତା ସାମସମୟିକ ସମାଜର ଆର୍ଥନୈତିକ, ରାଜନୈତିକ ଅବ୍ୟବସ୍ଥା ବିରୋଧରେ ସ୍ୱର ଉତ୍ତୋଳନ କରିଛି । କେତେକ କ୍ଷେତ୍ରରେ କବି ପାରଂପରିକ ପ୍ରଗତିବାଦୀ କବିତା ପରି ପୁରାତନ ଚିନ୍ତା ଚେତନା, ଶାସନ ବ୍ୟବସ୍ଥା ବିରୋଧରେ ଅଂଗୁଳି ନିର୍ଦ୍ଦେଶ କରିଛନ୍ତି । କବି ସଚ୍ଚିଦାନନ୍ଦ ରାଉତରାୟ 'ରକ୍ତଶିଖା' ସଂକଳନରେ ଗାନ କଲାପରି – "ମୁକତି ପଥେ ଯେତେକ କଣ୍ଟା / ଉପାଡ଼ି ଦିଅ ଭିଡ଼ରେ ଅଣ୍ଟା/ ଶୋଣିତ ରାଗେ ଖେଳାରେ ହୋରି / ଭରମ ଭୀତି ମନରୁ ହଜା ।" ସେହିପରି କବି ବିବେକ ଗାନ କରିଛନ୍ତି –

"ଭାଂଗିଦିଅ ଛୋଟ ବଡ଼
ସମସ୍ତ ଚେୟାର୍
ଗଢ଼ିବାକୁ ନୂତନ ବ୍ୟବସ୍ଥା
ପୁରାତନ ପାଇଁ ତିଳେ
ରଖ ନାଇଁ ଆସ୍ଥା ।" (୨୦୨)

ପୁରାତନ ଶାସନ ବ୍ୟବସ୍ଥା ପ୍ରଣାଳୀ, ପୁରାତନ ଚିନ୍ତା ଚେତନା ନୂତନତାର ପ୍ରତିବଂଧକ ସାଜେ । ପ୍ରଗତିବାଦୀ କବି ମାତ୍ରକେ ନୂତନତାର ସର୍ଜନା କରେ । ତେଣୁ ଏ କ୍ଷେତ୍ରରେ ଦେଖା ଦେଉଥିବା ସମସ୍ତ ଅବ୍ୟବସ୍ଥାକୁ ସମୂଳେ ଧ୍ୱଂସ କରିବା ପାଇଁ ସେ ପ୍ରତିଜ୍ଞାବଦ୍ଧ ହୁଏ । କବି ସଚ୍ଚିଦାନନ୍ଦଙ୍କ କବିତା ଏବଂ କବି ବିବେକଙ୍କ କବିତା ମଧ୍ୟରେ ଭାବଗତ ସାମ୍ୟ ରହିଥିଲେ ମଧ୍ୟ ପ୍ରକାଶଶୈଳୀରେ ଭିନ୍ନତା କବିତାକୁ ଏକ

ଅନନ୍ୟ ମର୍ଯ୍ୟାଦା ପ୍ରଦାନ କରେ । ସେହି ଭିନ୍ନତାଟି ହେଉଛି କବି ନିଜର ଭାବକୁ 'ଚେୟାର୍' ପ୍ରତୀକ ମାଧ୍ୟମରେ ଉପସ୍ଥାପନ କରିଛନ୍ତି । ସାଧାରଣତଃ ଚେୟାର୍‌ଟିଏ ଭାଙ୍ଗିଗଲେ ମଣିଷ ତାକୁ ସଜାଡ଼ି ଦେଇ ପୁନଃ ବ୍ୟବହାର ଉପଯୋଗୀ କରାଇଥାଏ । କିନ୍ତୁ କବି ମଣିଷର ଏ ପ୍ରକାର ମନୋବୃତ୍ତିରେ ପରିବର୍ତ୍ତନ ଆଣିବା ପାଇଁ ଚାହାଁନ୍ତି । କବି ଭାଙ୍ଗି ଯାଇଥିବା ଜିନିଷକୁ ମରାମତି କରିବା ଅପେକ୍ଷା ପୁନଃ ଏକ ନୂତନ ଚେୟାର୍ ନିର୍ମାଣ କରିବା ପାଇଁ ଆଶାପୋଷଣ କରନ୍ତି । ପରୋକ୍ଷରେ କବିଙ୍କର କହିବାର କଥା ହେଉଛି ନୂତନତାର ପଥ ଉନ୍ମୋଚନ କରିବାକୁ ହେଲେ ପୁରାତନ ଚିନ୍ତାଧାରାକୁ ସମୂଳେ ଧ୍ୱଂସ କରିବାକୁ ପଡ଼ିବ । କବି ବିବେକ୍‌ଙ୍କର ପ୍ରଗତିବାଦୀ କବିତାର ଏକ ବୈଶିଷ୍ଟ୍ୟ ହେଉଛି କବି ତାଙ୍କର ଚିନ୍ତାଧାରାକୁ ପ୍ରତୀକ ମାଧ୍ୟମରେ ଉପସ୍ଥାପନ କରନ୍ତି । ଯାହାର ପ୍ରମାଣ ବହନ କରିଛି 'ସୁବର୍ଣ୍ଣ ରେଖାର ମାଝୀ' କବିତା । ୧୯୭୩ ମସିହାରେ ଯୁବଲେଖକ ସମ୍ମେଳନର ବାର୍ଷିକ ବିଶେଷାଙ୍କ ଭାବରେ 'ବେଳା' ପତ୍ରିକା ଆତ୍ମପ୍ରକାଶ କରେ । ଯେଉଁଥିରେ କବିଙ୍କର ଏହି କବିତାଟି ପ୍ରକାଶିତ ହୋଇ କବିଙ୍କୁ ଜଣେ ସାର୍ଥକ ସାମ୍ୟବାଦୀ କବିର ମର୍ଯ୍ୟାଦା ପ୍ରଦାନ କରେ । ଯେଉଁ ସୁବର୍ଣ୍ଣରେଖାର ତଟଦେଶ ଦିନେ ସୌଦାଗରୀ ସଭ୍ୟତାର ମୂକସାକ୍ଷୀ ପାଲଟିଥିଲା, କବିଙ୍କର କବିତାର ଉଦ୍ଦାମତା ସେହି ତଟଦେଶରେ ବିପ୍ଳବର ମନ୍ତ୍ର ବୁଣି ଦେଇପାରିବ । ମାନବ ସଭ୍ୟତାର କଲ୍ୟାଣ ଉଦ୍ଦେଶ୍ୟରେ ନିଜକୁ ନିୟୋଜିତ କରିବ । ଏହା ସମ୍ଭବ ହେବ ସେତିକିବେଳେ ଯେତେବେଳେ ସୁବର୍ଣ୍ଣରେଖାର ତଟବର୍ତ୍ତୀ ଗାଁ ଗଣ୍ଡାରେ ବାସ କରୁଥିବା ନିରୀହ ସାଧାରଣ ଜନତା ସୁବର୍ଣ୍ଣରେଖା ପାର୍ ହୋଇ ପୂର୍ବ ଦିଗରେ ଥିବା ମୁକ୍ତିର ନଗ୍ରକୁ ଯାତ୍ରା କରିବେ । କବିଙ୍କର ଏତାଦୃଶ ସ୍ୱପ୍ନପ୍ରବଣତାକୁ ରୂପ ଦେଇଛି କବିତାର ନିମ୍ନୋକ୍ତ ପଂକ୍ତି –

"ନଈ ପାରି ହେବ ପ୍ରତିନିଧି
ତୋ ଅରି ନାଆରେ
ଆର ପାରି ବତୀଘର
ନଂଗର ଉଠା
ପୂର୍ବ ଦିଗେ ମୁକ୍ତିର ନଗରେ ।" (୨୦୩)

ଓଡ଼ିଆ ସାହିତ୍ୟରେ ଅନେକ ପ୍ରଗତିବାଦୀ ସ୍ରଷ୍ଟା 'ଲେନିନ୍'ଙ୍କୁ ପ୍ରେରଣାର ଉତ୍ସ ଭାବରେ ଗ୍ରହଣ କରି କବିତା ରଚନା କରିଯାଇଛନ୍ତି । ଏହାର ନିଦର୍ଶନ ବଂଗଳା କବି ସୁକାନ୍ତଙ୍କ କବିତାରେ ମଧ୍ୟ ଦୃଷ୍ଟିଗୋଚର ହୁଏ । ଓଡ଼ିଆ ସାହିତ୍ୟରେ କବି ସଚ୍ଚିଦାନନ୍ଦ ରାଉତରାୟ, କବି ବନମାଳୀ ସେନାପତି, କବି ସଦାଶିବ ଦାଶ ପ୍ରମୁଖ 'ଲେନିନ୍'ଙ୍କୁ

ନେଇ ମଧ୍ୟ କବିତା ରଚନା କରିଛନ୍ତି । କବି ବିବେକ୍ ମଧ୍ୟ ଏଥିରୁ ବିଚ୍ୟୁତ ହୋଇନାହାନ୍ତି । ସମସ୍ତଙ୍କ କବିତାର ଅନ୍ତଃସ୍ୱର ଠିକ୍ ଏକାପରି । ଏଥିରେ କୌଣସି ଭିନ୍ନତା ପରିଲକ୍ଷିତ ହୁଏ ନାହିଁ ।

* "ଲେନିନ୍ ଭେଙ୍ଗେଛେ ରୁଖେ ଜନସ୍ରୋତେ ଅନ୍ୟାୟେର୍ ବାନ୍ଧ୍
ଅନ୍ୟାୟେର୍ ମୁଖୋମୁଖୀ ଲେନିନ୍ ପ୍ରଥମ୍ ପ୍ରତିବାଦ୍ ।" (୨୦୪)

* ଲେନିନ୍ ଲେନିନ୍ ଡାକେ ମୋଲେଖନୀ / ଯେତେବେଳେ
ଯେତେଥର / ତୃପ୍ତି ଆସେନା ପୁଣି ଡାକିବାକୁ / ଇଚ୍ଛାହୁଏ ବାରବାର । (୨୦୫)

ଠିକ୍ ସେହିପରି କବି ବନମାଳୀ ସେନାପତି ଲେନିନ୍‌ଙ୍କୁ 'ମୃତ୍ୟୁଞ୍ଜୟୀ' ଭାବରେ ଅଭିହିତ କରିବାକୁ ଯାଇ ଲେଖିବସନ୍ତି –

*"ତେଣୁ ମୃତ୍ୟୁଞ୍ଜୟ ବିପ୍ଳବୀ ଲେନିନ୍
ଲେନିନ୍ ମରିନି ।" (୨୦୬)

କବି ଯଦୁନାଥ ଲେନିନ୍‌ଙ୍କୁ ବ୍ୟକ୍ତିସତ୍ତାଠାରୁ ବହୁ ଉର୍ଦ୍ଧ୍ୱରେ ତାଙ୍କର ସ୍ଥାନ ବୋଲି ପ୍ରମାଣ କରନ୍ତି

*ଏ ଲେନିନ୍ ନୁହଁଇ ଯେ ବ୍ୟକ୍ତି
ରୁଦ୍ଧାବେଗ ଭାବଧାରାର ନିବିଡ଼ ସମଷ୍ଟି ।" (୨୦୭)

କେବଳ ସେତିକି ନୁହେଁ କବି ସଦାଶିବ ଚୌରଂଗିରେ ଲେନିନ୍‌ଙ୍କ ପ୍ରତିମୂର୍ତ୍ତି ଦେଖିବା ପରେ କବି ଚିତ୍ତରେ ଯେଉଁ ଭାବାନ୍ତର ସୃଷ୍ଟି ହୁଏ ତାର ପ୍ରତିଫଳନ ଦୃଷ୍ଟିଗୋଚର ହୁଏ 'ଚୌରଂଗୀରେ ଲେନିନ୍ ଷ୍ଟାଚ୍ୟୁ ଦେଖିବା ପରେ' କବିତାରେ । କବିତାର ପ୍ରତ୍ୟେକ ପଂକ୍ତିରେ ଆମେ ଦେଖିବାକୁ ପାଉ ବୈପ୍ଳବିକ ଚିନ୍ତା ଚେତନାର ଝଲକ୍ । କବିଙ୍କ ଭାଷାରେ–

*"ମାଲିସ୍‌ରେ ଉଠିତ ପାରେନା ଜାତି
ବଞ୍ଚେନା ଜନତା ।" (୨୦୮)

ଏଠାରେ ଉପରୋକ୍ତ କବିତା ଗୁଡ଼ିକୁ ଉଲ୍ଲେଖ କରିବାର ଯଥାର୍ଥତା ହେଉଛି ଯେ ତଥାକଥିତ ସାମ୍ୟବାଦୀ ସ୍ରଷ୍ଟାମାନଙ୍କ ପରି କବି ବିବେକ ମଧ୍ୟ ଲେନିନ୍‌ଙ୍କୁ ସଂଗ୍ରାମୀ ଜନତାର ପ୍ରେରଣାର ଉତ୍ସ ଭାବରେ ଗ୍ରହଣ କରିଛନ୍ତି । ଲେନିନ୍‌ଙ୍କର ବୈପ୍ଳବିକ ସତ୍ତାକୁ ପ୍ରତ୍ୟେକଟି ସଂଗ୍ରାମୀ ଜନତାର ପ୍ରାଣରେ ଅନୁଭବ କରିବାକୁ ଚେଷ୍ଟା କରିଛନ୍ତି । ଭାଷାରେ ବ୍ୟକ୍ତ କରିବାକୁ ଯାଇ କହିଛନ୍ତି –

"ମୁଁ ରୂପ
ଲେନିନ୍ ଆଇନା
ମୁଁ ବିନ୍ଦୁ ସିଏ ସିନ୍ଧୁ
ଲେନିନ୍ ଜନତା
କହିପାରେ କଥା

x x x

ପରାଧୀନ ରାତିର ସ୍ଲୋଗାନ୍ ।" (ଲେନିନ୍) (୨୦୯)

କିନ୍ତୁ ଏଠାରେ ଗୋଟିଏ କଥା ଲକ୍ଷ୍ୟକରାଯାଇପାରେ ଯେ, ଉପରୋକ୍ତ କବିମାନଙ୍କ କବିତାରେ ଯେଉଁ ବୈପ୍ଳବିକ ଉଦ୍ଦାମତା ପରିଲକ୍ଷିତ ହୁଏ, କବି ବିବେକଙ୍କ କବିତାରେ ତାହା ପରିଲକ୍ଷିତ ହୁଏ ନାହିଁ ।

କବି ବିବେକାନନ୍ଦ କେବଳ ଯେ କବିତାକୁ ନିଜର ବୈପ୍ଳବାତ୍ମକ ଚିନ୍ତାଚେତନାର ପୃଷ୍ଠଭୂମି ଭାବରେ ଗ୍ରହଣ କରିଛନ୍ତି ତାହା ନୁହେଁ, ୨୦୦୦ ମସିହାରେ ବିବେକଙ୍କର ପ୍ରକାଶିତ ଏକ ଉପନ୍ୟାସ 'ଗଣିକା ଗଣତନ୍ତ୍ର' ରେ ମଧ୍ୟ ଆମେ ଅନୁରୂପ ପ୍ରତିଧ୍ୱନି ଶୁଣିବାକୁ ପାଇବା । ଉପନ୍ୟାସର ନାୟିକା 'ବାସନ୍ତୀ' ଭାରତବର୍ଷର ଅଗଣିତ ନିର୍ଯ୍ୟାତିତା ନାରୀ ମାନଙ୍କର ପ୍ରତିନିଧିତ୍ୱ କରୁଥିବା ଏକ ଚରିତ୍ର । ଯେଉଁ ଚରିତ୍ର ଚିତ୍ରଣ ମାଧ୍ୟମରେ ସାଂପ୍ରତିକ ସମାଜରେ ନାରୀର ସ୍ଥିତି ଏବଂ ଏହା ମାଧ୍ୟମରେ ବିପ୍ଳବାତ୍ମକ ଚିନ୍ତାଧାରାର ସଫଳ ରୂପାୟନ, କବି ବେବକ୍‌ଙ୍କୁ ଓଡ଼ିଆ ବୈପ୍ଳବାତ୍ମକ ସାହିତ୍ୟରେ ଏକ ଉଚ୍ଚକୋଟୀର ସ୍ରଷ୍ଟାର ମାନ୍ୟତା ପ୍ରଦାନ କରିଥାଏ ।

## କବି ବିଜୟ ଉପାଧ୍ୟାୟ

୧୯୮୦ ପରବର୍ତ୍ତୀ ପ୍ରଗତିବାଦୀ କବିତା କ୍ଷେତ୍ରରେ କବି ବିଜୟ ଉପାଧ୍ୟାୟ ଏକ ପରିଚିତ କାବ୍ୟସ୍ୱର । କବି ବିଜୟ ୧୯୫୧ ମସିହାରେ ବାଲେଶ୍ୱର ଜିଲ୍ଲାର ସୁବର୍ଣ୍ଣରେଖା ନଦୀର ତଟବର୍ତ୍ତୀ ବେଣାପୁରା ଗ୍ରାମରେ ଜନ୍ମ ଗ୍ରହଣ କରନ୍ତି । କବି କେବଳ କବିତାରେ ଯେ ପ୍ରଗତିବାଦୀ କାବ୍ୟସ୍ୱର ଉତ୍ତୋଳନ କରିଛନ୍ତି ତାହା ନୁହେଁ ବରଂ ବାସ୍ତବ ଜୀବନରେ ମଧ୍ୟ କବି ଏହାକୁ ଆଦର୍ଶ ଭାବରେ ଗ୍ରହଣ କରିନେଇଛନ୍ତି । ଛାତ୍ର ଜୀବନରୁ ଜଣେ ସୁଲେଖକ, ସୁବକ୍ତା ଭାବେ ପରିଚିତ କବି ବିଜୟ ଉପାଧ୍ୟାୟ, ପରବର୍ତ୍ତୀ କାଳରେ ନିଜକୁ ଜଣେ ସାଂଗଠନିକ କର୍ମକର୍ତ୍ତା ଭାବେ ପ୍ରତିଷ୍ଠିତ କରାଇ ପାରିଛନ୍ତି । ଯାହାର ପ୍ରମାଣ ଆମେ ବାଲିଆପାଳ ଘାଟି ପ୍ରତିଷ୍ଠା ସମୟରେ ମୁଣ୍ଡ ଟେକିଥିବା ଆନ୍ଦୋଳନ ଓ ସେଥିରେ ବିଜୟଙ୍କର ନେତୃତ୍ୱରୁ ପାଇଥାଉ । ବାଲେଶ୍ୱର ଜିଲ୍ଲାର କୃଷକମାନଙ୍କର ଦୁଃଖ ଦୁର୍ଦ୍ଦଶାର ପରିସମାପ୍ତି ପାଇଁ କବି ବିଜୟ ସ୍ୱୟଂ ଗଠନ

କରନ୍ତି 'କୃଷକ ସମିତି' । କବି ବିଜୟ କେବଳ ଯେ ବାଲେଶ୍ୱରବାସୀଙ୍କର ଅନ୍ୟାୟ ଉତ୍ପୀଡ଼ନର ମୋଚନ ପାଇଁ କାର୍ଯ୍ୟ ଆରମ୍ଭ କରିଥିଲେ ତାହା ନୁହେଁ. ବରଂ ମାଲ୍‌କାନ୍‌ଗିରିରେ ରହଣୀ କାଳରେ ସେଠାକାର ନିରୀହ ସରଳ ଆଦିବାସୀର ଦୁଃଖ, ଦୁର୍ଦ୍ଦଶା ମଧ୍ୟ ତାଙ୍କ ଦୃଷ୍ଟି ସମ୍ମୁଖରୁ ବାଦ୍ ଯାଇନଥିଲା । ଅଶୀ ଦଶକ ବେଳକୁ ଅବଧୂତ ଗୋଷ୍ଠୀ ଯେତେବେଳେ ଓଡ଼ିଆ ସାହିତ୍ୟରେ ନୀରବ ହୋଇ ଯାଇଥାଆନ୍ତି, ସେହିସମୟରେ ପ୍ରଗତିବାଦୀ କାବ୍ୟକବିତାର କ୍ଷୀଣ ସ୍ୱରକୁ ପୁନରୁଜ୍ଜୀବିତ କରିବା ପାଇଁ କବି ବାଲେଶ୍ୱରଠାରେ 'ଗଣମୁକ୍ତି ଲେଖକ ସାମ୍ମୁଖ୍ୟ' ନାମକ ଏକ ରାଜ୍ୟ ସ୍ତରୀୟ ସାହିତ୍ୟ ଅନୁଷ୍ଠାନ ଗଠନ କରନ୍ତି । ସ୍ୱକୀୟ ରଚନା ଗୁଡ଼ିକରେ ଏହି ସଂଗ୍ରାମୀ ଆଭିମୁଖ୍ୟ ଅତ୍ୟନ୍ତ ବଳିଷ୍ଠ ଭାବରେ ପ୍ରକାଶ ପାଇଛି । ସାମସମୟିକ ଜୀବନଧାରା ମଧ୍ୟରୁ, ସାଧାରଣ ଜନତାର ଜ୍ୱଳନ ଓ ଅନ୍ତର୍ଦାହ ମଧ୍ୟରୁ ଅନୁଭୂତି ଗୁଡ଼ିକୁ ସାଉଁଟି ଆଣି ବିପ୍ଳବର ରୂପ ପ୍ରଦାନ କରିଛନ୍ତି କବି ବିଜୟ ଉପାଧ୍ୟାୟ । କବିଙ୍କର କାବ୍ୟିକ ଆଭିମୁଖ୍ୟ ସଂପର୍କରେ ମତପ୍ରଦାନ କରିବାକୁ ଯାଇ ସମାଲୋଚକ ବାଞ୍ଛାନିଧି ଦାସ କହନ୍ତି –

"ବିପ୍ଳବୀ ତତ୍ତ୍ୱକୁ ଯୋଜନାବଦ୍ଧ ଭାବେ କର୍ମରେ ରୂପାନ୍ତରିତ କରିବା, ବିପ୍ଳବ ମଧ୍ୟରୁ ଅନୁଭୂତି ସାଉଁଟି କବିତା ଲେଖିବା ବା ବିପ୍ଳବକୁ ଅଗ୍ରଗାମୀ କରିବା ପାଇଁ କବିତା ଲେଖିବା କବିଙ୍କର ଜୀବନ ସଂଗ୍ରାମର ଏକମାତ୍ର ଆଭିମୁଖ୍ୟ । ପ୍ରତିଟି ରଚନା ତାଙ୍କର ଶ୍ରମଜୀବୀ ଜନସାଧାରଣଙ୍କ ଉନ୍ନତି କଳ୍ପେ ନିବେଦିତ । (୨୧୦)

କବି ବିଜୟଙ୍କ ରଚିତ ବିପ୍ଳବୀ କବିତା ଏବଂ ତାଙ୍କ ଜୀବନ ଆଦର୍ଶ ପରସ୍ପର ଓତଃପ୍ରୋତ ଭାବେ ଜଡ଼ିତ । କବିଙ୍କର ସଂଗ୍ରାମୀ କବିତାକୁ ଆମେ ତିନୋଟି ଭାଗରେ ବିଭକ୍ତ କରି ଆଲୋଚନା କରିବା । ପ୍ରଥମ ଭାଗରେ କୃଷକମାନଙ୍କ ପାଇଁ ରଚିତ ସଂଗ୍ରାମୀ କବିତା । ଦ୍ୱିତୀୟରେ ଗଣମୁକ୍ତି ଲେଖକ ସାମ୍ମୁଖ୍ୟ ଗଠନ ସମୟରେ ବାଲିଆପାଳ ଘାଟି ଅଭିଯାନ ବିରୋଧରେ ରଚିତ କବିତା । ତୃତୀୟରେ ଆଦିବାସୀ ମାନଙ୍କୁ ସେମାନଂକର ଅଧିକାର ସଂପର୍କରେ ସଚେତନ କରାଇବା ପାଇଁ ରଚିତ କବିତା ।

ସତୁରୀ ଦଶକରେ ତତ୍‌କାଳୀନ ସରକାର ଏକ ନୂତନ ଚକବନ୍ଦୀ ଯୋଜନା କାର୍ଯ୍ୟକାରୀ କରନ୍ତି । ଓଡ଼ିଶାର ଚାଷୀମାନଙ୍କର ଜମି ଖିନ୍‌ଭିନ୍ ହୋଇ ସ୍ଥାନେସ୍ଥାନେ ରହିଥାଏ । ଚକବନ୍ଦୀ ବ୍ୟବସ୍ଥା ଦ୍ୱାରା ଗୋଟାଏ ଗୋଟାଏ ଚକରେ ଏକାଠି କରି ଚାଷୀଙ୍କୁ ଗୋଟିଏ ବଡ଼ ଜମିର ମାଲିକାନା ଦେବା । ଏହାଦ୍ୱାରା କୃଷକଟି ନିଜର ପୂର୍ବରୁଥିବା ଛୋଟ ଜମିଟି ହରାଇଲା । ପ୍ରତିବଦଳରେ ପାଇଲା ନିରସ ଜମିଟିଏ । ଏହି ବ୍ୟବସ୍ଥାଦ୍ୱାରା ଗାଁ ଗଣ୍ଡାରେ କୃଷକ ଅସନ୍ତୋଷ ବୃଦ୍ଧି ପାଇଲା । ଏହି ସମୟରେ କବି ଉପାଧ୍ୟାୟ ନିଜ ଅଂଚଳରେ କୃଷକମାନଙ୍କ ମଧ୍ୟରେ ସଚେତନତା ସୃଷ୍ଟି କରିବା

ପାଇଁ ଗ୍ରାମ ସଭା ମାଧ୍ୟମରେ ଚକବନ୍ଦୀ ବିରୋଧୀ ଆନ୍ଦୋଳନ ପାଇଁ ଡାକରା ଦିଅନ୍ତି । ଅତ୍ୟନ୍ତ ସରଳ ଭାଷାରେ କୃଷକ ହୃଦୟର ଅନ୍ତର୍ଦ୍ଦାହକୁ ବ୍ୟକ୍ତ କରିବାକୁ ଯାଇ କବି କହନ୍ତି –

"ଦୁନିଆ ଲୋକଙ୍କୁ ଆହାର ଦେଲୁ
ଭୋକ ଉପାସରେ ଦିନ କାଟିଲୁ
କି ଲାଭ ମିଳିବ ଭାଂଗ ସେ ବେଢ଼ି
ଜାଗି ଉଠ ଚାଷୀ ଦଳ
ଚାଲରେ ଚାଲ୍‌ରେ ଚାଲ ।

X X X

ଚାଷୀ ମଲେ ଗଲେ ଯାଏ ଆସେନା
ବଢ଼ି ମରୁଡ଼ିକୁ କେହି ରଖେନା
ଲୁହ ପୋଛି କର ମୁଠାକୁ ଟାଣ
ଗଢ଼ି ତୋଳ ପଟୁଆର
ଚାଲରେ ଚାଲରେ ଚାଲ ।" (୨୧୧)

କାବ୍ୟିକ ଜୀବନର ଅଧ୍ୟମାରମ୍ଭରେ କବି ଉପାଧ୍ୟାୟ କୃଷକମାନଙ୍କୁ ସେମାନଙ୍କର ନ୍ୟାର୍ଯ୍ୟ ଓ ଅଧିକାର ସଂପର୍କରେ ସଚେତନ କରାଇବା ପାଇଁ ଏମିତି କେତେଗୁଡ଼ିଏ ଗଣସଂଗୀତ ରଚନା କରିଥିଲେ । କବି ବିଜୟ ସ୍ୱପ୍ନବିଳାସୀ କବି ନୁହଁନ୍ତି । ତାଙ୍କ କବିତା କଳ୍ପନାର କଥା କହିବା ପରିବର୍ତ୍ତେ ଏ ମାଟିର, ଏଠାକାର ମଣିଷମାନଙ୍କର କଥା କହେ । ସାଧାରଣ ଜନତାଟିଏ କିପରି ଜୀବନ ରୂପକ ସଂଗ୍ରାମର ବାଜି ଜିତିପାରିବ, ସେଥିନେଇ ଉଚିତ୍ ମାର୍ଗ ପ୍ରଦର୍ଶନ କରେ । ନିଜର ସାଂଗଠନିକ ଦକ୍ଷତା ହେତୁ ଗାଁ ଗହଳିର କୃଷକମାନଙ୍କ ଠାରୁ ଆରମ୍ଭ କରି ମାଲ୍‌କାନ୍‌ଗିରିର ଆଦିବାସୀମାନଙ୍କ ପର୍ଯ୍ୟନ୍ତ ସମସ୍ତଙ୍କ ସହିତ ତାଙ୍କର ସଂପର୍କ ଅତି ନିବିଡ଼ । କବିଙ୍କର ସାଂଗଠନିକ ଦକ୍ଷତା ସାଙ୍ଗକୁ ବିପ୍ଳବୀ କାବ୍ୟମାନସର ପରିଚୟ ଦ୍ୱିତୀୟ ପର୍ଯ୍ୟାୟରେ ଲିଖିତ କବିତା ଗୁଡ଼ିକରୁ ସ୍ପଷ୍ଟ ଅନୁମିତ ହୁଏ ।

୧୯୮୪ ମସିହାରେ ବାଲିଆପାଳରେ କ୍ଷେପଣାସ୍ତ୍ରଘାଟି ପ୍ରତିଷ୍ଠା ନିମନ୍ତେ ସରକାର ଚୂଡ଼ାନ୍ତ ନିଷ୍ପତ୍ତି ନିଅନ୍ତି । ଏହାଦ୍ୱାରା ବାଲିଆପାଳ ଓ ଆଖପାଖ ଅଞ୍ଚଳର ଦଶଲକ୍ଷ ଲୋକ ନିଜର ଭିଟାମାଟି ଉଚ୍ଛେଦ ଭୟରେ ଏହି ଯୋଜନାକୁ ବିରୋଧ କରନ୍ତି । ଧୀରେଧୀରେ ଏହା ଏତେ ଉଗ୍ରରୂପ ଧାରଣ କରେ ଯେ ୧୯୮୪-୧୯୯୧ ପର୍ଯ୍ୟନ୍ତ ଏହି ଆନ୍ଦୋଳନ ଚାଲୁ ରହେ । ଏଠାରେ ପ୍ରଶ୍ନ ଆସେ ଯେ, 'ବାଲିଆପାଳ'

ସଂପର୍କରେ ସାହିତ୍ୟିକମାନେ କାହିଁକି ବିରୋଧ କରୁଥିଲେ ? ଏ ପ୍ରସଂଗରେ ଗୋଟିଏ କଥା କୁହାଯାଇପାରେ- ତାହା ହେଉଛି 'ସାହିତ୍ୟ ଜନଗଣଙ୍କ ପାଇଁ ଉଦ୍ଦିଷ୍ଟ' । ବାଲିଆପାଳ ଘାଟି ସ୍ଥାପନ ଦ୍ୱାରା ଜନସାଧାରଣଙ୍କର ଅଧିକାର କ୍ଷୁଣ୍ଣ ହେଉଥିବାରୁ, ସାହିତ୍ୟ ଜନଗଣଙ୍କ ଉଦ୍ଦେଶ୍ୟରେ ଏହାର ବିରୋଧାଚରଣ କରିବା ଉଚିତ । ଏଠାରେ ବାଲିଆପାଳ ବିଶେଷାଙ୍କର ସଂପାଦକୀୟରେ ଉଲ୍ଲେଖ କରାଯାଇଥିବା ମତାମତଟି ଗ୍ରହଣଯୋଗ୍ୟ ।

"ବିଭିନ୍ନ କ୍ଷେତ୍ରରେ ଆମେ ଆନ୍ଦୋଳନକାରୀମାନଙ୍କୁ ନୈତିକ ସାହାଯ୍ୟ ଓ ସମର୍ଥନ ମଧ୍ୟ ଯୋଗାଇ ଦେଉଛୁଁ । କାରଣ ଆମ ମତରେ ସାହିତ୍ୟ ଓ ଶିଳ୍ପ ଏକ ସ୍ୱପ୍ନ ବିଳାସ ନୁହେଁ । ଏହା ଜନଗଣଙ୍କଠାରୁ ପ୍ରେରଣା ନେଇ ଜନଗଣଙ୍କ ପାଇଁ ସୃଷ୍ଟି ହୁଏ । ଜନଗଣଙ୍କ ସେବାରେ ଲାଗି ନ ପାରିଲେ, ସାହିତ୍ୟ ନୁହେଁ ସାହିତ୍ୟ ପଦବାଚ୍ୟ । ଏ ବ୍ୟାପାର କେବଳ ରାଜନୀତିଜ୍ଞ ବା ସମାଜବିତ୍‌ମାନଙ୍କ କର୍ମ ନୁହେଁ; ଶିଳ୍ପୀ, ସାହିତ୍ୟିକମାନଙ୍କର ମଧ୍ୟ ଏଥିନେଇ କିଛି ଦାୟିତ୍ୱ ଓ କର୍ତ୍ତବ୍ୟ ରହିଛି । (୨୧୨) ଏକ ଗୁରୁଦାୟିତ୍ୱ ବହନ କରି ଜନମତକୁ ସୁସଂଗଠିତ କରିବା ପାଇଁ କବି ଲେଖନ୍ତି –

"ପ୍ରାଣବନ୍ତୀ ସ୍ଫୁର୍ତ୍ତିମତୀ ହେ ମୋର ବାଲିଆପାଳ
ସୃଜନର ବେଣୁରେ ଉନ୍ମାଦ ତୋ' ବାଲି ଆଡ଼ିଆ
ତୋ ପାନ ବରଜ ତୋର ନଡ଼ିଆ ଉଦ୍ୟାନ
ଧାନ ବିଲ ନଦୀ ପଠା ଗ୍ରାମର ଶ୍ମଶାନ
ଶତସସ୍ର ସ୍ୱାସ୍ଥ୍ୟବାନ୍ କୋଳର ସନ୍ତାନ ।
ତୁ କି ହେବୁ ହିରୋସୀମା ନାଗାସାକୀ ଚେର୍ଣ୍ଣବିଲ୍‌ପରେ
ଆଣବିକ ବିଭୀଷିକା ପାଇଁ
ଆଉ ଏକ ପ୍ରତିଶବ୍ଦ – ଆଉ ଏକ ନାମ ?
ଏ ତ ଓଡ଼ିଶାର, ଓଡ଼ିଶା ମାଟିର, ଭାରତ ବାସୀର ଅପମାନ ।
ଭୌଗୋଳିକ ସାମାଜିକ ମାନବିକ
ସବୁକିଛି ଫରକକୁ ଡେଇଁ
ଚେର୍ଣ୍ଣବିଲ୍ ମିଳାଇ ଯାଉଛି ଦେଖ ବାଲିଆ ପାଳରେ ।"(୨୧୩)

କବିତାଟିରେ କବି ବିଶ୍ୱଶାନ୍ତି ସପକ୍ଷରେ ବାର୍ତ୍ତା ପ୍ରଚାର କରିବା ସଙ୍ଗେସଙ୍ଗେ ପରିବେଶ ସୁରକ୍ଷା ସଂପର୍କରେ ମଧ୍ୟ ସଚେତନତା ପ୍ରଦର୍ଶନ କରିଛନ୍ତି । ଏହି ଚିନ୍ତାଧାରାର ଏକ ପରିଚ୍ଛନ୍ନ ରୂପ ଦେଖିବାକୁ ପାଇବା ସେଇ 'ସାମୁଦ୍ରିକ ପକ୍ଷୀ' କବିତାରେ –

"ମୃତ୍ୟୁମୁଖୀ ପକ୍ଷୀଙ୍କର
କାନ୍ଦଣାରେ ଆକାଶ ଅଶାନ୍ତ
ପବନ ନିଥର !
ଦରିଆ ପାଗଳ !
କ'ଣ ଥିଲା ସେମାନଙ୍କ ଦୋଷ ?
"ଗଣତନ୍ତ୍ର" ବିରୋଧରେ ଷଡ଼ଯନ୍ତ୍ର କରିଥିଲା କେହି ?
ଧରିଥିଲା ଲୋହିତ ପତାକା ? କ୍ରାନ୍ତିର ନିଶାଣ ?
ଧାଡ଼ି ଦେଇଥିଲା କେଉଁ ତଇଲ ଶେଖ୍‌କୁ ?
କ'ଣ ଥିଲା ସେମାନଙ୍କ ଦୋଷ ???(୨୧୪)

କବିତାଟି ନିଛକ ବାସ୍ତବ ପୃଷ୍ଠଭୂମି ଉପରେ ଆଧାରିତ । ୧୯୯୧ ମସିହାରେ ଇରାକ୍, ଆମେରିକା ଯୁଦ୍ଧ ହେତୁ ପଶ୍ଚିମ ଏସିଆର ଜଳ ଓ ସ୍ଥଳ ଭାଗ ଦୂଷିତ ହୋଇଯାଏ । ଏକ ଶହ ପଞ୍ଚଷଠୀ କିଲୋମିଟର ପର୍ଯ୍ୟନ୍ତ ଓସାରର ଏକ ଅଶୋଧିତ ତୈଳର ଆସ୍ତରଣ ପାରସ୍ୟ ସାଗରରୁ ଆରବ ସାଗର ପର୍ଯ୍ୟନ୍ତ ଭାସିଆସେ । ପରିଣାମ ସ୍ୱରୂପ ବହୁ ସାମୁଦ୍ରିକ ଜଳଜୀବ ମୃତ୍ୟୁ ମୁଖରେ ପଡ଼ନ୍ତି । ଏଠାରେ ଗୋଟିଏ କଥା ଲକ୍ଷ୍ୟ କରାଯାଇପାରେ, ତାହା ହେଉଛି କବି ବିଜୟ ଚମତ୍କାର ଶୈଳୀରେ ପରିବେଶ ସଚେତନତା ସହିତ ବିପ୍ଳବୀ ଚିନ୍ତାଧାରାକୁ ଗୋଟିଏ ସୂତ୍ରରେ ଗୁନ୍ଥି ଦେଇଛନ୍ତି । ନିରୀହ ଜଳଜୀବମାନଙ୍କର ବିନାଶ କବି ହୃଦୟରେ କ୍ଷୋଭ ଜାଗ୍ରତ କରାଉଛି । ଯେଉଁଥିପାଇଁ କବି ଏହା ବିରୋଧରେ ବିକ୍ଷୋଦ୍‌ଗାର କରୁଛନ୍ତି । ସାମ୍ୟବାଦୀ କବି କେବଳ ଯେ ମଣିଷର ଦୁଃଖ, ଶୋଷଣ ପ୍ରତି ସମବେଦନା ଜ୍ଞାପନ କରେ ନାହିଁ ବରଂ ସମାଜର ଯେକୌଣସି ସ୍ତରରେ କୌଣସି ପ୍ରକାର ଅନୈତିକତା ବା ନୀତିବିରୁଦ୍ଧତା ପରିଲକ୍ଷିତ ହେଲେ ଏହା ବିରୋଧରେ ସ୍ୱର ଉତ୍ତୋଳନ କରେ । ଏ ପ୍ରସଂଗରେ Massline - vol-II ରେ ଉଲ୍ଲେଖ ଅଛି –

"The battle of anihilation liberates the people not only from the oppression of the land Lord class and its state but also liberaes them from the shackles of backward ideas, and removes from the minds of the people poisonous weeds of self-intrest, calminterest, localism, casteism, religious superstitions. (୨୧୫)

ବାଲିଆପାଳ ଘାଟି ବିରୋଧୀ ସଂଗ୍ରାମ ପରେ କବି ଚାଲିଯାଆନ୍ତି ସୁଦୂର ମାଲକାନଗିରି ଅଞ୍ଚଳକୁ । ମାଲ୍‌କାନ୍‌ଗିରିର ତର୍ଲାକୋଟାଠାରେ ଆଦିବାସୀ ସଂଘ ଗଠନ କରି ସେମାନଙ୍କୁ ସଂଗ୍ରାମୀ ଚିନ୍ତାଦର୍ଶରେ ଉଦ୍‌ବୁଦ୍ଧ କରାଇବା ପାଇଁ କବି ଅଣ୍ଟାଭିଡ଼ି

ବାହାରି ପଡ଼ନ୍ତି । ଏହାର ସାର୍ଥକ ପରିଚୟ ମିଳେ କବିତା 'ମୁଁ ଘିନୁଆ ହୋଇପାରେ କି ଟିକ୍ରାଜାନି'ରେ ।

"ବେତାର ଘୋଷଣା କରେ ଗୋଟି ମୁକ୍ତି ଋଣ ଛାଡ଼
କେତେ କେତେ କଥା,
ମୋତେ କିନ୍ତୁ ବାଘଙ୍କର ପାଉଣା ସକାଶେ
ସିଂ ବାବୁ କଣ୍ଟ୍ରାକ୍ଟର ପାଖେ
ମୋ ଝିଅକୁ ବିକିବାକୁ ପଡ଼େ ।
ପୁଅ ରହେ ଗୋଟି ଆଉ ମୁଁ ଏଇ ବୁଢ଼ା ବୟସରେ
ବେଡ଼ା ଆଡ଼େ ଗୋରୁଙ୍କୁ ଅଡ଼ାଏ ।
କେବେ କେବେ ମୋ ଆଖିରେ ଜଳି ଉଠେ ଲେଲିହାନ୍ ନିଆଁ ।" (୨୧୬)

କବିତାଟିରେ ଗାଳ୍ପିକ ଭଗବତୀ ଚରଣ ପାଣିଗ୍ରାହୀଙ୍କ 'ଶିକାର' ଗଳ୍ପ ଓ ଗୋପୀନାଥ ମହାନ୍ତିଙ୍କର 'ପରଜା' ଉପନ୍ୟାସର ପ୍ରଚ୍ଛନ୍ନ ପ୍ରଭାବ ପଡ଼ିଛି କହିଲେ ଅତ୍ୟୁକ୍ତି ହେବ ନାହିଁ । 'ଘିନୁଆ' ଓ 'ଟିକ୍ରାଜାନି' ଏଠାରେ ଅତ୍ୟାଚାରିତ ଆଦିବାସୀ ସମାଜର ପ୍ରତିନିଧିତ୍ୱ କରୁଥିବା ଦୁଇଟି ଚରିତ୍ର । ସାହୁକାରର ଅର୍ଥନୈତିକ ଶୋଷଣ ସାଙ୍ଗକୁ ଅମଲାତନ୍ତ୍ରର କୂଟନୈତିକ ମାୟାଜାଲ ନିରୀହ ଆଦିବାସୀର ଜୀବନକୁ କରୁଣ କରିଦେଉଛି । ଆଇନ୍‌କାନୁନ୍‌ର ସୂକ୍ଷ୍ମ ଜାଲକୁ ତାର ସରଳ ମାନସିକତା ଭେଦ କରିପାରୁ ନାହିଁ । ସର୍ବତ୍ର ଶୋଷଣର ଯନ୍ତାମାନ ତା' ପାଇଁ ଖଂଜା ଯାଇଛି । ଏ ଶୋଷଣ ପ୍ରକ୍ରିୟାର ଅବସାନ ପାଇଁ ସେ ଗ୍ରହଣ କରିନେଇଛି 'ଲଢ଼େଇ ହିଁ ବଞ୍ଚିବାର ଏକମାତ୍ର ବାଟ' । ଏହି ବର୍ଣ୍ଣନାରୁ ଏଠାରେ ସ୍ପଷ୍ଟ ଅନୁମିତ ହୁଏ ଯେ, ଓଡ଼ିଆ ସାହିତ୍ୟରେ ପ୍ରଗତିବାଦର ଭଗୀରଥ ଭଗବତୀ ଚରଣ ପାଣିଗ୍ରାହୀଙ୍କର ଜଣେ ସାର୍ଥକ ଉତ୍ତର ଦାୟାଦ ଭାବରେ, ଅଶୀ ଦଶକ ପରବର୍ତ୍ତୀ ଓଡ଼ିଆ କବିତାରେ ଅତୀତର ଏହି ପ୍ରସଂଗକୁ ପୁନଃରୁତ୍‌ଥାପିତ କରି କବି ବିଜୟ ଓଡ଼ିଆ ସାହିତ୍ୟରେ ସ୍ୱତନ୍ତ୍ର ସ୍ଥାନ ଅଧିକାର କରିଛନ୍ତି ।

କବିଙ୍କର କାବ୍ୟିକ ସ୍ୱର ଏହିପରି ତିନୋଟି ପର୍ଯ୍ୟାୟରେ ଅଗ୍ରଗତି କରି ଅଦ୍ୟାବଧି ମଧ୍ୟ ସେହି ସଂଗ୍ରାମୀ ଚିନ୍ତାଧାରାକୁ ଛାଡ଼ି ପାରିନାହିଁ । କବି ଅଭିନବ ଉପାୟରେ ବିପ୍ଳବର ବାର୍ତ୍ତାକୁ ପ୍ରଚାରିତ କରିଛନ୍ତି । କେତେବେଳେ ଏହା କୃଷକମାନଙ୍କୁ ସଂଗଠିତ କରାଇଛି ତ' କେତେବଳେ ଆଦିବାସୀମାନଙ୍କୁ ସଚେତନ କରାଇଛି, ପୁଣି କେତେବେଳେ ଭାରତ ବର୍ଷର ସାଂପ୍ରତିକ ସ୍ଥିତି ବିରୋଧରେ ବିଦ୍ରୋହ ଘୋଷଣା କରିଛି । 'ଭାରତ ବର୍ଷର' ସାଂପ୍ରତିକ ପରିସ୍ଥିତି କିପରି ରୂପ ପାଇଛି ନିମ୍ନୋକ୍ତ ପଂକ୍ତିରୁ ସ୍ପଷ୍ଟ ଅନୁମିତ ହୁଏ ।

"ଭାରତ ବର୍ଷ ଏମିତି ଏକ ଦେଶ
ଏଠି ପ୍ରତି ଘଣ୍ଟାରେ
ଜଣେ ଅଧେ ଧର୍ଷିତା ନହେଲେ
କି ଲୋମ ହର୍ଷକ ମର୍ମନ୍ତୁଦ
ମୃତ୍ୟୁ ନ ବରିଲେ
X X X
ଅସଲ କଡ଼ବାଲା ଚା' ବି
ପାଣିଚା ପାଲଟି ଯାଏ ।" (୨୧୭)

ଭାରତବର୍ଷକୁ ସଜାଡ଼ିବା ପାଇଁ କବି କି ପ୍ରକାର ପଦକ୍ଷେପ ନେଉଛନ୍ତି ତାହା ନିମ୍ନରେ ସୂଚିତ ।

"ହେ ମୋର ପ୍ରିୟ ଭାରତ ବର୍ଷ !
X X X
ସୁଯୋଗ - ଦେ ଆମକୁ,
ମଣିଷ ପଣିଆ ଦେଖାଇ
ଆଖିରୁ ଝରିବା ପାଇଁ ଦରଦୀ ଲୋତକ
ମାନବିକ ଅଧିକାର - ଦୁଆ
ଉଠାଉ ଉଠାଉ କରିବାକୁ
ଜନାର୍ଦ୍ଦନ - ଜନତାର ସେବା ଓ ଗଣତନ୍ତ୍ରର ବୌଦ୍ଧିକ ତର୍ଜମା ।
ଆଉ ଚା' କପ୍‌ରେ ତୋଳିବାକୁ ଝଡ଼ର ଝଟ୍‌କା !
ହେ ମୋର ପ୍ରିୟ ଭାରତ ବର୍ଷ । (୨୧୮)

ଶେଷରେ କବିଙ୍କର ବିପ୍ଳବୀ କାବ୍ୟମାନସ ମାନବିକତା ଦିଗକୁ ପ୍ରଧାବିତ ହୋଇଛି । କବି ମାନବିକତାର ଦ୍ୱାହି ଦେଇ ଜନତାର ଦୁଃଖ ମୋଚନ ପାଇଁ ଆଗଭର ହୋଇ ଉଠିଛନ୍ତି । ଅଧିକାଂଶ କବିତାରେ ଏକ ସାଲିସ୍ ବିହୀନ ସଂଗ୍ରାମର ସ୍ୱର ଉତ୍ତୋଳନ କରିଥିବା କବି ବିଜୟ ଉପାଧ୍ୟାୟ ପ୍ରକୃତ ପକ୍ଷେ ଉତ୍ତର ଅଶୀ ଓଡ଼ିଆ ପ୍ରଗତିବାଦୀ କବିତା କ୍ଷେତ୍ରରେ ଏକ ସଫଳ ଉତ୍ତର ଦାୟାଦ ଏଥିରେ ସଂଦେହ ନାହିଁ ।

## କବି ପ୍ରଶାନ୍ତ ମିଶ୍ର

ଊନବିଂଶ ଶତାବ୍ଦୀର ବଳିଷ୍ଠ କାବ୍ୟିକ ଚିନ୍ତାଚେତନା ଯାହାକି ପୀଡ଼ିତ ମାନବାତ୍ମାର ହାହାକାରିତାକୁ ନେଇ ରକ୍ତାକ୍ତ ବିପ୍ଳବର ଆହ୍ୱାନ ଦେଇଥିଲା ଓ ଏହି ଆହ୍ୱାନର ପ୍ରତିଧ୍ୱନି ଓଡ଼ିଆ ସାହିତ୍ୟରେ ମଧ୍ୟ ପ୍ରକଂପିତ ହୋଇଥିଲା କବି ସଚ୍ଚିରାଉତରାୟ, ଅନନ୍ତ

ପଟ୍ଟନାୟକ, ମନମୋହନ ମିଶ୍ର, ରଘୁନାଥ ଦାସ ପ୍ରମୁଖ ସ୍ରଷ୍ଟାଙ୍କ ଲେଖନୀରେ ଏମାନେ ନିର୍ଦ୍ଧାରିତ କରିଥିବା କାବ୍ୟ ସରଣୀ ପରବର୍ତ୍ତୀ ପୀଢ଼ିକୁ ବେଶ୍ ପ୍ରଭାବିତ କରିଥିଲା । ନବେ ଦଶକ ପରେ ଯେଉଁ କେତେଜଣ ସ୍ରଷ୍ଟା ଏହି ଚିନ୍ତାଧାରାକୁ ଜୀବନ୍ତ ରଖି ପ୍ରଚଳିତ ସମାଜ ବ୍ୟବସ୍ଥାରେ ପରିବର୍ତ୍ତନ ପାଇଁ କଲମ ଧରିଲେ ସେମାନଂକ ମଧ୍ୟରୁ କବି ପ୍ରଶାନ୍ତ ମିଶ୍ର ଅନ୍ୟତମ ।

କବି ପ୍ରଶାନ୍ତ ଗଂଜାମ୍ ଜିଲ୍ଲାର କୋଦଳା ବ୍ଲକ୍‌ର 'ମଠସରସିଙ୍ଗି' ଗ୍ରାମରେ ଜନ୍ମଗ୍ରହଣ କରିଥିଲେ । ସଂପ୍ରତି ଗଜପତି ଜିଲ୍ଲାର କାଶୀନଗର ଅଂଚଳରେ ଜଣେ ଶିକ୍ଷକ ଭାବରେ ଜୀବିକା ନିର୍ବାହ କରୁଥିଲେ ମଧ୍ୟ ଅଦ୍ୟାବଧି ନିଜର ସାଧନା କ୍ଷେତ୍ରରେ କବି ନିଜେ ପୂର୍ଣ୍ଣ ସମର୍ପିତ । କବିତାରେ ବିପ୍ଲବର ଆହ୍ୱାନୀ ମନ୍ତ୍ର ଗାନ କରୁଥିବା କବି ପ୍ରଶାନ୍ତ, କବି ସଚ୍ଚିଦାନନ୍ଦ ଓ କବି ଅନନ୍ତଙ୍କର ଜଣେ ସଫଳ ଉତ୍ତର ଦାୟାଦ । କବିଙ୍କର କାବ୍ୟିକ ପ୍ରତିଭା ସଂପର୍କରେ ଆଲୋଚକ ଡଃ ଦେବୀ ପ୍ରସନ୍ନ ପଟ୍ଟନାୟକ ମତବ୍ୟକ୍ତ କରନ୍ତି-

"କବି ପ୍ରଶାନ୍ତ ମିଶ୍ର 'ଶିବୋଽହମ୍'ରୁ କ୍ରମେ 'ଶିଖାସ୍ୱାକ୍ଷର' ଦେଇ 'ବହ୍ନି ବର୍ଣ୍ଣମାଳା' ମଧ୍ୟରେ ଆପଣାର ବେସାଲିସ୍ ଦୃଷ୍ଟିଭଂଗୀକୁ ପ୍ରତିଫଳିତ କରିଛନ୍ତି । ସମାଜ ଓ ବ୍ୟକ୍ତିର ଚିରନ୍ତନ ସଂପର୍କ ଓ ସଂଘର୍ଷର ଗାଥା ହେଉଛି ତାଂକ କଳାକର୍ମର ପୃଷ୍ଠଭୂମି । ଏକ କଲ୍ୟାଣମୟ ଜଗତର ସ୍ୱପ୍ନରେ ବିଭୋର କବି କଣ୍ଠର ରୁଦ୍ର ତାଣ୍ଡବ ବହୁ ସଚେତନ ପାଠକଙ୍କୁ ଅଚିରେ ଯେ ଆକର୍ଷିତ କରେ ତାହା ନିର୍ଦ୍ୱନ୍ଦ୍ୱରେ କୁହାଯାଇପାରେ ।"(୨୧୯)

ସାଧାରଣତଃ ପ୍ରଗତିବାଦୀ କବିଙ୍କଠାରେ ସମାଜ ମନସ୍କ ପ୍ରବଣତା ଅଧିକ ପରିଦୃଷ୍ଟ ହେଉଥାଏ । କବି ଯେଉଁ ସାଧାରଣ ଜନଜୀବନର ମର୍ମନ୍ତୁଦ କାହାଣୀକୁ ଭାଷାର ଗୁରୁଗମ୍ଭୀର ଆହ୍ୱାନ ମାଧ୍ୟମରେ ଉଚ୍ଚାରଣ କରି, ପରିବର୍ତ୍ତନ ପାଇଁ ଆଶାପୋଷଣ କରିଥାଏ, ସେତେବେଳେ ସ୍ୱୟଂ କବି, ସମାଜ ଓ ସାଧାରଣ ଜନତା ସତେଯେପରି ଏକ ସୂତ୍ରରେ ବାନ୍ଧି ହୋଇଯାଆନ୍ତି । ଏହି ଏକାତ୍ମତାର ଝଲକ ସହିତ ଭବିଷ୍ୟତ ପାଇଁ ମଣିଷ ମନରେ ଏକ ଦୃଢ଼ ଆତ୍ମପ୍ରତ୍ୟୟ ସୃଷ୍ଟି କରିବା ପାଇଁ କବିଟିଏ ଗାନ କରେ:

"ତମ କଂକାଳ ହାଡ଼େ ଯେଣୁ ହେବ ନିର୍ମିତ ଏକ ଅସ୍ତ୍ର କାଲି

x x x x x x

ସେଇ ଅସ୍ତ୍ରର ରଶ୍ମି ପ୍ରଖର ପୃଥିବୀର ପୀଡ଼ା ପାହାଡ଼ ଚୂରି
ବୁଣିଦେବ ଝୁଲ ମୈତ୍ରୀ ପ୍ରୀତିର ସୃଜନର ଶିଖା ଉଠିବ ଜଳି ।(୨୨୦)

କବିତାର ଶବ୍ଦାବଳୀ ମାଧ୍ୟମରେ ଶାନ୍ତି, ମୈତ୍ରୀ, ପ୍ରୀତିର ଆଗମନ ପାଇଁ କବି

ଦରଦୀ ମନୁଷ୍ୟ ତୁଣ୍ଡର ଭାଷାକୁ ରୂପ ଦିଅନ୍ତି କବିତାରେ । ସ୍ୱକୀୟ ଚିନ୍ତାଧାରାକୁ କବି ଏହିପରି ବ୍ୟକ୍ତ କରନ୍ତି:-

"ଚିନ୍ତା ମୋ ଚିର ମୁକ୍ତ ସ୍ୱାଧୀନ
ହୋଇନି ହେବନି ସେ କାହାଁ ଅଧୀନ
ଏ ଘୋଷଣା କରେ ଦୃପ୍ତ କଣ୍ଠେ ମୁହିଁ
ସୁପ୍ତ ନେତା ମୋ ଘୋଷଣା ଶୁଣି
ସହସା ଉଠଇ ଚେଇଁ ।"(୨୨୧)

ସାଧାରଣ ଜନତାର ଦୁଃଖ, ଯନ୍ତଣା କବିଙ୍କୁ ଯେତିକି ଆଘାତ ଦେଇଛି କବି ସେତିକି ମାତ୍ରାରେ ପ୍ରତିକ୍ରିୟାଶୀଳ ହୋଇ ଉଠିଛନ୍ତି । ଏସବୁ ଅନ୍ୟାୟର ଅନ୍ତ ଘଟାଇବା ପାଇଁ ପ୍ରତିଜ୍ଞାବଦ୍ଧ ହୋଇଛନ୍ତି । ମନୁଷ୍ୟ ହୃଦୟରେ ଲୁକ୍‌କାୟିତ ହୋଇ ରହିଥିବା ଆତ୍ମଶକ୍ତିକୁ ସର୍ବସମ୍ମୁଖକୁ ଆଣିବାକୁ ପ୍ରୟାସ ଜାରି ରଖିଛନ୍ତି । ଏତଦ୍‌ବ୍ୟତୀତ ମନୁଷ୍ୟର ଅଧିକାର ସଂପର୍କରେ ସଚେତନ କରାଇଦେଇଛନ୍ତି । କବି ପ୍ରଶାନ୍ତଙ୍କ ଲେଖନୀ କେବଳ ଯେ ପୀଡ଼ିତ ପ୍ରାଣର ବ୍ୟଥା ଓ ବେଦନାକୁ ରୂପାୟିତ କରିଛି ତାହାନୁହେଁ, କବି ପ୍ରଶାନ୍ତ ଜଣେ ପ୍ରକୃତ କବିର ଦାୟିତ୍ୱ ଓ କର୍ତ୍ତବ୍ୟବୋଧ ସଂପର୍କରେ ସଚେତନ କରାଇ ଦେଇଛନ୍ତି । ଏହା ମାଧ୍ୟମରେ ସାଧାରଣ ମଣିଷର ଦୁଃଖକୁ ଦେଖାଇବାର ପ୍ରଚେଷ୍ଟା ମଧ୍ୟ କରିଛନ୍ତି । କବିର କଲମର ଶକ୍ତି କେତେ ? ପରାକାଷ୍ଠା କେତେ ? ସମାଜରୁ କାଳରାତ୍ରିର ଅବସାନ ଘଟାଇବା ପାଇଁ ତାହା କବିଙ୍କର ଅନୁଭବର ନିବିଡ଼ତା ମଧ୍ୟରେ ଉପଲବ୍ଧି କରିହୁଏ । କବିର ଲେଖନୀର ପ୍ରତିଟି ଶବ୍ଦରେ ନୂତନତା ଫୁଟି ଉଠେ । ଆଉ କବିତା କାଳ୍ କାଳ ପାଇଁ ଏହି ନୂତନତାର ବାର୍ତ୍ତାକୁ ସଂଚାର କରେ ।

ସାଧାରଣ ମଣିଷର ଦୁଃଖ, ଯନ୍ତଣା କବିର ହୃଦୟରୁ ରକ୍ତ ନିଗାଡ଼ିଦିଏ । ଯାହାର ପରିପ୍ରକାଶ ଘଟେ କବିତାର ପଂକ୍ତିରେ ।

"ଚିରନ୍ତନର ପଥରେ ଫୁଟାଏ ନୂଆ ନୂଆ ଫୁଲ ନିତି
ମଣିଷର ଆଖି ଆଗୁ ଘୁଞ୍ଚାଏ ଘନୀଭୂତ କଳାରାତି
ଚିରଦିନ ସାଧାରଣ ସତ୍ତା କବିର ପୀଡ଼ିତ ହୁଏ
କବିତା ତଳର କବି ରୂପ ପାଇଁ ଛାତିରୁ ରୁଧିର ନିଏ ।"(୨୨୨)

ରୁଧିର ଦେଇ ଆରମ୍ଭ କରିଥିବା ସଂଗ୍ରାମ ଶେଷରେ ସଫଳତା ପାଏ । ପ୍ରସ୍ଫୁଟିତ ହେବା ଆଗରୁ ବୃନ୍ତଚ୍ୟୁତ ହେଉଥିବା ମଣିଷ ଜୀବନରେ ନୂତନ କଳିକାର ଆଗମନ ଘଟେ । ଅତୃପ୍ତି, ଅସନ୍ତୋଷର ପରିସମାପ୍ତି ଘଟେ । ବିରୋଧି ଶକ୍ତି ପରାଜୟ ବରଣ କରେ । କବି ପ୍ରଶାନ୍ତ ଏସବୁର ସଂରଚନା କରନ୍ତି କେବଳ ନୂତନର ଆଗମନ ପାଇଁ ।

ସୁନ୍ଦର ସୃଷ୍ଟିର ସର୍ଜ୍ଜନା ପାଇଁ । ପ୍ରଥମ ସଂକଳନ ପ୍ରକାଶ ପାଇବାର ଛ' ବର୍ଷ ପରେ ଅର୍ଥାତ୍ ୧୯୯୬ ମସିହାରେ 'ଶିଖା ସ୍ୱାକ୍ଷର' ନାମକ ଦ୍ୱିତୀୟ ସଂକଳନ ପ୍ରକାଶିତ ହୁଏ । ପ୍ରଥମ ସଂକଳନରେ ପ୍ରକାଶିତ ହୋଇଥିବା ବିଦ୍ରୋହ 'ଶିଖା ସ୍ୱାକ୍ଷର'ରେ ଅଧିକ ଘନୀଭୂତ ହୋଇଥିବା ପରି ମନେହୁଏ । ମଣିଷର ଲହୁ ଲୁହରେ ବ୍ୟଥିତ କବିଙ୍କର ମନ୍ତବ୍ୟରୁ ଏହା ସ୍ପଷ୍ଟ ଅନୁମିତ ହୁଏ । କବି ପ୍ରଶାନ୍ତ କହନ୍ତି:-

"ସବା ଶେଷର ସବୁଠୁ ଦୁର୍ବଳ ଲୋକଟି ଭିତରେ ମୋର
ଈଶ୍ୱର, ମୋର ପ୍ରେମ, ତାକୁ କୋଳାଗ୍ରତ କରିବାକୁ ଯାଇ,
ମୁଁ ଏଠି ତଳି ତଳାନ୍ତ, ଚିରକାଳ ଉଚ୍ଛନ୍ନ, ଉତ୍ତୀର୍ଣ୍ଣ ।"(୨୨୩)

ମେହେନତି ମଣିଷ ପାଇଁ ଚିରକାଳ ଉଚ୍ଛନ୍ନ ହେଉଥିବା କାବ୍ୟିକ ବ୍ୟକ୍ତିତ୍ୱଟି ସର୍ବହରାର ରାଜତ୍ୱ ପ୍ରତିଷ୍ଠା ପାଇଁ ସାରା ବିଶ୍ୱଜନତାଙ୍କୁ ଆହ୍ୱାନ କରେ କବିତାର ଭାଷାରେ:-

"ପୁନରୁଦ୍ଧାର କରିବାକୁ ହେବ
ସର୍ବହରାର ଏକତା ବିଭବ
ଅରି କବଳରେ ପଡ଼ି ରହିଥିବା
ଦୁର୍ଗ ଦଖଲ କରି
ବିଶ୍ୱରେ ବ୍ୟାପିଯିବାକୁ ପଡ଼ିବ ।
ବାୟୁ ତରଂଗ ପରି ।
ଉର୍ଦ୍ଧ୍ୱେ ତାହାର ମୁକ୍ତ ଆଲୋକ
ହୋଇନି ଏ ଯାଏ ତୋଳା
ସଜାଡ଼େ ସଜାଡ଼େ ପତାକା ତୋ ପୁଣି
ଆରେରେ ଭୂର୍ଣ୍ଣି ଭୋଳା
ଆରେ ବିଶ୍ୱର ମେହେନ୍ନତ ଜନ ।
ଦେଖିବାକୁ ହେବ ପୁଣିତ ସପନ ।"(୨୨୪)

କ୍ରାନ୍ତିର କାଳଜୟୀ କଣ୍ଠସ୍ୱର ଉତ୍ତୋଳନ କରିଥିବା କବି ଶେଷରେ ଅତୀତର ଭୀମ ଭୋଇଙ୍କୁ ସ୍ମରଣ କରିଛି । ଅତୀତରେ ଏମିତି ଦିନେ କବିଟିଏ ଚାହିଁଥିଲା ଜନତାଙ୍କର ଦୁଃଖର ପରିସମାପ୍ତି ପାଇଁ, ଦାସତ୍ୱର ବିଲୋପ ପାଇଁ । କିନ୍ତୁ ହେଲା କ'ଣ ? ଯାହା ଅତୀତରେ ଥିଲା ଆଜି ମଧ୍ୟ ଠିକ୍ ସେଇଆ । ସମାଜ ଉନ୍ନତି କରିଛି ସତ କିନ୍ତୁ ସେ ଉନ୍ନତି ହତ୍ୟା, ଲୁଣ୍ଠନରେ । ନିତି ଏଠାରେ କ୍ଷୁଧାରେ ତୃଷାରେ ଜୀବାତ୍ମା କଲ୍‌ବଲ୍ ହେଉଛି । ବର୍ତ୍ତମାନ କବି ପ୍ରଶାନ୍ତ ମେହେନତି ଜନତାର ଦୁଃଖକୁ ସନ୍ଥକବିଙ୍କ

ପରି ମରମେ ମରମେ ଅନୁଭବ କରି ଗାନ କରୁଛନ୍ତି:-

"ନର୍କରେ ନିଜକୁ ଘାଣ୍ଟିଲି ଅନେକ
ଜଗତ ଉଦ୍ଧାର ପାଇଁ
ଘାଣ୍ଟି ହେବାଟା ମୋ ସାର ହେଲା ଖାଲି
ଫଳତ ମିଳିଲା ନାହିଁ ।
ଅପ୍ରମିତ ଦୁଃଖ ଆରତ ଜଗତୁ
ଘୁଞ୍ଚିଲାନି ଛୁଞ୍ଚିମୁନ
ସାଧନାର ଘର ପୂର୍ଣ୍ଣ ହେଲାସିନା
ସିଦ୍ଧି ଘରେ ସେଇ ଶୂନ ।"(୨୨୫)

କବିଙ୍କ କବିତା କେବଳ ଯେ ସର୍ବହରା ମେହେନତି ମଣିଷର ମନର କଥା କହିଛି, ତାହା ନୁହେଁ, ସରଳ ନିରୀହ ଆଦିବାସୀମାନଙ୍କୁ ମଧ୍ୟ କବି ସେମାନଂକର ଅଧିକାର ସଂପର୍କରେ ସଚେତନ କରାଇବାକୁ ମଧ୍ୟ ଅଣ୍ଟାଭିଡ଼ି ବାହାରି ପଡ଼ିଛନ୍ତି । ଗଜପତି ଜିଲ୍ଲାରେ 'ଆଦିବାସୀ ଚାଷୀ ମୂଲିଆ ସଂଘ', 'ବନ ଶ୍ରମିକ ସଂଘ' ଇତ୍ୟାଦି ବହୁ ସଂଗଠନ ସହିତ ଜଡ଼ିତ ଥିବାରୁ କବି ଏ ପ୍ରକାର ପଦକ୍ଷେପ ନେବା ପାଇଁ ଆଗଭର ହେବାକୁ ଅସ୍ୱୀକାର କରାଯାଇ ନପାରେ । 'MCC' ନାମକ ଆନ୍ଧ୍ର ପ୍ରଦେଶର ଏକ ସଂଗଠନ ଯିଏକି ସଦାସର୍ବଦା ଆଦିବାସୀ ମାନଂକର ସମସ୍ୟାକୁ ସବୁ ସମୟରେ ନଜର ଦେଉଥାଏ, କବି ପ୍ରଶାନ୍ତ ଏହାର ଜଣେ ସପକ୍ଷବାଦୀ । 'MCC'ର କାର୍ଯ୍ୟ ହେଉଛି ଆଦିବାସୀ ଗ୍ରାମମାନଂକରେ 'ପ୍ରଜାକୋର୍ଟ' ଅନୁଷ୍ଠିତ କରାଇବା । କବି ପ୍ରଶାନ୍ତଙ୍କ 'ଆନ୍ନା ଆସିଛି' କବିତାରେ ଏ ସଂପର୍କରେ ବିଷଦ୍ ବର୍ଣ୍ଣନା ପରିଲକ୍ଷିତ ହେବା ସଂଗେସଂଗେ, ଅତ୍ୟାଚାରିତ ଆଦିବାସୀମାନେ ଯେ ସଚେତନ ହୋଇପାରିବେ, ଏ ନେଇ କବି ଦୃଢ଼ ଆଶାପୋଷଣ କରିଛନ୍ତି । କବିଙ୍କ ଭାଷାରେ:

"ପ୍ରଜାକୋର୍ଟ ହବ କାଲିକି ଗାଆଁରେ
ହାତକୁ ଆସିବ ନିଜାମତ୍ ଆଉ ନ୍ୟାୟ
ବଳିଷ୍ଠ ହବ ପ୍ରଜାର ହୁକୁମ୍
ପ୍ରଜା ରାଜପଣ, ରାୟ ।
ମଜ୍ଜା ପାଇବେ ସାହୁ ମହାଜନ
ମାମଲତ୍‌କାର ଜବର ଦଖଲକାରୀ
କାନ୍ଦିବ ପ୍ରଜାକୋର୍ଟ- ଦରବାରରେ
କନ୍ଦାଉଥିବ ସଇତାନ୍ ପାପାଚାରୀ ।"(୨୨୬)

ଆଦିବାସୀ ଜନଜୀବନ କାଳେକାଳେ ମୂଳ ସ୍ରୋତ ଠାରୁ ବିଚ୍ଛିନ୍ନ ହୋଇ ଜୀବନଯାପନ କରିଆସୁଛନ୍ତି । ଭାରତର ଏହି ଅବହେଳିତ ଜନଜାତି ସୁବିଧାବାଦୀ ସମାଜ ବ୍ୟବସ୍ଥାର ଉପେକ୍ଷାକୁ ହୃଦୟଙ୍ଗମ କରିପାରେ ନାହିଁ । କାହିଁକିନା ଏମାନେ ସରଳ, ଶିକ୍ଷାଦୀକ୍ଷାରୁ ବଞ୍ଚିତ । ଦେଶ ସ୍ୱାଧୀନତା ପ୍ରାପ୍ତିର ଅର୍ଦ୍ଧଶତାବ୍ଦୀ ଅତିକ୍ରାନ୍ତ ପ୍ରାୟ । ତଥାପି ଏମାନେ ଆଜି ପର୍ଯ୍ୟନ୍ତ ଅବହେଳିତ । ଆଜି ମଧ୍ୟ ଏମାନେ ପେଟପୁରା ଖାଇବାକୁ ନ ପାଇ ଅନାହାରରେ ମୃତ୍ୟୁ ବରଣ କରୁଛନ୍ତି, ପେଟ ବିକଳରେ ମା'ଟିଏ ତା'ର ସନ୍ତାନକୁ ବିକ୍ରୀ କରୁଛି । ଚରମ ଅବହେଳାର କରୁଣ ସତ୍ୟକୁ ବହନ କରୁଛି ଏହି କବିତାଟି । 'ପ୍ରଜାକୋର୍ଟ' ମାଧ୍ୟମରେ କବି ଏହାର ସମାଧାନ ଚାହିଁଛନ୍ତି । ଯେହେତୁ ପ୍ରଜାମାନେ ଗଣତନ୍ତ୍ରର ମୂଳ ପିଣ୍ଡ, ସେଇମାନେ ହିଁ ଏହାର ବିଚାର କରିବେ । ପ୍ରଜାମାନେ ଯେତେବେଳେ ନିଜର ଅଧିକାର ସଂପର୍କରେ ସଚେତନ ହେବେ, ସେତେବେଳେ ଯାଇ ଅତ୍ୟାଚାରର ଅବସାନ ଘଟିବ । କବିଙ୍କ ଭାଷାରେ ଏହା କିପରି ରୂପ ଲଭିଛି ଦେଖନ୍ତୁ ।

"ଅନ୍ୟାୟ ଆଉ ଅତ୍ୟାଚାରର
ପ୍ରତିରୋଧ କରିଯିଏ
ତ୍ୟାଗ ତପସ୍ୟା ଚରମରେ ନିଜ
ଜୀବନ ଆହୁତି ଦିଏ
ତାକୁ ବିଦ୍ରୂପ ଉପହାସ କରେ
ଏଇ ଦେଶ ପ୍ରେମ ନୀତି ।
କେବେ ହେବ ଯାର ଧ୍ୱଂସ ସାଧନ
କେବେ ହେବ ଯାର ଇତି ?"(୨୨୭)

'ବିପ୍ଳବୀ' କବି ସଦାସର୍ବଦା ସଂଗ୍ରାମୀ ଚିନ୍ତାଦର୍ଶରେ ଉଦ୍‌ବୁଦ୍ଧ ହୋଇ, ସମାଜ ଜୀବନର ବାସ୍ତବତାକୁ ଅନୁଭବ କରିଥାଏ ଓ ଏହାର ଯଥାର୍ଥ କଳାତ୍ମକ ପରିପ୍ରକାଶ ଘଟିଥାଏ ତା'ର ସୃଷ୍ଟି ମଧ୍ୟରେ । ସଂଗ୍ରାମୀ ଆହ୍ୱାନ ମଧ୍ୟରେ ମାନବିକ ସମ୍ବେଦନା ସତେଯେପରି ଏକାତ୍ମ ହୋଇଥାଏ । ଶୋଷଣ, କଷଣର ବିନାଶ ଘଟାଇ ମଣିଷ ପଣିଆର ଜୟଗାନରେ, ସୁଖ ସମୃଦ୍ଧିର କାଳକୁ ଆବାହନ କରିବା ପାଇଁ ତା'ର ଲେଖନୀ ସଦା ଚଞ୍ଚଳ ହୋଇଉଠେ । କବିଟିଏ ନିଜର ବ୍ୟକ୍ତିଗତ ସ୍ୱାର୍ଥ ସାଧନ ପାଇଁ କିମ୍ୱା କୌଣସି ବାହାବା' ପ୍ରଶଂସା ନେବା ପାଇଁ ଏହା କରିନଥାଏ । କବିଙ୍କର ଏ ପ୍ରକାର ଚିନ୍ତାଧାରାକୁ ବହନ କରିଛି ନିମ୍ନୋକ୍ତ ପଂକ୍ତି :

"ଫୁଲମାଳ ତାର ଲୋଡ଼ା ନାହିଁ
ଲୋଡ଼ା ନାହିଁ ଶାରଳା ବା
ସରସ୍ୱତୀ, ଜ୍ଞାନପୀଠ
ଲୋଡ଼ା ନାହିଁ ବଣିକର ଦୟା
ସୁଧଖୋର ମହାଜନ
ଟୋଳିଥିବା ଦେଉଳରୁ
ଦି' ଚାରିଟା ବାଳଭୋଗ ଟିକିଏ ନଡ଼ିଆ ।"(୨୨୮)

କବି ପ୍ରଶାନ୍ତଙ୍କର ଏ ପ୍ରକାର ଚିନ୍ତାଦର୍ଶ ସହିତ କବି ସଦାଶିବଙ୍କର ଚିନ୍ତାଧାରାର ସାମ୍ୟ ପରିଲକ୍ଷିତ ହୁଏ । କବି ସଦାଶିବ 'ଶବ୍ଦବ୍ରହ୍ମ' ସଂକଳନର ମୁଖବଂଧରେ ଅନୁରୂପ କଥା କହନ୍ତି:-

"ମୋ କବିତାଟି ପଢ଼ି ମାଲକାନଗିରିର ଘଞ୍ଚ ଜଂଗଲରେ ରହୁଥିବା ସାଧାରଣ ପାଠକ, ରାୟଗଡ଼ା ଲାଂଜିଗଡ଼, କରଂଜିଆ, ଯୁଯୁମୋରା କିମ୍ବା ଶିମିଳିପାଳର ଆଗ୍ରହୀ ପାଠକ ଯେତେବେଳେ ଲେଖେ "କବି ତୁମେ ଆମ ଜୀବନର କଥା କହିଛ", ସେତେବେଳେ ମହାକବି ମାନଂକର ଜ୍ଞାନପୀଠ, ସରସ୍ୱତୀ, ଶାରଳା, ସାହିତ୍ୟ ଏକାଡେମୀ, ଲକ୍ଷଲକ୍ଷ ଟଂକା, ଉପଢ଼ୌକନ ଓ ସ୍ତୁତୀଗାନ ମାନ ମୋତେ ଅସାର ଓ କ୍ଷଣିକ ମନେ ହୁଅନ୍ତି ।" (୨୨୯) ବାସ୍ତବିକ୍ ଦେଖିବାକୁ ଗଲେ, କବି ସଦାଶିବଙ୍କର ଏହି ସ୍ୱୀକାରୋକ୍ତି ମଧ୍ୟରେ ପ୍ରକାଶ ପାଇଛି ସତ୍ କବିର ଦୃଷ୍ଟିଭଂଗୀ କିପରି ହେବା ଉଚିତ୍ । କବି ପ୍ରଶାନ୍ତ ମଧ୍ୟ ଏହି ଦୃଷ୍ଟିଭଂଗୀକୁ ଯଥାଯଥ ସମ୍ମାନ ପ୍ରଦର୍ଶନ କରିନ୍ତି । ତାଂକ ଦୃଷ୍ଟିରେ ସତ୍ କବିଟିଏ ସଦାସର୍ବଦା ମଣିଷ ଜୀବନକୁ ହିଁ ମୁଖ୍ୟ ଆୟୁଧ ଭାବେ ଗ୍ରହଣ କରିବା ଉଚିତ୍ ।

ଦୁଇଟିଯାକ ସଂକଳନରେ କବିଙ୍କର ସଂଗ୍ରାମୀ ଚିନ୍ତାଧାରାର ପରିପ୍ରକାଶ ଘଟିଥିଲା ବେଳେ, ତୃତୀୟ ସଂକଳନ 'ବହ୍ନି ବର୍ଣ୍ଣମାଳା'ରେ କବି ନିଜକୁ ସାନ୍ତ୍ୱନା ଦେଉଛନ୍ତି ଏବଂ ଆଶା ବାନ୍ଧିଛନ୍ତି ଏକ ନୂତନ ସମାଜ ବ୍ୟବସ୍ଥାର ଆଗମନକୁ । ସମ୍ଭାବ୍ୟ ସତ୍ୟକୁ ସାକାର କରିବାକୁ ଯାଇ କବି କହୁଛନ୍ତି-

"ଏକାକୀତ୍ୱର ଦଂଶନ ଦିଏ ହୃଦୟକୁ ପୀଡ଼ା... ରକ୍ତଝରେ
ସାନ୍ତ୍ୱନା ଢାଳି ନିଜ ଶିରେ ନିଜେ ଆଗକୁ ବଢ଼େ ମୁଁ... ମନ୍ତପଢ଼େ
ବଦଳିବ ଏଇ ବିପୁଳ ପୃଥ୍ୱୀ ବଦଳିବ ଏଇ ମଣିଷ କାଲି
ବିଶ୍ୱାସ ମୋର ବିଭାବରୀ ଡେଇଁ ଦେଖେ ପ୍ରାଚୀନରେ ଅଂଶୁମାଳି ।"(୨୩୦)

ସାମାଜିକ ଅବ୍ୟବସ୍ଥାରେ ପରିବର୍ତ୍ତନ ଘଟାଇ ଏକ ସୁନ୍ଦର ସଂଭାବନାମୟ

ସମାଜର ଆଗମନ ପାଇଁ କବି ପ୍ରଶାନ୍ତ ସତେଯେପରି ସଦାତତ୍ପର । ଏଥିପାଇଁ ବିପ୍ଳବର ମହାମନ୍ତ୍ରକୁ କବିତାର ପ୍ରତିଟି ପଦରେ ଉଚ୍ଚାରଣ କରିଛନ୍ତି । କବିଙ୍କର କବିତା ଗୁଡ଼ିକ ଯେ ଓଡ଼ିଆ ବୈପ୍ଳବିକ ସାହିତ୍ୟରେ ଏକ ନୂତନ ସମ୍ଭାବନା ସୃଷ୍ଟି କରିବାକୁ ସକ୍ଷମ ଏଥିରେ ଦ୍ୱିମତ ହେବାର ନାହିଁ ।

## ୯.କବି ବସନ୍ତ ମୁଦୁଲୀ

ଅଶୀ ଦଶକ ପରବର୍ତ୍ତୀ ପ୍ରଗତିବାଦୀ କାବ୍ୟକବିତା କ୍ଷେତ୍ରରେ କବି ବସନ୍ତ ମୁଦୁଲୀ ଏକ ବହୁ ପରିଚିତ ନାମ । ଜୀବନକାଳ ମଧ୍ୟରେ କବି ଯେତିକି ପରିଚିତ ଥିଲେ, ଆଜି ତାଙ୍କ ଅବର୍ତ୍ତମାନରେ ତାଙ୍କର ପ୍ରତିଷ୍ଠା ବଢ଼ିଯାଇଛି ଆଶାତୀତ ଭାବରେ । କବି ମୁଦୁଲୀ ପାଲଟି ଯାଇଛନ୍ତି ଓଡ଼ିଆ କବିତା ରାଜ୍ୟର ପ୍ରବାଦ-ପୁରୁଷ । ତାଙ୍କ ନାମରେ ଗଢ଼ାଯାଇଛି ଅନୁଷ୍ଠାନ 'କବି ବସନ୍ତ ମୁଦୁଲୀ ସ୍ମୃତି ସଂସଦ' । ତାଙ୍କ କବିତାକୁ ନେଇ ଆଜି ମଧ୍ୟ ଚାଲିଛି ବହୁ ଆଲୋଚନା ସମାଲୋଚନା । ମାତ୍ର ୩୧ ବର୍ଷ (୧୯୫୫-୧୯୮୬) ସ୍ୱଳ୍ପ ଜୀବନାନୁଭୂତି ମଧ୍ୟରେ ଓଡ଼ିଆ ସାହିତ୍ୟକୁ ଯାହାକିଛି ପ୍ରତିଦାନ ସ୍ୱରୂପ ଅର୍ପଣ କରିଯାଇଛନ୍ତି ତାହା ତାଙ୍କୁ ଚିରକାଳ ଅମର କରି ରଖିଥିବ ।

ସପ୍ତମ ଦଶକରୁ କବି ବସନ୍ତ କାବ୍ୟ କବିତା ରଚନା କ୍ଷେତ୍ରରେ ମନୋନିବେଶ କରନ୍ତି । 'ସଫଳତାର ସହ ଶିକ୍ଷା ସମାପ୍ତ ପରେ ଯାଜପୁରଠାରେ ଶିକ୍ଷାଦାନ କ୍ଷେତ୍ରରେ ନିଜକୁ ନିୟୋଜିତ କରନ୍ତି । ଶିକ୍ଷକମାନଙ୍କର ସୁବିଧା ଅସୁବିଧା ସଂପର୍କରେ ଦୃଷ୍ଟି ଦେଉଥିବା ଅନୁଷ୍ଠାନ 'ଓଷ୍ଟା' ସହିତ କବି ଓତଃପ୍ରୋତ ଭାବେ ଜଡ଼ିତ ହୁଅନ୍ତି । ଅନେକ ଥର ଶିକ୍ଷକ ମହାସଂଘର ନେତୃତ୍ୱ ମଧ୍ୟ ନିଅନ୍ତି । ୧୯୮୧ ମସିହାରେ ଯାଜପୁରରେ ପ୍ରଥମେ କବି କେତେଜଣ ସାହିତ୍ୟିକ ବନ୍ଧୁଙ୍କୁ ନେଇ ଗଠନ କରନ୍ତି 'ଲିଟରେରିଆ ଗ୍ଲୋବାଲା' ନାମକ ଏକ ଅନୁଷ୍ଠାନ । ୧୯୮୩ ମସିହାରେ ଅନ୍ୟ ଏକ ସାହିତ୍ୟ ସଂଗଠନ 'ସ୍ୱର ଓ ସ୍ୱାକ୍ଷର'ର ମଧ୍ୟ ପ୍ରତିଷ୍ଠାତା ଥିଲେ କବି ବସନ୍ତ ମୁଦୁଲୀ । ଶିକ୍ଷକ ଜୀବନର ସୀମିତ ସମ୍ବଳ 'ସବୁସମୟରେ ପ୍ରତିବଂଧକ ସାଜିଛି ସତ କିନ୍ତୁ ସେ ପ୍ରତିବଂଧକ କବିଙ୍କୁ ସାରସ୍ୱତ ସାଧନାରୁ ନିବୃତ୍ତ କରିପାରିନାହିଁ । ଏକଥା 'ବସନ୍ତ ବର୍ଣ୍ଣମାଳା'ରୁ ସୂଚିତ ହୁଏ ।

"ଆଜନ୍ମ ଆର୍ଥିକ ଦୁର୍ଦ୍ଦଶା ଓ ପୀଡ଼ନରେ ସେ ଓ ତାଙ୍କ ପରିବାର ସଢ଼ିଛନ୍ତି । ପିତାମାତାଙ୍କ ଜ୍ୟେଷ୍ଠ ସନ୍ତାନ ଭାବେ ବସନ୍ତ ସବୁ ଦାୟିତ୍ୱ ନିଜ କାନ୍ଧକୁ ନେଇଛନ୍ତି । ଏମିତି ବି ନେଇଛନ୍ତି ପୀଡିତ ମାନବର କାରୁଣ୍ୟ ଓ ଦୁର୍ଭାଗ୍ୟକୁ କାନ୍ଧେଇବାର କାବ୍ୟିକ ସଚେତନତା । ଏମିତି ବି ସମୟ ଆସିଛି, କବି ବସନ୍ତ ସାରା ଦିନ ଗୋଟିଏ ପାଉଁରୁଟିରେ କ୍ଷୁଧା ମେଣ୍ଟାଇଛନ୍ତି ଅଥଚ ସାରାରାତି କବିତାରେ ବିନିଦ୍ର । ଦାରିଦ୍ର୍ୟବୋଧ

ଏ କବିଙ୍କୁ କିନ୍ତୁ ଆମରଣ ଛୁଇଁ ପାରିନାହିଁ । x x x । କବି ବସନ୍ତଙ୍କ ଜୀବନ ଏକ ସ୍ୱୟଂସଂପୂର୍ଣ୍ଣ କବିତା । ତାଙ୍କର ଜୀବନ ଚର୍ଯ୍ୟା ଓ ଜୀବନାଦର୍ଶ ଏକ ମହାନ୍ କବିତାର ଚିରନ୍ତନ ଶବ୍ଦ ସୌନ୍ଦର୍ଯ୍ୟ ।" (୨୩୧)

ଜୀବନକାଳ ମଧ୍ୟରେ କବି ଯେତିକି ସମ୍ମାନ ଓ ପ୍ରଶଂସାର ଅଧିକାରୀହୋଇ ପାରିନାହାନ୍ତି ମୃତ୍ୟୁ ପରେ ଶ୍ୱଶୁର ଅରୁଣ ଖିଲାରଙ୍କ ଆନ୍ତରିକ ଉଦ୍ୟମ ଫଳରେ କବିଙ୍କର ବହୁ କବିତା ପ୍ରକାଶିତ ହୋଇ ପାଠକ ମହଲରେ ବେଶ୍ ଆଦୃତି ଲାଭ କରିପାରିଛି । କବିଙ୍କ କବିତା ମୁଖ୍ୟତଃ ସାମସମୟିକ ସମାଜରେ ପରିଲକ୍ଷିତ ହେଉଥିବା ବହୁବିଧ ସମସ୍ୟା ମଧ୍ୟରୁ ଉଦ୍‌ଭବ ଓ ଏହାର ପରିସମାପ୍ତି ପାଇଁ ସେ ସର୍ବଦା ଚେଷ୍ଟିତ । ଏତଦ୍‌ବ୍ୟତୀତ ମାନବବାଦୀ ଦୃଷ୍ଟିକୋଣ ତାଙ୍କ କବିତାର ଅନ୍ୟତମ ବୈଶିଷ୍ଟ୍ୟ । ପ୍ରାଚୀନ ମୁନିଋଷିମାନଙ୍କର କାଳଜୟୀ ବାଣୀ "ସର୍ବେ ଭବନ୍ତୁଃ ସୁଖୀନଃ, ସର୍ବେ ସନ୍ତୁଃ ନିରାମୟା" ଏବଂ ସନ୍ଥ କବି ଭୀମଭୋଇଙ୍କର କାଳଜୟୀ କଣ୍ଠ ସ୍ୱର – "ମୋ ଜୀବନ ପଛେ ନର୍କେ ପଡ଼ିଥାଉ ଜଗତ ଉଦ୍ଧାର ହେଉ" ର ଏକ ବିକଶିତ ରୂପ କବିଙ୍କ କବିତାରେ ପରିଦୃଷ୍ଟ ହୁଏ । ତେଣୁ କବିଙ୍କର କଲମରୁ ଝରି ପଡ଼ିଛି –

"ଯେତେ ଗୁଳିଅଛି କୁଢ଼ାଇ ଦିଅ ମୋ ଛାତିରେ
ଯେତେ ପ୍ରେମ ଅଛି ଅଜାଡ଼ି ଦିଅ ଏ ମାଟିରେ ।"

କବିଙ୍କର ଦୁଇଟି କବିତା ସଂକଳନ ପ୍ରକାଶିତ । ପ୍ରଥମଟି କବିଙ୍କର ଜୀବଦ୍ଦଶାରେ (୧୯୮୧ ମସିହାରେ) 'ଯିଏ ଯେଉଁଠି ଅଛ' ନାମରେ ପ୍ରକାଶିତ ହୋଇଥିଲା ଏବଂ ଦ୍ୱିତୀୟଟି ମୃତ୍ୟୁ ପରେ 'ବସନ୍ତ ମୁଦୁଲି ସ୍ମୃତି ସଂସଦ' ଆନୁକୂଲ୍ୟରେ 'ବସନ୍ତ ବର୍ଣ୍ଣମାଳା' ନାମରେ ପ୍ରକାଶିତ ହୋଇଥିଲା । କବିଙ୍କର ଦୁଇଟି ସଂକଳନରେ ସ୍ଥାନିତ କବିତା ଗୁଡ଼ିକରେ କିପରି ପ୍ରଗତିବାଦୀ ତତ୍ତ୍ୱ ପ୍ରତିଫଳିତ ହୋଇଛି ତାହା ଆଲୋଚନା କରିବା ।

କବି ବସନ୍ତ ପ୍ରଗତିବାଦର ଜଣେ ସାର୍ଥକ ରୂପକାର । ଦୁଃଖ ଯନ୍ତ୍ରଣାରେ ଅହରହ କ୍ଷତାକ୍ତ ହୁଏ ତାଙ୍କର ଅନ୍ତରାତ୍ମା । ସମାଜ ମଧ୍ୟରୁ ଶୋଷଣର ବିଲୋପ ଘଟାଇ ଏକ ଶୋଷଣ ବିହୀନ ସାମ୍ୟବାଦୀ ସମାଜ ଗଠନର ପରିକଳ୍ପନା କରନ୍ତି କବି ଶ୍ରୀଯୁକ୍ତ ମୁଦୁଲୀ । କବିଙ୍କ ଦ୍ୱାରା ଲିଖିତ ଏକ ଚିଠିର କିୟଦଂଶରୁ ଏହା ପ୍ରତିପାଦିତ ହୁଏ ।

"ସାଧାରଣ ମଣିଷକୁ ଦୁଃଖ, ଦୁର୍ବିପାକ, ଶୋଷଣ ପେଷଣର କାରାଗାରରୁ ମୁକ୍ତି ଦେବା ପାଇଁ ବସନ୍ତର ଶବ୍ଦ ଚର୍ଯ୍ୟା । 'ସାମାଜିକତା' ଓ 'ମାନବିକତା' ମଧ୍ୟରୁ ମାନବିକତାର ଜୟଜୟକାର କରେ କବି ।" (୨୩୨)

ସମାଜରେ ଅନ୍ୟାୟ ଅତ୍ୟାଚାର ରାଜପଣ କରୁଛି । ସାଧାରଣ ଜନତା ତା'ର ନ୍ୟାର୍ଯ୍ୟ ହାସଲ କରିପାରୁ ନାହିଁ । ସମାଜରେ ସତ୍ୟ, ଧର୍ମ, ନ୍ୟାୟର ଚିହ୍ନ ବର୍ଣ୍ଣ ନାହିଁ ।

ଯେଉଁମାନଙ୍କୁ ବିଶ୍ୱାସର ସହିତ ଉଚ୍ଚ ପଦରେ ଅଭିଷିକ୍ତ କରାଯାଇ କ୍ଷମତା ପ୍ରଦାନ କରାଯାଉଛି ସେମାନଙ୍କର ଲୋଭ, ମୋହ, ଅନୈତିକ କାର୍ଯ୍ୟକଳାପ ହେତୁ ସମାଜ ଆଜି ନିମ୍ନଗାମୀ । କବି ସମାଜର ଏ ପ୍ରକାର ଅବ୍ୟବସ୍ଥାକୁ ରୂପ ପ୍ରଦାନ କରିବାକୁ ଯାଇ ଲେଖନ୍ତି –

"ଏବେ କାଗଜର ବାଘମାନେ
ମାତିଛନ୍ତି ଅନ୍ଧାରରେ
ଦୁଷ୍ଟ ଶାଗୁଣା ମାନେ ଟାଣି ନେଉଛନ୍ତି
ସ୍ୱପ୍ନ ବିଭୋର ମଣିଷର ଆଖି ।"(୨୩୩)

ବର୍ତ୍ତମାନର ସମାଜ ଏହି କାଗଜ ବାଘ ମାନଙ୍କର କବ୍‌ଜାରେ କବଳିତ । ଏମାନଙ୍କର ମିଥ୍ୟା ଖୋଳପାର ଚିତ୍ରକୁ ସାଧାରଣ ଜନତା ହୃଦୟଙ୍ଗମ କରିପାରେ ନାହିଁ । ଯନ୍ତ୍ରଣାର କରାଳ ଗହ୍ୱର ମଧ୍ୟରେ ଖୁବ୍ ସହଜରେ ସେ ପତିତ ହୁଏ । ସମାଜର ଏହି ଶୋଷକ ଗୋଷ୍ଠୀରୂପୀ ଗୃଧ ପକ୍ଷୀମାନେ ସରଳ ବିଶ୍ୱାସୀ ସାଧାରଣ ଜନତାର ସ୍ୱପ୍ନକୁ ଭୂଲୁଣ୍ଠିତ କରନ୍ତି । ଆଶାକୁ ଧୂଳିସାତ୍ କରନ୍ତି । ଯେଉଁମାନେ ଏମାନଙ୍କ ବିରୋଧରେ ବିଦ୍ରୋହ କରନ୍ତି ! ସେମାନଙ୍କୁ ଉପହାର ପ୍ରଦାନ କରାଯାଏ 'କାରାଗାର' ଓ 'ଫାଶୀଖୁଣ୍ଟ' । ସେମାନେ 'ଖୁଦିରାମ୍' 'ଭଗତ୍ ସିଂହ'ଙ୍କୁ ଫାଶୀ ଦେଇପାରନ୍ତି । ନାଥୁରାମ୍ ହୋଇ ବିଦ୍ଧ କରିପାରନ୍ତି ଗାନ୍ଧୀଙ୍କୁ । ସମାଜରେ ଏ ପ୍ରକାର ଅରାଜକତା ଖେଳାଇଥିବା ବ୍ୟକ୍ତି ବିଶେଷ ମାନଙ୍କ ବିରୋଧରେ ସଂଗ୍ରାମ କରିବା ପାଇଁ ଶତପ୍ରତିଶତ ପ୍ରତିଶ୍ରୁତି ନେଇ ଆସନ୍ତି କବି ବସନ୍ତ ତାଙ୍କ କବିତା ମାଧ୍ୟମରେ

"ଭାଇମାନେ, ମୁଁ ଆସିଗଲି,
ଭୟ ନାହିଁ ଆସ
ମୁଁ ତୁମକୁ ଗୋଟି ଗୋଟି କରି ପିଠିରେ
ପହଞ୍ଚେଇ ଦେବି ଆର କୂଳରେ
ରକ୍ତନଦୀର ସ୍ରୋତ ଯେତେ ପ୍ରବଳ ହେଉନା କାହିଁକି
ମୁଁ ତୁମକୁ ପହଞ୍ଚାଇ ଦେବି ଠିକଣା ସ୍ଥାନରେ
ଏକ ସୁନ୍ଦର ପୃଥିବୀର ମରୁଦ୍ୟାନରେ ।" (୨୩୪)

କବିତା ପ୍ରସଂଗରେ ମନେ ପଡ଼େ ଅତୀତର ସେହି ପୁରାଣ ପୃଷ୍ଠାର କଥା । ନିଃସହାୟ ଦୁର୍ଯ୍ୟୋଧନ ପୁତ୍ର ଲକ୍ଷ୍ମଣ କୁମାରର ଶବକୁ ଆଶ୍ରା କରି ରକ୍ତନଦୀ ପାର ହୋଇଛି । କବି ମଧ୍ୟ ଅନୁରୂପ ଭାବେ ଏଠାରେ ଲକ୍ଷ୍ମଣ କୁମାର ପରି ସମାଜର ଅଗଣିତ ଅସହାୟ ଜନତାଙ୍କୁ ନିଜ ପିଠିରେ ବସାଇ ସମସ୍ୟା ରୂପକ ରକ୍ତ ନଦୀକୁ ପାର

କରାଇବା ପାଇଁ ପ୍ରତିଶ୍ରୁତିବଦ୍ଧ । ନଦୀ ଆରପଟେ ଥିବା 'ମରୁଦ୍ୟାନ'ର ବର୍ଣ୍ଣନା ଯେଉଁଠାରେ ଶୋଷଣ କଷଣ ନଥିବ । ସେହି ମରୁଦ୍ୟାନ ହେଉଛି ଶୋଷଣ ବିହୀନ ସମାଜର ଏକ ନମୁନା । ଏହାର ପରିକଳ୍ପନା କବି ଲେଖନୀରେ ଅଭିନବ ରୀତିରେ ପ୍ରକାଶ ପାଇଛି । ସମଗ୍ର ଜଗତବାସୀଙ୍କୁ 'ଭାଇ' ବୋଲି ସମ୍ବୋଧନ କରି ସ୍ଥାନକାଳପାତ୍ର ନିର୍ବିଶେଷରେ ଏକଜୁଟ୍ ହୋଇ ସଂଗ୍ରାମ କରିବା ପାଇଁ କବି ଆହ୍ୱାନ ପ୍ରଦାନ କରିଛନ୍ତି । କବିଙ୍କର ଏ କବିତା ସଂପର୍କରେ ଆଲୋଚକ ପ୍ରଶାନ୍ତ କୁମାର ପ୍ରଧାନ ମତବ୍ୟକ୍ତ କରିବାକୁ ଯାଇ କହନ୍ତି –

"ନଦୀର ପ୍ରଖରତାକୁ ତାଙ୍କର ଖାତିର୍ ନାହିଁ । ପରଂପରା ଭାଂଗିଯିବାର ଭୟ ନାହିଁ । ସମାଜର ବଡ଼ ପଣ୍ଡା ମାନଙ୍କ ପ୍ରତି ଦୟାନାହିଁ । କବିଙ୍କ ମରୁଦ୍ୟାନ ଏକ ଶୋଷଣ ବିହୀନ ସମାଜ । ଏହା ତେଜୋଦୀପ୍ତ ମହୀୟାନ୍, 'ଅମୃତସ୍ୟ ପୁତ୍ରାଃ' ମାନଙ୍କର ଏକ ସୁସମୃଦ୍ଧ ପୃଥିବୀ । ହାତରେ ହାତ ମିଳାଇ ଦୁନିଆ ଯାକର ବୋଝ ଉତାରି ଦେବାକୁ, ଚାରିଆଡ଼େ ଜମିଯାଇଥିବା ଅଳିଆ ଆବର୍ଜ୍ଜନାକୁ ପହଁରେଇ ଦେବାକୁ ସେ ଆସୁଛନ୍ତି ।" (୨୩୫)

କବିଙ୍କ କବିତାରେ ସାଧାରଣ ଦଳିତ ମନୁଷ୍ୟ ପାଇଁ ଯେମିତି ସମବେଦନାର ସ୍ୱର ଅନୁରଣିତ ହୋଇଛି ଠିକ୍ ସେମିତି ଶୋଷକ ଗୋଷ୍ଠୀ ପ୍ରତି କବିଙ୍କର ପ୍ରତିଟି ରକ୍ତ କଣିକା ବିଦ୍ରୋହ କରି ଉଠିଛି । କବିଙ୍କ ବର୍ଣ୍ଣନାରେ ଏହା କିପରି ରୂପଲଭିଛି ଦେଖିବା ଆସନ୍ତୁ ।

* "ଆଦର୍ଶ ହଜେଇ ଦେଇଛୁ
ଆମର ସ୍ନେହ, ପ୍ରେମ, ଦୟା, କ୍ଷମା
ପ୍ରଣୟ, ପ୍ରତ୍ୟୟ ସବୁ କିଛି
ଘୁଙ୍ଗୁଡ଼ିଆ ପରଂପରା ଅଂଧାର ଭିତରେ
ଯେଉଁଠି ଶୋଷଣ, ଅତ୍ୟାଚାର ଓ ଯୌନ ବ୍ୟାଧି
ପୀଡ଼ିତ ଏକ ମାତାଲ୍ ସଭ୍ୟତା
ନିଲାମ୍ କରୁଥାଏ ପ୍ରତି ମୁହୂର୍ତ୍ତରେ
ଆମର ମାନବିକତାକୁ ।" (୨୩୬)

* "ଭୀରୁ, ସେମାନେ କ'ଣ ଜାଣନ୍ତି ଦେଶପ୍ରେମ
ମୂର୍ଖ ମାନଙ୍କ ହାତରେ ମୁଁ କେମିତି
ଟେକି ଦେଇ ପାରିବି ମୋର ବେଦ,

ମୋର ସୃଷ୍ଟି, ମୋ ରାଜ୍ୟର ଅହଂକାର ।" (୨୩୭)
"ଆ', ମୁକୁଳିଆ, ଅହଂକାରର ସିଂହାସନରୁ
ଆ, ମୁକୁଳିଆ, ଦୁର୍ବଳ ସ୍ୱପ୍ନର ଚୌହଦୀରୁ
ଆ, ମୁକୁଳିଆ, ସାଁ ବାଲୁଆର ଖୋଳରୁ

x x x

ଆ, ଆଗେଇ ଆ, ରାସ୍ତାକୁ
ଶବ୍ଦର ବୋମା ଧରି
ତୋର ହକ୍‌ଦାବୀ ମାଗିବାକୁ
ମାଗିବାକୁ କୋଟି କୋଟି ମଣିଷର ସ୍ୱପ୍ନ ।
କବିଝର୍କା କଡ଼ରେ ଗୋଲାପ ଦେଖିବାର
ବେଳ ଏ ନୁହେଁ ରେ
ଗୋଲାପ ଦେଖିବାର ବେଳ ଏ ନୁହେଁ ।" (୨୩୮)

କବି ବସନ୍ତଙ୍କ ପ୍ରଥମ କବିତାକୁ ଅନୁଧ୍ୟାନ କଲେ ଏହା ସୂଚିତ ହୁଏ ଯେ, ସାମସମୟିକ ସମାଜ ଜୀବନର ଚିତ୍ର କବି ଦୃଷ୍ଟିରେ ପ୍ରାଧାନ୍ୟ ଲଭିଛି । ଦେଶ ପ୍ରେମର ଖୋଳପା ପରିହିତ ଦେଶଦ୍ରୋହୀମାନଙ୍କ ବିରୋଧରେ କବି ତୀବ୍ର ପ୍ରତିବାଦ କରିଛନ୍ତି । ମଧ୍ୟବିତ୍ତ ସାଧାରଣ ଜନତାର ଦୁଃଖ, ଯନ୍ତ୍ରଣା ତାକୁ ସମସାମୟିକ ସାମାଜିକ ସ୍ଥିତି ବିରୋଧରେ ବିଦ୍ରୋହ କରିବା ପାଇଁ ପ୍ରବର୍ତ୍ତାଉଛି । ବର୍ତ୍ତମାନର ସମାଜ ଏପରି ଅବ୍ୟବସ୍ଥା ମଧ୍ୟ ଦେଇ ଗତି କରୁଛି ଯେ, ମଣିଷର ହୃଦୟରୁ ମାନବିକତା ରୂପକ ଦେବସୁଲଭଗୁଣ ଲୋପ ପାଇଗଲାଣି । ତାର ସ୍ଥାନ ନେଇଛି ଅମାନବିକତା । ସ୍ନେହ, ପ୍ରେମ, ଦୟା, କ୍ଷମା ସବୁ ଆଜି ମଣିଷ ପାଇଁ ଦୁଃସ୍ୱପ୍ନ ପାଲଟି ଯାଇଛି । ଶୋଷଣ, ଅତ୍ୟାଚାରରେ ଆଜିର ସମାଜ ମାତାଲ୍ । କବି ବସନ୍ତଙ୍କ କବିତା ଏହାର ନିଖୁଣ ଚିତ୍ର ଅଂକନ କରିବା ସହିତ ଜଣେ ଅଂଗୀକାରବଦ୍ଧସ୍ରଷ୍ଟା ଭାବରେ କବି ଏହାର ପୂର୍ଣ୍ଣଚ୍ଛେଦ ଟାଣିବା ପାଇଁ ଯଥାସମ୍ଭବ ପ୍ରୟାସ କରିଛନ୍ତି । ଏହି ପ୍ରସଂଗରେ କବିଙ୍କ ସଂପର୍କରେ ନିଜର ମତାମତ ପ୍ରଦାନ କରିବାକୁ ଯାଇ ଆଲୋଚକ ବାଞ୍ଛାନିଧି ଦାସ କହନ୍ତି –

"କବି ବସନ୍ତ ମୁଦୁଲୀ ମଧ୍ୟ ସଂଘବଦ୍ଧ ସଂଗ୍ରାମ ଓ ମାନବର ଶୋଷଣରୁ ମୁକ୍ତି ତାଙ୍କର ସମସ୍ତ କବିତାରେ ବିଶ୍ୱସ୍ତ ଭାବରେ କାମନା କରିଛନ୍ତି । ବରଂ ଶୋଷିତ ଲୋକଙ୍କର ନେତୃତ୍ୱ ନେବା ପାଇଁ ଓ ପ୍ରାଣ ବିନିମୟରେ ସାରଥୀର କଠିନ ଭୂମିକା ପାଳନ କରିବା ପାଇଁ ସେ ଥିଲେ ବଦ୍ଧପରିକର ।(୨୩୯) ତେଣୁ କବି ସାମସମୟିକ ସାହିତ୍ୟିକ ମାନଙ୍କୁ ସ୍ୱପ୍ନ, ସୌନ୍ଦର୍ଯ୍ୟ ବା ଝର୍କାକଡ଼ର ଗୋଲାପର ସୁନ୍ଦରତାରେ ମୋହିତ

ନ ହୋଇ ନିଛକ ବାସ୍ତବତାର ଚିତ୍ର ଅଂକନ କରିବାକୁ ପରାମର୍ଶ ଦେଇଛନ୍ତି । ସେଥିପାଇଁ କବିଙ୍କୁ ନିର୍ଦ୍ଦିଷ୍ଟ ଏକ ପରିଧି (ଅହଂକାରର ସିଂହାସନ, ଦୁର୍ବଳ ସ୍ୱପ୍ନର ପରିସୀମା) ମଧ୍ୟରୁ ମୁକୁଳି ଆସି ରାଜରାସ୍ତାରେ ଶବ୍‌ଦର ବୋମା ନିକ୍ଷେପ କରି ନିଜର ହକ୍ ଦାବି କରିବାକୁ ପଡ଼ିଛି । ବାରୁଦ ବୋମାଠାରୁ ଏ ଶବ୍‌ଦରବୋମା ବେଶ୍ ଶକ୍ତିଶାଳୀ । ଏହା ମଣିଷକୁ ଧ୍ୱଂସ ନକରି ପ୍ରକ୍ଷାନ୍ତରେ ଏହା ତାକୁ ସଚେତନ କରାଏ ନିଜର ଅଧିକାର ସଂପର୍କରେ । କଥାରେ ଅଛି "Pen is mighter than sword." ଅସୀର ବଳଠାରୁ ମସୀର ବଳ ବେଶୀ" । ସମାଜରେ ପରିବର୍ତ୍ତନ ଖଣ୍ଡାର ଧାର ଦ୍ୱାରା କରାଯାଇପାରିବ ନାହିଁ ବରଂ କଲମଗାର ଦ୍ୱାରା ଏହା ସମ୍ଭବ ।

ଉପରୋକ୍ତ କବିତା ଗୁଡ଼ିକରେ ସମାଜ ଜୀବନର ବହୁବିଧ ଅବ୍ୟବସ୍ଥାର ଚିତ୍ର ସାଂଗକୁ ଶୋଷକ ଗୋଷ୍ଠୀର ଚାରିତ୍ରିକ ଉଦ୍‌ଘାଟନ ଏବଂ ଏହା ବିରୋଧରେ ସମୂହ ପ୍ରତିବାଦ ପାଇଁ କବିଙ୍କର ଆହ୍ୱାନ ପରିଲକ୍ଷିତ ହୁଏ । କବିଙ୍କର କବିତାଗୁଡ଼ିକରୁ ପ୍ରତିପାଦିତ ହୁଏ ଯେ, କବି ପ୍ରଗତିବାଦୀ ଚିନ୍ତାଦର୍ଶର ଜଣେ ସାର୍ଥକ ରୂପକାର । କବି ବସନ୍ତ ଏଇ ମାଟିର କବି । ସମଗ୍ର ପୃଥିବୀରେ ସାମ୍ୟ, ମୈତ୍ରୀର ବାର୍ତ୍ତା ପ୍ରଚାର କରିବା ପାଇଁ (ମୁଁ ବସନ୍ତ ମୁଦୁଲି / ଓଡ଼ିଶାର କବି / ମୁଁ ଚରିଯିବି ସମଗ୍ର ପୃଥିବୀକୁ ମୋ କଲମରେ) ସଦା ଆଗୁସାର, ଏହା ତାଙ୍କ କବିତା ପ୍ରତିପାଦିତ କରେ । କବିଙ୍କର କାବ୍ୟିକ ପ୍ରତିଭା ସଂପର୍କରେ ଡଃ ତୀର୍ଥାନନ୍ଦ ମିଶ୍ରଙ୍କ ମନ୍ତବ୍ୟ ଉଲ୍ଲେଖଯୋଗ୍ୟ ।

"ନିମ୍ନବର୍ଗର ମଣିଷମାନଙ୍କ ଚାରଣ କବି ଭାବରେ କେବଳ ନୁହେଁ, ପ୍ରତ୍ୟେକ ବ୍ୟକ୍ତିର ଅନ୍ତର୍ବେଦନାର ଚିତ୍ରକୁ ସ୍ୱରାୟିତ କରିବାରେ ତାଙ୍କର ଦକ୍ଷତା ହିଁ ତାଙ୍କୁ ଆଧୁନିକ ଓଡ଼ିଆ କବିତାର ସ୍ୱର୍ଣ୍ଣ ଶିଖରରେ ଯେ ଅବସ୍ଥାପିତ କରିବ, ଏଥିରେ ସନ୍ଦେହର ଅବକାଶ ନାହିଁ ।" (୨୪୦) କବି ବସନ୍ତ ଆଜି ଆମ ଗହଣରେ ନାହାନ୍ତି ସତ, "ଅପେକ୍ଷା କର, ମୁଁ ଫେରୁଛି" କହି ଚାଲିଯାଇଛନ୍ତି କେଉଁ ଅଜଣା ରାଇଜକୁ । ଓଡ଼ିଆ କବିତା ତାଙ୍କଠାରୁ ଅନେକ କିଛି ଆଶା କରୁଥିବା ସମୟରେ କବିଙ୍କର ବିୟୋଗ ସାହିତ୍ୟ ଜଗତରେ ଏକ ଶୂନ୍ୟସ୍ଥାନ ସୃଷ୍ଟି କରିଛି ସତ, କିନ୍ତୁ କବିଙ୍କର କୃତି ଯେ କାଳ କାଳ ପାଇଁ ଅମର ଅକ୍ଷରରେ ଲିପିବଦ୍ଧ ହୋଇ ସାରିଛି, ଏହାକୁ ଅସ୍ୱୀକାର କରାଯାଇନପାରେ ।

## ଅନ୍ୟାନ୍ୟ ପ୍ରଗତିବାଦୀ କବି :

### କବି ବୈଷ୍ଣବ ଚରଣ ସାମଲ

ସାମସମୟିକ କାଳରେ ଏହି ଚିନ୍ତାଧାରାକୁ ନେଇ ପ୍ରାବନ୍ଧିକ ବୈଷ୍ଣବ ଚରଣ ସାମଲ ମଧ୍ୟ ବହୁ କବିତା ରଚନା କରିଥିଲେ । ସେମାନଙ୍କ ସଂପର୍କରେ କିଞ୍ଚିତ

ଆଲୋଚନା ନକଲେ ମୋର ଏ ଆଲୋଚନାଟି ଅସଂପୂର୍ଣ୍ଣ ରହିଯିବ । ଓଡ଼ିଆ ସାହିତ୍ୟରେ ବିଶେଷ କରିଜଣେ ସୁନାମଧନ୍ୟ ପ୍ରାବନ୍ଧିକ ଭାବରେ ଶ୍ରୀଯୁକ୍ତ ସାମଲ ବେଶ୍ ଜଣାଶୁଣା । ପ୍ରଗତିବାଦୀ ଚିନ୍ତା ଚେତନା ସମ୍ବଳିତ ବହୁ ପ୍ରବଂଧ ତାଙ୍କର ବିଭିନ୍ନ ପତ୍ରପତ୍ରିକାର ପୃଷ୍ଠା ମଣ୍ଡନ କରିଛି । କିନ୍ତୁ ଯେଉଁ ସମୟରେ ମାର୍କସ୍‌ବାଦୀ ଚିନ୍ତାଧାରା ସମଗ୍ର ଓଡ଼ିଶାର ସାହିତ୍ୟିକ ପାଣିପାଗକୁ ବଦଳାଇ ଦେଇଛି ପ୍ରାବନ୍ଧିକ ସାମଲ୍ ମଧ୍ୟ ସେଥିରୁ ନିଜକୁ ମୁକ୍ତ ରଖିପାରି ନାହାନ୍ତି । ସାମ୍ୟବାଦୀ କବିମାନଙ୍କ ସ୍ୱର ସହିତ ସେ ମଧ୍ୟ ସ୍ୱର ମିଳାଇଛନ୍ତି । କବିତା କିପରି ମଣିଷର ହୃଦୟକୁ ଛୁଇଁବ ଓ ତା'ର ହୃଦୟକୁ ଜୟ କରିବ ସେଭଳି ଆତ୍ମ ପ୍ରତ୍ୟୟ କବି ସାମଲ୍‌ଙ୍କର କବିତାରେ ରହିଛି । ସେଥିପାଇଁ ସହଜ ସରଳ ଭାଷା ବିନ୍ୟାସ ମାଧ୍ୟମରେ କବିତାଙ୍କର ଭାବକୁ ବ୍ୟକ୍ତ କରୁଛନ୍ତି । କବିଙ୍କ ଭାଷାରେ :-

"ତୋ ଦେହ ସାରା ତ ବିଷର ଜୀବାଣୁ ଚରିଗଲାଣି ଯେ
ଜଣା ଅଜଣା ରୋଗ ବଇରାଗ ମାଡ଼ି ବସୁଛି
ତୋର ଆଉ ତାକତ୍ କାହିଁ ଯେ ତୁ ଉଠି ବସିବୁ ।"(୨୪୧)

କବିତାରେ ଭାରତବର୍ଷର ଶୋଚନୀୟ ଅବସ୍ଥା କବି ହୃଦୟରେ ଗଭୀର ରେଖାପାତ କରିଛି । କଂସ, ରାବଣ, ଦୁର୍ଯ୍ୟୋଧନ ରୂପୀ ଅତ୍ୟାଚାରୀ ମାନଙ୍କର ଅତ୍ୟାଚାରରେ ଭାରତମାତା ଆଜି ରୋଗଗ୍ରସ୍ତା । ତା' ପାଖରେ ଅଣ୍ଟା ସଳଖି ଠିଆ ହେବାର ସାମର୍ଥ୍ୟ ନାହିଁ । ସମାଜ ପ୍ରତି ସେ କେତେ ମାତ୍ରାରେ ଅଙ୍ଗୀକାରବଦ୍ଧ ତାହା ପ୍ରମାଣିତ କରିବା ପାଇଁ କବି ସାଂପ୍ରତିକ ସମାଜର ଚିତ୍ରକୁ ଏଠାରେ ଉପସ୍ଥାପିତ କରିଛନ୍ତି । ଶେଷରେ ଏହାର ପରିସମାପ୍ତି ପାଇଁ ଭାରତମାତାକୁ ଦେବୀ ଦୁର୍ଗା ରୂପ ଧାରଣ କରି ଅନ୍ୟାୟ ଅତ୍ୟାଚାର କରୁଥିବା ମହିଷାସୁରମାନଙ୍କୁ ବଧ କରି ଏହାର ପରିସମାପ୍ତି ଘଟାଇବା ପାଇଁ କବି ଆହ୍ୱାନ କରିଛନ୍ତି ।

ଗଣ ମୁକ୍ତିର ମହାପାର୍ବଣରେ ସମଗ୍ର ଦେଶବାସୀ ମସ୍‌ଗୁଲ । ସର୍ବତ୍ର ବିପ୍ଳବୀ ଚିନ୍ତାଧାରାକୁ ସ୍ୱାଗତ କରାଯିବା ସହିତ ଏହାକୁ ଆଗେଇ ନେବାର ପ୍ରଚେଷ୍ଟାରେ ଓଡ଼ିଶାର କବିମାନେ ସଂକଳ୍ପବଦ୍ଧ । ସତେ ଯେମିତି ଏମାନଙ୍କର ମିଳିତ ପ୍ରଚେଷ୍ଟାରେ ଶୋଷିତା ନିର୍ଯ୍ୟାତିତା ଉତ୍କଳୀ ମୁକ୍ତିର ବାଟ ଖୋଜିପାଇବ । ଯୁଗ ଯୁଗର ବଂଧନରୁ ମଣିଷ ସମାଜ ମଧ୍ୟ ମୁକ୍ତି ପାଇବ । ସମଗ୍ର ଗଗନ ପବନ ମୁଖରିତ ବିପ୍ଳବର ମହାମନ୍ତ୍ରରେ । ମୁକ୍ତିର ଏହି ମହାମନ୍ତ୍ର କବି ସାମଲ୍‌ଙ୍କ ଲେଖନୀରେ କିପରି ରୂପ ପାଇଛି ଦେଖିବା କଥା :-

"ଡାକଇ ମଳୟ ଏଥି ମୌସୁମୀର ପ୍ରଳୟ ଆହବେ
ଡାକଇ ଅରଣ୍ୟ ଆଉ ସମତଳ ନଦୀର କିନାରା

ପର୍ବତର ଉପତ୍ୟକା ପାହାଡ଼ର ଗୁହା ଓ କନ୍ଦରା
ସବୁଠିଁ ଗୋଟାଏ ଧ୍ୱନି; ମୁକ୍ତି ମୁକ୍ତି ମଣିଷର ମୁକ୍ତି
ମୁକ୍ତି ଆଜି ଶୋଷଣରୁ; ପୀଡ଼ନରୁ ଜ୍ୱଳନ ଭିତରୁ
ମୁକ୍ତି ଆଜି ମଣିଷର ବ୍ୟକ୍ତିବାଦୀ ସମାଜ କବଳୁ
ମୌସୁମୀ ଆଣିଛି ଆଜି ଏଇ ଧ୍ୱନି ମଳୟ ସାଥିରେ
ସବୁଠିଁ ଜଣାଏ ଆଜି ଏଇ ଧ୍ୱନି ବସନ୍ତ ବିଭାଷା ।"(୨୪୨)

କବି ଉପଲବ୍ଧ କରିଛନ୍ତି ସମଗ୍ର ସମାଜ ଉପରେ ଯେଉଁ ଶୋଷଣର କଳାବାଦଲ ଛାଇ ଯାଇଛି ତାହା ବିପ୍ଳବ ରୂପକ ନୂତନ ସୂର୍ଯ୍ୟର ଆଗମନରେ ନିଶ୍ଚେ ଦିନେ ନା ଦିନେ ଦୂରେଇଯିବ । ଏଇ ସୂର୍ଯ୍ୟର ଆଲୋକ ପୃଥିବୀ ବକ୍ଷରୁ ସକଳ ପ୍ରକାର ଶୋଷଣରୂପୀ ଅଂଧକାରର ପରିସମାପ୍ତି ଘଟାଇ ନୂତନ ଆଲୋକ ପରଷି ଦେବ । କାହିଁକିନା ଏ ପୃଥିବୀ ହେଉଛି ସତ୍ୟ-ଶିବ-ସୁନ୍ଦର । ମନୁଷ୍ୟ ହେଉଛି ଅମୃତର ସନ୍ତାନ । ଯଦି ଏଇ ସୁନ୍ଦର ପୃଥିବୀକୁ ଅତ୍ୟାଚାର ରୂପୀ ରାହୁ ଗ୍ରାସ କରିବ ତା'ହେଲେ ସେ ଅଚିରେ ନଷ୍ଟ ହୋଇଯିବ । ସମଗ୍ର ଜଗତ ନଷ୍ଟ ହୋଇଗଲେ ମଣିଷ ସମାଜ ତିଷ୍ଠି ରହିବ ନାହିଁ । ତେଣୁ ଏ ପୃଥିବୀରୁ ଅନ୍ୟାୟ ଅତ୍ୟାଚାରର ପରିସମାପ୍ତି ଘଟାଇ ସ୍ୱର୍ଗ ସମ କରିବା ପାଇଁ କବି ବୈଷ୍ଣବ ପରିକଳ୍ପନା କରନ୍ତି :-

"ଏଥର ହାତକୁ ଖୋଲି ବିସ୍ତାରିତ କରିଦିଅ
ଅମୃତରେ ଭରିଦିଅ ମୁଠାକୁ ତମର
ତା'ପରେ ଦେଖିନିଅ ବୈଶ୍ୱାନର ଆଖି ଖୋଲି
ଝରୁଅଛି ଅମୃତ ସ୍ୱର୍ଗରୁ
କରିବାକୁ ଏଇ ମର୍ତ୍ତ୍ୟ ସ୍ୱର୍ଗରୁ ମହତ ।"(୨୪୩)

କବି ଶ୍ରୀଯୁକ୍ତ ସାମଲ ମଣିଷ ସମାଜର ବ୍ୟର୍ଥତା ଯନ୍ତଣା ଓ ଅସହାୟତା ଦେଖି ମର୍ମାହତ ହୋଇଛନ୍ତି । ଜଣେ ଯଥାର୍ଥ ସାମ୍ୟବାଦୀ ସ୍ରଷ୍ଟାର ଦାୟିତ୍ୱ ନିଭାଇବାକୁ ଯାଇ ସେ ଏସବୁର ପରିସମାପ୍ତି ପାଇଁ ଦୃଢ଼ ଆଶାପୋଷଣ କରିଛନ୍ତି ।

## କବି କୁଳମଣି ଜେନା

କବି କୁଳମଣି ଜେନାଙ୍କର କବିତାରେ ମଧ୍ୟ ଆମେ ପାଉ ବିପ୍ଳବର ଯଜ୍ଞ ବେଦୀରେ ଜୀବନ ଉତ୍ସର୍ଗ କରିବାର ପ୍ରତିଜ୍ଞା । ତରୁଣ କବି ନିଜ ଅନ୍ତରର ଆବେଦନକୁ ଉଲ୍ଲେଖ କରନ୍ତି ଏହିପରି:-

"ମୁଁ ଯେ ପ୍ରତିରୋଧକାରୀ ସାଥୀ
କୋଟି ଜନତାର ମୁକ୍ତି ପାଇଁ କି

ଦେଇପାରେ ବୁକୁ ପାତି
ଦୁର୍ଭାଗା ଦେଶେ ମୁଷ୍ଟିମେୟର
ନାରକୀୟ ବଜ୍ଜାତି
ଦେଖି ପାହି ଆସେ କାଳରାତି
ମୁଁ ଯେ ପ୍ରତିରୋଧକାରୀ ସାଥୀ ।(୨୪୪)

କବି କୁଳମଣିଙ୍କ କବିତାର ବିଶେଷତ୍ୱ ହେଉଛି ସେ ଶୋଷକ ଗୋଷ୍ଠୀ ବିରୋଧରେ ସିଧାସଳଖ ବିପ୍ଳବର ଆବାହନ କରନ୍ତି । ଉଗ୍ର ବୈପ୍ଳବିକ ଶବ୍ଦର ପ୍ରୟୋଗ କରି ସଂଗ୍ରାମୀ ମାନଙ୍କୁ ଆହ୍ୱାନ ଦିଅନ୍ତି । ଚଳନ୍ତି ସମୟର ନକ୍ସାଲ ଆନ୍ଦୋଳନ ଦ୍ୱାରା ମଧ୍ୟ କବି ବହୁ ମାତ୍ରାରେ ପ୍ରଭାବିତ ହୋଇଛନ୍ତି । ଯେଉଁମାନେ ଏ ସମାଜରେ ଶୋଷିତ ହେଉଛନ୍ତି ସେମାନଙ୍କୁ ଏହି ଆନ୍ଦୋଳନର ଉଷ୍ମତାକୁ ଅନୁଭବ କରିବା ପାଇଁ ଆହ୍ୱାନ ଦେବା ସଂଗେସଂଗେ ମୁକ୍ତି ସଂଗ୍ରାମରେ ଯୋଗ ଦେବାକୁ କବି ଆବାହନ କରୁଛନ୍ତି ।

"ଆନ୍ଧ୍ର ସୀମାରେ ଗର୍ଜେ କମାଣ
ବଂଗ ବାହିନୀ ଅଜେୟ ନିଶାଣ
ସାରା ଭାରତରେ ଦିଲ୍ଲୀର ଚୂଳେ
ଜଳେ ବିଦ୍ରୋହର ନିଆଁ
ଡରିବାର ନୁହେଁ କବିର କଲମ
ଲଗାଇ ଦେବି ମୁଁ ଦୁନିଆ ବୁକୁରେ
ରଣ ଉନ୍ମାଦ ଚିଆଁ
ମୁଁ ଯେ ଅଗ୍ନି ମଶାଲ ଧୁଆଁ ।(୨୪୫)

ଏହି କବିଙ୍କ କବିତାରୁ ପ୍ରତିପାଦିତ ହୁଏ ଯେ ତାଙ୍କର କବିତା ଗୁଡ଼ିକ ବିପ୍ଳବୀ ସାହିତ୍ୟକୁ ବହୁଦିଗରୁ ପରିପୁଷ୍ଟ କରିବା ସହିତ ଜନସାଧାରଣଙ୍କ ହୃଦୟରେ ବିପ୍ଳବର ଅଗ୍ନି ମଶାଲ୍ ଜାଳି ଦେବାକୁ ସକ୍ଷମ ହୋଇ ପାରିଛି । କବି ଶ୍ରୀ ଜେନା ଗତ ଚାରି ଦଶନ୍ଧି ଧରି ଓଡ଼ିଆ ପ୍ରଗତିବାଦୀ କବିତାରେ ବହୁ ଉଚ୍ଚାଙ୍ଗ କବିତାମାନ ସୃଷ୍ଟି କରିଛନ୍ତି । ତାଙ୍କର କବିତା ପୁସ୍ତକ ଗୁଡ଼ିକ ସାମଗ୍ରିକ ଅଙ୍ଗିକାର ବଦ୍ଧତାର ପ୍ରମାଣ ରଖେ । ସାମ୍ପ୍ରତିକ ସମୟରେ ମଧ୍ୟ ତାଙ୍କର ଲେଖନୀ ସେହି ଧାରାରୁ କୌଣସି ପକ୍ଷରୁ ବିଚ୍ୟୁତ ହୋଇନାହିଁ ।

## କବି କେ. ପଦ୍ମଦାଶ

ସମସାମୟିକ କାଳର କବି କେ, ପଦ୍ମଦାଶଙ୍କର କାବ୍ୟ ଚେତନା ଏକଦା ମାର୍କସ୍‌ବାଦୀ ଚିନ୍ତାଧାରାକୁ ନେଇ ଗତିଶୀଳ ହୋଇଥିଲା । ସତୁରୀ ଦଶକର ଏହି ତରୁଣ ଯୁବ କବି ଯୁବ ଲେଖକ ସମ୍ମେଳନର ଜଣେ ସକ୍ରିୟ ସଦସ୍ୟ ଥିଲେ। କବି ଥିଲେ

ଆମରଣ ସଂଗ୍ରାମୀ । ସମାଜର ପ୍ରତିଟି ସ୍ତରରୁ ଶୋଷଣର ବିନାଶ ପାଇଁ କବି ପ୍ରୟାସ କରିଥିଲେ । ପୁଂଜିବାଦୀ ସମାଜ ବ୍ୟବସ୍ଥାର ବୀଭତ୍ସରୂପ କବିଙ୍କ କବିତାରେ ଉତ୍କୀର୍ଣ୍ଣ ହେଉଥିଲା । ପୁଞ୍ଜିବାଦର ଅକ୍ଟୋପାଶ୍ କବଳରୁ ମୁକ୍ତି ପାଇବା ପାଇଁ ମେହେନତୀ ମଣିଷ ରକ୍ତରେ ହୋରି ଖେଳୁଛି । ନିପୀଡ଼ିତ ମଣିଷମାନଙ୍କୁ ଆହ୍ୱାନ ଦେବା ପାଇଁ କବି ଉଚ୍ଚାରଣ କରିଥିଲେ –

"ଯେ କରିଛି ମଣିଷକୁ ଶୋଷିତ କଙ୍କାଳ
ଯେ ଦେଇଛି ମେହେନତୀ ମଣିଷର କଣ୍ଠେ
ଯନ୍ତ୍ରଣାର ସ୍ୱର
ଭାଙ୍ଗିଛି ଯେ ରୁଟିର ସଂସାର
ତା'ପାଇଁ ସେ ଦିଏ ଆଜି
ଇତିହାସେ ମୃତ୍ୟୁର ସ୍ୱାକ୍ଷର
କରିବାକୁ ହେବ ଆଜି
ମୁକ୍ତି ପାଇଁ ରକ୍ତେ ହୋରି ଖେଳ ।" (୨୪୬)
('ପଥଛାଡ଼'- କେ, ପଦ୍ମଦାଶ)

ପୁଞ୍ଜିବାଦ ଦ୍ୱାରା କବଳିତ ଜୀବନର ବିଷର୍ଣ୍ଣ ଓ କଳଙ୍କିତ ଚିତ୍ର ସାଙ୍ଗକୁ ବୈପ୍ଳବିକ ଆଶାବାଦ କବିଙ୍କ କାବ୍ୟିକ ଚିନ୍ତାଧାରାର ସ୍ୱତନ୍ତ୍ର ପରିଚୟ ବହନ କରେ । ଲଙ୍ଗ ମାର୍ଚ୍ଚର Vol-III ରେ ପ୍ରକାଶିତ "The Bloody Pamphlet" ର ନିମ୍ନୋକ୍ତ ପଂକ୍ତି ଏହାର ଜ୍ୱଳନ୍ତ ପ୍ରମାଣ ।

"The kite of blood flies
By lond clappings.
Broken are the big Pigeon - holes
of all selfish interests
Come on, ride on the crest
of numberless revolutionary waves. (୨୪୭)
('Long March' - Vol - III - May - 1973, P. - 20)

ସତ୍ୟ ଆଉ ସାମ୍ୟତାର ବାର୍ତ୍ତା ଶୁଣାଉଥିବା କବି କେ. ପଦ୍ମଦାଶ ସମାଜ ବୁକୁରେ ଶୋଷଣର ବିଲୋପ ଘଟାଇ ମୁକ୍ତି ଓ ମୈତ୍ରୀର ଆବାହନ କରିଥିଲେ । ଏ ଦୃଷ୍ଟିରୁ କବିଙ୍କର କବିତାର ବକ୍ତବ୍ୟ ବଶ୍ ତୀର୍ଯ୍ୟକ୍ ଓ ଶାଣିତ । କେ ପଦ୍ମ ଦାଶ ଥିଲେ ୧୯୭୦ ପରବର୍ତ୍ତୀ ସମୟର କବି । ସେହି ସମୟରେ ବାଣପୁର/ ବାଲୁଗାଁରେ ସଂଘଠିତ ହୋଇଥିଲା ବେଳା/ ଆଭା ଗୋଷ୍ଠୀର ପ୍ରଗତିବାଦୀ କାବ୍ୟ ଆନ୍ଦୋଳନ । ଅବଧୂତ

ଗୋଷ୍ଠୀ ମାଧ୍ୟମରେ ସେହି ସମୟରେ ଓଡ଼ିଶାରେ ଏକ ସାମ୍ୟବାଦୀ କାବ୍ୟ ଧାରାର ପୁର୍ନଉତ୍‌ଥାନ ହୋଇଥିଲା । ଏଇ ଧାରାର ଅନ୍ୟତମ ପ୍ରଭାବଶାଳୀ କବି ଥିଲେ କେ, ପଦ୍ମ ଦାଶ । ତାଂକର ଶତାଧିକ କବିତା ଏବେ ଦୁର୍ଷ୍ପାପ୍ୟ । ତାଂକ ରଚିତ କାବ୍ୟସ୍ୱରରେ ଥିଲା ସମାଜକୁ ସଂମ୍ପୂର୍ଣ୍ଣଭାବେ ବଦଳାଇବାର ଆହ୍ୱାନ । ସେ ଥିଲେ ଶୋଷଣ ସାହୀ ବିଚାରଧାରାର ପୂର୍ଣ୍ଣ ବିରୋଧୀ । ଅଗୀକାରବଦ୍ଧତା ଥିଲା ତାଂକ କାବ୍ୟସ୍ୱରର ଅର୍ନ୍ତନିହୀତ ଭାବସ୍ରୋତ ।

## କବି କୁମାର ହସନ୍ :

ସମସମାୟିକ କାଳର ଜଣେ ସ୍ୱନାମଧନ୍ୟ ପ୍ରଗତିବାଦୀ କବି ହେଉଛନ୍ତି କୁମାର ହସନ୍ । ଜୀବନ ସଂଗ୍ରାମରେ ବହୁ ଘାତ ପ୍ରତିଘାତକୁ ସାମ୍‌ନା କରିଥିବା କବି ଆଜି ସାହିତ୍ୟ କ୍ଷେତ୍ରରେ ଜଣେ ପ୍ରତିଷ୍ଠିତ ବ୍ୟକ୍ତିତ୍ୱ । ପିଲାବେଳୁ ଦାରିଦ୍ର୍ୟସହ ସଂଗ୍ରାମରତ ଏଇ କବିଜଣଙ୍କ କାବ୍ୟଧାରାରେ ବେଶ୍ ଉଦାର ଓ ଗମ୍ଭୀର । ପ୍ରକାଶିତ ବହୁ କାବ୍ୟ ସଂକଳନ ମାଧ୍ୟମରେ କବି ନ୍ୟାୟପୂର୍ଣ୍ଣ ସମାଜବାଦୀ ସମାଜ ବ୍ୟବସ୍ଥା ସୃଷ୍ଟିରେ ପ୍ରୟାସୀ । ସଂଗ୍ରାମୀ ଆହ୍ୱାନ ମଧ୍ୟରେ ଉପଲବ୍ଧି କରନ୍ତି ଗଭୀର ଆଶା ଓ ଆତ୍ମବିଶ୍ୱାସ । ଆତ୍ମ ପ୍ରତ୍ୟୟଭରା ଶବ୍ଦରେ ଉଚ୍ଚାରିତ ହୁଏ କବିଙ୍କର ଅନେକ କବିତା । ଯଥା–

"ଏସିଡ୍ ରେନ୍‌ର ଦେଶରୁ ଆସିଛି ମୁଁ
ପବନରେ ଉଡୁଥିବା ଘୃଣାର ବାରୁଦ ଭେଳାରେ ମୋରଘର
ଆଗ୍ନେୟଗିରିର ଗହ୍ୱରରେ ଫୁଲ ଫୁଟାଇ ଆସିଚି ମୁଁ
ନନ୍ଦନ ବନରେ ଅଗ୍ନି ଜାଳିବାକୁ ଆସିଚି
ଭାତ ରୁଟି ଓ ଛାଇ ଖଣ୍ଡେ ଖୋଜିବାକୁ ଆସିଛି ।
ଅଥବା
ନିଆଁ ପାଲଟି ଯାଇଥିବା ଲୁହର ଲୋରୀ ଖୋଜି ଆସିଛି ।" (୨୪୮)

(ମୁଁ ତୁମ ସହରକୁ ଆସିଛି)

ସାମାଜିକ ବାସ୍ତବତା ଉପରେ ପର୍ଯ୍ୟବେସିତ କୁମାର ହସନ୍‌ଙ୍କ କବିତା । ସମକାଳୀନ ସମାଜର ଆବଶ୍ୟକତାକୁ କଳାତ୍ମକ ରୀତିରେ ପାଠକ ପାଖରେ ପହଞ୍ଚାଇବା ଏହି ଅଙ୍ଗୀକାର ବଦ୍ଧ କବିଙ୍କର କାବ୍ୟଧର୍ମ । ସ୍ୱାଧୀନତାର ଦୀର୍ଘ ବର୍ଷ ଅତିକ୍ରାନ୍ତ ହୋଇଥିଲେ ମଧ୍ୟ ଜନସାଧାରଣଙ୍କର ମୌଳିକ ଆବଶ୍ୟକତା ଖାଦ୍ୟ, ବସ୍ତ୍ର, ବାସଗୃହ, ଶିକ୍ଷା, ସ୍ୱାସ୍ଥ୍ୟ ଆଜି ମଧ୍ୟ ଅପହଞ୍ଚ । ଶୋଷଣ, ତୋଷଣ ତଥା ଭେଦଭାବ, ସାମାଜିକ ଜୀବନ ଦର୍ଶନ କହିଲେ ଅତ୍ୟୁକ୍ତି ହେବ ନାହିଁ । ତେଣୁ କବି ନିଜ ମାଟିର ଦୁଃଖ ବେଦନାକୁ ଅନୁଭବ କରିବା ପାଇଁ ଆହ୍ୱାନ ଦିଅନ୍ତି –

"ଆସ ଦାରିଦ୍ର୍ୟ ଦେଖିବାର ଅଛି ତ
ଓଡ଼ିଶାକୁ ଆସ
ଆମର କଳାହାଣ୍ଡି ଅଛି, କୋରାପୁଟ ଅଛି
ଭୋକରେ ମରୁଥିବା ଆଦିବାସୀ
କଙ୍କାଳ ସାର ଶରୀର ଅଛି
ସୋମାଲିଆ ଯାଇ ପାରୁନ
ତ' ଓଡ଼ିଶାକୁ ଆସ ।"(୨୪୯) (ମ୍ୟୁଜିକ୍ ଚେୟାର)

କ୍ଷମତାର ଦ୍ୱନ୍ଦ୍ୱ ଭିତରେ ସାଧାରଣ ଜନତାର ଆଶା ଆକାଂକ୍ଷା ପେଶି ହୋଇ ଯାଉଛି । ସରକାରୀ କଳ ଉପରୁ ଜନସାଧାରଣଙ୍କର ଆସ୍ଥା ବିଶ୍ୱାସ ତୁଟି ଯାଉଛି । ଗଣତନ୍ତ୍ରର ଅରାଜକତା ମଧ୍ୟରୁ ସରଳ ନିରୀହ ଆଦିବାସୀ ମଧ୍ୟ ମୁକ୍ତ ନୁହଁନ୍ତି । ପ୍ରତି କ୍ଷେତ୍ରରେ କୁମୁଟୀ ମହାଜନ ଦ୍ୱାରା ଲୁଣ୍ଠିତ ହେଉଥିବା ଆଦିବାସୀର ଆସ୍ଥା ନାହିଁ ସରକାର ବ୍ୟବସ୍ଥା ପ୍ରତି । ବରଂ ଆସ୍ଥା ଅଛି ଏମ୍.ସି.ସି.ର ଦଳପତି ଆନ୍ନା ପ୍ରତି ।

କବି ପ୍ରଶାନ୍ତ ମିଶ୍ରଙ୍କ 'ଆନ୍ନା ଆସିଚି' କବିତା ପରି କୁମାର ହାସନ୍‌ଙ୍କ ଆନ୍ନା ଆସିଚି କବିତାରେ ବର୍ଣ୍ଣିତ ଅଛି –

"ଲାଲ ଘୋଡ଼ା ଝପଟାଇ/ଆସେ ନାହିଁ ଆନ୍ନା
ହାତରେ ନଥାଏ / ବଂଧୁକ, ଧନୁ ତୀର
ଆନ୍ନା ହାତରେ ମଣିଷ ଜାତିକୁ
ମଣିଷ ପରି ଭଲ ପାଇବାର ହତିଆର ।"

କବିତାରେ ଜନସଧାରଣଙ୍କର ସର୍ବନିମ୍ନ ଆବଶ୍ୟକତାକୁ ପ୍ରାଧାନ୍ୟ ଦେଉଥିବା ଏବଂ ବୁର୍ଜୁଆ ବିଳାସ ମଧ୍ୟରେ ବୁଡ଼ି ରହିଥିବା ବ୍ୟକ୍ତି ବିଶେଷଙ୍କ ମୁଖା ଉନ୍ମୋଚନ କରାଇବା କବି କୁମାର ହାସନ୍‌କୁ ଅଶୀ ପରବର୍ତ୍ତୀ ଓଡ଼ିଆ କବିତା କ୍ଷେତ୍ରରେ ଏକ ସ୍ୱତନ୍ତ୍ର ଆସନରେ ଆସୀନ କରାଇଛି ।

## କବି ଡଃ ଭରତ ବେହେରା

୧୯୭୦ ପରବର୍ତ୍ତୀ ଓଡ଼ିଆ କବିତା କ୍ଷେତ୍ରରେ କବି ଭରତ ବେହେରା ଏକ ସ୍ୱତନ୍ତ୍ର ସ୍ଥାନର ଅଧିକାରୀ । ବିଶେଷକରି କବିତା କ୍ଷେତ୍ରରେ ଶୋଷଣର ନିଛକଚିତ୍ର ତାଙ୍କୁ ପ୍ରଗତିଶୀଳ କବିର ମର୍ଯ୍ୟାଦା ପ୍ରଦାନ କରିଛି । ରାଜନୀତିଠାରୁ ଅର୍ଥନୀତି ପର୍ଯ୍ୟନ୍ତ ପ୍ରତ୍ୟେକ କ୍ଷେତ୍ରରେ ଶୋଷଣ ହିଁ ରାଜପଣ କରୁଛି । ଜନତାର ରାଜ୍ୟରେ 'ଜନତା' ହେଉଛି ଗୌଣ । ସମାଜ, ସମୟ ଓ ଜୀବନ ସବୁ ଧନୀକ ଗୋଷ୍ଠୀର ହାତମୁଠାରେ । ସାଧାରଣ ସରଳ ଜନତାଙ୍କୁ ଏପରି ବଂଧନୀରେ ବାଧି ଦିଆଯାଉଛି ଯେ, ସେଥିରୁ

ମୁକୁଳିବାର ଶକ୍ତି ତା' ପାଖରେ ନାହିଁ । ଜାତି, ଧର୍ମ, ବର୍ଣ୍ଣର ଏପରି ବିଭେଦ ସୃଷ୍ଟି କରାଯାଉଛି ଯେ, ଯଦ୍ଦ୍ୱାରା ଗଣଚେତନା ଜଡ଼, ପଙ୍ଗୁ, ତଥା ଅଥର୍ବ ପାଲଟି ଯାଉଛି । ଏହି ସତ୍ୟ ହିଁ ପ୍ରତିଧ୍ୱନିତ ହୋଇଛି ବିପ୍ଳବୀ କବିଙ୍କର 'ଉଲଙ୍ଗ ଶୈଶବ' କବିତାରେ । ଯଥା-

"ବାଂଧି ଦିଆଯାଏ ଗୋଡ଼ରେ ଗଳାରେ
କଟିରେ କମରରେ ଭିନ୍ନ ଭିନ୍ନ ଧାତବ ଭୂଷଣ ।
ଯୋଡ଼ି ଦିଆଯାଏ ମଣିଷକୁ ବିଭାଜିତ କରୁଥିବା
ଜାତି, ଧର୍ମ, ବର୍ଣ୍ଣ ବିଭେଦକ । (୨୫୦) (ଉଲଙ୍ଗ ଶୈଶବ)

ପ୍ରଗତିବାଦୀ କବିତା ସୌଖୀନ ମାନସିକ ବିଳାସରୁ ଉଦ୍‌ଭବ ନୁହେଁ । ଅଗଣିତ ଦୁଃଖ ଦୁର୍ଦ୍ଦଶାଗ୍ରସ୍ତ ମଣିଷ ପ୍ରତି ଗଭୀର ସମ୍ବେଦନା ହିଁ ଏ ଧରଣର କବିତାର ମୂଳ ଉଦ୍ଦେଶ୍ୟ । କବିଙ୍କ ମତରେ ଅଭାବୀ ମଣିଷର ଦୁଃଖ ଯନ୍ତ୍ରଣାକୁ ବ୍ୟକ୍ତ କରିବାକୁ ହେଲେ ଶବ୍ଦର ବି ଅଭାବ ପଡ଼ିବ । ତେଣୁ ବିପ୍ଳବୀ କବି ବଜ୍ର କଣ୍ଠରେ ଘୋଷଣା କରନ୍ତି –

"ଖୋଲା ହୃଦୟରେ
ଉଚ୍ଚାରଣ କରିବ' ତ କର
ଦୁଃଖ, ଦାଉ, ନର୍କ, ଦ୍ରୋହ ଦ୍ୱନ୍ଦ୍ୱ
ତଥାପି ନିଅଣ୍ଟ ହେବ ଶବ୍ଦ ବି ଅକ୍ଷର । (୨୫୧)(ବିଦୀର୍ଣ୍ଣ ବେହେଲା)

ଶୋଷଣ ଓ ପୁଂଜିବାଦୀ ସମାଜ ବ୍ୟବସ୍ଥା ବିରୋଧରେ କବି ଭରତ ସ୍ୱର ଉତ୍ତୋଳନ କରିବା ସହିତ ଶୋଷିତ ଜନତାଙ୍କୁ ସଚେତନ କରାଇବାକୁ ଯାଇ କହନ୍ତି –

"ଦୁଷ୍ଟ ହାତ ମାନଙ୍କର କମ୍ ଶକ୍ତି କି ?
ହାତ ମୁଠାରେ ରଖିଥାନ୍ତି ବେଶ୍ କିଛି କାଳ
ଅବଶିଷ୍ଟ ମଣିଷର ଭାଗ୍ୟ

ଏପଟ ସେପଟ କରିଥାନ୍ତି
ଗତି, ପ୍ରଗତି, ଅଗ୍ରଗତିକୁ
ବେଗ ଆବେଗ ଅନୁରାଗକୁ
କପଟ ଆକାଂକ୍ଷାରେ । (୨୫୨)(ଶବ୍ଦ ସଂଘର୍ଷ)

ସାଧାରଣ ମଣିଷର ଭାଗ୍ୟଡ଼ୋରି ରହିଥାଏ ପୁଂଜିପତିର ହାତରେ । ଉପାର୍ଜନ କରୁଥିଲେ ମଧ୍ୟ ତା'ର ହକ୍‌ଦାର ହୁଏ ପୁଂଜିପତି । ଶ୍ରେଣୀ ବିଭକ୍ତ ସମାଜ ବ୍ୟବସ୍ଥାରେ

ଦାରିଦ୍ର୍ୟର ରୂପ ସତେ ବଡ଼ ଦାରୁଣ । ତେଣୁ ସାମାଜିକ ଅବ୍ୟବସ୍ଥାକୁ ସଜାଡ଼ିବା ଉଦ୍ଦେଶ୍ୟରେ କବି ଭରତ ବେହେରା ତାଂକ ରଚିତ ପ୍ରତ୍ୟକ କବିତାରେ ପ୍ରତିଶ୍ରୁତିବଦ୍ଧ ।

ଗତ ଚାରି ଦଶନ୍ଧି ଧରି ଏହି କାବ୍ୟ ସାଧକ ଜଣଙ୍କ ବହୁ ଉଚ୍ଚାଙ୍ଗ କବିତାମାନ ସୃଷ୍ଟି କରିଛନ୍ତି । ବହୁତ ଗୁଡ଼ିଏ କାବ୍ୟଗ୍ରନ୍ଥ ପ୍ରକାଶ ପାଇ ସାରିଥିଲେ ମଧ୍ୟ ତାଂକ କାବ୍ୟଧାରା ସଂପର୍କରେ ବିଧିବଦ୍ଧ ଆଲୋଚନା ତଥାକଥିତ ଆଲୋଚକମାନଂକ ଦ୍ୱାରା କରାଯାଇନାହିଁ । ଅଧିକାଂଶ ପ୍ରାବଂଧିକ କଳାବାଦୀ ଦୁର୍ବୋଧ୍ୟ କବିମାନଙ୍କର କବିତାକୁ ଯେତେ ଗୁରୁତ୍ୱ ଦିଅନ୍ତି ସେଇ ଦୃଷ୍ଟିରୁ ଜୀବନବାଦୀ କବି ଭରତଙ୍କ କାବ୍ୟ ଚେତନାକୁ ଅଣାହେଳା ପ୍ରଦର୍ଶନ କରିଛନ୍ତି । କବି ଭରତ ଉଚ୍ଚାଙ୍ଗ ମାନବତାବାଦ, ସହ ସାଧାରଣ ଜନଜୀବନକୁ ତାଂକ କବିତାର ଆଧାରଶୀଳା ବୋଲି ବିଚାରନ୍ତି । ସାମାଜିକ ଶ୍ରେଣୀ ସଂଘର୍ଷ ଭାବ ଅଭାବ ଜନିତ ଦ୍ୱନ୍ଦ୍ୱ, ଶୋଷଣ କଷଣର ବୈଚିତ୍ରମୟ କାବ୍ୟିକ ଉପସ୍ଥାପନାହିଁ ଭରତଙ୍କ କାବ୍ୟ ଦିଗନ୍ତର କାବ୍ୟିକ ପ୍ରତିଶ୍ରୁତି । ପ୍ରଗତିବାଦୀ କାବ୍ୟଧାରାର ସେ ଜଣେ ସମ୍ଭାବନାମୟ ବଳାହକ । ସହଜ ସରଳ ରିତୀ, ଜନମାନସର ଦୁଃଖ ଦୁର୍ଦ୍ଦଶା ସାମାଜିକ ବିଧିବ୍ୟବସ୍ଥାର ବିଫଳତା ହିଁ ତାଂକ କାବ୍ୟଧାରାର ଅର୍ନ୍ତନିହୀତ ଭାବସ୍ରୋତ ।

## କବି ଘନ ପରିଡ଼ା

୧୯୭୦ରୁ ୧୯୮୦ମଧ୍ୟରେ ପ୍ରଗତିବାଦୀ ଆଭିମୁଖ୍ୟର କବିତାମାନ ରଚନାକରି ପାଠକମାନଙ୍କର ଦୃଷ୍ଟି ଆକର୍ଷଣ କରିଥିଲେ କବି ଘନ ପରିଡ଼ା । କବିଙ୍କ ରଚିତ 'ଶତାବ୍ଦୀର ଘୂର୍ଣ୍ଣନ' କବିତାରେ ଶୋଷକ ଗୋଷ୍ଠୀର ବ୍ୟଭିଚାରର ଚିତ୍ର ବର୍ଣ୍ଣିତ । ଶୋଷକର ଯୌନିକ ଚକ୍ଷୁରୁ କେହି ବାଦ୍ ପଡୁ ନାହାନ୍ତି, ସର୍ବତ୍ର ତା'ର ରାଜୁତି । ବ୍ୟଭିଚାର ଓ ଦୁର୍ନୀତିର କବଳରେ କବଳିତ ସ୍ୱାଧୀନ ଯୁଗର ସାଧାରଣ ନାଗରିକ । କବିଙ୍କର କାବ୍ୟ ଚେତନା ନିଜକୁ ଆବିଷ୍କାର କରିଛି ଏଇ ଶୋଷିତ ମାନଙ୍କ ମଧରେ । କବି ଉପଲବ୍ଧି କରୁଛନ୍ତି କିଛି ଗୋଟେ ପରିବର୍ତ୍ତନ ପାଇଁ । ଯାହା ଦ୍ୱାରା ଦୁର୍ନୀତି ଓ ବ୍ୟଭିଚାରର ଅବସାନ ସହିତ ଦାରିଦ୍ର୍ୟର ପରିସମାପ୍ତି ଘଟିବ । ସେଥିପାଇଁ ଆବଶ୍ୟକ କେବଳ ଏକାଗ୍ରତା ଓ ପ୍ରସ୍ତୁତି । କବି ଶତାବ୍ଦୀର ଘୂର୍ଣ୍ଣନ କବିତାରେ ଘୋଷଣା କରିଥିଲେ–

"ଶତାବ୍ଦୀ ଘୂରୁଚି ଆଜି
ଶୋଷକର ଜରଦ୍‌ଗବ ଚକ୍ଷୁର ତେଜରେ,
ସହରର ଗଳି କନ୍ଦି, ଦୋକାନ ବଜାର
ପ୍ରତି ଦ୍ୱାରେ ଦ୍ୱାରେ ।
ବାତ୍ୟାରେ ପୀଡ଼ିତା ବିବସ୍ତ୍ରା ନାରୀର ଲଜ୍ଜା ଆଖି

ମନ୍ତ୍ର ମୁଗ୍ଧ ନାଗସାପ ହୋଇ
ଦାରିଦ୍ର୍ୟର ତୀବ୍ର ବିଷେ
ପଂଗୁ ଓ ଅଥର୍ବ ଭଳି
କେଉଁ ଏକ ନିଘଞ୍ଚ ଇଲାକାରେ । (୨୫୩)
(ଶତାବ୍ଦୀର ଘୂର୍ଣ୍ଣନ)
ବାରୁଣୀ ଦ୍ୱିତୀୟ ସଂଖ୍ୟା, ୧୯୭୩)

ପୁଞ୍ଜିବାଦୀ ସମାଜ ବ୍ୟବସ୍ଥାର ଶୋଷଣରେ ବର୍ତ୍ତମାନ ଆଜି ନଷ୍ଟଭଷ୍ଟ । ସାମାଜିକ ଅବ୍ୟବସ୍ଥା ମଧ୍ୟରୁ ମୁକ୍ତି ଲଭିବା କବିଙ୍କର ଏକାନ୍ତ କାମ୍ୟ । ପୁଞ୍ଜିପତିର ପ୍ରତାରଣାପୂର୍ଣ୍ଣ ଶୋଷଣରୁ ଶତାବ୍ଦୀକୁ ମୁକ୍ତ କରିବା ପାଇଁ କବି ଆହ୍ୱାନ ଦିଅନ୍ତି -

"ନପୁଂସକ ବର୍ତ୍ତମାନ ଆଙ୍କେ ବସି
ଛଳନା ଜ୍ୟାମିତି,
ପୁଞ୍ଜିପତି କଂକ୍ରିଟ୍ ପ୍ରାସାଦେ
ସାଲୁବାଲୁ କୀଟଙ୍କ କୀର୍ତ୍ତନ
ଓଁ ଶାନ୍ତି, ଉଚ୍ଚାରଣେ, ଚିତ୍କାରଇ ଶତାବ୍ଦୀର କ୍ଲାନ୍ତି ।" (୨୫୪)
(ନିର୍ଦ୍ଦେଶ)(୧୯୭୩)

କବି ପରିଡ଼ା ଶ୍ରେଣୀ ସଂଗ୍ରାମର ଶତ୍ରୁକୁ ଯଥାର୍ଥ ଭାବରେ ସାଂପ୍ରତିକ ଓଡ଼ିଆ କବିତାରେ ରୂପ ଦେଇ ପ୍ରଗତିବାଦୀ ଧାରାକୁ ଆଗେଇ ନେବାରେ ସକ୍ଷମ ହୋଇ ପାରିଛନ୍ତି । ଏହି କବିଜଣଙ୍କ ଓଡ଼ିଆ ପ୍ରଗତିବାଦୀ କାବ୍ୟଧାରାକୁ ୧୯୭୦-୮୦ ମଧ୍ୟରେ ଋଦ୍ଧିମନ୍ତ କରିଥିଲେ ମଧ୍ୟ ଏବେ ନୀରବ ।

## କବି ଡଃ ବାସୁଦେବ ଦାସ

ସମସାମୟିକ କାଳର ଅନ୍ୟତମ ପ୍ରତିଭାବାନ୍ ସ୍ରଷ୍ଟା ହେଉଛନ୍ତି ଡଃ ବାସୁଦେବ ଦାସ । ଉଭୟ ସାହିତ୍ୟ ଓ ପ୍ରଗତିଶୀଳ କାବ୍ୟ ସଂଗଠନ ଗଢ଼ିବାର କ୍ଷମତା କବିଙ୍କଠାରେ ଉପଲବଧ । ଡଃ ଦାସଙ୍କ ନେତୃତ୍ୱରେ ଅଷ୍ଟମ ଦଶକ (୧୯୮୫) ବେଳକୁ କେନ୍ଦ୍ରାପଡ଼ା ସହରରେ ଗଠିତ ହୁଏ "ପ୍ରଗତିଶୀଳ କବି କଲମଧାରୀ" ସାହିତ୍ୟାନୁଷ୍ଠାନ । ଚିରାଚରିତ ରୀତିରେ ସର୍ବହରାର ଶ୍ରେଣୀ ଚେତନାକୁ ବଡ଼ ମର୍ମସ୍ପର୍ଶୀ ଭାବରେ କବି ପ୍ରକାଶ କରନ୍ତି–

"ଏ ଦେଉଳ ପରା ଗଢ଼ିଛି ମଣିଷ
ରକ୍ତ ତୋରାଣି ପିଇ

ଖଟି ଖଟି ପେଟ
ପିଠି ସିଜିଅଛି
ଚୁଲି ତା'ର ଜଳି ନାହିଁ ।"(୨୫୫) (ପାପ ଦେଉଳ)

ଦିବାରାତ୍ରି ଏକାକାର କରି, ଆଖିର ଲୁହକୁ ଓଠରେ ଚାପିଧରି ସାଧାରଣ ମଣିଷ ତିଆରି କରେ ସମାଜର ମୂଳଦୁଆ । ମାତ୍ର ତା'ର ଉପଭୋକ୍ତା ହୁଅନ୍ତି ଧନୀକ ଶୋଷକ ଗୋଷ୍ଠୀ । ଧର୍ମଧ୍ୱଜୀ ମାନଙ୍କର ଆକାଂକ୍ଷାକୁ ଚରିତାର୍ଥ କରିବା ପାଇଁ ସାଧାରଣ ମଣିଷ ଖଟି ଖଟି ପେଟ ପିଠି ଏକାକାର ହୁଏ । ପ୍ରତି ବଦଳରେ ପାଏ ଲାଞ୍ଛନା । ଶୋଷଣର ଗହ୍ୱର ମଧ୍ୟରେ ପଡ଼ି ସେ ଏପରି ଭାବରେ ଛଟପଟ ହେଉଥାଏ ଯେ ସେଥିରୁ ମୁକୁଳିବାର ରାସ୍ତା ତା' ପାଖରେ ନଥାଏ । କବି ବାସୁଦେବ ଶୋଷିତ ଜନତାର ତ୍ରାଣକର୍ତ୍ତା ଭାବେ 'ଅଗ୍ନିପଦ୍ମ' ସାଜି ସମାଜବ୍ୟବସ୍ଥାର ପଂକିଳ ସରୋବରରେ ପ୍ରସ୍ଫୁଟିତ ହୁଅନ୍ତି । ଜନତାର ଦୁଃଖକୁ ହୃଦୟରେ ଚାପିଧରି ସେମାନଙ୍କ ପାଇଁ ଦୃଢ଼ ଇସ୍ତାହାର ଘୋଷଣା କରନ୍ତି –

"ବାଜିମାର ବାଜିମାର
ମୁଁ ଆସିଚି ସାତତାଳ ପଙ୍କୁ
ମୁଁ ଆସିଛି ଅଗ୍ନିପଦ୍ମ
ବନ ଯଜ୍ଞ ଭୂମୁଁ ।" (୨୫୬) (ଅଗ୍ନି ପଦ୍ମ)

କବି ଦୃଢ଼ ଆଶା ପୋଷଣ କରିଛନ୍ତି ଯେ ଶୋଷଣ ରୂପୀ ହିଂସାର କଳାବାଦଲ ନିଶ୍ଚେ ଦିନେ ନା' ଦିନେ ଅପସାରିତ ହୋଇ ପୌର୍ଣ୍ଣମାସୀ ବର୍ଣ୍ଣ ବିଭା ଉକୁଟି ଉଠିବ । 'ଅଗ୍ନିପଦ୍ମ' କବିତାରେ କାବ୍ୟିକ ଭବିଷ୍ୟତ ବାଣୀ କରନ୍ତି କବି ବାସୁଦେବ ।

"ହିଂସାର ବାଦଲ ତଳୁ, ପୌର୍ଣ୍ଣ ମାସୀ ବିଭା
ମୁଠାଏ ମାଟିର ଦେହେ / ଫୁଟାଇବ ଶତ ସ୍ୱର୍ଗଶିରୀ
ବାଜି ମୁଁ ମାରିଚି ନେବି / ରାତ୍ରୀକୋଳୁ ସୂର୍ଯ୍ୟଙ୍କୁ ଉଡ଼ାଇ ।" (୨୫୭)(ଅଗ୍ନିପଦ୍ମ)

କବି ବାସୁଦେବ ଜଣେ ସ୍ୱାଧୀନଚେତା ଦରଦୀ ମଣିଷ ଯେ ତାଂକ କାବ୍ୟଧାରାରେ ସାଂପ୍ରତିକ ସମୟର ଶୋଷିତ ମଣିଷମାନଙ୍କ ସପକ୍ଷରେ ଠିଆ ହୁଅନ୍ତି । ସେ ତାଂକ କାବ୍ୟଧାରାରେ ସ୍ପଷ୍ଟ; ଆବେଗମୟ, ଛଳ ଛଳ, ପୂର୍ଣ୍ଣମିଦ । ତାଂକ ପରି ଜୀବନବାଦୀ କବିଙ୍କର କାବ୍ୟଧରାକୁ ବିଶେଷଭାବେ ଆଲୋଚକମାନେ ଏଯାଏ ଯଥାର୍ଥଧ୍ୟାନ ଦେଇ ନାହାଁନ୍ତି ।

## କବି ବାଞ୍ଛାନିଧି ଦାସ

ବିପ୍ଲବୀ କବି ବାଞ୍ଛାନିଧି ଦାସ, ପରିମାଣାତ୍ମକ ଓ ଗୁଣାତ୍ମକ ଦୃଷ୍ଟିକୋଣରୁ ବହୁ ମାର୍କସ୍‌ବାଦୀ ଚିନ୍ତାଚେତନା ସମ୍ବଳିତ କବିତା ରଚନା କରି ଓଡ଼ିଆ କବିତାକୁ ସମୃଦ୍ଧ କରିଛନ୍ତି । କବି ବାଞ୍ଛାନିଧି ମୁଖ୍ୟତଃ ଜଣେ ସଂଗ୍ରାମଶୀଳ ବ୍ୟକ୍ତିତ୍ୱ । ସାମୂହିକ ଗଣ-ଜୀବନର ଦୁଃଖ ଦୁର୍ଦ୍ଦଶାର ବର୍ଣ୍ଣନାରେ ତାଙ୍କ କବିତାଗୁଡ଼ିକ ବେଶ୍ ହୃଦୟସ୍ପର୍ଶୀ । କବିଙ୍କର ବୈପ୍ଳବିକ ଚେତନାଧର୍ମୀ କବିତାଗୁଡ଼ିକ ପ୍ରାଣରେ ଭରିଦିଏ ଆତ୍ମପ୍ରତ୍ୟୟ । ଲେଖନୀ ତାଙ୍କର ବିଳାସମୟୀ ପ୍ରାଚୁର୍ଯ୍ୟକୁ ପରିହାର କରି ପାଲଟିଯାଏ ପ୍ରଗତିବାଦୀ ଚିନ୍ତା ଚେତନାର ମାର୍ମିକ ଉଚ୍ଚାରଣରେ । ପରିବର୍ତ୍ତନ ପ୍ରୟାସୀ ଯୁବଗୋଷ୍ଠୀଙ୍କୁ ଆହ୍ୱାନ ଦେବାକୁ ଯାଇ କବି କୁହନ୍ତି –

"ଯିଏ ମା'କୁ ତୋହର
ନିଲାମ ଡାକୁଛି ନିତି
ବିଦେଶୀ କୁମୁଟିର ସେ
କୁରୁ ସଭା ତଳେ
ହେବାନି କି ଅହିରାଜ
ଲହ ଲହ ଗରଳର ମାଳା
ତା'ର ଶୀର୍ଷେ ଗଳେ ?" (୨୫୮)

(ପରାମର୍ଶ - 'ବଜ୍ର କଣ୍ଠେ' - ପୃ - ୨୪)

ପ୍ରଗତିବାଦୀ କବିତା କଳ୍ପନା ଜଗତରେ ବିଭୋର ହେବାର ସ୍ୱପ୍ନ ଆଣେ ନାହିଁ । ପ୍ରଗତିକାମୀ କବି ପାର୍ଥିବ ସମ୍ଭୋଗ ଓ ପ୍ରାଚୁର୍ଯ୍ୟଠାରୁ ନିଜକୁ ଯଥା ସମ୍ଭବ ଦୂରେଇ ରଖିବା ସହ ପ୍ରପୀଡ଼ିତ ଜନତାର ପ୍ରାଣରେ ସମ୍ବେଦନା ସୃଷ୍ଟି କରିବା ତା'ର ମୁଖ୍ୟ ଉଦ୍ଦେଶ୍ୟ ହୋଇଥାଏ। ନିରନ୍ନ ଜନତାର ମୁଠିଏ ପଖାଳ ପାଇଁ କରୁଥିବା ସଂଘର୍ଷ, ପିଲାଙ୍କ ପାଇଁ ଉନ୍ନତ ଭବିଷ୍ୟତ ସୃଷ୍ଟିକରିବାର ପ୍ରୟାସ କବିଙ୍କୁ ଅନୁ ପ୍ରେରିତ କରେ ଅନ୍ୟାୟ- ଶୋଷଣରୂପୀ ରାକ୍ଷସକୁ ଜାଳି ପୋଡ଼ି ଧ୍ୱଂସ କରିଦେବା ପାଇଁ । ଜନଗଣଙ୍କର ହୃଦୟର ବାର୍ତ୍ତାକୁ ଅନୁଭବ କରି କବି 'ରକ୍ତଶପଥ' କବିତାରେ ବ୍ୟକ୍ତ କରିବାକୁ ଯାଇ କହନ୍ତି –

"ମୋର ଏକ ହାତେ,
ପଖାଳ ବେଲା
ଆଉ ଟିପେ ଲୁଣ,
ଆର ହାତେ
ଶ୍ରେଣୀ ସଂଘର୍ଷର

ଧାରୁଆ କୃପାଣ ।" (୨୫୯)

('ରକ୍ତ ଶପଥ' - ବଜ୍ର କଣ୍ଠେ - ପୃ - ୨୧)

କବି ବାଞ୍ଛାନିଧି ଜୀବନ ଯନ୍ତ୍ରଣାର ରୂପକାର । ଗଣ ଜୀବନ ପ୍ରତି କବିଙ୍କର ରହିଛି ଦରଦୀ ସମବେଦନା । ଶୋଷଣ, ଦୁର୍ନୀତିର ମୂଳୋତ୍ପାଟନର କଥା କହୁଥିବା କବି ସମୟର କାନ୍‌ଭାସ୍‌ରେ ଆଙ୍କି ଦେଇ ପାରନ୍ତି କଳାହାଣ୍ଡିର ଅନାହାର କ୍ଲିଷ୍ଟ 'ନଅଙ୍କିଆ କ୍ଷୁଧାତୁର ମଣିଷର ପ୍ରତିଛବି । 'ମୁଁ କଳାହାଣ୍ଡିର ଲୋକ' କବିତାଟି ବର୍ତ୍ତମାନ ସମାଜରେ ଶୋଷିତ ଆଦିବାସୀ ଜନଜୀବନର ଯଥାର୍ଥ ପ୍ରତିନିଧି । କବି ଆଦିବାସୀ ସମାଜର ବହୁବିଧ ସମସ୍ୟାକୁ କବିତାରେ ରୂପ ଦେବା ସହିତ ସେମାନଙ୍କୁ ମଧ୍ୟ ମୁକ୍ତି ସଂଗ୍ରାମରେ ଯୋଗ ଦେବାପାଇଁ ଆହ୍ୱାନ ଦେଇଛନ୍ତି ।

କବି ବାଞ୍ଛାନିଧି ଜନଜାତି ଦଳିତ ବର୍ଗର ଉତ୍‌ଥାନ ପାଇଁ କବିତାରେ ପ୍ରୟାସ କରିଛନ୍ତି । ସରଳ ଆଦବାସୀମାନେ ପ୍ରକୃତିର ସନ୍ତାନ । ପ୍ରକୃତି କୋଳରେ ସେମାନଙ୍କର ଜନ୍ମ, ଆଶ୍ରୟ । ପ୍ରକୃତିକୁ ବାଦ୍ ଦେଇ ସେମାନଙ୍କର ଜୀବନ ପରିକଳ୍ପନା ଅସମ୍ଭବ । ଆଧୁନିକ ମଣିଷ ଡଲାରର ମୋହରେ ପ୍ରାକୃତିକ ବିଭବକୁ ଦିନ ଦିପହରରେ ଶାଗ ମାଛ ଦରରେ ବିକ୍ରୀ କରିବାକୁ ମଧ ପଛାଉ ନାହିଁ । ରତ୍ନଗର୍ଭା ଓଡ଼ିଶାର ପ୍ରାଚୁର୍ଯ୍ୟକୁ ଲୁଟିବାକୁ ବହୁ ବିଦେଶୀ କମ୍ପାନୀ ଲାଳାୟିତ । ବିଦେଶୀ କମ୍ପାନୀକୁ ଖୁସି କରବା ପାଇଁ ସରକାର ଜଙ୍ଗଲ କାଟିବା । ପର୍ବତ ମାଳାକୁ ବିକ୍ରୀ କରିଦେବା । ନିରୀହ ଆଦିବାସୀକୁ ନିଃସ୍ୱ କରି ମରଣର ଦୁନିଆ ଦେଖାଇ ଦେଉଛି । ସେଇଥିପାଇଁ ଆଦିବାସୀ ସମାଜକୁ ଏକଜୁଟ୍ ହୋଇ ସଂଗ୍ରାମ କରିବାକୁ ଆହ୍ୱାନ ଦିଏ କବି ବାଞ୍ଛାନିଧିଙ୍କ କବିତା ।

"ଏବେ ମୁଁ ଖୋଜୁଛି କ୍ଷୁଧାର ମରୁରେ
  ମୁକ୍ତିର ପରମାର୍ଥ ।
ଏବେ ମୁଁ ଜାଗିଛି ଗିରି ବନ ଖୋଲେ
  ମୁଠାଏ ଖାଦ୍ୟ ପାଇଁ
ବଞ୍ଚିବା ଅଧିକାର ମୁଁ ମାଗୁଛି
  କୁହାଟେ ଯୁଦ୍ଧ ଦେହୀ
ମୁଁ ଆଜି କ୍ଷୁବ୍ଧ ମୁଁ ଆଜି ଗଦ୍ୟ
  ଓଡ଼ିଶାର ସୋମାଲିଆ
ମୋର ଅନ୍ତରେ ଦିକି ଦିକି ଜଳେ
  କ୍ରୋଧର ଦୀପ୍ତ ନିଆଁ ।" (୨୬୦)

(ମୁଁ କଳାହାଣ୍ଡିର ଲୋକ - 'ମାନସ ହଂସ ମୁଁ')

ସମାଜର ପ୍ରତିଟି ସ୍ତରରୁ ଶୋଷଣର ବିଲୋପ ଘଟାଇବାପାଇଁ ପ୍ରଚେଷ୍ଟାରତ କବିଙ୍କର କବିତା ପ୍ରଗତିବାଦୀ କାବ୍ୟ ଚେତନାକୁ ଏକ ନୂତନ ମାର୍ଗ ଦର୍ଶାଇଛି କହିଲେ ଅତ୍ୟୁକ୍ତି ହେବ ନାହିଁ ।

କବି ବାଂଛାନିଧି ବିଗତ ତିନି ଦଶନ୍ଧି ଧରି ଓଡ଼ିଶାର ପ୍ରଗତିବାଦୀ କାବ୍ୟ ଆନ୍ଦୋଳନର ଜଣେ ପ୍ରତିଶ୍ରୁତିବଦ୍ଧ ଭାଷ୍ୟକାର । ଅଭିଯାତ୍ରୀ କାବ୍ୟ ଗୋଷ୍ଠୀର ଅନ୍ୟତମ ସଂସ୍ଥାପକ ଯେଉଁମାନେକି ଅବଧୂତ କାବ୍ୟଧାରାର ଉତ୍ତର ଦାୟାଦ । ବାଲିଆପାଳର ଜନସଂଗ୍ରାମଠାରୁ, ଅଳକାନଂଦା ଭଳି ପ୍ରଗତିଶୀଳ ପତ୍ରିକା ପ୍ରକାଶନ ମାଧ୍ୟମରେ ତାଂକ ସାହିତ୍ୟଧାରାର ବିବିଧ ବର୍ଣ୍ଣବିଭା ବିକଶିତ ହୋଇଅଛି । ଜଣେ ସ୍ତମ୍ଭକାର ଓ ସୁ ଆଲୋଚକ ହିସାବରେ ସାହିତ୍ୟରେ ନୂତନ ଦିଗନ୍ତର ଉନ୍ମେଷକାରୀ । ଓଡ଼ିଆ ସାହିତ୍ୟରେ ପ୍ରଗତିବାଦୀ କାବ୍ୟଧାରାକୁ ଗୁରୁତ୍ୱ ସହକାରେ ବିଚାର ଆଲୋଚନା ପରିସରକୁ ଆଣି ଉଚିତ ମୂଲ୍ୟାୟନ କରିବାରେ ସେ ହିଁ ଏକମାତ୍ର ସିଦ୍ଧହସ୍ତ କବି । ସଂଗ୍ରାମୀ ମନନଶୀଳତା, ଆବେଗମୟ କାବ୍ୟ ସଂପୃକ୍ତି, ଉଚ୍ଚମାନର ଜୀବନବାଦୀ କାବ୍ୟଧାରା, ତାଂକ କାବ୍ୟିକ ଭାବଧାରାର ଆନ୍ତରୀକ ଭାବସ୍ରୋତ ।

## କବି ଭଗବାନ ମହାପାତ୍ର

ସମସାମୟିକ କାଳରେ କବି ଭଗବାନ ମହାପାତ୍ର ପ୍ରଗତିବାଦୀ ଆଭିମୁଖ୍ୟକୁ ନେଇ କବିତାମାନ ରଚନା କରି ପାଠକମାନଙ୍କର ଦୃଷ୍ଟି ଆକର୍ଷଣ କରନ୍ତି । ଚିରାଚରିତ ଢଙ୍ଗରେ ସମଧର୍ମା ପ୍ରଗତିବାଦୀ କବିମାନଙ୍କପରି ଭଗବାନ ମହାପାତ୍ର ମଧ୍ୟ ସମାଜର ପ୍ରତିଟି କ୍ଷେତ୍ରରେ ପରିଲକ୍ଷିତ ହେଉଥିବା ଶୋଷଣର ବିଷମଂକିକୁ ଉଖାରିବାର ପ୍ରୟାସ କରିଛନ୍ତି । ଦୀର୍ଘ ବର୍ଷର ପରାଧୀନତାରୁ ମୁକ୍ତି ହୁଏ ଭାରତ ବର୍ଷ ୧୯୪୭ ମସିହାରେ । କିନ୍ତୁ ରାଜନୈତିକ ମୁକ୍ତି, ଅର୍ଥନୈତିକ ସ୍ୱାବଲମ୍ବଶୀଳତା, ସାଂସ୍କୃତିକ ତଥା ଆଧ୍ୟାତ୍ମିକ କ୍ଷେତ୍ରରେ ଏଯାଏ ମିଳିନାହିଁ ପୂର୍ଣ୍ଣ ସ୍ୱାଧୀନତା । ମୁକ୍ତି ପ୍ରୟାସୀ ମଣିଷ କିନ୍ତୁ ଏଯାଏ ପାଇନାହିଁ ଭେଦଭାବହୀନ ସମାଜ ବ୍ୟବସ୍ଥା । ସମୟ ସଚେତନ କବି ମୁକ୍ତି ପିପାସୀ ମଣିଷକୁ ଚେତେଇ ଦେବାକୁ ଚାହାଁନ୍ତି ସ୍ୱାଧୀନୋତ୍ତର କାଳର ଏ ପ୍ରକାର ଅଂକୁଶ ବିହୀନ ସ୍ଥିତି ସଂପର୍କରେ ।

କବି ଭଗବାନ ମହାପାତ୍ର ୧୯୮୦ପରଠାରୁ ନିର୍ଦ୍ଦିଷ୍ଟଭାବେ ପ୍ରଗତିବାଦୀ କାବ୍ୟଧାରାର ସନ୍ତୁଳିତ ପ୍ରତିନିଧି ଭାବେ ନିଜକୁ ପ୍ରତିଷ୍ଠିତ କରି ପାରିଛନ୍ତି । ପ୍ରଗତିବାଦୀ ପତ୍ରିକା ଅଗ୍ନିବୀଣାର ନୂତନ ପ୍ରସ୍ଥ ପ୍ରକାଶ କରି ଜୀବନବାଦୀ କାବ୍ୟଧାରାର ଉଚ୍ଚାଙ୍ଗ ପୃଷ୍ଠପୋଷକତା କରିଛନ୍ତି । ତାଙ୍କ କାବ୍ୟ ସର୍ଜନାର ଧାରା ବହୁ ମୋଡ଼ ଭାଂଗି କେଉଁଠାରେ ସାଲିସ୍ କରିନାହିଁ । ତାଂକର ପ୍ରତ୍ୟକଟି କାବ୍ୟ ଗ୍ରନ୍ଥରେ ମାନବତାବାଦର ଜୈତ୍ରଯାତ୍ରା

ଅତୁଟ ରହିଛି । ପ୍ରତ୍ୟକଟି କବିତା ଭିତରେ ମାନବ ଜୀବନ ପ୍ରତି ଦରଦୀ ମନୋଭାବଟି ତାଂକ କବିତାକୁ କିରଛି ସଂଭ୍ରାନ୍ତ ଓ ରସଶିକ୍ତ । ଉଦାହରଣ ସ୍ୱରୂପ ତାଂକର ନଗାଦ ପ୍ରକାଶିତ କବିତା 'ଦେଶ'ର କିଛି ପଂକ୍ତିକୁ ଉଦାହରଣ ସ୍ୱରୂପେ ନିଆଯାଇପାରେ ।

ଯେପରି ବିଭାଜନ ସମୟର ଦିନ ଗୁଡ଼ା କେତେ
ରକ୍ତ ରଂଜିତ କର୍ଦ୍ଦମ ଥିଲା ସତେ !
ନୂଆଖାଲି ମାଟିଆ ବୁରୁଜର ରକ୍ତଛିଟା
କି ଦିଲ୍ଲୀକୁ ପଗଡ଼ି ବିହୀନ କରିବା କଥା
ଏବଂ ଗୁଜୁରାଟ କି କଂଧମାଳ ସବୁଠି
ଚାଲିଥିବା ରକ୍ତର ଖେଳରେ
ନିଜ ନିଜ ଈଶ୍ୱରଙ୍କୁ ଆମେ
କ୍ରୁଶବିଦ୍ଧ କରିଚାଲିଛୁ
ଆମର ଅଜ୍ଞାତରେ ନିର୍ବୋଧ ପଣରେ । (୨୬୧) (କବିତା- ଦେଶ)

## କବି ହେମନ୍ତ ରାଉତ

ସମକାଳୀନ କାବ୍ୟଧାରାର ପ୍ରଗତିଶୀଳ ତଥା ଦାୟବଦ୍ଧ ସ୍ରଷ୍ଟା ହେଉଛନ୍ତି କବି ହେମନ୍ତ ରାଉତ । ଗତ ତିନିଦଶନ୍ଧି ଧରି ତାଂକର ଲେଖନୀ କର୍ମଚଂଚଳ । ତାଂକର ଏଯାବତ୍ ୧୨ଖଣ୍ଡ କାବ୍ୟଗ୍ରନ୍ଥ ପ୍ରକାଶିତ । ସେ ମଧ୍ୟରୁ "ମୁକ୍ତିର ମହାସୂର୍ଯ୍ୟ", "ପ୍ରଳୟ ଗର୍ଭେ", ମାଟି ଓ ରୁଟି, ମାଟିର ବୋଧିଦ୍ରୁମ, ତାରାଫୁଲର କାବ୍ୟ, କ୍ଷତାକ୍ତ ହଂସର ବିଳାପ ଇତ୍ୟାଦି କାବ୍ୟଗ୍ରନ୍ଥଗୁଡ଼ିକ ଓଡ଼ିଆ କବିତା ରାଜ୍ୟର ଅମୂଲ୍ୟରତ୍ନ ସଦୃଶ । କବି ହେମନ୍ତଙ୍କ କାବ୍ୟରେ ଆଧୁନିକ ଜୀବନର ଅଭାବବୋଧ, ଅସହାୟତା, ସାମାଜିକ ସଂକଟ, ନୈରାଶ୍ୟବୋଧ, ତଥା ଶୋଷଣର ଚିତ୍ର ପ୍ରଦାନ୍ କରିଥାଏ । ସାମାଜିକ ଅଂଗୀକାର ବଦ୍ଧତା ତାଂକ ମାନବବାଦୀ ଚିନ୍ତାଧାରାର ପ୍ରାଣସ୍ରୋତ ସ୍ୱରୁପ । ସେ ଜଣେ ମାଟି ମନସ୍କ କବି । ତାଂକ ସୃଜନ କଳାର ଦୃଶ୍ୟପଟ ଗ୍ରାମ, ପ୍ରଦେଶ ଦେଶ ଠାରୁ ସମଗ୍ର ବିଶ୍ୱ ପର୍ଯ୍ୟନ୍ତ ପରିବ୍ୟାପ୍ତ । ଗୀତିମୟତା ସଂଗକୁ ସୌନ୍ଦର୍ଯ୍ୟବୋଧର ଅପରୂପ ସମନ୍ୱୟ ଥାଏ ତାଂକ କବିତାରେ । ଦୃଷ୍ଟାନ୍ତ ସ୍ୱରୂପ 'ବ୍ୟଥା' କବିତାକୁ ଉଦାହରଣ ଭାବେ ନିଆଯାପାରେ ।

"ଆଗରେ ଫୁଲର ଶେଯ ପଛୁ ଆସେ ବାସ୍ନାର ଝଲକ
ଦେହରୁ ନିଗିଡ଼େ ଶବ୍ଦ, ଶବ୍ଦ ପୁଣି ପାଲଟଇ ଶେଯ
ଶେଯର କାଗଜ ଫର୍ଦ୍ଦେ ଫୁଟି ଉଠେ ତାରାର କବିତା

ତାରାର କବିତା ନୁହେଁ ବହୁ ବର୍ଷୁ ଅସହନ ବ୍ୟଥା ।"

କବି ହେମନ୍ତ ତାଂକର ପ୍ରତ୍ୟକଟି କବିତାରେ ଛଳଛଳ, ସରଳ, ସାବଲୀଳ, ସ୍ୱଷ୍ଟ, ତଥା ମନୋଜ୍ଞ ଭାବଧାରାର ଉଦ୍‌ଘୋଷକ । ଗାଁ ନଈ ତାରା ସୂର୍ଯ୍ୟୋଦୟ, ଚାଉଳ, ପାଣି, ଭାତ, ଭାରତବର୍ଷ, ଭିତର କନିକା, କଳିଂଗ ନଗର, ଇତ୍ୟାଦି ଅନେକ ଅନେକ ତାଂକ କାବ୍ୟସୃଷ୍ଟିର ମୂଳାଧାର । ସେ ତାଂକର କାବ୍ୟସୃଷ୍ଟି ନିକଟରେ ସଦା ନିବେଦିତ ଓ ସମର୍ପିତ ।

ଦୃଷ୍ଟାନ୍ତ ସ୍ୱରୂପ ତାଂକ କାବ୍ୟଧାରାର ମାର୍ମିକତାକୁ କେତୋଟି ପଂକ୍ତିରୁ ଆକଳିତ କରାଯାଇପାରେ । ଯଥା-

ଆକାଶ ହାଣ୍ଡିରେ ତାରାଙ୍କ ପରି
ଆମ ହାଣ୍ଡିରେ ଚାଉଳ ପଡ଼ିଲେ ଉଚ୍ଛୁଳିପଡ଼େ ଭାତ
ତାରାମାନେ ଆକାଶରେ ମିଶିବା ପରି
ମାଟିରେ ମିଶିଥିବା ଧାନହିଡ଼ ଡେଇଁ
ଉଚ୍ଛୁଳଇ ଛନଛନ୍ ଗୀତ ।(୨୬୨) (ଚାଉଳ)

କବି ହେମନ୍ତ କବିତା ଆକାଶର ଏକ ଯାଯାବର ପକ୍ଷୀ ଯେ ହୃଦୟରୁ ହୃଦୟରେ ଉଡ଼ିବୁଲନ୍ତି । ଆକାଶ ପରି ବ୍ୟାପକ ତାଂକ କାବ୍ୟର ଘୋଷଣାନାମା । ପକ୍ଷୀଟିଏ ପରି ସ୍ୱାଧୀନ୍, ପବନ ପରି ସବୁରି ଆପଣାର । ଏଇଭଳି ଜଣେ ବିଶ୍ୱସ୍ତ କବିଙ୍କ ପ୍ରତି ପାଠକୀୟ ଶ୍ରଦ୍ଧାର କ୍ଷେତ୍ର ଅପରିସୀମ କିଂତୁ ଥୋକାଏ ଜରଦଗବ ସମାଲୋଚକମାନଙ୍କ ଦ୍ୱାରା ସେ ଉପେକ୍ଷିତ । ଏହାହିଁ ୧୯୬୦ ପରବର୍ତ୍ତୀ କାବ୍ୟ ଧାରାର ସାମଗ୍ରିକ ବିଡ଼ମ୍ବନା । ସେ ରାଜଧାନୀର କ୍ଷମତାଧାରୀ କଳାବାଦୀ ପକ୍ଷ ସମର୍ଥିତ ଅବୋଧ୍ୟ ଭାବଧାରାର ମହାକବି ମାନଙ୍କର ପଥର ପାହାଚ ତଳର ଅଲୋଡ଼ା ଦୁବଘାସ ପରି ।

ସେ ଯେତିକି ଅଲୋଡ଼ା, ଅଖୋଜା ତାଠାରୁ ତାଂକ କାବ୍ୟଧାରାରେ ଶତଗୁଣରେ ଦାୟବଦ୍ଧ ଓ କାଳଜୟୀ । ସାଂପ୍ରତିକ ସମୟର ସୁବିଧାବାଦୀ ସାମାଜିକ ବ୍ୟବସ୍ଥା ରୂପୀ ନର୍କ ଭିତରୁ ଉତୁରି ଆସିଥିବା ଜୀବନବାଦର ମାର୍ତ୍ତଣ୍ଡ ଉଦ୍‌ଘୋଷକ ।

## କବୀ ଅନ୍ନପୂର୍ଣ୍ଣା ମହାନ୍ତି

୧୯୮୦ ପରବର୍ତ୍ତୀ ଓଡ଼ିଆ କବିତା କ୍ଷେତ୍ରରେ ପ୍ରଗତିବାଦୀ କାବ୍ୟ ସ୍ୱରକୁ ଉଜ୍ଜୀବିତ କରିଥିବା ଅନ୍ୟତମ କବୀ ହେଉଛନ୍ତି ଅନ୍ନପୂର୍ଣ୍ଣା ମହାନ୍ତି । ଯାଜପୁର ଜିଲ୍ଲାର ଅହିୟାସ ଗ୍ରାମରେ ଜନ୍ମିତ ଅନ୍ନପୂର୍ଣ୍ଣା ଶିକ୍ଷାଦାନକୁ ଜୀବନର ବ୍ରତ ଭାବରେ ଗ୍ରହଣ କରିଛନ୍ତି । କେନ୍ଦ୍ରାପଡ଼ା ପାଲଟିଛି ତାଙ୍କ କାବ୍ୟକ୍ଷେତ୍ର । ୧୯୮୫ ବେଳକୁ

କେନ୍ଦ୍ରାପଡ଼ାଠାରେ କବି ବାସୁଦେବ ଦାସଙ୍କ ନେତୃତ୍ୱରେ ଗଠିତ ହୁଏ 'ପ୍ରଗତିଶୀଳ କବିକଲମଧାରୀ' ସାହିତ୍ୟ ଅନୁଷ୍ଠାନ । ଯାହାର ସାଧାରଣ ସଂପାଦିକା ଭାବରେ ଅନ୍ନପୂର୍ଣ୍ଣାଙ୍କୁ ଦାୟିତ୍ୱ ତୁଲାଇବାକୁ ପଡ଼େ (୧୯୮୫-୧୯୮୭) ଦୁଇ ବର୍ଷ ।

୧୯୮୭ରେ 'ରୁଟି ଓ ରତ' ସଂକଳନ ମାଧମରେ ସ୍ୱୀକୀୟକାବ୍ୟ ପ୍ରତିଭାର ଆଦ୍ୟ ସ୍ଫୁରଣ ଘଟେ । ତେଣୁ କେନ୍ଦ୍ରାପଡ଼ା ପାଲଟେ କବୀ ଅନ୍ନପୂର୍ଣ୍ଣାଙ୍କର ସାରସ୍ୱତ ପ୍ରତିଭାର ଆଦ୍ୟ ଉନ୍ମେଷ ସ୍ଥଳୀ ।

ବୌଦ୍ଧିକ କଳାର ରମଣୀୟ କକ୍ଷରେ ସାଧାରଣ ଜନଜୀବନର ସ୍ୱରକୁ ଏ ଯାବତ୍ ସମ୍ମାନାସ୍ପଦ ମର୍ଯ୍ୟାଦା ମିଳିନାହିଁ । କ୍ଷମତାର ଅହମିକା ପୁଂଜିବାଦୀ ସାହିତ୍ୟଧାରାକୁ ଏତେ ମାତ୍ରାରେ ଗ୍ରାସ କରିଅଛି ଯେ ତା' ପାଖରେ ଦଳିତ ସାହିତ୍ୟର କୌଣସି ମୂଲ୍ୟ ନାହିଁ । ବଂଚିବାର ଶେଷ ଆଶାକୁ ଭୂଲୁଣ୍ଠିତ ପ୍ରତିଷ୍ଠିତ ନ କଲାଯାଏ, ପୁଂଜିବାଦୀ ସାହିତ୍ୟ ଧାରାର ଶୋଷଣ ଆଭିମୁଖ୍ୟ ବଦଳେ ନାହିଁ । ଯେତେ ଦିନ ଯାଏ ଏହି ଦ୍ୱନ୍ଦ୍ୱର ସମାପ୍ତି ହୋଇଛି ସେତେବେଳଯାଏ ଥିଲାବାଲା, ନଥିଲାବାଲା ମଧରେ ସଂଘର୍ଷର ପରିସମାପ୍ତି ଘଟିବନାହିଁ । ତେଣୁ ବିପ୍ଳବ ପ୍ରୟାସୀ କବୀ ସାଧାରଣ ଜନତାଙ୍କୁ ସାମାଜିକ ପ୍ରତିଷ୍ଠା ଦେବା ପାଇଁ ସିଧାସଳଖ ଥିଲାବାଲାକୁ ଅକ୍ଷେପ କରି କୁହନ୍ତି ।

"ଅମଣିଆ ଭୋଗପରି ।
ସଞ୍ଚିଥିବା ଦେହଟାକୁ
ଅହମିକା ରଥରୁ ଓହ୍ଲାଇ
ଲହଲହ ଫଣାକୁ ଦେଖାଇ
ଲୁଟି ନେଲ ବଞ୍ଚିବାର ଶେଷ ପୁଞ୍ଜିଯାକ ।" (୨୬୩)

('ସଂକେତ' - ରୁଟି ଓ ରୁତ, ପୃ-୬୪-୬୫)

ପୀଡ଼ିତ ପ୍ରାଣରେ ଆତ୍ମ ପ୍ରତ୍ୟୟ ଭରିଦେବା ପ୍ରଗତିବାଦୀ କବିର ଧର୍ମ । ସେହି ନ୍ୟାୟରେ କବି ଅନ୍ନପୂର୍ଣ୍ଣା 'ଲକ୍ଷ୍ମଣଙ୍କ ଶକ୍ତିଭେଦ' କବିତାରେ ଆହ୍ୱାନ କରନ୍ତି -

ଡରିବାର ଲୋକ ନୁହେଁ ତୁମେ ।
କାମନା ରହିତ ତୁମ ବିପ୍ଳବର ଧ୍ୱନୀ । (ଲକ୍ଷ୍ମଣଙ୍କ ଶକ୍ତିଭେଦ)

କବୀ ଅନ୍ନପୂର୍ଣ୍ଣାଙ୍କର ଆଶା ଓ ଆତ୍ମବିଶ୍ୱାସ କିଛି କମ୍ ନୁହେଁ । ସମାଜବାଦୀ ସମାଜର ସ୍ୱପ୍ନଦେଖିବା ସହିତ ସର୍ବହରାର ପ୍ରାଣରେ ଆଶ୍ୱାସନାର ବାରି ସିଞ୍ଚନ କରିଛନ୍ତି ତାଂକର ଆଦ୍ୟ ସୃଷ୍ଟିର କବିତାରେ । ଜଣେ ହୃଦୟବାନ ପୀଡ଼ିତ ଜନତାର ଅନ୍ତରଙ୍ଗ ବ୍ୟକ୍ତିତ୍ୱ ଭାବରେ କବୀ ଅନ୍ନପୂର୍ଣ୍ଣା କହୁଛନ୍ତି -

"ଉଇଁଲାଣି ପୂର୍ବ ଆକାଶରେ
ସୁବର୍ଣ୍ଣ ପୂର୍ଣ୍ଣିମାଟିଏ

ଆଶ୍ୱସ୍ତ ହୁଅରେ ସର୍ବହରା ଦଳ
କମିଯିବ ବିଶ୍ୱ ଏବେ ଶାସନର ପାପ ତାପ ଭୟ" (୨୬୪)
(ସାଆନ୍ତଙ୍କ କଟାମୁଣ୍ଡ ରାସ୍ତାକଡ଼ରେ ପଡ଼ିଥିବା ଦେଖି)

ବାସ୍ତବିକ କବୀ ଅନ୍ନପୂର୍ଣ୍ଣାଙ୍କ କବିତା ବୌଦ୍ଧିକ ପାଠକ ଚିତ୍ତରେ ଶୋଷିତ ଜନତା ପାଇଁ ସମ୍ବେଦନା ସୃଷ୍ଟି ଲକ୍ଷ୍ୟରେ ଯେ ରଚିତ କହିଲେ ଅତ୍ୟୁକ୍ତି ହେବ ନାହିଁ । କବୀ ଅର୍ଣ୍ଣପୂର୍ଣ୍ଣାଙ୍କ କାବ୍ୟ ଧାରା ବହୁଧା ବିଭକ୍ତ । ତାଂକ ଆଦ୍ୟ ଜୀବନର କବିତା ଗୁଡ଼ିକ ଆଂଗୀକ ସହ ଆତ୍ମୀକ ଦୃଷ୍ଟିରୁ ଅଂଗୀକାରବଦ୍ଧତାର ସ୍ପଷ୍ଟ ଆଭାସ ମିଳିଥାଏ । ପରବର୍ତ୍ତୀ ସମୟରେ ତାଂକ କବିତାରେ ସେଇ ପ୍ରକାରର ଦାୟବଦ୍ଧତାର ଆଭାସ ମିଳେନାହିଁ । ଯଦିଓ ବହୁ କବିତା ପୁସ୍ତକ ଏହି ଭିତରେ କବୀଙ୍କର ପ୍ରକାଶ ପାଇଛି ତଥାପି ତାଂକ କବିତାର ସାମଗ୍ରିକ ଉତ୍ତରଣ ବହୁ ମୋଡ଼ ଭାଂଗିବାରେ ପ୍ରୟାସ କରିଚାଲିଛି ।

## ପ୍ରୟୋଗବାଦୀ କବିଙ୍କ କବିତାରେ ପ୍ରଗତିବାଦୀ ଚେତନା:-

ଓଡ଼ିଆ ସାହିତ୍ୟରେ ପ୍ରଗତିବାଦୀ ଚେତନାର ଅନୁପ୍ରବେଶ ସମଗ୍ର ସାହିତ୍ୟିକ ପାଣିପାଗକୁ ଚଳଚଞ୍ଚଳ କରିଦେଇଥିଲା । ୧୯୩୫ ଠାରୁ ୧୯୫୦ ମସିହା ପର୍ଯ୍ୟନ୍ତ ଏହି ଚିନ୍ତାଧାରାର ପ୍ରାଧାନ୍ୟ ଅନୁଭୂତ ହୁଏ । ମାତ୍ର ୧୯୫୦ ମସିହାପରେ ଏଲିୟଟୀୟ ପ୍ରଭାବ ହେତୁ ଏଥିରେ କିଛି ମାତ୍ରାରେ ଶିଥିଳତା ପରିଲକ୍ଷିତ ହୁଏ । ଏହି ସମୟରେ ପ୍ରଗତିବାଦୀ ଚେତନାର ସଂପୂର୍ଣ୍ଣ ବିଲୟ ଘଟିନାହିଁ । ଏହି ଚିନ୍ତାଧାରାର ପ୍ରଭାବ ଏପରି ଅନୁଭୂତ ହେଉଥିଲା ଯେ, ପ୍ରୟୋଗବାଦୀ କବିମାନେ ମଧ ଏଥିରୁ ନିଜକୁ ନିବୃତ୍ତ କରିରଖିପାରିନଥିଲେ । ସେମାନଂକ କବିତାରେ ମଧ ଅସହାୟ ଜନତା ପ୍ରତି ସମବେଦନା ପ୍ରକାଶ ପାଇଲା । ଏଠାରେ ଗୋଟିଏ କଥା କହି ରଖିଲେ ଠିକ୍ ହେବ, ତାହା ହେଉଛି ସେମାନଂକ କବିତାରେ ଯେଉଁ ସମବେଦନା ପ୍ରକାଶ ପାଉଥିଲା ସେଥିରେ ଆମେ ସଂଗ୍ରାମୀ ମନୋଭାବକୁ ଖୋଜିଲେ ପାଇବା ନାହିଁ । ବରଂ ଯେହେତୁ ମଣିଷ ସମାଜ ପ୍ରତି ସମବେଦନା ମାନବବାଦର ଅନ୍ତର୍ଭୁକ୍ତ ଏବଂ ମାନବବାଦୀ ଚିନ୍ତାଚେତନା ପ୍ରଗତିବାଦର ଏକ ପାର୍ଶ୍ୱ, ସେହି ଦୃଷ୍ଟିକୋଣରୁ ପ୍ରୟୋଗବାଦୀ କବିଙ୍କ କବିତାକୁ ଆମେ ଆଲୋଚନାର ପରିସର ମଧକୁ ଆଣିବା । ଏତଦ୍‌ବ୍ୟତୀତ ପ୍ରୟୋଗବାଦୀ କବିମାନେ ପ୍ରଗତିବାଦୀ ସ୍ରଷ୍ଟାମାନଂକ ପରି ସ୍ଥାନେ ସ୍ଥାନେ ସମାଜ ମନସ୍କ ହୋଇପଡ଼ିଛନ୍ତି । ସମାଜର ଦୋଷ ଦୁର୍ବଳତା ସାଂଗକୁ ଦାରିଦ୍ର୍ୟ ପ୍ରପୀଡିତ ମଣିଷର ଜୀବନ ଯନ୍ତ୍ରଣା ସ୍ଥାନେସ୍ଥାନେ ସେମାନଂକ କବିତାରେ ସ୍ଥାନ ପାଇଛି । ଏହା କେତେଦୂର ଯୁକ୍ତିଯୁକ୍ତ ତାହା ଆଲୋଚନାରୁ ସ୍ପଷ୍ଟ ହୋଇପାରିବ ।

ସ୍ୱାଧୀନତା ପୂର୍ବବର୍ତ୍ତୀ ସମୟରେ ମାନବବାଦୀ ସ୍ୱର ମଧ୍ୟରେ ଯେଉଁ ବୈପ୍ଲବିକ ଚେତନା ଅନୁରଣିତ ହେଉଥିଲା, ସ୍ୱାଧୀନତା ପରେ ତାହା କ୍ରମେ କ୍ଷୀଣ ହୋଇ ପଡ଼ିଛି । କବି ସଚ୍ଚିରାଉତରାୟ ମଧ୍ୟ ଏଥିରୁ ନିବୃତ୍ତ ହୋଇନାହାନ୍ତି । ପାଶ୍ଚାତ୍ୟ ଦର୍ଶନର ପ୍ରଭାବ, ବିଶ୍ୱଯୁଦ୍ଧର ଭୟାବହତା ଯେଉଁ ଅସହାୟତା ଓ ଅନ୍ତଃସାର ଶୂନ୍ୟତା ସୃଷ୍ଟି କରିଥିଲା ତାହା ଏକ 'ବିକଳ୍ପ-ବିଧ୍ୱସ୍ତ ମାନବବାଦୀ' ଚିନ୍ତାଧାରାକୁ ରୂପ ଦେଲା । ଗୁରୁପ୍ରସାଦ ମହାନ୍ତି, ବେଣୁଧର ରାଉତ, ଚିନ୍ତାମଣି ବେହେରା, ଜାନକୀ ବଲ୍ଲଭ ମହାନ୍ତି (ଭରଦ୍ୱାଜ), ରମାକାନ୍ତ ରଥ, ସୀତାକାନ୍ତ ମହାପାତ୍ର, ଉମାଶଂକର ପଣ୍ଡା ପ୍ରମୁଖ କବିମାନେ ଏହି ମାନବବାଦୀ ଭାବଧାରାକୁ କବିତାରେ ପ୍ରକାଶ କଲେ । କବି ଜାନକୀବଲ୍ଲଭ ମହାନ୍ତି (ଭରଦ୍ୱାଜ)ଙ୍କ ଭାଷାରେ:-

"କୋଟି ମାନବର ଶତ ସୁଖ ସ୍ୱପ୍ନ କାହିଁ
ହଜିଯାଏ ମରଣର ଚିର ଅଭିସାରେ
ମରୁଡ଼ିର ବିଷାକ୍ତ ନିଃଶ୍ୱାସେ
ଜାଳିଦିଏ ଶତାବ୍ଦୀର ସୁନାର ଫସଲ
ଟିକ୍ ଟିକ୍ କରେ ତଳେ
ସଂଖ୍ୟାହୀନ, ପଚମାନ ଧୂସରିତ ଶବ
ଆଉ ତାର ଶୁଭ୍ର ଅସ୍ଥି, ମଜ୍ଜା ମାଂସ,
ବିରାଟ ବିଦ୍ରୂପ ।"(୨୬୫)

ଏହି କବିତାରେ ଅସହାୟ ଜନତାର ବିପର୍ଯ୍ୟସ୍ତ ଅବସ୍ଥାର ଚିତ୍ର ପ୍ରତିଫଳିତ । ସମାଜ ଆଜି ଏକ ସଂକଟମୟ ପରିସ୍ଥିତି ମଧ୍ୟଦେଇ ଗତି କରୁଛି । ଏଭଳି ପରିସ୍ଥିତିରେ ମଣିଷର ସୁଖ, ସ୍ୱପ୍ନ ଆଜି ଭୂଲୁଣ୍ଠିତ ହେଉଛି । ତେଣୁ ଏ ପ୍ରକାର ଏକ ଦଗ୍ଧ ଅସହାୟ ସମାଜ ଜୀବନ ସଂପର୍କରେ ଅଧ୍ୟାପକ ଖଗେଶ୍ୱର ମହାପାତ୍ର କହନ୍ତି:-

"ଆଧୁନିକ ବିପର୍ଯ୍ୟସ୍ତ ଓ ବିଶୃଙ୍ଖଳ ସମାଜର ଚିତ୍ର ସହ ଦ୍ୱିଧା ଓ ସଂକଟଗ୍ରସ୍ତ ଯୁଗ ମାନସର ପ୍ରତିବିମ୍ବ ଏ ଯୁଗର କାବ୍ୟଶିଳ୍ପ ମଧ୍ୟରେ ଜୀବନ୍ତ । ଆଧୁନିକ କାବ୍ୟକଳା ମାନବଧର୍ମୀ ଓ ଯୁଗୀୟ ସଂକଟର ସମାଧାନ ଅନ୍ୱେଷୀ ।"(୨୬୬)

ଯନ୍ତ୍ରଣାଦାୟକ ଜୀବନବୋଧ ପ୍ରତି କବି ହୃଦୟର ସମବେଦନା ପ୍ରକାଶିତ । ସାଧାରଣ ମଣିଷର ଦୈନନ୍ଦିନ ଜୀବନର ଦୁଃଖକୁ କବି ସୀତାକାନ୍ତ ମହାପାତ୍ର କିପରି ମାର୍ମିକ ଭାଷାରେ ପ୍ରକାଶ କରିଛନ୍ତି ତାହା ନିମ୍ନୋକ୍ତ ପଂକ୍ତିରୁ ସୂଚିତ ହୁଏ ।

"ଦୁଃଖ
ଅମାବାସ୍ୟା ରାତି ଠୁଁ କଳା
ଡେଙ୍ଗା ଡେଙ୍ଗା ଗୋଡ଼ ପକେଇ କାହୁଁ ଆସେ

ପିଲାଦିନ ବନ୍ଧୁ ପରି
ମୋ ନିର୍ଜନ ଘରେ ପଶେ
ବିଛଣାରେ ଗୀତ ବୋଲି ଗଡ଼ିପଡ଼େ ।"(୨୬୭)

ପ୍ରଗତିବାଦୀ ସ୍ରଷ୍ଟା ଦୃଷ୍ଟିରେ ଯେମିତି ସମାଜର ଦୋଷଦୁର୍ବଳତା ବାଦ୍‌ପଡ଼େ ନାହିଁ । ସେଥିପ୍ରତି ସେ ଅଂଗୁଳି ନିର୍ଦ୍ଦେଶ କରେ କବି ସୀତାକାନ୍ତଙ୍କ ଦୃଷ୍ଟିରୁ ମଧ୍ୟ ସମାଜର ଦୋଷଦୁର୍ବଳତା ବାଦ୍‌ପଡ଼ିନାହିଁ । ପ୍ରୟୋଗବାଦୀ କବିତାର ସଫଳ ରୂପକାର ହେଲେ ମଧ୍ୟ ନିଜକୁ ଜଣେ ସାମାଜିକ ଅଂଗୀକାରବଦ୍ଧ ସ୍ରଷ୍ଟା ଭାବରେ ପ୍ରମାଣିତ କରିବାକୁ ଯାଇ ସେ ଲେଖି ବସନ୍ତି ।

"ଅନନ୍ତ ଶୟନ ତେଜି ଆମ୍ଭେ ଏବେ ଆସିଗଲୁ ଘାଟୀ ଡେଇଁ
ଆଲୁଅର ରୋଷଣୀ ଖେଳାଇ
ଉଦୁଉଦିଆ ଖରାରେ ଢୋଲ ଏବଂ ମହୁରୀ ବଜାଇ
ଶାଳ ଏବଂ ମହୁଲ ଫୁଲ, ହାଣ୍ଡିଆ ଛେଳି କୁକୁଡ଼ା ଠୁଳକର
ଦିନବାର ସଜାଡ଼ି ଦେ ପୂଜାଲାଗି ଦିଶାରୀ ଡକାଇ ।"(୨୬୮)

ଜଣେ ସାମାଜିକ ଅଂଗୀକାରବଦ୍ଧ ସ୍ରଷ୍ଟା ଯେପରି ନିଜର ସମାଜମନସ୍କ ଦୃଷ୍ଟିଭଂଗୀକୁ ପ୍ରାଧାନ୍ୟ ଦେଇଥାଏ, କବି ସୀତାକାନ୍ତ ଆଲୋଚ୍ୟ କବିତାଂଶରେ ତାହା ହିଁ କରିଛନ୍ତି । ପ୍ରଗତିବାଦ ପ୍ରସଂଗରେ ଆମେ ଯେଉଁ ସାମାଜିକ ଅଂଗୀକାରବଦ୍ଧତା ସଂପର୍କରେ ଆଲୋଚନା କରୁଥିଲେ, ସେଥିରେ ସ୍ରଷ୍ଟା ସମାଜର ଦୋଷ ପ୍ରତି ପ୍ରତ୍ୟେକ୍ଷ ଆରୋପ କରିବା ସହିତ ଏହାର ସମାଧାନ ପାଇଁ ବୈପ୍ଳବିକ ପନ୍ଥା ଅବଲମ୍ବନ କରିଥାଏ । କବି ସୀତାକାନ୍ତଙ୍କର କବିତାରେ ଯଦିଓ ଆର୍ଥନୀତିକ ଶୋଷଣର ଚିତ୍ର ରହିଛି କିନ୍ତୁ ଏହାର ନିରାକରଣ ସଂପର୍କରେ କବି ଦୃଢ଼ ପଦକ୍ଷେପ ନେଇପାରିନାହାନ୍ତି । ଏ ସଂପର୍କରେ ପ୍ରାବନ୍ଧିକ ଦାଶରଥି ଦାସ କହନ୍ତି :

"କବି ଆର୍ଥନୀତିକ ଶୋଷଣ ଓ ସାମାଜିକ ଦୁଃସ୍ଥିତି ସଂପର୍କରେ ପୂର୍ଣ୍ଣ ସଚେତନ । ତଥାପି ସେ ଆଦର୍ଶ ଭ୍ରଷ୍ଟ ଶୋଷକ ଶ୍ରେଣୀ ପ୍ରତି ଜିଂଘାସା ପରାୟଣ ହୋଇପାରି ନାହାନ୍ତି ।"(୨୬୯)

ପ୍ରୟୋଗବାଦୀ କବିମାନଂକ ମଧ୍ୟରୁ ଯଦୁନାଥ ଦାଶ ମହାପାତ୍ରଙ୍କ କବିତାରେ କିନ୍ତୁ ପ୍ରଗତିବାଦର ସିଧାସଳଖ ରୂପ ଆମେ ଦେଖିବାକୁ ପାଇବା । ୧୯୫୦ ମସିହାରେ ପ୍ରକାଶ ପଇଥିବା 'ରକ୍ତମୁଖୀ' ନାମକ ଏକ ଦୀର୍ଘ କବିତା ଏହାର ସଫଳ ଉଦାହରଣ ଅଟେ । କବି ସଚ୍ଚିଦାନନ୍ଦ 'ବାଜିରାଉତ' ମାଧ୍ୟମରେ ଯେପରି ନିଜର ସଂଗ୍ରାମୀ ଭାବାଦର୍ଶକୁ କବିତାରେ ରୂପ ଦେଇଥିଲେ କବି ଯଦୁନାଥ ମଧ୍ୟ ସେହିପରି "ରଘୁବେହେରା' ମାଧ୍ୟମରେ ନିଜର ବିପ୍ଳବୀ ଅନୁଚିନ୍ତାକୁ ପ୍ରକାଶ କରିଛନ୍ତି । ଉଭୟ

'ବାଜିରାଉତ' ଏବଂ 'ରଘୁ ବେହେରା' ସମଭାବାପନ୍ନ ଚରିତ୍ର । ଉଭୟ ଦେଶମାତୃକାର ସମ୍ମାନରକ୍ଷା ପାଇଁ ବ୍ରିଟିଶ୍ ଗୁଳିରେ ପ୍ରାଣବିସର୍ଜ୍ଜନ କରିଥିବା ଦୁଇଟି ଚରିତ୍ର । ରଘୁବେହେରାର ବିପ୍ଳବୀ ବ୍ୟକ୍ତିତ୍ୱକୁ କବି ନିଜ ଆତ୍ମାରେ ଅନୁଭବ କରିଛନ୍ତି । ତା'ର ସମାଧି ନିକଟରେ ଠିଆ ହୋଇ କହୁଛନ୍ତି:-

"ଆଜି ରଘୁ ଆସିଛି ମୁଁ
ରିକ୍ତ ହସ୍ତେ
ତୋ ସମାଧି ଦ୍ୱାରେ
ତୋ ଗୁଣର ରଚିବି ପ୍ରତୀକ
ଅଗ୍ନିରୁ ଜନମ ମୋର
ମୁଁ ଯେ ଝଡ଼
ମୁଁ ଯେ ବୈତାଳିକ
ଚକ୍ଷୁରେ ମୋ ସର୍ବଗ୍ରାସୀ କ୍ଷୁଧା
ନିଃଶ୍ୱାସରେ କଠିନତା ଖାଲି
ମୁଁ ପ୍ରବୁଦ୍ଧ ଯମଦଗ୍ନି ସମ
ଧରାଗର୍ଭେ ବିଷଦେବି ଢାଳି ।(୨୭୦)

ତେଣୁ ଏଥିରୁ ପ୍ରମାଣିତ ହୁଏ ଯେ, ପ୍ରୟୋଗବାଦୀ କବିମାନେ ଏଲିୟଟୀୟ ପ୍ରଭାବରେ ପ୍ରଭାବିତ ହୋଇ କାବ୍ୟ କବିତା ରଚନାରେ ମନୋନିବେଶ କରିଥିଲେ ମଧ୍ୟ ପ୍ରଗତିବାଦର ପ୍ଳାବନ ମଧ୍ୟରୁ ନିଜକୁ ବାଦ୍ ଦେବାକୁ ସକ୍ଷମ ହୋଇ ନାହାଁନ୍ତି । ହୁଏତ ପ୍ରଗତିବାଦର ବିପ୍ଳବ ବିରୋଧାଭାସ ସେମାନଂକ କବିତାରେ ଖୋଜିଲେ ନିରାଶ ହେବାକୁ ପଡ଼େ (ଯଦୁନାଥ ଦାଶ୍ ମହାପାତ୍ରଙ୍କ ବ୍ୟତୀତ) କିନ୍ତୁ ମାନବବାଦୀ ଚିନ୍ତାଧାରା ଓ ସାମାଜିକ ଅଂଗୀକାରବଦ୍ଧତାର ସ୍ୱଷ୍ଟ ଚିତ୍ର ଏମାନଂକ କବିତାରେ ସୁଲଭ । ଯେହେତୁ ଏଦୁଇଟି ଚିନ୍ତାଧାରା ପ୍ରଗତିବାଦର ଏକ ଅଂଶବିଶେଷ ତେଣୁ ପ୍ରତ୍ୟକ୍ଷ ଭାବେ ନ ହେଲେ ମଧ୍ୟ ପରୋକ୍ଷ ଭାବରେ ଯେ ପ୍ରୟୋଗବାଦୀ ସ୍ରଷ୍ଟାମାନଂକ ସୃଷ୍ଟିରେ ପ୍ରଗତିବାଦ ସ୍ଥାନ ପାଇଛି ଏହାକୁ ଗ୍ରହଣ କରିବାରେ କୌଣସି ଦ୍ୱିଧା ନାହିଁ ।

---

୧- 'ସାହିତ୍ୟ ଓ ସମାଜବାଦ' - ଡଃ ବାସୁଦେବ ସାହୁ, ଶତନେତ୍ର ପ୍ରକାଶନୀ, ୧୯୮୮ ପୃ. ୭୮)

୨- (କ), (ଖ)- 'ସାମ୍ପ୍ରତିକ ଓଡ଼ିଆ କବିତାରେ ଗଣ ଚେତନାର ଉନ୍ମେଷ ଓ ଉତ୍ତରଣ'- ପ୍ରାବୈଷ୍ଣବ ଚରଣ ସାମଲ- କୋଣାର୍କ ୭୦ ତମ ସଂଖ୍ୟା ୧୯୮୬ ପୃ -୬ ।

୩- 'ବ୍ରଜନାଥ ରଥ ସାକ୍ଷାତକାର' : କବି ଡଃ ହୃଷୀକେଶ ମଲ୍ଲିକ ଭେଟ୯ ପୃ - ୮୭-୮୮ ।
୪- 'ମରୁ ଗୋଲାପ' ସଂ : ପୃ - ୩୫ ।
୫- 'ସ୍ୱାଗତିକା' - ମରୁ ଗୋଲାପ ପୃ ୨୩ ।
୬- 'ମରୁ ଗୋଲାପ' - ଡଗର , ୨୧/୧ ସଂଖ୍ୟା, ୧୯୫୭ ।
୭- 'ହସିଦିଏ ମୃତ୍ୟୁମୁଖୀ ଫୁଲ' ମରୁଗୋଲାପ, ପୃ ୫୪ ।
୮- 'ମେ' ପହିଲାର କବିତା' : ମରୁଗୋଲାପ (ସଂ) ପୃ - ୭୧ ।
୯- 'ଅବଧୂତରୁ ଅଭିଯାତ୍ରୀ' : ବାଞ୍ଛାନିଧି ଦାସ : ପୃ ୪୯ ।
୧୦- 'କିଛୁତ' : ନିଜସ୍ୱ ସଂଳାପ ସଂପର୍କରେ କାବ୍ୟ ପ୍ରକାଶ - ୧୯୬୯ ।
୧୧- 'ବଗ' : 'ନିଜସ୍ୱ ସଂଳାପ' - ପୃ ୪ ।
୧୨- 'ବଡ଼ଦିନ ଉତ୍ସବ', 'ନିଜସ୍ୱ ସଂଳାପ' - ପୃ ୪ ।
୧୩- 'ଓଡ଼ିଆ ସାହିତ୍ୟରେ ପ୍ରଗତିବାଦୀ ଧାରା' : ଡଃ ବିଜୟ କୁମାର ଶତପଥି - ପୃ ୩୮୦ ।
୧୪- 'ନିଃଶବ୍ଦ ପ୍ରତିବାଦ' : କବି ବ୍ରଜନାଥ ରଥ', ପୃ ୫୧ ।
୧୫- 'କୋଣାର୍କ'- ପାଣ୍ଡୁଲିପି', ପୃ-୨୯ ।
୧୬- 'ନିଃଶବ୍ଦ ପ୍ରତିବାଦ' -ପୃ - ୩୫ ।
୧୭- 'ନିଃଶବ୍ଦ ପ୍ରତିବାଦ', ପୃ-୧୦ ।
୧୮- 'ଭୂମି ଓ ଭୂମିକା' - ସଭ୍ୟତାର ମୁହଁ' : ମୟୂର ପବ୍ଲିକେଶନସ୍- ୧୯୭୯ ।
୧୯- 'ଚଢ଼େଇ' - ସଭ୍ୟତାର ମୁହଁ ।
୨୦- 'ହେ ମହାଜୀବନ' - ମୁଖବଂଧ ।
୨୧- 'ମୋର ଲେଖକ ହୋଇବାଧିକ'- ଲଘୁ ଶତକ ।
୨୨- 'ମଶା' - ପୃ ୫୪ ।
୨୩- 'ଥଳି- ଲଘୁ ଶତକ ।
୨୪- 'ହେ ମୋର ସ୍ୱଦେଶ ।
୨୫- 'କାବ୍ୟଲୋକ' : 'ସମୟର ଶଙ୍ଖନାଦ' - ୩ୟ ବର୍ଷ ୧ମ ସଂଖ୍ୟା ପୂଜା ସଂଖ୍ୟା- ୧୯୯୮ ।
୨୬- 'ସଂଜ୍ଞା ବଦଳ' 'ଲଘୁ ଶତକ', ପୃ - ୯୭ ।
୨୭- 'କବି ବ୍ରଜନାଥ ରଥଙ୍କ ଲଘୁ ଶତକ ଏକ ବିମୁଗ୍ଧ ଦୃଷ୍ଟିପାତ' : ଡଃ ଦୁ.ପ୍ର. ପଣ୍ଡା : ଝଙ୍କାର : ୪୬ ଶ ବର୍ଷ - ୫ମ ସଂଖ୍ୟା । ଅଗଷ୍ଟ ୧୯୯୪ ।
୨୮- "ବ୍ରଜନାଥଙ୍କ କାବ୍ୟ ଜିଜ୍ଞାସାରେ ମାନବବାଦୀ ସ୍ୱର ଓ ସଂକଳ୍ପ", ଡଃ ବୈଷ୍ଣବଚରଣ ସାମଲ, ଇସ୍ତାହାର-୮୦, ଜୁନ୍-ଜୁଲାଇ-୨୦୦୧ ।
୨୯- 'ନିର୍ବାଚିତ ନିବଂଧ' : ରବି ସିଂ, - ପୃ-୧୭୧ ।
୩୦- 'ପଥ ପ୍ରାନ୍ତର କବିତା'- ମୁଖ ବଂଧ - ପୃ ୧୩ ।
୩୧- 'ହେ ମୋର ଶାୟକ' : 'ପଥ ପ୍ରାନ୍ତର' କବି ରବି ସିଂ ।

୩୨- 'ସର୍ବକାଳର ସର୍ବହରା 'କବି ରବି ସିଂ : ଡଃ ଶରତ ଚନ୍ଦ୍ର ମହାନ୍ତି - 'ଇସ୍ତାହାର' : ବିଷୁବ ବିଶେଷାଙ୍କ - ୨୦୦୭ ।
୩୩- 'ଦିଅ ମୋତେ ନୂଆ ଇନ୍ଧନ': ପଥପ୍ରାନ୍ତର କବିତା - ୨ୟ ସଂକଳନ, କବି ରବି ସିଂ, ପୃ-୧୪୬ ।
୩୪- "History of oriya 'literature' : M.Mansingha, 1962 P -266.
୩୫- 'ନିଃସଂଗ ପଦାତିକ': ୨ୟ ଖଣ୍ଡ - କଟକ ଟ୍ରେଡ଼ିଂ କଂପାନୀ- କଟକ : ୧୯୯୬ ପୃ - ୧୬୧ ।
୩୬- 'ଚରମ ପତ୍ର : କବି ରବି ସିଂ' ଡଗର ୨୩/୫ ନଭେମ୍ବର - ୧୯୫୯ ।
୩୭- 'ଚରମ ପତ୍ର' (ସଂ) : ମୁଖବଂଧ . ପୃ - ଡ ।
୩୮- 'ଜଳରେ ଅନଳ' 'ଶିଥିଳ ବଲ୍‌ଗା' କବି ରବି ସିଂ - ପୃ ୬୪ ।
୩୯- 'ଏ ସକାଳ ପ୍ରାଣର କବିତା' : ଶିଥିଳ ବଲ୍‌ଗା : କବି ରବି ସିଂ, ପୃ : ୨ ।
୪୦- 'ପଳାୟନ' : ଶିଥିଳ ବଲ୍‌ଗା- କବି ରବି ସିଂ ।
୪୧- 'ପରୱା ନାହିଁ'- 'ଲାଲ୍ ପାଗୋଡ଼ାର ପ୍ରେତ ଓ ଅନ୍ୟାନ୍ୟ କବିତା' : କବି ରବି ସିଂ, ପୃ - ୪୪ ।
୪୨- 'ଆଉ ଥରେ' କବିତା - 'ପାଦଟୀକା' ସଂକଳନ, କବି ରବି ସିଂ ।
୪୩- 'ଲେଖକର ଭୂମିକା' : ସର୍ବହରା - ଜେ. ମହାପାତ୍ର, କଟକ : ୧ମ ପ୍ରକାଶ - ୧୯୭୪ ।
୪୪- 'ଲାଲ ଫଲ୍‌ଗୁ' : କବି ରବି ସିଂ, ଅଗ୍ନିବୀଣା, ଜୁନ୍ - ୧୯୭୩ ।
୪୫- 'କ୍ଷମାକର କ୍ଷମାକର' - ଅପ୍ରୀତିକର କବିତା - କବି ରବି ସିଂ, ପୃ ୧୨୨ ।
୪୬- 'ବ୍ୟାଧ' - କବିତା - 'ଜ୍ୱାଳାରମାଳା' କବି ରବି ସିଂ ।
୪୭- 'ଧୂମକେତୁ' : 'ବିଦୀର୍ଣ୍ଣ', କବି ରବି ସିଂ ।
୪୮- 'କବର ଲଭିଲା ଆହା', 'ପଥପ୍ରାନ୍ତର କବିତା' : କବି ରବି ସିଂ, ପୃ ୯୦ ।
୪୯- 'କାବ୍ୟ ଆଳାପ' : ଭିକାରୀ ଧଳ' - ପୃ - ୫୨ ।
୫୦- 'ଅଗ୍ନିପକ୍ଷ' - 'ଜ୍ୱାଳାରମାଳା' କବି ରବି ସିଂ, ପୃ ୩୬ ।
୫୧- 'ମଶାଲ' - 'ଦୁର୍ଗମ ଗିରି' କବି ରବି ସିଂ, ପୃ ୩୯ ।
୫୨- 'ଦେଶ୍‌ଲାଇ କାଠି - 'ଛାଡ଼ପତ୍ର' - ସୁକାନ୍ତ ଭଟ୍ଟାଚାର୍ଯ୍ୟ, ପୃ ୫୧ ।
୫୩- 'ଖଣ୍ଡିଆ ବିଡ଼ି' ନବମ ସ୍ୱର୍ଗ, କବି ରବି ସିଂ, ପୃ ୩୨ ।
୫୪- 'ଆଧୁନିକେଷୁ' : କ୍ରାନ୍ତି କାମୋଦୀ ।
୫୫- 'ତୁମେ ତ' ଫେରିବ' - 'ତଳକୁ ଉପରେ ଉଠେ ଆଣ ଜନମତ, ପୃ ୧୩ ।
୫୬- 'ସର୍ବକାଳର ସର୍ବହରା କବି ରବି ସିଂ : ଡଃ ଶରତ ଚନ୍ଦ୍ର ମହାନ୍ତି; ଇସ୍ତାହାର, ବିଷୁବ ବିଶେଷାଙ୍କ - ୨୦୦୭ ।
୫୭- 'ଶବ୍ଦେଶ୍ୱରୀ' : 'ଶବ୍ଦବ୍ରହ୍ମ'(ସଂ) - କବି ସଦାଶିବ ଦାଶ, ପୃ -୭ ।
୫୮- 'ମହେନ୍‌ଜୋଦାରୋ' କବିତା : ଶବ୍ଦ ବ୍ରହ୍ମ (ସଂ) : କବି ସଦାଶିବ ଦାଶ - ପୃ - ୧୦୬

୫୯- 'ଉତ୍ତର ପର୍ବ' (ସଂ) - କବି ସ. ଦାଶ - ୨ୟ ସଂସ୍କରଣ ୨୦୦୩ ।
୬୦- 'ଶବ୍ଦବ୍ରହ୍ମ' : ସଂକଳନ - କବି ସ. ଦାଶ - ମୁଖ ବଂଧ - ୧ମ ସଂସ୍କରଣ ୨୦୦୬ ।
୬୧- 'ଉତ୍ତର ଆଧୁନିକ କାବ୍ୟଧାରା : ପ୍ରମୁଖ ସପ୍ତସ୍ୱର' - ଡଃ ଦିଲ୍ଲୀପ କୁମାର ସ୍ୱାଇଁ, ଚିତ୍ରୋତ୍ପଳା ପବ୍ଲିକେସନ୍ସ ।
୬୨- 'ମୁକ୍ତିକାମୀ' : ଉତ୍ତରପର୍ବ : ସ. ଦାଶ - ପୃ - ୧୬ ।
୬୩- 'ନିର୍ଦ୍ଦେଶନାମା' : ଉତ୍ତର ପର୍ବ, ସ. ଦାଶ - ପୃ ୨୦ ।
୬୪- 'ବଂଶୀ-୨' : ଉତ୍ତର ପର୍ବ - ସ. ଦାଶ - ପୃ ୭୮/୭୯ ।
୬୫- 'ଭଗବାନ ଅଛ କାହିଁ' - 'ଅଭିଯାନ' ଗ୍ରନ୍ଥ, କବି ସଚ୍ଚିଦାନନ୍ଦ ରାଉତ୍‌ରାୟ, ପୃ- ୭୭୮ ।
୬୬- 'ଚରମପତ୍ର- କବି ରବି ସିଂ, 'ଡଗର' ୨୩/୫, ନଭେମ୍ବର- ୧୯୫୯ ।
୬୭- 'ଅବଧୂତରୁ ଅଭିଯାତ୍ରୀ' - ବାଞ୍ଛାନିଧି ଦାସ - ଜେନିଥ୍ ପବ୍ଲିକେସନ୍ସ, ଜୁଲାଇ ୨୦୦୪ - ପୃ ୭୮ ।
୬୮- 'ଅବଧୂତରୁ ଅଭିଯାତ୍ରୀ' : ବାଞ୍ଛାନିଧି ଦାସ ।
୬୯- 'ଭାରତବର୍ଷ , କବିତା' - ଉତ୍ତର ପର୍ବ' (ସଂ) : ସ. ଦାଶ - ପୃ - ୧୦୭ ।
୭୦- 'ଯତନନଗର' - ଷଷ୍ଠ ଚେତନା (ସଂ) - ପୃ - ୧ ।
୭୧- 'ଯତନ ନଗର - ଷଷ୍ଠ ଚେତନା (ସଂ) - ପୃ - ୧ ।
୭୨- 'ମୁନାତନ୍ ବବି' - ଷଷ୍ଠ ଚେତନା - ସ. ଦାଶ - ପୃ - ୫୦ ।
୭୩- 'ରୋସନ୍ନାରା' - ଷଷ୍ଠ ଚେତନା - ସ. ଦାଶ - ପୃ - ୫୨ ।
୭୪- 'ଉତ୍ତର ଆଧୁନିକ କାବ୍ୟଧାରା : ପ୍ରମୁଖ ସପ୍ତସ୍ୱର' : ଦିଲ୍ଲୀପ କୁମାର ସ୍ୱାଇଁ - ଚିତ୍ରୋତ୍ପଳା ପବ୍ଲିକେସନ୍ସ, ପୃ-୧୩୩ ।
୭୫- 'ସୂଚିପତ୍ର, ଅବଧୂତ କ୍ରାନ୍ତି, ସ.ଦାଶ - ପୃ ୪୪ ।
୭୬- 'ନବଜାତ ଲଗ୍ନ' - କାଳ ନିରବଧି, ପୃ - ୧ ।
୭୭- 'ପତାକାର ତିନୋଟି ରଂଗ' - ନିତ୍ୟ ପଦ୍ମତୋଳା - ପୃ - ୯୧ ।
୭୮- 'ଇସ୍ତାହାର' - ପ୍ରାବନ୍ଧିକ ବୈଷ୍ଣବ ଚରଣ ସାମଲ - ନଭେମ୍ବର - ୧୯୭୪ ପୃ - ୯୨ ।
୭୯- 'କାଳାନ୍ତରର ବାର୍ତ୍ତା' ୰ସୁରେନ୍ଦ୍ର ମହାନ୍ତି : ଆଭା' ; ୩ୟ ବର୍ଷ ୧ମ ସଂଖ୍ୟା ।
୮୦- 'ଅବଧୂତରୁ ଅଭିଯାତ୍ରୀ'- ବାଞ୍ଛାନିଧି ଦାସ: ପୃ-୮୫ ।
୮୧- 'ମତାଅ ମୋତେ'- 'ଦିବ୍ୟସିଂହ ରାଉତରାୟ' 'ଜାଗରଣ' ୧ମ ବର୍ଷ - ୧ମ ସଂଖ୍ୟା, ଫେବୃୟାରୀ - ୭୪-ପୃ-୨୦ ।
୮୨- 'ଜ୍ୱାଳା' - 'ଅଗ୍ନିଶର୍ମାର କବିତା' - ଅବଧୂତ ଯୁଗ - ପୃ ୬ ।
83- "Presentation" - 'Agnisharma' - Abadhuta Group.
୮୪- 'ନୀଳନୂପୁର' ପୃ ୭୧ ।
୮୫- 'ଆକାଶର କାଠଗଡ଼ାରେ ବନ୍ଦୀ ସୂର୍ଯ୍ୟଙ୍କୁ ଜେରା' - ନୀଳନୂପୁର, ପୃ - ୨୩ ।

୮୬- 'ଜୀବନ ସଂଗ୍ରାମ' : କାବ୍ୟଲୋକ -ସମୟର ଶଙ୍ଖନାଦ - ପୂଜା ସଂଖ୍ୟା - ୨୦୦୩ - ପୃ ୯୩ ।
୮୭- 'ବିଧାନସଭା କବିତା' - ଅଧିବେଶନ - ୩୦-୨.୧୯୮୫ ।
୮୮- 'ରକ୍ତପଥ' - ପୃ - ୧୦ ।
୮୯- 'ସ୍ୱପ୍ନ' କବିତା - 'ସମାରୋହ' - ପୂଜା ସଂଖ୍ୟା - ୨୦୦୦, ପୃ -୩୦୩ ।
୯୦- 'ଆଗାମୀ ଯୁଗର କବି' - 'ପ୍ରଭାତ ନଳିନୀ' ।
୯୧- 'ନୂଆ ଦୁନିଆଁ' ୪ର୍ଥ ସଂଖ୍ୟା - ୨୩ । ୧୦-୫୩ ।
୯୨- 'ଓଡ଼ିଆ କବିତାରେ ପ୍ରଗତିବାଦୀ ଧାରା' ଡଃ ବିଜୟକୁମାର ଶତପଥୀ, ପୃ - ୩୯୩ ।
୯୩- 'ଆଗାମୀ' - 'କବିତାର ନାମ ଟର୍ଣ୍ଣାଡୋ' -ପୃ - ୫୯ ।
୯୪- 'ଫସଲ ଓ ଜଂଜାଳ', ମେଘରୁଦ୍ର - ପୃ - ୪୬ ।
୯୫- 'ସାଲ୍‌କୀ' - କବି ବନମାଳୀଙ୍କ ସାର୍ଥକ କବିତା' - ପୃ - ୮ ।
୯୬- 'ଜାଗରେ ଜାଗ ବାଲିଆପାଳ'- ବନମାଳୀ ସେନାପତି ।
୯୭- 'ଅବଧୂତରୁ ଅଭିଯାତ୍ରୀ' - ବାଞ୍ଛାନିଧି ଦାସ - ପୃ ୧୪୭ ।
୯୮- 'ଅବଧୂତରୁ ଅଭିଯାତ୍ରୀ' : 'ବାଞ୍ଛାନିଧି ଦାସ' ଜେନିଥ୍ ପବ୍ଲିକେସନ୍ସ- ପ୍ରଥମ ସଂ- ୨୦୦୪, ପୃ - ୨୫୫ ।
୯୯- 'କୋଣାର୍କ' : ମୌନ ଆରୋହ କ୍ଳାନ୍ତ ଅବରୋହ, ବ୍ରଜେନ୍ଦ୍ର ଦତ୍ତ, ରୂପାମ୍ବରା ପ୍ରକାଶନୀ - ପୃ - ୮୦ ।
୧୦୦- 'ଜୀବନ' - ମୌ-ଆ-କ୍ଳା.ଅ.- ବ୍ରଜେନ୍ଦ୍ର ଦତ୍ତ, ରୂପାମ୍ବରା ପ୍ରକାଶନୀ, ପୃ - ୧୬ ।
୧୦୧- 'ଇରାନ୍' - ମୌ.ଆ.କ୍ଳା-ଅ-ବ୍ରଜେନ୍ଦ୍ର ଦତ୍ତ - ୧୯୯୯-ପୃ ୨୫ ।
୧୦୨- "ନାଚେରେ ପଦ୍ମା ମୋ ନୀଳ ପଦ୍ମା"- ମୌ. ଆ.କ୍ଳା.ଅ. ବ୍ରଜେନ୍ଦ୍ର ଦତ୍ତ, ରୂପାମ୍ବରା ପ୍ରକାଶନୀ, ପୃ-୨୨ ।
୧୦୩-'ସର୍ବହରା', 'ଆଧୁନିକ'- ୧ମ ବର୍ଷ ୧ମ ସଂଖ୍ୟା- ଅକ୍ଟୋବର-୧୯୩୬ ।
୧୦୪- 'ଅକ୍ଷର' - 'ନିଅଁଟ ରାତିର ସ୍ୱପ୍ନ' - ପୃ ୧୦୧ ।
୧୦୫- 'ଜନ ଚେତନାର ଅଂଗୀକାର' : କବି ହୁସେନ୍‌ଙ୍କ କାବ୍ୟସ୍ୱର : କାବ୍ୟ ଆଳାପ ଭିକାର' ଧଳ : ପୃ - ୧୩୭ ।
୧୦୬-'ଆଗାମୀର ସ୍ୱାଗତିକା' 'ମୁକ୍ତ ପୂର୍ବାଶା' ଓଡ଼ିଶା ବୁକ୍‌ଷ୍ଟୋର କଟକ ୧୯୮୨, ପୃ ୨୦ ।
୧୦୭-Mao-Tse - Tung : Report on an Investigation of the peasant movement in Human." March : 1927, selected works, Vol I, P - 28 .
୧୦୮- 'ଏକ ସଂଜ୍ଞା : ବିପ୍ଳବର' - ମୁକ୍ତ ପୂର୍ବାଶା - ପୃ ୨୭ ।
୧୦୯- 'କ୍ରାନ୍ତିକାରୀର ଇସ୍ତାହାର' - 'ବେଳା' - ୩/୨ ସଂଖ୍ୟା ।

୧୧୦-'ମୁକ୍ତିର ଲାଲ ସୂର୍ଯ୍ୟ' : ମୁକ୍ତ ପୂର୍ବାଶା କବି ହୋସେନ୍ ରବି ଗାନ୍ଧୀ - ପୃ ୩୨ ।
୧୧୧- 'ଲୋକ ଗୀତ କାହିଁକି ?' 'ଲୋକ ଗୀତ' : ହୁସେନ୍ ରବି ଗାନ୍ଧୀ - ପୃ ୩୧/ ୩୨ ।
୧୧୨-'ପାରି ହୋଇଯାରେ ତପତ ନଈ' - ଲୋକ ଗୀତ ପୃ - ୨୨ ।
୧୧୩-'ଲୋକ ଗୀତ' - ପୃ ୧୧ ।
୧୧୪- 'ଅଂଧାରକୁ ଅଭିଶାପ ଦିଅନା' - 'ସିଂହାସନ ଭାଂଗିବାର କାର୍ଯ୍ୟକ୍ରମ' ।
୧୧୫-'କୁଆ' - ନିଅଁଟ ରାତିର ସ୍ୱପନ୍ ପୃ ୩୨ ।
୧୧୬-'ମାଂସ' : 'ଶର୍ମିଷ୍ଠା' : ପୂଜା ସଂଖ୍ୟା - ୧୯୯୩ ।
୧୧୭-'ମୁଷ୍ଟି ବନ୍ଧ ହୁଅ' - 'ନିଅଁଟ ରାତିର ସ୍ୱପ୍ନ' - ପୃ ୫୦ ।
୧୧୮-'ଯୌବନ' : ନିଅଁଟ ରାତିର ସ୍ୱପନ ପୃ -୮୮ ।
୧୧୯-'ଯୌବନ' - ପୃ ୮୮ ।
୧୨୦-'ବିଦ୍ରୋହୀ' - 'ମୋସଲେମ୍ ଭାରତ' ପତ୍ରିକା - ୧୯୧୦ ।
୧୨୧- 'ହାସଲ'- କବି ଈଶ୍ୱର ନାୟକ ।
୧୨୨-'ଲଇଡାର ଗାନ୍ଧି'- ଈଶ୍ୱରନାୟକ ।
୧୨୩- 'ବୋମାନୁହେଁ'- ଈଶ୍ୱର ନାୟକ ।
୧୨୪-'ଶୀତରତୁ ବିପକ୍ଷରେ'- ଈଶ୍ୱର ନାୟକ ।
୧୨୫-'ଅରଣ୍ୟର ଅଧିକାର ବନାମ ଆଦିବାସୀ ଉଚ୍ଛେଦ' : ସମରେନ୍ଦ୍ର ନାୟକ, ଚିତ୍ରୋତ୍ପଳା ପବ୍ଲିକେସନ୍ସ୍, ୨୦୦୫-ପୃ - ୧ ।
୧୨୬-"ବିପ୍ଳବୀ ପାର୍ଟି ଗଢ଼ାର କାଜ୍ ଅଭିଲମ୍ବେ ସୁରୁ କର୍ ତେ ହବେ" - ଦେଶବ୍ରତୀ' - ୧୯୭୧- ଅକ୍ଟୋବର ପୃ-୨୬ ।
୧୨୭-'ଘାଟୀ' : ବେଳା - ୩/୩ ସଂଖ୍ୟା ।
୧୨୮-'ଖୁକା ଦାସ୍' - 'ଅଗ୍ନି ବୀଣା', ଅକ୍ଟୋବର, ୧୯୭୩ ।
୧୨୯-'ସହୀଦ୍ ବାବୁଲାଲ୍' - 'ବାରୁଦ ସ୍ତୁପର କବିତା' - ପୃ - ୨୮ ।
୧୩୦-'ସହୀଦ୍ ସଂଗୀତ' - 'ବାରୁଦ ସ୍ତୁପର କବିତା' - ପୃ - ୩୬ ।
୧୩୧-'ବର୍ଷକ ବାରମାସ ଫୁଲ ଫୁଟେ' - 'ଆଚୁନୁ' - ପୃ - ୫ ।
୧୩୨-'Massline' - vol - II, No - 6 Sept. 13 - 1970.
୧୩୩-'ଲାଲ୍‌ପତ୍ର ଓ ନୂତନ ପୃଥିବୀ' - ରୁକୁ ଡୋକ୍ରା (ମୁଖବଂଧ) ।
୧୩୪-'ଲାଲ୍‌ପତ୍ର ଓ ନୂତନ ପୃଥିବୀ' - ପୃ - ୨୧ - ୨୨ ।
୧୩୫- "ଶିଶୁ ଭିତରେ ସ୍ୱାଧୀନ ଚେତନା ସୃଷ୍ଟି ପାଇଁ ମୁଁ ଲେଖୁଛି" ପ୍ରସଂଗ - ପ୍ରଜାତନ୍ତ୍ର ସାପ୍ତାହିକୀ ।
୧୩୬- "କବି ପ୍ରସନ୍ନ ମିଶ୍ର : 'ଅବଧୂତରୁ ଅଭିଯାତ୍ରୀ" : ବାଞ୍ଛାନିଧି ଦାସ, ପୃ - ୨୩ ।
୧୩୭- "କବି ଅନନ୍ତ ପଟ୍ଟନାୟକଙ୍କ ସହ ସାକ୍ଷାତକାର" : ଡଃ ବିଜୟ କୁମାର ଶତପଥି । ୩୦ । ୧୦ । ୮୪
୧୩୮-'ମୋ ଦେଶ' ଡଃ ପ୍ରସନ୍ନ ମିଶ୍ର, ଅଳକାନନ୍ଦା - ୨ୟ ବର୍ଷ ଦ୍ୱାଦଶ ସଂଖ୍ୟା, ଅଗଷ୍ଟ

୧୯୯୧ ।

୧୩୯-'ନୂଆ ଦୁନିଆଁ' - ଭଗବତୀ ବିଶେଷାଙ୍କ - ଅକ୍ଟୋବର ୧୯୯୫-ପୃ ୩ ।

୧୪୦- 'ଟ୍ରଙ୍କ୍ ତାଲାରେ ସନାତନ' ମୁଖବଂଧ - ଡଃ ପ୍ରସନ୍ନ କୁମାର ମିଶ୍ର ।

୧୪୧- 'ଉତ୍ତର ଆଧୁନିକ କାବ୍ୟଧାରା : ପ୍ରମୁଖ ସପ୍ତସ୍ୱର' : ଡଃ ଦିଲ୍ଲୀପ କୁମାର ସ୍ୱାଇଁ- ପୃ. - ୬୬ ।

୧୪୨- 'ଝୁମୁକା', ରାମକୃଷ୍ଣନନ୍ଦ ।

୧୪୩-'ଅଥବା ସନ୍ନ୍ୟାସ' - ପୃ ୧୭ ।

୧୪୪-'ଟ୍ରଙ୍କ୍ ତାଲାରେ ସନାତନ'; ପୃ -୨୬ ।

୧୪୫-'ଯେଉଁଠି ପୋତି ହୋଇଛି' - ପୃ - ୮୩ ।

୧୪୬-'ଟ୍ରଙ୍କ୍ ତାଲାରେ ସନାତନ' ପୃ - ୭ ।

୧୪୭- 'ଟ୍ରଙ୍କ ତାଲାରେ ସନାତନ', ମୁଖବଂଧ - ପ୍ରସନ୍ନ ମିଶ୍ର ।

୧୪୮-'ସନାତନକୁ ରକ୍ତ ଦିଅ' - ପୃ ୮୮ ।

୧୪୯- "ଟ୍ରଙ୍କ୍ ତାଲାରେ ସନାତନ ଓ ସ୍ରଷ୍ଟା ପ୍ରସନ୍ନ କୁମାର ମିଶ୍ର:" ସାକ୍ଷାତ - ଡା ଦିଲ୍ଲୀପ କୁମାର ସ୍ୱାଇଁ 'ପର୍ବ' - ଶାରଦୀୟ ବିଶେଷଙ୍କ - ୧୯୯୯-ପୃ ୧୦ ।

୧୫୦-'ହାତକୁ ମୁଠା କରିବାର ବେଳ'- ଚାଲିବାର ଗୀତ (ସଂ) ।

୧୫୧-'ହାତକୁ ମୁଠା କରିବାର ବେଳ' - ଚାଲିବାର ଗୀତ (ସଂ) ପୃ - ୨୦ ।

୧୫୨- 'ଅବଧୂତରୁ ଅଭିଯାତ୍ରୀ - ବାଞ୍ଛାନିଧି ଦାସ, ପୃ - ୨୪୨ ।

୧୫୩- "ଆଶୁତୋଷଙ୍କ କାବ୍ୟ ଦିଗ୍‌ବଳୟରେ ବୈପ୍ଳବିକ ବୌଦ୍ଧିକତା" - ଡଃ ଭରତ ବେହେରା - କାବ୍ୟା ଲୋକ : ସମୟର 'ଶଙ୍ଖନାଦ - ୩ୟ ବର୍ଷ ୪ର୍ଥ ସଂଖ୍ୟା । ଅପ୍ରେଲ୍-ଜୁନ୍ ୧୯୯୯, ପୃ -୯ ।

୧୫୪- 'ଈପ୍‌ସିତ କ୍ରୋଧ' : ମୁଖବଂଧ - କବି ବ୍ରଜନାଥ ରଥ ।

୧୫୫-'ଭାରତ ବର୍ଷ' - ପୃ ୨ ।

୧୫୬-'ଭାରତ ବର୍ଷ' - ପୃ ୩ ।

୧୫୭-'ପ୍ରତିପକ୍ଷର ବ୍ୟୁହ' - ପୃ ୩୫ ।

୧୫୮-'କଂକାଳ' - ପୃ - ୭୧ ।

୧୫୯-'ମାଟି ଓ ମଣିଷ ପାଇଁ ଚିରକାଳ' - ପୃ ୮୦ ।

୧୬୦- 'ସାହିତ୍ୟ ଓ ସମାଜବାଦ' : ଡଃ ବାସୁଦେବ ସାହୁ - ପୃ - ୨୭ ।

୧୬୧-'ଚଣ୍ଡାଳ', ପୃ -୧ ।

୧୬୨- 'ଚଣ୍ଡାଳ' ଜନ୍ମଲଗ୍ନର ରହସ୍ୟ ସହ କବି ଆଶୁତୋଷ ପରିଡ଼ା'- ସାକ୍ଷାତକାର - ଡଃ ଦିଲ୍ଲୀପ କୁମାର ସ୍ୱାଇଁ - 'ପର୍ବ' - ଶାରଦୀୟ ୧୯୯୯- ପୃ ୨୩ ।

୧୬୩-'ଚଣ୍ଡାଳ' ପୃ - ୬ ।

୧୬୪-'ଚଣ୍ଡାଳ' ପୃ - ୧୦ ।

୧୬୫-'ଚଣ୍ଡାଳ' ପୃ - ୨୭ ।

୧୬୬-'ଚଣ୍ଡାଳ' - ପୃ - ୧୮ ।

୧୬୭- 'ଓଡ଼ିଆ ସାହିତ୍ୟ ଯୁଗେ ଯୁଗେ' : ଡଃ ବୈଷ୍ଣବ ଚରଣ ସାମଲ ; ପୃ-୧୯
୧୬୮-'କବିତା - 'ଭୂମି' - ଶବ୍‌ଦଭେଦୀ ପୃ ୨୮ ।
୧୬୯-'ଅଯୋଧ୍ୟା' : ଶବ୍‌ଦ ଭେଦୀ ପୃ - ୭୧ ।
୧୭୦- 'ରକ୍ତ ବର୍ଣ୍ଣ ବାଲି' ସମୀକ୍ଷା : ପ୍ର. ନିତ୍ୟାନନ୍ଦ ଶତପଥୀ - ଇସ୍ତାହାର - ୨୦୦୧ ପୃ - ୧୨୨ ।
୧୭୧-'ଦେଶ -୨'- 'ରକ୍ତ ବର୍ଣ୍ଣ ବାଲି' - ପୃ - ୪ ।
୧୭୨-'ଜାଲ' : ରକ୍ତବର୍ଣ୍ଣ ବାଲି ପୃ -୨୦ ।
୧୭୩-'ଅମର୍ତ୍ତ୍ୟ ସେନ୍'- 'ରକ୍ତବର୍ଣ୍ଣ ବାଲି' ଚିତ୍ରୋତ୍ପଳା ପବ୍ଲିକେସନ୍‌ସ୍ ପୃ - ୪୧ ।
୧୭୪-ଡଃ ନିତ୍ୟାନନ୍ଦ ଶତପଥୀ : 'ଇସ୍ତାହାର'-୨୦୦୧, ପୃ-୧୨୫ ।
୧୭୫-'ଅଂଗାରଗାର' : 'ଅଂଗାରଗାର' ଚିତ୍ରୋତ୍ପଳା ପବ୍ଲିକେସନ୍‌ସ୍ - ପୃ. ୨୯ ।
୧୭୬- 'ପୁନଶ୍ଚ'- ମୁଖବଂଧ - ରଘୁନାଥ ଦାସ - ରଘୁନାଥ ଦାସ ରଚନା, ସମଗ୍ର - ପୃ ୬୩ ।
୧୭୭- 'ଝର୍କା ବାହାରେ' : ମୁଖବଂଧ - କବି ବ୍ରହ୍ମାନନ୍ଦ ଦାସ ।
୧୭୮-'ଝର୍କାବାହାରେ' କବି ବ୍ରହ୍ମାନନ୍ଦ ଦାସ ।
୧୭୯-'ମହାନଦୀ ପାଣି' - ଝର୍କା ବାହାରେ ।
୧୮୦-'ସଭା' - 'ଝର୍କା ବାହାରେ' : ବ୍ରହ୍ମାନନ୍ଦ ଦାସ ।
୧୮୧-'ସଂସ୍କୃତି' - ଝର୍କା ବାହାରେ ।
୧୮୨-'ଶାସନ କରିବା' - 'ମାଟିର ମହୁରୀ' ପୃ - ୨୮ ।
୧୮୩- 'ସୂତାକଟା' - 'ତାଳଗଛ' ।
୧୮୪-'ବକ୍ତବ୍ୟ' - 'ମାଟିର ମହୁରୀ' ପୃ - ୧୦ ।
୧୮୫-'ମାକଡ଼ସା' : 'ଜୀବନ ଯେମିତି' ।
୧୮୬- 'ଉତ୍ତର ଆଧୁନିକ କାବ୍ୟଧାରା : ପ୍ରମୁଖ ସପ୍ତସ୍ୱର' - ଦିଲ୍ଲୀପ କୁମାର ସ୍ୱାଇଁ - ପ - ୨୬୫ ।
୧୮୭-'ମବୀ ଉବାଚ' - ମାଟିର ମହୁରୀ -ପୃ - ୫୮ ।
୧୮୮-'ରୁଚି' - ମଣିଷ ତୁମ ସାଥିରେ : ଅକ୍ଷର ପ୍ରକାଶନୀ, ୧୯୯୮, ପୃ ୩ ।
୧୮୯- 'ଅବଧୂତରୁ ଅଭିଯାତ୍ରୀ' : ବାଞ୍ଛାନିଧି ଦାସ - ପୃ. - ୨୫୧ ।
୧୯୦-'ବନ୍ଧୁ' 'ତ୍ରିଲୋଚନା ଭୋଇ'- 'ବେଲା' ୪ର୍ଥ ବର୍ଷ ୧ମ ସଂଖ୍ୟା ପୃ-୩୨୫/ ୩୨୬
191- 'Give us' - poem-Trilochan Bhoi.
୧୯୨-'ମୁଁ ତମକୁ ନମସ୍କାର କରେ' - ତ୍ରିଲୋଚନ ଭୋଇ)
୧୯୩-କବିତା 'ସ୍ୱଗତୋକ୍ତି'-ତ୍ରିଲୋଚନ ଭୋଇ- 'ଅଞ୍ଜଳି' ସମ୍ପାଦକ-ଭାନୁପ୍ରକାଶ ଯୋଷୀ- ୧ମ ବର୍ଷ ୧ମ ସଂଖ୍ୟା ନବବର୍ଷ ବିଶେଷାଙ୍କ-ପୃ-୩୭ ।
୧୯୪- 'ଉତ୍ସର୍ଗ' : 'ସୁପ୍ତ ମଣିଷ ଜାଗି ଉଠ' : ପରମାନନ୍ଦ ମୁଦୁଲୀ ।
୧୯୫- 'ମାର୍ ତୁ ଯେତେ ଗୁଳି'-ସୁପ୍ତ ମଣିଷ ଜାଗିଉଠ- ପରମାନନ୍ଦ ମୁଦୁଲୀ, ପୃ-୧

୧୯୬-'ସୁପ୍ତ ମଣିଷ ଜାଗି ଉଠ' - ପୃ - ୩ ।
୧୯୭-'ସଂଗ୍ରାମ ସରିନାହିଁ' : ସୁ.ମ. ଜାଗି ଉଠ ପୃ .୮ ।
୧୯୮-'ଭଲା ସ୍ୱାଧୀନତା ଭଲାରେ' କବି ପରମାନନ୍ଦ ମୁଦୁଲି, ପୃ-୯
୧୯୯-'ଗୋଟି ଜୀବନ' ପୃ - ୧୫ ।
୨୦୦- 'ପୁନଶ୍ଚ' ମୁଖବଂଧ - କବି ରଘୁନାଥ ଦାସ ।
୨୦୧- 'ଗଣିକା ଗଣତନ୍ତ୍ର' - ମୁଖ ବଂଧ - ବିବେକାନନ୍ଦ ନାୟକ ।
୨୦୨-'ଚେୟାର', ଲୋହିତ ଦିଗନ୍ତ, ଗଣବାଦୀ ଲେଖକ ସାମ୍ମୁଖ୍ୟ, ଜଳେଶ୍ୱର ୧୯୮୬- ପୃ - ୧୪ ।
୨୦୩- 'ସୁବର୍ଣ୍ଣରେଖାର ମାଝୀ' ଲୋହିତ ଦିଗନ୍ତ - ପୃ ୩୦ ।
୨୦୪- 'ଲେନିନ୍' ଛାଡ଼ପତ୍ର - ପୃ ୪୧ ।
୨୦୫- 'ଲେନିନ୍' : ସ. ରାଉତରାୟ, ସମାଜ - ୨୬-୧-୯୨ ।
୨୦୬- 'ମହାନ୍ ଲେନିନ୍' - ଯନ୍ତ୍ରଣାର କାବ୍ୟ - ପୃ ୫ ।
୨୦୭- ଲେନିନ୍ - 'ନୂଆ ଦୁନିଆଁ' ୩/୧୩ ସଂଖ୍ୟା, ୧୯୫୪ ।
୨୦୮- 'ଚୌରଙ୍ଗୀରେ ଲେଲିନ୍ ଷ୍ଟାଚ୍ୟୁ ଦେଖିବାପରେ'- ସଦାଶିବ ଦାଶ - 'ଅଗ୍ନିବୀଣା' - ଅଗଷ୍ଟ ୧୯୭୩ ।
୨୦୯-'ଲେନିନ୍'- ଲୋହିତଦିଗନ୍ତ, କବି ବିବେକାନନ୍ଦ ନାୟକ- ପୃ ୨୩-୨୪ ।
୨୧୦- 'ଅବଧୂତରୁ ଅଭିଯାତ୍ରୀ' ବାଞ୍ଛାନିଧି ଦାସ, ଜେନିଥ୍ - ପୃ ୧୬୬ ।
୨୧୧- 'ଶେଷ ସଂଗ୍ରାମ' ଅଭିଯାତ୍ରୀ, ଅକ୍ଟୋବର - ଡିସେମ୍ବର, ପୃ - ୪୬ ।
୨୧୨- 'ଅଭିଯାତ୍ରୀ' - ସଂପାଦକୀୟ - ବାଲିଆପାଳ ବିଶେଷାଙ୍କ- ୧୯୮୭ ।
୨୧୩- 'କେତେଦୂର ଟେର୍ଣ୍ଣେବିଇ ବାଲିଆ ପାଳରୁ ?' ବିଜୟ ଉପାଧ୍ୟାୟ, 'ବସୁନ୍ଧରା ମାଟି' ପୃ - ୯୩ ।
୨୧୪- 'ସେଇ ସାମୁଦ୍ରିକ ପକ୍ଷୀ' : ବିଜୟ ଉପାଧ୍ୟାୟ, ବସୁନ୍ଧରା ମାଟି, ପୃ - ୧୦୫ ।
୨୧୫- 'Massline - vol - II', '' - 6, Sept - 13, 1970.
୨୧୬- 'ମୁଁ ଘିନୁଆ ହେଇପାରେ କି ଟିକ୍ରାକାନି' : ବି. ଉପାଧ୍ୟାୟ, ବ. ମାଟି. ପୃ - ୧୭ ।
୨୧୭- 'ଭାରତବର୍ଷ' (୧) - ବ. ମାଟି, ପୃ - ୩୪ ।
୨୧୮- 'ଭାରତବର୍ଷ' (୧) - ବ. ମାଟି, ପୃ - ୩୪ ।
୨୧୯- 'ସଂଯୋଜନାର ଆଦ୍ୟ ଅଭିବ୍ୟକ୍ତି: ଡ. ଦେବୀପ୍ରସନ୍ନ ପଟ୍ଟନାୟକ: ସ୍ନିଗ୍ଧ ପ୍ରତିଶ୍ରୁତି: ବିମୁଗ୍ଧ ବିଭୂତି, ଏଥେନା ବୁକ୍ସ, ପୃ-୧୧ ।
୨୨୦- 'ପଥପାର୍ଶ୍ୱର କରୁଣାମୟ': ଶିବୋଽହମ୍- ପ୍ରଶାନ୍ତ ମିଶ୍ର, ପୃ୨ ।
୨୨୧- 'ନାଚେ ମଣିଷର ପ୍ରଚଣ୍ଡ ତେଜ ଆଜି': ଶିବୋଽହମ୍- ପୃ-୧୧ ।
୨୨୨- 'ବନ୍ଦିଦାନ': ଶିବୋଽହମ୍-ପୃ୩୨ ।
୨୨୩- 'ପ୍ରଶାନ୍ତ ମିଶ୍ର: ଶିଖା ସ୍ୱାକ୍ଷର ମୁଖବଂଧ', ଚିତ୍ରୋତ୍ପଳା ପବ୍ଲିକେଶନ୍ସ, ସାଲେପୁର, କଟକ ।

୨୨୪- 'ପୃଣିଥରେ': 'ଶିଖା ସ୍ୱାକ୍ଷର', ପ୍ରଶାନ୍ତ ମିଶ୍ର, ଚିତ୍ରୋତ୍ପଳା ପବ୍ଲିକେଶନ୍ସ - ପୃ-୧୬ ।
୨୨୫- 'ଭୀମଭୋଇ': ଶିଖା ସ୍ୱାକ୍ଷର- ପ୍ରଶାନ୍ତ ମିଶ୍ର, ପୃ-୩୦ ।
୨୨୬- 'ଆନ୍ନା ଆସିଛି': ଶିଖା ସ୍ୱାକ୍ଷର, ପ୍ରଶାନ୍ତ ମିଶ୍ର, ପୃ-୮୫ ।
୨୨୭- 'ଭେଜାଲ୍ ଭେଜାଲ୍' ଶିଖା ସ୍ୱାକ୍ଷର, ପ୍ରଶାନ୍ତ ମିଶ୍ର, ପୃ-୮୪ ।
୨୨୮- 'ଫୁଲମାଳ ଲୋଡ଼ାନାହିଁ': ଶି.ସ୍ୱାକ୍ଷର. ପ୍ରଶାନ୍ତ ମିଶ୍ର, ପୃ-୭୦ ।
୨୨୯- 'ଶବ୍ଦବ୍ରହ୍ମ' ମୁଖବଂଧ: କବି. ସଦାଶିବ ଦାଶ ।
୨୩୦- "ବଦଳିବ ଏଇ ମଣିଷ କାଲି"- 'ବହ୍ନିବର୍ଣ୍ଣମାଳା'- ପୃ-୭୭
୨୩୧- 'ଉପୋଦ୍‌ଘାତ' - 'ବସନ୍ତ ବର୍ଣ୍ଣମାଳା', ରଜନୀକାନ୍ତ ମହାନ୍ତି ଓ ପବିତ୍ର ପାଣିଗ୍ରାହୀ, ପ୍ରକାଶକ - କବି ବସନ୍ତ ମୁଦୁଲୀ ସ୍ମୃତି ସଂସଦ, ଭଦ୍ରକ - ୧୯୯୧ ।
୨୩୨- 'ବସନ୍ତାଲେଖ୍ୟ' - ବସନ୍ତ ମୁଦୁଲି ସ୍ମୃତି ସଂସଦ, ସଂ.କୃଷ୍ଣ କୁମାର ମହାନ୍ତି ।
୨୩୩-'ଅପେକ୍ଷା କର ମୁଁ ଫେରୁଛି' କବିତା : ବସନ୍ତ ବର୍ଣ୍ଣମାଳା, ପୃ-୨ ।
୨୩୪-'ଅପେକ୍ଷା କର ମୁଁ ଆସୁଛି' - କବିତା, ବସନ୍ତ ବର୍ଣ୍ଣମାଳା ।
୨୩୫- 'ବସନ୍ତାଲେଖ୍ୟ' - କବି ବସନ୍ତ ମୁଦୁଲି ସ୍ମୃତି ସଂସଦ, ଭଦ୍ରକ 'ଅପେକ୍ଷା କର ମୁଁ ଫେରୁଛି' - ପ୍ରଶାନ୍ତ କୁମାର ପ୍ରଧାନ -ପୃ - ୩୧ ।
୨୩୬-'ବସନ୍ତ ବର୍ଣ୍ଣମାଳା', କବି ବସନ୍ତ ମୁଦୁଲୀ - ପୃ -୩୭ ।
୨୩୭-'ବସନ୍ତ ବର୍ଣ୍ଣମାଳା' - ପୃ -୧୨୦ ।
୨୩୮-'କବି ପ୍ରତି' କବିତା, ବସନ୍ତ ବର୍ଣ୍ଣମାଳା, ପୃ-୫୭ ।
୨୩୯- 'କବି ବସନ୍ତ ମୁଦୁଲୀ' : 'ଅବଧୂତରୁ ଅଭିଯାତ୍ରୀ' : ବାଞ୍ଛାନିଧି ଦାସ- ଜେନିଥ୍ ପବ୍ଲିକେସନ୍ସ, ପୃ - ୧୮୧ ।
୨୪୦- "ଅଶା ଓ ଆଶ୍ୱାସନାର ଏକ ଅରୁଣାୟିତ ଆଲେଖ୍ୟ : କବି ବସନ୍ତ ମୁଦୁଲି" : ଡଃ ତୀର୍ଥାନନ୍ଦ ମିଶ୍ର : ଝଙ୍କାର - ୪୦ ଶ ବର୍ଷ ଦ୍ୱାଦଶ ସଂଖ୍ୟା, ମାର୍ଚ୍ଚ ୧୯୯୫ - ପୃ - ୧୩୪୪ ।
୨୪୧-'ଭାରତ(୧)' 'ଅନ୍ୟ ଏକ ପୃଥିବୀ' ବୈଷ୍ଣବ ଚରଣ ସାମଲ, ବିଦ୍ୟା ପ୍ରକାଶନ ୨୦୦୦ ପୃ-୫୧ ।
୨୪୨-'ବସନ୍ତ ବିଭାଷା'- 'ସମୟର ଲିପି' ବୁକ୍ସ ଆଣ୍ଡ ବୁକ୍ସ ୧୯୭୨ ପୃ-୪୧ ।
୨୪୩-'ଅମୃତ', 'ପୁନଷ୍ଟ ମଣିଷ' ସତ୍ୟବ୍ରତ ପ୍ରକାଶନୀ ପୃ-୭୯ ।
୨୪୪-'କବି ମୁହିଁ ରାଜାର ଶାସନ ମାନିବିନି'- କୁଳମଣି ଜେନା ।
୨୪୫-'ମୁଁ ଯେ ସର୍ବହରାର କବି' - ଦୁର୍ବାର ଶପଥ ପୃ-୧୯ ।
୨୪୬- 'ପଥଛାଡ଼' କେ. ପଦ୍ମଦାସ ।
୨୪୭- 'Long March- Vol-iii, -May- 1973 P-20
୨୪୮- 'ମୁଁ ତୁମ ସହରକୁ ଆସିଛି'- କୁମାର ହାସନ ।
୨୪୯- 'ମ୍ୟୁଜିକ୍ ଚେୟାର'- କୁମାର ହାସନ ।
୨୫୦- 'ଉଲଂଗ ଶୈଶବ'- ଡଃ ଭରତ ବେହେରା ।

୨୫୧- 'ବିଦୀର୍ଣ୍ଣ ବେହେଲା'- ଡଃ ଭରତ ବେହେରା ।
୨୫୨- 'ଶବ୍ଦ ସଂଘର୍ଷ'- ଡଃ ଭରତ ବେହେରା ।
୨୫୩- 'ଶତାବ୍ଦୀର ଘୂର୍ଣ୍ଣନ'- ବାରୁଣୀ ଦ୍ୱିତୀୟ ସଂଖ୍ୟା ୧୯୭୩ - ଘନ ପରିଡ଼ା ।
୨୫୪- 'ନିର୍ଦ୍ଦେଶ'- ଘନ · ପରିଡ଼ା ।
୨୫୫- 'ପାପ ଦେଉଳ' - ଡଃ ବାସୁଦେବ ଦାସ ।
୨୫୬- 'ଅଗ୍ନି ପଦ୍ମ' - ଡଃ ବାସୁଦେବ ଦାସ ।
୨୫୭- 'ଅଗ୍ନି ପଦ୍ମ' - ଡଃ ବାସୁଦେବ ଦାସ ।
୨୫୮- 'ପରାମର୍ଶ' - ବଜ୍ରକଣ୍ଠେ - ପୃ-୨୪, ବାଞ୍ଛାନିଧି ଦାସ ।
୨୫୯- 'ରକ୍ତ ଶପଥ'- ବଜ୍ରକଣ୍ଠେ- ପୃ-୨୧, ବାଞ୍ଛାନିଧି ଦାସ ।
୨୬୦- 'ମୁଁ କଳାହାଣ୍ଡିର ଲୋକ' -(ମାନସ ହଂସ)- ବାଞ୍ଛାନିଧି ଦାସ ।
୨୬୧- 'ବ୍ୟଥା' - ହେମନ୍ତ ରାଉତ ।
୨୬୨- 'ଚାଉଳ' - ହେମନ୍ତ ରାଉତ ।
୨୬୩- 'ସଂକେତ' - ରୁଟି ଓ ରୁତ, ପୃ-୬୪/ ୬୫ -ଅନ୍ନପୂର୍ଣ୍ଣା ମହାନ୍ତି ।
୨୬୪- 'ସାଆନ୍ତଙ୍କ କଟାମୁଣ୍ଡ ରାସ୍ତାମୁଣ୍ଡରେ ପଡ଼ିଥିବା ଦେଖି' - ଅନ୍ନପୂର୍ଣ୍ଣା ମହାନ୍ତି ।
୨୬୫-'ତାର୍ଯ୍ୟକ'-ଜାନକୀ ବଲ୍ଲଭ ମହାନ୍ତି (ଭରଦ୍ୱାଜ) ।
୨୬୬-'ଓଡ଼ିଆ କବିତା', ନବ ପର୍ଯ୍ୟାୟ- ଖଗେଶ୍ୱର ମହାପାତ୍ର, ଜୀବନରଂଗ, ଡମଷ. ୧୯୬୯ ।
୨୬୭-'ମୋ ନିର୍ଜନ ଘରେ'- 'ସମୁଦ୍ର' - ସୀତାକାନ୍ତ ମହାପାତ୍ର ।
୨୬୮-'ଗୋଟିଏ ନାନାବାୟା ଗୀତ' - ସୀତାକାନ୍ତ ମହାପାତ୍ର ।
୨୬୯-'ଚିହ୍ନାମାଟି ଅଚିହ୍ନା ଆକାଶ': ଦାଶରଥିଦାସ ପୃ୨୧୨ ।
୨୭୦-'ରକ୍ତମୁଖୀ'- ଯଦୁନାଥ ଦାଶ ମହାପାତ୍ର- ପୃ-୨୭ ।





# ଷଷ୍ଠ ଅଧ୍ୟାୟ

# ପ୍ରଗତିବାଦୀ କବିତାର ଶୈଳୀ

ଶବ୍ଦ ଓ ଭାବର କଳାତ୍ମକ ସଂଯୋଜନାରେ ସୃଷ୍ଟି ହୁଏ କବିତା । ଏହାର ଶକ୍ତି ଅପ୍ରମିତ । ଏହା କୁତ୍ସିତକୁ ସୁନ୍ଦର କରିବା ସହିତ ହତାଶ ପ୍ରାଣରେ ଆଶାର ସଂଚାର କରିବାକୁ ସମର୍ଥ ହୁଏ । ସାଧାରଣ ଆଖିରେ ଯାହା ତୁଚ୍ଛ, ନଗଣ୍ୟ, କବିତା କଳାର କାଉଁରୀ ପରଶରେ ତାହା ମହାନ୍ ପାଲଟିଯାଏ ।। ଜୀବନର ବ୍ୟାପକ ବୈଚିତ୍ର୍ୟ ଦ୍ୱାରା ଏହା ବିମଣ୍ଡିତ ହୁଏ । କବିତା କଳାକୁ କାଳଜୟୀ କରିବା ପାଇଁ କବିତାର ଶୈଳୀ ପ୍ରମୁଖ ଭୂମିକା ଗ୍ରହଣ କରେ । କବି ଜୀବନର ବ୍ୟାପକ ଅନୁଭୂତି ଯାହା ପ୍ରତିମୁହୂର୍ତ୍ତରେ କବିର ଅନ୍ତରକୁ ମଥିତ କରୁଥାଏ । ଭାଷା ଓ ଛନ୍ଦ ମାଧ୍ୟମରେ ତାହା ପ୍ରକାଶପାଏ । ଓଡ଼ିଆ ସାହିତ୍ୟର ଜନ୍ମଲଗ୍ନରୁ ଅଦ୍ୟାବଧି ଅନୁଧ୍ୟାନ କଲେ ଜଣାଯାଏ ଯେ, ପ୍ରତ୍ୟେକ ଯୁଗର ସ୍ରଷ୍ଟାମାନେ ନିଜସ୍ୱ ଶୈଳୀ (style) ମାଧ୍ୟମରେ ସୃଷ୍ଟିର ସର୍ଜନା କରି ଓଡ଼ିଆ ସାହିତ୍ୟକୁ ସମୃଦ୍ଧ କରିଛନ୍ତି । ଯେମିତିକି ଆଦିକବି ସାରଳା ଦାସଙ୍କ ମହାଭାରତ ଦାଣ୍ଡୀବୃତ୍ତରେ ରଚିତ ହୋଇଥିବାବେଳେ ପଞ୍ଚସଖା ଯୁଗରେ ଜଗନ୍ନାଥ ଦାସଙ୍କ ଭାଗବତ ନବାକ୍ଷରୀ ଶୈଳୀରେ ରଚିତ ହୋଇଛି । ଭଂଜ ଯୁଗୀୟ କାବ୍ୟ କବିତାରେ ସଂସ୍କୃତର ଛାପ ପରିଲକ୍ଷିତ ହେବା ସହିତ ନାନାବିଧ ଅଳଂକାର ଛନ୍ଦର ବହୁଳ ବର୍ଣ୍ଣନା ଏଥିରେ ଦୃଷ୍ଟିଗୋଚର ହୁଏ । ମାତ୍ର ଆଧୁନିକ ଯୁଗରେ ପାଶ୍ଚାତ୍ୟ ଶିକ୍ଷାଦୀକ୍ଷାର ପ୍ରଭାବ ହେତୁ ସମାଜ ଜୀବନ ବିଶେଷ ପ୍ରଭାବିତ ହୁଏ । ଫଳସ୍ୱରୂପ ପାଶ୍ଚାତ୍ୟ କାବ୍ୟଶୈଳୀର ଛାପ ମଧ୍ୟ ଓଡ଼ିଆ କାବ୍ୟକବିତାରେ ଅନୁସୃତ ହୁଏ । ଦୃଷ୍ଟାନ୍ତ ସ୍ୱରୂପ – 'ରାଧାନାଥ ରାୟଙ୍କର 'ମହାଯାତ୍ରା'ରେ ଅମିତ୍ରାକ୍ଷର ଛନ୍ଦର ପ୍ରୟୋଗ । କବିବରଙ୍କ ପରେ ମଧୁସୂଦନରାଓ ମଧ୍ୟ ଓଡ଼ିଆ କବିତାକୁ ପାଶ୍ଚାତ୍ୟ ଶୈଳୀର ଅନୁଗାମୀ କରାନ୍ତି । ସମୟକ୍ରମେ ସତ୍ୟବାଦୀ ସାଧକମାନଙ୍କର ଓଡ଼ିଆ ସାହିତ୍ୟରେ ଅନୁପ୍ରବେଶ ଏହି ରୀତିକୁ ପୂର୍ଣ୍ଣମାତ୍ରାରେ ପରିବର୍ତ୍ତନ କରିଦିଏ । ପାରଂପରିକ କାବ୍ୟିକ ଶୈଳୀ (ବଂଗଳାଶ୍ରୀ, ରାମକେରୀ, ଚଉଦ ଅକ୍ଷରୀ, ବାରଅକ୍ଷରୀ) ର ଆଗମନ ଘଟେ ଓଡ଼ିଆ କବିତା କ୍ଷେତ୍ରକୁ ।

୧୯୩୦ ମସିହା ପରେ ଓଡ଼ିଆ କାବ୍ୟ କବିତା କ୍ଷେତ୍ରରେ ଏକ ଯୁଗାନ୍ତକାରୀ ପରିବର୍ତ୍ତନ ଘଟେ । ଯେଉଁ କାବ୍ୟ କବିତାରେ ଭଂଜଯୁଗର କ୍ଲିଷ୍ଟ ଶବ୍ଦାବଳୀ ଖୋଜିଲେ ମିଳେନାହିଁ, ମିଳେନାହିଁ ମଧ୍ୟ ସବୁଜ ଯୁଗୀୟ ରୋମାଣ୍ଟିକ୍ ପ୍ରବଣତା । କେବଳ ଖୋଜିଲେ ପାଇବା ସହଜ ସରଳ ରୀତିରେ ବର୍ଣ୍ଣିତ ଗଣଜୀବନର ମହାର୍ଘ ଗୀତିକା । ଯାହାର ଅନ୍ୟ ନାମ 'ପ୍ରଗତିବାଦୀ କବିତା' । ବ୍ୟକ୍ତି କୈନ୍ଦ୍ରିକ ଚେତନାଠାରୁ ଖୁବ୍ ଦୂରେଇ ରହୁଥିବା ଏହି ପ୍ରଗତିବାଦୀ କବିତା, ଗୋଷ୍ଠୀଗତ ବା ସମଷ୍ଟିଗତ ଚେତନା ଉପରେ ଗୁରୁତ୍ୱାରୋପ କରିଥାଏ । ପ୍ରଗତିବାଦୀ ସ୍ରଷ୍ଟା କାବ୍ୟକବିତାକୁ ଗଣଜୀବନର ନିକଟବର୍ତ୍ତୀ କରାଇବା ସହିତ ଗଣଜାଗରଣର ମହାନ୍ ଅସ୍ତ୍ର କରାଇବା ପାଇଁ କାବ୍ୟର ଶିଳ୍ପପ୍ରକରଣରୁ ଯଥାସମ୍ଭବ କ୍ଲିଷ୍ଟତାକୁ ପରିହାର କରି ସରଳ ସାବଲୀଳ ଭାଷା ସହିତ ବାକ୍‌ଛନ୍ଦ ମୁକ୍ତଛନ୍ଦର ସମାହାରରେ ଏହାକୁ ଗଣଜୀବନର ମୁକ୍ତି ଗୀତିକାରେ ପରିଣତ କରିଛନ୍ତି । ଏ ପ୍ରସଂଗରେ ଆଲୋଚିକା ଡଃ ଗିରିବାଳା ମହାନ୍ତିଙ୍କ ମତକୁ ଏଠାରେ ଉଲ୍ଲେଖ କରାଯାଇପାରେ ।

"ପ୍ରଗତିପନ୍ଥୀମାନେ କାବ୍ୟର ଭାଷାରେ ଲୌକିକ, ଅଲୌକିକ, ଯାବନିକ ଆଦି ନାନାବିଧ ଶବ୍ଦର ଯେପରି ସହାବସ୍ଥାନ ଘଟାଇଛନ୍ତି, ସେହିପରି ସହାବସ୍ଥାନ ଘଟାଇଛନ୍ତି ଛନ୍ଦ ଓ ବିଛନ୍ଦର, କାବ୍ୟଛନ୍ଦ ସହ ବାକ୍‌ଛନ୍ଦର, ଗଦ୍ୟଛନ୍ଦ ସହ ମୁକ୍ତଛନ୍ଦର । ପ୍ରାଚ୍ୟ ପଦ୍ୟଛନ୍ଦର ସୌକୁମାର୍ଯ୍ୟ ସହ ପ୍ରତୀଚ୍ୟ ଗଦ୍ୟ ଛନ୍ଦର ପୁରୁଷୋଚିତ ଦୀପ୍ତିକୁ ମିଳାଇ ସେମାନେ କାବ୍ୟକୁ ନୂତନ ଦ୍ୟୁତି ଦାନ କରିଛନ୍ତି । ଏପରି ମନୋଭାବ ମୂଳରେ ପୁନଶ୍ଚ ପ୍ରଗତିବାଦୀ ସୁଲଭ ପରଂପରା-ମୁକ୍ତି ମନୋଭାବ ହିଁ ନିହିତ ।"(୧)

ଏଥିରୁ ସ୍ପଷ୍ଟ ପ୍ରତୀୟମାନ ହୁଏ ଯେ, କବିତାକୁ ଗଣଭୋଗ୍ୟ କରିବା ପାଇଁ ପ୍ରଗତିବାଦୀ କାବ୍ୟକାର ଶୈଳୀ ଉପରେ ଗୁରୁତ୍ୱାରୋପ କରିଛନ୍ତି । ସାଂଗୀତିକତା ସହ ଗାନଯୋଗ୍ୟତାକୁ କବିତାର ପ୍ରାଣଧର୍ମ ରୂପେ ଗ୍ରହଣ କରିନେଇଛନ୍ତି ପ୍ରଗତିବାଦୀ ସ୍ରଷ୍ଟାଗଣ । ପାରଂପରିକ କାବ୍ୟର ଛନ୍ଦ ସହିତ ପାଶ୍ଚାତ୍ୟ କାବ୍ୟଶୈଳୀ ପ୍ରଗତିବାଦୀ କବିତାକୁ ଏକ ସ୍ୱତନ୍ତ୍ର ପରିଚୟ ପ୍ରଦାନ କରିଛି । ସାର୍ଥକ କୁଶଳ ବିନ୍ଧାଣି ପରି ଶବ୍ଦ ନିର୍ବାଚନ, ପ୍ରୟୋଗ, ଭାଷାର ସଂଯୋଜନା ଏ କବିତାର କଳାତ୍ମକ ଗୁଣକୁ ଶୀର୍ଷରେ ପହଞ୍ଚାଇପାରିଛି ।

## ଭାଷା

ଶବ୍ଦ ଓ ଭାବର କଳାତ୍ମକ ସାମଞ୍ଜସ୍ୟରେ ସୃଷ୍ଟି ଲାଭ କରେ ଭାଷା । ବର୍ଣ୍ଣନାମୟ ବିଚିତ୍ର ଅନୁଭୂତି, ପ୍ରାଣକୁ ଆଲୋଡ଼ିତ କରୁଥିବାଭାବନା, ସୂକ୍ଷ୍ମାତିସୂକ୍ଷ୍ମ ଅନୁଚିନ୍ତା ଯଦି କବିତାର ଆତ୍ମା ହୁଏ, ଏହି ଆତ୍ମାର ବାହକ ହେଉଛି ଭାଷା । ଶବ୍ଦର ଯଥାର୍ଥ ଅର୍ଥ

ନିରୂପଣ କରି ଏହାର ଉଚିତ୍ ପ୍ରୟୋଗ କରାଇପାରିଲେ ସେଥିରୁ କଳା ସଚେତନତା ପ୍ରତିପାଦିତ ହୋଇଥାଏ । ଜୀବନର ବ୍ୟାପକ ବୈଚିତ୍ର୍ୟ, ଆବେଗ, ଅନୁଭୂତି ଭାଷା ମାଧ୍ୟମରେ ସଫଳତାର ସହ ଅବତୀର୍ଣ୍ଣ ହୋଇପାରିଲେ କବିତା ରୂପୀ କଳାଟି କାଳଜୟୀ ପାଲଟିଯାଏ । ଏ ପ୍ରସଂଗରେ ଡଃ ପ୍ରତିଭା ଶତପଥୀ ମତପ୍ରଦାନ କରନ୍ତି ଯେ, "ଅନ୍ୟ କଥାରେ କହିଲେ କବି ନିଜର ଚେତନାକୁ ମାର୍ଜିତ ଓ ସୁନ୍ଦର କରିପାରିଲେ ହିଁ ଦିବ୍ୟ ଶକ୍ତିର ପ୍ରେରଣା ଆଶୀର୍ବାଦ ପରି ଝରିପଡ଼େ । କବି ନିଜକୁ ନିଜ ଧ୍ୟାନ ଧାରଣା ଦ୍ୱାରା ଏକ ରସାଳ ବୃକ୍ଷରେ ପରିଣତ କରିପାରିଲେ କଳାରୂପୀ ଦିବ୍ୟ ଶୁକ ପକ୍ଷୀଟି ତହିଁକୁ ଅବତରଣ କରିଆସେ ।"(୨)

ଭାଷାଗତ ବୈଚିତ୍ର୍ୟ ମଧ୍ୟରେ ଭାଷାକୁ ଭଂଗାଭଂଗି କରି ତତ୍‌ପରେ କୁଶଳ କାବ୍ୟକାର ଯଥାଯଥ ଭାବେ ଖଂଜି ଦେଇ ସ୍ୱକୀୟ ବକ୍ତବ୍ୟକୁ ପ୍ରକାଶ କରେ । ପାଶ୍ଚାତ୍ୟ କାବ୍ୟକବିତାର ପ୍ରଭାବ, ଯାନ୍ତ୍ରିକ ସଭ୍ୟତାର ବିକାଶ, ବିଜ୍ଞାନର ଅନୁଶୀଳନ ଯେତେବେଳେ ଓଡ଼ିଆ କାବ୍ୟକବିତାକୁ ଗ୍ରାସ କଲା, ସେତେବେଳେ କବିତା ସାଧାରଣ ଜନମାନସରୁ ଯଥାସମ୍ଭବ ଦୂରେଇଗଲା । କ୍ରମଶଃ କବିତାରେ ମାନବିକ ସମ୍ବେଦନା ରହିଲା ନାହିଁ । ସାଧାରଣ ଜନଜୀବନର ନିକଟବର୍ତ୍ତୀ ହେବା ପରିବର୍ତ୍ତେ ବୌଦ୍ଧିକତାର ଜାଲରେ ଏହା ଛନ୍ଦି ହୋଇପଡ଼ିଲା । ଆଧୁନିକ କବିତାର ଏତାଦୃଶ କଳାଧର୍ମ ନିକଟରୁ ନିଜକୁ ଯଥାସମ୍ଭବ ଦୂରେଇ ଆଣି ଜନସାଧାରଣଙ୍କର ଖୁବ୍ ନିକଟତର ହୋଇ ଜନଜାଗରଣ ସୃଷ୍ଟି ନିମନ୍ତେ ଜନ୍ମ ନେଲା 'ପ୍ରଗତିବାଦୀ କବିତା' ।

ପ୍ରଗତିବାଦୀ କବିତାର ପ୍ରକାଶଭଂଗୀରେ ଏକପ୍ରକାର ସ୍ୱତନ୍ତ୍ରତା ରହିଥାଏ । ଏହା ଜନଜୀବନକୁ ଉଦ୍‌ବୋଧିତ କରୁଥିବାରୁ ପାଠକ ଓ ଶ୍ରୋତାଙ୍କୁ ଆକୃଷ୍ଟ କରିବା ପାଇଁ କବି ପ୍ରୟାସ କରିଥାଆନ୍ତି । ସମାଜର ଦଳିତ, ବିଡ଼ମ୍ବିତ ଭାଗ୍ୟ ନେଇ ଜନ୍ମିଥିବା ମଣିଷମାନଙ୍କପାଇଁ ଏହା ଉଦ୍ଦିଷ୍ଟ ହୋଇଥିବାରୁ ଭାଷା ବିଳାସକୁ କବି ପ୍ରାୟତଃ ବାଦ୍ ଦେଇଥାଆନ୍ତି । ଭାଷା, ସାହିତ୍ୟ ମଣିଷମଣିଷ ମଧ୍ୟରେ ଯୋଗସୂତ୍ର ରକ୍ଷାକାରୀ ହୋଇଥିବାରୁ ପ୍ରଗତିବାଦୀ କବି ସଚ୍ଚିଦାନନ୍ଦ ତାଙ୍କର କାବ୍ୟକବିତାରେ ନୂତନ ଦିଗନ୍ତର ସନ୍ଧାନ ଦେବାକୁ ସକ୍ଷମ ହୋଇଛନ୍ତି । କବି ହୃଦୟଙ୍ଗମ କରିଛନ୍ତି ଯେ ଭାବ ପ୍ରକାଶର ପ୍ରମୁଖ ମାଧ୍ୟମ ହେଉଛି ଭାଷା ଏବଂ ଭାଷାର ମୂଳ ହେଉଛି ସମାଜ । ତେଣୁ ଭାଷା ପ୍ରୟୋଗ କ୍ଷେତ୍ରରେ ସାମାନ୍ୟତମ ରକ୍ଷଣଶୀଳତାକୁ ସ୍ଥାନ ଦେବା ଉଚିତ୍ ନୁହେଁ । ଏଥିପାଇଁ କବି କାବ୍ୟ ଭାଷା ସହିତ ମୌଖିକ ଭାଷାର ସମନ୍ୱୟ କରିଛନ୍ତି ।

ଦେଶୀ, ବିଦେଶୀ ଶବ୍ଦ ସାଙ୍ଗକୁ ତତ୍‌ସମ, ତଦ୍‌ଭବ, ଇତ୍ୟାଦି ସର୍ବବିଧ ଭାଷାକୁ କବିତାରେ ସ୍ଥାନ ଦେଇଛନ୍ତି । ବିବିଧ ଭାଷାର ସଂଯୋଗରେ କବିଙ୍କର

କାବ୍ୟିକ ବୈଚିତ୍ର୍ୟ କିପରି ପ୍ରସ୍ଫୁଟିତ ହୋଇଛି ତାହାର ନମୁନା ନିମ୍ନରେ ପ୍ରଦତ୍ତ ହେଲା ।

* ଜାଗ ଦୁନିଆଁର ମଜଦୁର୍ ଜାତି ('ହାତୁଡ଼ି' 'ଅଭିଯାନ' ପୃ.- ୨୬୦) ଭୁଲିଯାଅ ଭୟବାଦ ।

* ନାଲ୍ ସଲାମ୍ କରରେ ଆଜି ଶକ୍ତ କରି ମୁଠା - ('ନାଲ ନଭେମ୍ବର କବିତା')

* ଫଉଜର ଗୁଳି, ଗୋଳା, ରଜା ଝଡ଼ କିଛି ନମାନିଲା - ('ବାଜିରାଉତ'. ଗ୍ର.ପୃ-୫୨୯)

* ନାଲ୍ ଓଡ଼ିଆ ନାଲ୍ ଓଡ଼ିଶା ମାଟି

ସଲାମ୍ ନିଅ, ସଲାମ୍ ନିଅ, ଦୃପ୍ତବୀର ଛାତି - ('ନାଲ୍ ଓଡ଼ିଶା' ୧ମ ବର୍ଷ - ୧୫ ଶ ସଂଖ୍ୟା - ମୁକ୍ତିଯୁଦ୍ଧ ୮/୫/୧୯୪୩)

* ଆକାଶେ ସଫେଦ୍ ମେଘ, ବରଫ ପରିସାଦା - ('ଲାବଣ୍ୟବତୀଙ୍କୁ ଚନ୍ଦ୍ରଭାନୁର ଚିଠାଉ', ପୃ - ୧୩୩)

* ଖୁଦର ତାର ଉଦର ତଳେ
କେତେ ଯେ ରଥୀ ଜନମ ନେଲେ
(କେତେ) ନାଉଁଆଲୋକେ ଅଇଲେ ଗଲେ
ଆଜି ସେସବୁ କାହାନ୍ତି ?

ଠିକ୍ ସେହିପରି କବି ଅନନ୍ତ ମଧ୍ୟ ତାଙ୍କ କବିତାରେ ବହୁବିଧ ଭାଷାର ବୈଚିତ୍ର୍ୟ ସୃଷ୍ଟି କରିଛନ୍ତି । କବିଙ୍କର ସଂଯୋଜିତ ଶବ୍ଦାବଳୀର ବୈଶିଷ୍ଟ୍ୟ ହେଉଛି ଏଥିରେ ଯେତିକି ମାତ୍ରାରେ କାବ୍ୟିକ କୋମଳତା ରହିଛି, ସେତିକି ମାତ୍ରାରେ ବିପ୍ଳବର ବଜ୍ର ନିର୍ଘୋଷ ସ୍ୱର ରହିଛି । ଯେମିତିକି -

"ଯାଚଜ୍ଞାର ଅର୍ଜିସ୍ତୁପ ଠେଲି ମୁଁ ଆସିଚି
ସ୍ଥବିରତାର ମର୍ମଭେଦ କରି
ମୁଁ ଆସିଚି, ତାରୁଣ୍ୟର ଅଭିମାନ ।"(୩)

ଅନନ୍ତଙ୍କର ଭାଷାଗତ ବୈଚିତ୍ର୍ୟ କବିତାର ନାମକରଣରୁ ମଧ୍ୟ ପ୍ରତୀୟମାନ ହୋଇଥାଏ । ଏକଥା ଏଠାରେ ଲକ୍ଷ୍ୟ କରାଯାଇପାରେ ଯେ, କବି ଯେଉଁ ନାମକରଣ କରିଥାନ୍ତି, କବିତାରେ ପ୍ରାୟତଃ ସେହି ନାମର ବାରମ୍ବାର ପୁନରାବୃତ୍ତି ଘଟିଥାଏ ।

* "ଶବର ସଂସାର ପରେ ଶସ୍ୟ ସାଗର ସୃଜି ଚାଲିଲି ମୁଁ ଚାଲିଲି ।"
('ଚାଲିଲି ମୁଁ ଚାଲିଲି' - 'ଅଲୋଡ଼ା ଲୋଡ଼ା')

* "ଜୀବନ ଜୀବନ ଚାହୁଁ ଆମେ
କଠିନ ଆଉ କୋମଳ ।" ('ଜୀବନ' - ଅବାନ୍ତର ପୃ -୪୨)
* "ହଟାଅ ହଟାଅ ମୃତ୍ୟୁ ବାହିନୀ ଦୁଆରୁ
ଆଉ ନାହିଁ ବେଳ, ଆଉ ନାହିଁ ବେଳ ଭାଇରେ ।"
('ହଟାଅ ହଟାଅ', 'ଶାନ୍ତି ଶିଖା', ପୃ-୬)

ପ୍ରଗତିବାଦୀ କବିତାର ପ୍ରାରମ୍ଭ ପର୍ଯ୍ୟାୟରେ ଏ ପ୍ରକାର ଭାଷା ବିନ୍ୟାସ ଦୃଷ୍ଟିଗୋଚର ହେବାବେଳେ ସତୁରୀ ପରବର୍ତ୍ତୀ ପ୍ରଗତିବାଦୀ କବିତାରେ ଏକ ଭିନ୍ନ ରୂପ ପରିଲକ୍ଷିତ ହୁଏ । କବିତାକୁ ଆଡ଼ମ୍ବରମୁକ୍ତ କରିବା ପାଇଁ କବି ମାନେ ଏଠାରେ ବେଶ୍ ଯତ୍ନବାନ୍ । କବିତାର ଚରିତ୍ରମାନେ ମଧ୍ୟ ସାଦାସିଧା ଶୋଷିତ ବର୍ଗର । ତେଣୁ ସେମାନଙ୍କ ପାଇଁ ସରଳ ଶବ୍ଦ ସଂଯୋଜନା କରି, କବିତାକୁ ଏକ ନୂତନ ରୂପ ପ୍ରଦାନ କରନ୍ତି ସତୁରୀ ପରବର୍ତ୍ତୀ ପ୍ରଗତିବାଦୀ ସ୍ରଷ୍ଟାମାନେ । ଏ ପ୍ରସଂଗରେ କବି ପ୍ରସନ୍ନ ମିଶ୍ର କହନ୍ତି –

"ମୁଁ କଳା କ୍ଷେତ୍ରରେ ନିରାଡ଼ମ୍ବର ରହିବାକୁ ପସନ୍ଦ କରେ । ଅତି ସାଦାସିଧା ଆକାଂକ୍ଷା ଗୁଡ଼ିକୁ ପ୍ରକାଶ କରିବା ପାଇଁ ଖୁବ୍ ବେଶି ବାଗାଡ଼ମ୍ବରର ମଧ୍ୟ ଆବଶ୍ୟକତା ନାହିଁ । XXX । କହି ରଖୁଛି ଏସବୁ କବିତାରେ ଶାସ୍ତ୍ର କମ୍, ତତ୍ତ୍ୱ କମ୍ ଅଛି, ଅଛି ବେଶି ଜୀବନ ଓ ସଂପର୍କ ।(୪)

କବିଙ୍କର ମତାମତ ସହିତ ଏକାତ୍ମ ହେବାରେ କୌଣସି ଦ୍ୱିଧା ନାହିଁ । ତେଣୁ କବି ପ୍ରସନ୍ନ 'ଟ୍ରକ୍ ଡାଲାରେ ସନାତନ' କବିତାରେ ପ୍ରକାଶ କରନ୍ତି –

"ସନାତନକୁ ବିଲ ଦେବନି ବୋଲି
ମହାଜନ ଗୋଟିଏ ପୁଅକୁ କରିଛି ଯନ୍ତ୍ରୀ
ଅନ୍ୟ ପୁଅକୁ ଠିକାଦାର
ଆଉ ଝିଅଟିକୁ ନେତ୍ରୀ
ଶିଖୁଛି ଗୋଟିଏ ସ୍ଲୋଗାନ
ମୈତ୍ରୀ ମୈତ୍ରୀ - ମୈତ୍ରୀ ।" (୫)

କବିଙ୍କର ସରଳ ଶବ୍ଦ ରୋପଣ ଯେ କେତେ ଗହନ ଭାବାର୍ଥକୁ ବ୍ୟକ୍ତ କରିପାରେ ତାହା ଏଥିରୁ ପ୍ରତିପାଦିତ ହୁଏ । ପୂର୍ବରୁ କୁହାଯାଇଛି ଯେ, ପ୍ରଗତିବାଦୀ କବିତାର ମୁଖ୍ୟ ସ୍ୱର ହେଉଛି – ଗଣ ଜୀବନକୁ ନେଇ ଏହା ରଚିତ ହେବା ସହିତ ଜନ ଜାଗରଣ ସୃଷ୍ଟି କରିବା । ଏଥିପାଇଁ କବି ଯଥାସାଧ୍ୟ ଉଦ୍ୟମ ମଧ୍ୟ କରିଥାନ୍ତି । କେତେବେଳେ ସରଳ ଶବ୍ଦ ପ୍ରୟୋଗ କରିଥାନ୍ତି ତ କେତେବେଳେ ଗୀତିମୟତା ଦ୍ୱାରା ଶ୍ରୋତା ଓ ପାଠକଙ୍କୁ ଆକୃଷ୍ଟ କରିବା ପାଇଁ କବି ପ୍ରୟାସ କରିଥାଆନ୍ତି । କବି

ସଦାଶିବ ଦାଶ ମଧ୍ୟ ତାଙ୍କ କବିତାରେ ସରଳ ଲଘୁ ଶବ୍ଦ ମାଧ୍ୟମରେ ନିଜର ବିପ୍ଳବ ଭାବନାକୁ ବ୍ୟକ୍ତ କରନ୍ତି । ବିପ୍ଳବୀ କବିତା ଏହି ନ୍ୟାୟରେ ରଚିତ ହେବା ଉଚିତ ବୋଲି ଡଃ ଦିଲ୍ଲୀପ କୁମାର ସ୍ୱାଇଁ ମତବ୍ୟକ୍ତ କରନ୍ତି –

"ବିପ୍ଳବିଣୀ କବିତା ମୁକ୍ତ କେଶା ଓ ନିପୂର୍ଣ୍ଣତାର ବକ୍ତବ୍ୟ, ସେ ଦାୟିତ୍ୱବାନ ସମୟର ପ୍ରତିନିଧି, ବିପ୍ଳବର ପ୍ରତୀକ, ଏଥିପାଇଁ ପ୍ରୋଗେସିଭ୍ କବିତାସାଦାସିଧା ହେବାକୁ ବାଧ ।" (୬)

କବି ସଦାଶିବଙ୍କ କବିତାରେ ସାଦାସିଧା ଶବ୍ଦ ଗୁଡ଼ିକ କିପରି ସଶସ୍ତ୍ର ବିପ୍ଳବର ସଂଭାବନା ସୃଷ୍ଟି କରୁଛି ତାହା ନିମ୍ନୋକ୍ତ ପଂକ୍ତିରୁ ସ୍ପଷ୍ଟ ହୁଏ ।

"ଆରେ ଶୁଣ ! ଜଂଗଲରେ ଗୋଟା କେତେ ଲୋକ ଅଛନ୍ତି
ଅପାଠୁଆ ଲୁଗା ପିନ୍ଧି ଜାଣନ୍ତିନି
ମଦ ପିଅନ୍ତି, ନାଚନ୍ତି, ପର୍ବତ କାଟି ଚାଷ କରନ୍ତି
ସାହୁ ଭଳି କେତେ ସାହୁ ଯାଇ ତାକୁ ଶୋଷିଲେ
କପଡ଼ା ଅତର ମଦ ଚଖେଇ ଖୁବ୍ ଖଟେଇଲେ
ସେମାନେ କୁଆଡ଼େ ଏବେ ବୁଝି ଖୁବ୍ ତାତିଛନ୍ତି
ଧନୁତୀର, ଟାଙ୍ଗିଆ ଧରି ବାହାରିଲେଣି
କଳିଯୁଗ ସତ ହେବରେ
ମ୍ଳେଚ୍ଛ ସଂହାର ହେବ ।" (୭)

ସାମସମୟିକ କବି 'ପ୍ରସନ୍ନ ପାଟ୍ଟଶାଣୀ' ମଧ୍ୟ ଅନୁରୂପ ଢଂଗରେ ସାଂପ୍ରତିକ ଶାସନବ୍ୟବସ୍ଥା ବିରୋଧରେ ବିକ୍ଷୋଦ୍‌ଗାର କରନ୍ତି । କବି ପ୍ରସନ୍ନଙ୍କର କ୍ଷୋଭ ଜର୍ଜରିତ କାବ୍ୟାତ୍ମା ଉଚ୍ଚାରଣ କରେ –

"ଭାତ ମୁଠାଏ ମିଳିଲା ନାହିଁ
ମିଳିଲା ନାହିଁ ଦୁଇପଟ ରୁଟି
ଭୋଟ୍ ଆସିଲେ ନେତାଏ କହିଲେ ସବୁ
କରିଦେବି କହି
ସବୁ ନେଲେ ଲୁଟି ।" (୮)

କବି ଆଶୁତୋଷ ପରିଡ଼ା ମଧ୍ୟ ଏହି ନୀତିନିୟମ ମଧ୍ୟରୁ ବାଦ୍ ପଡ଼ିନାହାନ୍ତି । ଅତି ସାଧାରଣ ନିମ୍ନବର୍ଗର ଚରିତ୍ରକୁ ସାଉଁଟି ଆଣି ବିନା ଶବ୍ଦାଡମ୍ବରରେ ତାକୁ ଏକ ଗୋଷ୍ଠୀର ପ୍ରତିନିଧିରୂପେ ଠିଆ କରାଇଛନ୍ତି । କବିଙ୍କ ଭାଷାରେ –

"ମତେ ଗୋଇଠା ମାରିଲେ

ଗଛରୁ ଖସି ପଡ଼େ ପତ୍ର
ଆକାଶରୁ ଖସି ପଡ଼େ ତାରା
ମୋ ଛାତି ଫାଡ଼ି ଦେଲେ
ବାହାରି ଆସେ ମଣିଷ
ସାତତାଳ ପାଣି ଆଉ ଆଠତାଳ ପଂକ ତଳେ
ମୋର ପ୍ରତିବିମ୍ବ ।" (୯)

ପ୍ରଗତିବାଦୀ କବିତାର ଏ ପ୍ରକାର ସହଜ ସରଳ ଭାଷା ବିନ୍ୟାସ ସଂପର୍କରେ 'ଡଃ ଦିଲ୍ଲୀପ ସ୍ୱାଇଁ' ମତପ୍ରଦାନ କରିବାକୁ ଯାଇ କହନ୍ତି –

"କବିତା ଏଠାରେ ତାଜାଫୁଲ ପରି ଫୁଟେ ନାହିଁ, ବା କବିତା ଡାଲ୍ ହ୍ରଦ, ପାଇନ୍ ଅରଣ୍ୟ ନୁହେଁ । ଏହା ହାଡ଼କୁ ହତିଆର କରି ରକ୍ତକୁ ସ୍ୟାହି କରି ଲେଖାଯାଏ ।" (୧୦)

ତେଣୁ କବିତାକୁ ଆଡ଼ମ୍ବରପୂର୍ଣ୍ଣ ଭାଷା ବିନ୍ୟାସ ଦ୍ୱାରା ଭ୍ରାରାକ୍ରାନ୍ତ କରି ଜନତାଙ୍କ ନିକଟରୁ ଦୂରେଇ ରଖିଲେ ତାହା ସାର୍ଥକ କବିତାର ମାନ୍ୟତାପାଏ ନାହିଁ । କବିତାର ଭାଷା ଏପରି ହେବା ଉଚିତ୍ ଯାହାକୁ ଲେଖିବାପାଇଁ କବି ଚିନ୍ତା କରୁନଥିବ । ଏମିତି ଦିନେ ଲେଖି ହୋଇଯାଉଥିବ । କବିର ରକ୍ତ ଯେପରି ଶବ୍ଦ ପାଲଟିଯାଉଥିବ । କେବଳ ଯେ ଶବ୍ଦର ଚାକଚକ୍ୟ ସୃଷ୍ଟି କରି ଆହ୍ୱାନୀ ସ୍ୱର ଉଚ୍ଚାରଣ କରିଦେଲେ କବିତା ଯେ ସାର୍ଥକ ବିପ୍ଲବୀ କବିତାର ମାନ୍ୟତା ପାଇଯିବ, ତାହା ନୁହେଁ । ସାଧାରଣ ପୋଷାକ ପରିଧାନ କରି ନିରାଡ଼ମ୍ବର ମାନସିକତାକୁ ନେଇ ସହଜ ସ୍ୱାଭାବିକ ଭାଷା ବିନ୍ୟାସ ମାଧ୍ୟମରେ ମଧ୍ୟ ବିପ୍ଳବର ସଂରଚନା କରାଯାଇପାରିବ ।

## ଛନ୍ଦ

ଭାଷା ବିନ୍ୟାସ କ୍ଷେତ୍ରରେ ଆଡ଼ମ୍ବରତାକୁ ପରିହାର କରିଥିବା ପ୍ରଗତିବାଦୀ ସ୍ରଷ୍ଟାଗଣ ଛନ୍ଦ ପ୍ରୟୋଗ କ୍ଷେତ୍ରରେ କିନ୍ତୁ ନିଜର ନିପୁଣତା ପ୍ରଦର୍ଶନ କରିଛନ୍ତି । କବିତାକୁ ଗଣଜୀବନର ନିକଟବର୍ତ୍ତୀ କରାଇବାପାଇଁ ପ୍ରାଚ୍ୟ କାବ୍ୟଛନ୍ଦକୁ ଯେପରି ମାନ୍ୟତା ଦେଇଛନ୍ତି ପାଶ୍ଚାତ୍ୟ କାବ୍ୟରୀତିକୁ ମଧ୍ୟ ଶ୍ରଦ୍ଧାର ସହ ସ୍ୱୀକୃତି ଦେଇଛନ୍ତି । ପ୍ରାଚୀନ ଛନ୍ଦର ପ୍ରୟୋଗ ଉପରେ ଯେପରି ଗୁରୁତ୍ୱାରୋପ କରିଛନ୍ତି ସାଂଗୀତିକତାକୁ ମଧ୍ୟ ଆପଣା କବିତାର ପ୍ରାଣଧର୍ମ ରୂପେ ବିବେଚନା କରିଛନ୍ତି । କବିବରଙ୍କ ପରେପରେ ଯେଉଁ ସାଂଗୀତିକତା ଓ ଛନ୍ଦୋବଦ୍ଧତା ଓଡ଼ିଆ କବିତା ରାଜ୍ୟରୁ ନିର୍ବାସିତ ହୋଇଥିଲା, ପ୍ରଗତିବାଦୀ କବିମାନେ ଏହାକୁ ମୁକୁଳାଇ ଆଣି ଅତ୍ୟନ୍ତ ସଚେତନଭାବେ ଏହାର ପୃଷ୍ଟ-ପୋଷକତା କରିଛନ୍ତି । ଏହାର ମୂଳରେ ରହିଛି କବିତାକୁ ଜନଗଣଙ୍କର ନିକଟବର୍ତ୍ତୀ

କରାଇବା । ତେଣୁ ପ୍ରଗତିବାଦୀ ସ୍ରଷ୍ଟାମାନେ ସେମାନଙ୍କ ସୃଷ୍ଟିରେ ଛନ୍ଦର ନିପୁଣ ପ୍ରୟୋଗ ଉପରେ ଗୁରୁତ୍ୱାରୋପ କରିଛନ୍ତି । ଛନ୍ଦର ଗୁରୁତ୍ୱକୁ ଉପଲବ୍‌ଧି କରି Roger Fowler, Rout ledge ଏବଂ Kegun paul ମତପୋଷଣ କରନ୍ତି –

"There is a little difference between the poet's wanting to convince a reader and wanting to convince himself for the poet whose song is a way of enchanting his anguish, Rhyme is a powerful instrument of wishfulfilment." (11)

ସଂଗୀତର ମାଧୁର୍ଯ୍ୟ ଓ ଛନ୍ଦର ପ୍ରୟୋଗ ପ୍ରଗତିଶୀଳ କବିମାନଙ୍କର କବିତାକୁ ଲୋକପ୍ରିୟତା ଆଣି ଦେଇଛି । ୧୯୩୫ ମସିହାରେ ନବଯୁଗ ସାହିତ୍ୟସଂସଦ ଗଠନ କରାଯିବା ପରେ ତା ୨୯-୧୧-୩୫ ରେ ଏହାର ଉଦ୍‌ଘାଟନ ପର୍ବରେ ମାଳତୀ ଚୌଧୁରୀଙ୍କ କଣ୍ଠରେ ଯେଉଁ ଉଦ୍‌ବୋଧନୀ ସଂଗୀତ ଗାନ କରାଯାଇଥିଲା ତାହା ଥିଲା ଏହାର ପ୍ରକୃଷ୍ଟ ପ୍ରମାଣ ।

"ନବୀନ ଯୁଗର ତରୁଣ ଜାଗରେ
ଜାଗ ବଂଧନ ହରା
ଲକ୍ଷେ ଶୋଣିତ ବକ୍ଷେ ଜୀବନ
ଖେଳାଅ ଆଲୋକ ଧାରା ।"(୧୨)

ଏଥିରୁ କବି ଅନନ୍ତଙ୍କର ସାଂଗୀତିକତା ପ୍ରତି ପ୍ରଗାଢ଼ ଅନୁରକ୍ତି ଥିବା ସ୍ପଷ୍ଟ ଅନୁମେୟ ହୁଏ । ଠିକ୍ ସେହିପରି ଛନ୍ଦର ପ୍ରୟୋଗ ରୀତିକୁ ଆସିଲେ ଗଦ୍ୟଛନ୍ଦରେଲିଖିତ ତାଙ୍କର ଏକ କବିତା ସାମ୍‌ନାକୁ ଆସେ ।

"ମୁଠିଏ ବୋଲି ହସ ଆଣିଚି ମୁଁ
ମୁଠିଏ
ପଉଷର ପହଡ଼ ତୁମର ଭାକୁ
ଆରେ ଭାକୁ !
ପ୍ରେମର ପୀତାଭ ପତ୍ର ତୁମର ଝଡ଼ୁ ଚିରେ,
ଝଡ଼ିବ
କବିତାର କବର ଖୋଳି
କୋଇଲିର କୋଇଲା କାଟି
କୁହୁକର କୋହରେ
ମୁଠିଏ ବୋଲି ହସ, ଆଣିଚି ମୁଁ
ମୁଠିଏ । (୧୩)

ଅନୁପ୍ରାସ ସୁଲଭ ଶବଦାବଳୀର ପର୍ଯ୍ୟାୟକ୍ରମିକ ପୁନରାବର୍ତ୍ତନ [illegible] ବ୍ୟଞ୍ଜନବର୍ଣ୍ଣର ବାରମ୍ବାର ପ୍ରୟୋଗ ଛନ୍ଦରେ ଏକ ଅଦ୍‌ଭୁତ ସ୍ପନ୍ଦନ ସୃଷ୍ଟି କରୁଛି । ବ୍ୟଞ୍ଜନବର୍ଣ୍ଣ ଗୁଡ଼ିକର ପୁନରାବୃତ୍ତି କରାଇ ବୃତ୍ତ୍ୟାନୁପ୍ରାସ ଓ ଯମକ ଆଦି ଅଳଂକାର ସୃଷ୍ଟି କରିବାରେ ଅନନ୍ତ ବେଶ୍ ଧୁରୀଣ ସ୍ରଷ୍ଟା । ଗଦ୍ୟଛନ୍ଦ ଓ ମୁକ୍ତଛନ୍ଦର ସମ୍ମିଶ୍ରଣ କରି ଏକ ଅଭିନବଢଙ୍ଗରେ କବି କିପରି ନିଜର କାବ୍ୟିକ ପ୍ରତିଭାକୁ ବ୍ୟକ୍ତ କରିଛନ୍ତି ତାହା ନିମ୍ନରୁ ପ୍ରତିପାଦିତ ହୁଏ ।

"ଜରିର ଜୁଲୁସ୍‌ରେ ଯୂଇର ନାଲିସ୍ କାଢ଼ି
ରାସର ରକ୍ଷିତା ତୁମେ
ବଣିକର ଗଣିକା
ମାଂସର ମହକରେ ପୁଂଜିର ଡହକ ସୃଜି
ଝୁଲ ଆଗେ ଝୁଲ
ତୁମକୁ ମୁଁ ଜାଣେ ।"(୧୪)

ଜୁଲୁସ୍, ନାଲିସ୍, ବଣିକ, ଗଣିକା, ମହକ ଓ ଡହକ ଆଦି ଶବଦ୍‌ଗୁଡ଼ିକର ଆବର୍ତ୍ତନ ଯମକର ଭ୍ରାନ୍ତି ସୃଷ୍ଟି କରୁଛି । ଏସବୁର ବ୍ୟାପକ ପ୍ରୟୋଗ ଅନନ୍ତଙ୍କ କବିତାରେ ଅର୍ଥ ବିପର୍ଯ୍ୟୟ ସୃଷ୍ଟି କରୁଛି । ଶ୍ଳେଷୋକ୍ତି ସହ ଯୁକ୍ତିପୂର୍ଣ୍ଣ ଚାତୁର୍ଯ୍ୟ ପ୍ରଗତିଶୀଳ କବିତାକୁ ନୂତନତା ପ୍ରଦାନ କରିବା ସହିତ ପ୍ରକାଶଭଂଗୀରେ ସାବଲୀଳତା, ସ୍ୱଚ୍ଛତା କବିତାକୁ ଗତିମୁଖର, ଗୀତିମୟ କରାଇବା ସହିତ ଜନସାଧାରଣଙ୍କର ହୃଦୟଗ୍ରାହୀ ହୋଇପାରିଛି ।

ପ୍ରାଚ୍ୟ କାବ୍ୟ ଛନ୍ଦର ପ୍ରୟୋଗ ପରି ପାଶ୍ଚାତ୍ୟ କାବ୍ୟରୀତିର ମଧ୍ୟ ଯଥାଯଥ ପ୍ରୟୋଗ ପ୍ରଗତିବାଦୀ କାବ୍ୟକାର ମାନଙ୍କର ସୃଷ୍ଟିରେ ଲକ୍ଷ୍ୟ କରାଯାଏ । ମିଥ୍, ପ୍ରତୀକ, ଚିତ୍ରକଳ୍ପ ପ୍ରୟୋଗରେ ମଧ୍ୟ ପ୍ରଗତିବାଦୀ କବିମାନେ ଆପଣାର ପାରଦର୍ଶିତା ପ୍ରଦର୍ଶନ କରିଛନ୍ତି । ପୁରାଣ ଇତିହାସକୁ ଉପେକ୍ଷା କରି ଜନଜୀବନରୁ ମୌଳିକ ମିଥ୍ ଗ୍ରହଣ କରି କବିତାକୁ ଏକ ନୂତନ ରୂପ ପ୍ରଦାନ କରିବାକୁ ସମର୍ଥ ହୋଇଛନ୍ତି । ମିଥ୍ ପ୍ରୟୋଗ କ୍ଷେତ୍ରରେ କିଞ୍ଚିତ୍ ଭିନ୍ନତା ମଧ୍ୟ ଏଠାରେ ଲକ୍ଷ୍ୟ କରାଯାଇପାରେ । ତାହା ହେଉଛି ମିଥ୍‌କୁ ନେଇ ଉଭୟ 'ଘଟଣା' ଓ 'ଚରିତ୍ର' ଗତି କରିଥାଏ । ଦୃଷ୍ଟାନ୍ତ ସ୍ୱରୂପ ଏଠାରେ ପ୍ରସନ୍ନ ମିଶ୍ରଙ୍କ 'ସନାତନ' ଓ ଆଶୁତୋଷ ପରିଡ଼ାଙ୍କର 'ଚଣ୍ଡାଳ' କୁ ଗ୍ରହଣ କରାଯାଇପାରେ ।

ଓଡ଼ିଆ କବିତାର ଏକ ମୌଳିକ ମିଥିକ୍ ଚରିତ୍ର ଭାବେ 'ସନାତନ' ଏକ ସ୍ୱତନ୍ତ୍ର ଗୌରବର ଅଧିକାରୀ । ଗଣ ଜୀବନର ପ୍ରତିନିଧିତ୍ୱ କରୁଥିବା ଏହି ଚରିତ୍ରଟିକୁ କବି

ଅତ୍ୟନ୍ତ ସକ୍ରିୟ, ଜୀବନ୍ତ ଭାବେ ଉପସ୍ଥାପନା କରିଛନ୍ତି । ସନାତନ ଯେମିତି ନିମ୍ନବର୍ଗର ଏକ ଚରିତ୍ର, ଚଣ୍ଡାଳ ମଧ୍ୟ ମଣିଷର ଦାହ ସଂସ୍କାର କରି ପାଉଣା ନେଇ ପେଟ ପୋଷୁଥିବା ଏକ ଚରିତ୍ର । ଉଭୟ ନିମ୍ନ ବର୍ଗର, କିନ୍ତୁ କର୍ମ ଅଲଗା । ସନାତନ ଯେପରି ପେଟ ପୋଷିବା ପାଇଁ କୁଲିଗିରି କରେ, ଚଣ୍ଡାଳ ମଧ୍ୟ କ୍ଷୁଧାର ଉପଶମ ପାଇଁ ମଶାଣି କାର୍ଯ୍ୟ କରେ । ତେଣୁ ସନାତନ ଯେମିତି କହେ:-

"ସବୁ ପାପତାପ ସହିତ ଲଢ଼ି ଲଢ଼ି
ନିଜେ ବିକଳାଂଗ ହେଲେ ବି
ଯିଏ ମା' ଭଉଣୀ, ପତ୍ନୀ, ପୁତ୍ରଙ୍କ ପାଇଁ ହଜି ଯାଉଛି
ନିଜର ଜୀବନ
ତାରି ନାଁ ସନାତନ ।"(୧୫)

ଚଣ୍ଡାଳ ମଧ୍ୟ ସେପରି କହେ -

"ମତେ ଗୋଇଠା ମାରିଲେ
ଗଛରୁ ଖସିପଡ଼େ ପତ୍ର
ଆକାଶରୁ ଖସିପଡ଼େ ତାରା
ମୋ ଛାତି ଫାଡ଼ି ଦେଲେ ବାହାରି ଆସେ ମଣିଷ
ସାତତାଳ ପାଣି ଆଉ ଆଠତାଳ ପଂକ ତଳେ
ମୋର ପ୍ରତିବିମ୍ବ ।" (୧୬)

କବି ପ୍ରସନ୍ନଙ୍କର କବିତା ଆଡ଼ମ୍ବରମୁକ୍ତ । କବି ସରଳ ଶବ୍ଦ ସଂଯୋଜନା ସାଂଗକୁ ଗୀତିମୟତା ଉପରେ ପ୍ରାଧାନ୍ୟ ଦେଇଛନ୍ତି । ଏ ସଂପର୍କରେ ସ୍ୱୟଂ କବି ମତବ୍ୟକ୍ତ କରିବାକୁ ଯାଇ କହନ୍ତି –

"ମୁଁ କଳା କ୍ଷେତ୍ରରେ ନିରାଡ଼ମ୍ବର ରହିବାକୁ ପସନ୍ଦ କରେ । ଅତି ସାଦାସିଧା ଆକାଂକ୍ଷା ଗୁଡ଼ିକୁ ପ୍ରକାଶ କରିବା ପାଇଁ ଖୁବ୍ ବେଶି ବାଗାଡ଼ମ୍ବରର ମଧ୍ୟ ଆବଶ୍ୟକତା ନାହିଁ । ବିଶେଷ କରି ସନାତନ ଭଳି ଏକ ସାଦା ମଣିଷ ପାଇଁ ଶବ୍ଦ ସମାରୋହର କ'ଣ ବା ପ୍ରୟୋଜନ ।"(୧୭)

କବି ଆଶୁତୋଷ ମଧ୍ୟ 'ଚଣ୍ଡାଳ'କୁ ଏକ ମୌଳିକ ଚେତନା ରୂପରେ କବିତାରେ ବାଂଧି ରଖିଛନ୍ତି । କବିତାକୁ ସାଧାରଣ ବେଶପରିପାଟୀରେ ସଜାଇ, ନିରାଡ଼ମ୍ବର ଶୈଳୀରେ ରଚନା କଲେ ତାହା ଜନସାଧାରଣଙ୍କୁ ବେଶି ଆକୃଷ୍ଟ କରିଥାଏ । ଯାହାର ପ୍ରମାଣ ବହନ କରେ ଚଣ୍ଡାଳ କବିତା । ତେଣୁ ଗୋଟିଏ ଭାଷାରେ କହିଲେ, ଏ କବିତା କେବଳ ଚଣ୍ଡାଳ ଗୋଷ୍ଠୀର ନୁହେଁ, ସମଗ୍ର ବିଶ୍ୱର ନିମ୍ନବର୍ଗର ପ୍ରତିନିଧିତ୍ୱ କରୁଥିବା ଅବହେଳିତ ମାନଙ୍କର । ଏହି ପରିଚୟ ଯେ କବିଙ୍କର ପ୍ରତିଭାକୁ ପ୍ରସାରିତ କରିବ, ଏଥିରେ ତିଳେମାତ୍ର ସନ୍ଦେହ ନାହିଁ ।

ଏତଦ୍‌ବ୍ୟତୀତ ପ୍ରୋଗ୍ରେସିଭ୍ କବିତାରେ ପ୍ରତୀକ, ଚିତ୍ରକଳ୍ପ ଇତ୍ୟାଦିର ପ୍ରୟୋଗ ପାଇଁ ପର୍ଯ୍ୟାପ୍ତ ସୁଯୋଗ ନଥିବାରୁ କବି ଆପଣାଛାଏଁ ଏଥିପାଇଁ କ୍ଷେତ୍ର ପ୍ରସ୍ତୁତ କରିଥାଆନ୍ତି ।

* "କଳଙ୍କିଖିଆ ଇସ୍‌ପାତି ଗୋଲକରଂଗ ପୃଥିବୀରୁ / ରାତିର ଅରଣ୍ୟକାଟି / ସିଲଭର୍ କୋଟିଂ ମାଖି ଆସଇ ସକାଳ ।"(୧୮)

* "ଶେଷକୁ ମଣିଷର ଆକାଂକ୍ଷିତ କଟୁରୀ ଚୋଟରୁ / କେମିତି ବା ବଂଚି ଯାଇଛି ସୃଷ୍ଟିର ଶେଷ ମହଲଗଛ / ସତେ ଅବା ଆକାଶରେ ଖଣ୍ଡେ ମେଘୁଆ ବାଦଲ / ସମୁଦ୍ରର ଅନ୍ତିମ ଲହରୀ /

ମାଟିରୁ ବଲକା ପଡ଼ିଥିବା ଚେନାଏ ସବୁଜିମା ।" (୧୯)

ପ୍ରଥମ ଚିତ୍ରକଳ୍ପ ସକାଳର ଚିତ୍ର ପ୍ରଦାନ କରୁଥିଲେ ମଧ କଳଂକିଖିଆ ଇସ୍‌ପାତ ପୃଥିବୀ ଭୋଗବାଦୀ ସଭ୍ୟତାର ଚରମ ନିଦର୍ଶନ । ପ୍ରଥମ ପଦ୍ୟାଂଶର ଚିତ୍ରକଳ୍ପଟି ଅଣପାରଂପରିକ ଭାବେ ପ୍ରତୀୟମାନ ହେଉଥିଲେ ମଧ ଦ୍ୱିତୀୟ ଚିତ୍ରକଳ୍ପଟି କିଞ୍ଚିତ ଯୁକ୍ତିଯୁକ୍ତ ମନେ ହେଉଛି । ମଣିଷର କଟୁରୀ ଚୋଟରୁ ବର୍ତ୍ତି ଯାଇଥିବା ମହୁଲ ଗଛଟି କିପରି ଦିଶୁଛି - ଆକାଶର ମେଘୁଆ ବାଦଲ, ସମୁଦ୍ରର ଅନ୍ତିମ ଲହରୀ, ମାଟିର ବଲକା ପଡ଼ିଥିବା ଚେନାଏ ସବୁଜିମା । ତନ୍ମଧ୍ୟରୁ ସମୁଦ୍ରର ଅନ୍ତିମ ଲହରୀ କଥାଟି ଖାପଛଡ଼ା ମନେ ହେଉଛି । ତେଣୁ କବିଙ୍କର କବିତା ସଂପର୍କରେ ସମାଲୋଚକ ଡଃ ଦିଲ୍ଲୀପ କୁମାର ସ୍ୱାଇଁ କହନ୍ତି:-

"ସାମାଜିକ ପ୍ରତିବଦ୍ଧତା ଉପରେ ଗୁରୁତ୍ୱାରୋପଣ କରାଯାଇଥିବାରୁ କବି ଅଳଂକାର ପ୍ରୟୋଗଠାରୁ ନିରାପଦ ଦୂରତ୍ୱ ରକ୍ଷା କରିଛନ୍ତି । ଏଥିପାଇଁ ସଦାଶିବଙ୍କ କବିତା ମୁକ୍ତ, ଅବାଧ, ଛନ୍ଦଭରା ଫେନିଳ ମଧୁଭାଣ୍ଡ । ଅଳଂକାର ପ୍ରୟୋଗ ଓ ବ୍ୟକ୍ତିଗତ ବ୍ୟଭିଚାରରେ କ୍ଲାନ୍ତ ଓଡ଼ିଆ କବିତା, ସଦାଶିବଙ୍କ ମୁକ୍ତ ରୀତି ଓ ସ୍ୱାଧୀନ ସାର୍ବଜନୀନ ଚିନ୍ତାଦ୍ୱାରା ଯେ ଅନେକ ସମୃଦ୍ଧ ଓ ପ୍ରଶସ୍ତ ଏକଥା ଅକୃପଣ ଭାବରେ କୁହାଯାଇପାରିବ ।" (୨୦)

ଉପରୋକ୍ତ ଆଲୋଚନାରୁ ପ୍ରତୀୟମାନ ହୁଏ ଯେ, ପ୍ରଗତିବାଦୀ କବିମାନେ ପ୍ରାଚ୍ୟ କାବ୍ୟ ରୀତିକୁ ମର୍ଯ୍ୟାଦା ଦେବା ପରି ପାଶ୍ଚାତ୍ୟ କାବ୍ୟ ଛନ୍ଦକୁ ମଧ ସମମର୍ଯ୍ୟାଦା ପ୍ରଦାନ କରିଛନ୍ତି । କଳା ସହିତ ଜୀବନକୁ ଗୋଟିଏ ସୂତ୍ରରେ ଗୁନ୍ଥି ଦେଇ ପାରିଥିବା ଏହି ପ୍ରଗତିବାଦୀ କବିତା ପାଠକୀୟ ସମାଜକୁ ଏକ ନୂତନ ଅବବୋଧ ପ୍ରଦାନ କରୁଛି । ସଂପୂର୍ଣ୍ଣ ମୌଳିକ ମିଥ୍, ଚିତ୍ରକଳ୍ପର ପ୍ରଚଳନ କରି ଏମାନେ କବିତାକୁ ଗତିଶୀଳ କରାଇବା ସହିତ ଜନ ସାଧାରଣଙ୍କର ନିକଟବର୍ତ୍ତୀ କରାଇବାକୁ ସକ୍ଷମ ହୋଇଛନ୍ତି । ପ୍ରକାଶଭଂଗୀରେ ସ୍ୱଚ୍ଛତା, ସାବଲୀଳତା ପରିଲକ୍ଷିତ ହେଲେ ମଧ ଏହି କବିତାର ପ୍ରମୁଖ ଲକ୍ଷ୍ୟ ନିମ୍ନବର୍ଗର ଶୋଷିତ ଜନତାର କରୁଣ ପ୍ରତିଛବିର ଉଦ୍‌ଘାଟନ

ସାଂଗଠନିକ ଅବ୍ୟବସ୍ଥିତ ସମାଜ-ବ୍ୟବସ୍ଥା ବିରୋଧରେ ପ୍ରତିବାଦ କରିବା ପାଇଁ ପ୍ରେରଣା ପ୍ରଦାନ କରିବା । ଭାଂଗିବାର ମନ୍ତ୍ର ସାଥିରେ ଗଢ଼ିବାରେ ବିଶ୍ୱାସ ରଖୁଥିବା ଏହି ପ୍ରଗତିବାଦୀ କବିତାରେ ଅଳ୍ପଅଳ୍ପ ଆଳଂକାରିକ ବର୍ଣ୍ଣନା ଏହାକୁ ଏକ ସଂପୂର୍ଣ୍ଣ ନିଆରା ରୂପ ପ୍ରଦାନ କରିଛି ।

---


୧- 'କବିତାର କଥା' - ଡଃ ଗିରିବାଳା ମହାନ୍ତି - ବିଦ୍ୟାପୁରୀ, କଟକ -୨, ପୃ - ୧/୨ ।

୨- 'କବିତାରେ କଳା' - ଡଃ ପ୍ରତିଭା ଶତପଥୀ - ବିଦ୍ୟାପୁରୀ - ପୃ ୮୭ ।

୩- 'ଆସିଚି ମୁଁ ଆସିଚି' : 'ଶାନ୍ତି ଶିଖା' - ପୃ - ୨୦ ।

୪- 'ଟ୍ରକ୍ ଡାଲାରେ ସନାତନ' : ମୁଖ ବଂଧ - କବି ପ୍ରସନ୍ନ ମିଶ୍ର ।

୫- 'ଦଖଲ୍' : ଟ୍ର. ଡା.ରେ ସ. ପୃ - ୯୩ ।

୬- 'ଉ.ଆ.କାବ୍ୟଧାରା: ପ୍ରମଖ ସପ୍ତସ୍ୱର' : ଡଃ ଦିଲ୍ଲୀପ୍ କୁମାର ସ୍ୱାଇଁ ପୃ ୧୬୯ ।

୭- 'ମଜୁରିଆ ମାନଙ୍କ କଥା' : 'ଅବଧୂତ କ୍ରାନ୍ତି' : ପୃ - ୨୬

୮- 'ଆକାଶର କାଠଗଡ଼ାରେ ବନ୍ଦୀ ସୂର୍ଯ୍ୟଙ୍କୁ ଜେରା', ପୃ - ୨୨ ।

୯- 'ଚଣ୍ଡାଳ'- ଆଶୁତୋଷ ପରିଡ଼ା ।

୧୦- 'ଉତ୍ତର ଆଧୁନିକ' କାବ୍ୟଧାରା : ପ୍ରମୁଖ ସପ୍ତସ୍ୱର : ଡଃ. ଦିଲ୍ଲୀପ୍ କୁମାର ସ୍ୱାଇଁ ପୃ - ୨୫୩ ।

୧୧- A Dictionary of Modem critical Terms, Edt. by Roger Fowler, Rout ledge and keganpaw, London and Boston, 1973 Page - 161

୧୨- 'ଉଦ୍‌ବୋଧନୀ' - 'ନବଭାରତ'- ଧନୁ ୧୩୪୨ ।

୧୩- 'ମୁଠିଏ ବୋଲି ହସ' : କିଛୁତ ।

୧୪- 'ତୁମକୁ ମୁଁ ଜାଣେ' : କିଛୁତ ପୃ - ୨୮ ।

୧୫- 'ଟ୍ରକ୍ ଡାଲାରେ ସନାତନ', ପ୍ରସନ୍ନ ମିଶ୍ର.ପୃ-୧୭ ।

୧୬- 'ଚଣ୍ଡାଳ' - ଆଶୁତୋଷ ପରିଡ଼ା ।

୧୭- 'ଟ୍ରକ୍ ଡାଲାରେ ସନାତନ' : ମୁଖବଂଧ - ପ୍ରସନ୍ନ ମିଶ୍ର

୧୮- 'ସକାଳ' : ଅବଧୂତ କ୍ରାନ୍ତି : ସଦାଶିବ ଦାଶ - ପୃ ୫୧ ।

୧୯- 'ପାହାଡ଼ ଛାଇରେ ଏକଲା ମହୁଲ ଗଛ' : 'ବିଗଳିତ କରୁଣା', ପୃ ୧୩୦, ସଦାଶିବ ଦାଶ ।

୨୦- 'ଉତ୍ତର ଆଧୁନିକ କାବ୍ୟଧାରା : ପ୍ରମୁଖ ସପ୍ତସ୍ୱର' : ଡଃ ଦିଲ୍ଲୀପ କୁମାର ସ୍ୱାଇଁ, ପୃ ୧୭୧/୧୭୨




# ଉପସଂହାର

ଆଧୁନିକ ଓଡ଼ିଆ କବିତାରେ ପ୍ରଗତିବାଦୀ ଚେତନା ସଂପର୍କରେ ଆଲୋଚିତ ସନ୍ଦର୍ଭରେ ବିସ୍ତୃତ ଭାବେ ଆଲୋଚନା କରାଯାଇଅଛି । ପ୍ରଗତିବାଦର ସ୍ୱରୂପ, ଗତି ଓ ପ୍ରକୃତି, ଐତିହାସିକ ଧାରା ଇତ୍ୟାଦି ସଂପର୍କରେ ପର୍ଯ୍ୟାଲୋଚନା କରାଯିବା ସଂଗେସଂଗେ ଆଧୁନିକ ଓଡ଼ିଆ କବିତାର ଉନ୍ମେଷ ପର୍ବଠାରୁ ଆରମ୍ଭ କରି ସ୍ୱାଧୀନତା ପ୍ରାପ୍ତି ପର୍ଯ୍ୟନ୍ତ ତଥା ସ୍ୱାଧୀନତା ପରବର୍ତ୍ତୀ ଷାଠିଏ ଦଶକରୁ ଊର୍ଦ୍ଧ୍ୱକାଳ ପର୍ଯ୍ୟନ୍ତ ସେଥିରେ ଯେପରି ପ୍ରଗତିବାଦୀ ଚେତନାର ପରିପ୍ରକାଶ ଘଟିଛି ତାହାର ଆଲୋଚନା କରାଯାଇଅଛି । ପ୍ରାୟ କୋଡ଼ିଏରୁ ଊର୍ଦ୍ଧ୍ୱ କବିଙ୍କର କବିତାକୁ ଆଲୋଚନା କରି ସିଦ୍ଧାନ୍ତରେ ଉପନୀତ ହେବାକୁ ହୋଇଛି ଯେ, କବିତା ସ୍ୱପ୍ନର ବା, କଳ୍ପନାର ଫୁଲବନ ନୁହେଁ । ମଣିଷ ଜୀବନର ଉତ୍ତରୋତ୍ତର ଉନ୍ନତି ପାଇଁ ଏହା ଦିଗ୍‌ନିର୍ଦ୍ଦେଶ ଦେଇଥାଏ । ପ୍ରଗତିବାଦୀ କବିତାରେ ମଣିଷର ଜୀବନ – ବଞ୍ଚିବାର ସନ ଥାଏ । ମଣିଷକୁ ମଣିଷ ଭାବେ [illegible] ଲୋଭୀ ମଣିଷମାନଙ୍କର ଚକ୍ରାନ୍ତରେ ସତତ ନିପୀଡ଼ିତ ହେଉଥିବା ଅଗଣିତ ମଣିଷମାନଙ୍କ ପାଇଁ ପ୍ରଗତିବାଦୀ କବିତା ହିଁ ଦେଇଛି ସାଗ୍ନିକ ଆହ୍ୱାନ । ସେହି ସର୍ବହରା, ଶୋଷିତ, ପତିତ ମଣିଷମାନେ ସଂଘବଦ୍ଧ [illegible] ବୁର୍ଜୁଆ ସମାଜକୁ ମୁକାବିଲା କରିପାରିବେ ନାହିଁ । [illegible] କବିତା ଗୁଡ଼ିକ ଆହ୍ୱାନ ଦିଏ ଗଣଶକ୍ତିର ପ୍ରତିଷ୍ଠା ପାଇଁ । ଆହ୍ୱାନ ଦିଏ ସର୍ବହରା ମଣିଷମାନଙ୍କର ଐକ୍ୟ ଭାବନା ପ୍ରତି । କ୍ଷମତା ଦୃପ୍ତ ତଥାକଥିତ ରାଜନେତାଙ୍କ ପ୍ରତି ବ୍ୟଙ୍ଗ ଓ ବିଦ୍ରୂପ ଭାବ ବ୍ୟକ୍ତ କରିବା ସହିତ [illegible] ସମାଜକୁ ସଚେତନ କରାଇବା ଏହାର ପ୍ରମୁଖ ଲକ୍ଷ୍ୟ ପାଲଟିଯାଏ । ଲାଭଖୋର୍ ଶିଳ୍ପପତି ଓ ବ୍ୟବସାୟୀଙ୍କ ବିରୋଧରେ ସ୍ୱର ଉତ୍ତୋଳନ କରିବା ସହିତ ସମାଜ ମଧ୍ୟରୁ ଯାବତୀୟ ବୈଷମ୍ୟର ବିଲୋପ ଘଟାଇବା ପାଇଁ ଆହ୍ୱାନ ଦେବା ସହିତ ଜାତି, ଧର୍ମ ଇତ୍ୟାଦିକୁ ପରିହାର କରି ମାନବବାଦର ବନ୍ଦନା କରିଥାଏ ।

ସମାଜରେ ପରିଲକ୍ଷିତ ହେଉଥିବା ଯାବତୀୟ ଧର୍ମ ବିଶ୍ୱାସ, ଭାଗ୍ୟ, ଭଗବାନଙ୍କ ଉପରେ ପ୍ରଗାଢ଼ ଆସ୍ଥା ରହିଥିବା ଅଜ୍ଞାନ ମଣିଷମାନଙ୍କୁ ଏହା ସଠିକ୍ ମାର୍ଗ ନିର୍ଦ୍ଦେଶ

କରିଥାଏ । ଯେଉଁ ଧର୍ମ, ଭଗବତ୍ ବିଶ୍ୱାସ କାଳେ କାଳେ ସାଧାରଣ ମଣିଷମାନଙ୍କୁ ସ୍ଥାଣୁ, ଅଥର୍ବ କରିଦେଉଛି, ସୁବିଧାବାଦୀ ମଣିଷ ସେହି ଧର୍ମକୁ ଶୋଷଣର ପ୍ରମୁଖ ଆୟୁଧ ବୋଲି ଗ୍ରହଣ କରନେଉଛି । ଏସବୁର ସ୍ୱରୂପ ଉଦ୍‌ଘାଟନ କରିବା ସହିତ ଧର୍ମ ଶାସ୍ତ୍ର, ପୋଥି, ପୁରାଣ, ପୌରୋହିତ୍ୟ ପ୍ରଥା ଇତ୍ୟାଦିର ବିରୋଧ ପ୍ରଗତିବାଦୀ ସ୍ରଷ୍ଟାମାନଙ୍କୁ ଏକ ନୂତନ ଇଂଧନ ଯୋଗାଇଛି । ସମାଜର ଯାବତୀୟ ନୀତିନିୟମ, ଆଇନ୍‌କାନୁନ୍ ତିଆରି କରୁଛି ଏଇ ସଭ୍ୟ ମଣିଷ । ଶେଷରେ ମଣିଷ ଗଢ଼ା ଏହି ଆଇନ୍‌ର ଶିକାର ହେଉଛନ୍ତି ସାଧାରଣ ସର୍ବହରା ମଣିଷମାନେ । ତେଣୁ ଏସବୁ ମଣିଷ ଗଢ଼ା ଆଇନ୍ କାନୁନ୍, ପ୍ରଥା, ପରଂପରା ପ୍ରତି ତୀବ୍ର ଆକ୍ଷେପ ସାଙ୍ଗକୁ ସର୍ବହରା ମଣିଷ ଭିତରେ ଛପି ରହିଥିବା ସୁପ୍ତ ଶକ୍ତିର ଜାଗରଣ ପାଇଁ ଏହି କବିତା ଆହ୍ୱାନ ଦେଇଛି । ଶ୍ରମିକ ଓ କୃଷକ ପରି ଦଳିତ ବର୍ଗର ସ୍ୱାଭିମାନ ପ୍ରତିଷ୍ଠା ସାଙ୍ଗକୁ ନାରୀମୁକ୍ତି, ଦଳିତ ଆଦିବାସୀମାନଙ୍କର ସଂଗ୍ରାମୀ ମନୋଭାବ ପ୍ରତି ଆହ୍ୱାନ ଜଣାଇବା ସହିତ ଶୋଷଣମୁକ୍ତ ସାମ୍ୟବାଦୀ ସମାଜଗଠନ ଓ ସର୍ବହରାର ଏକନାୟକତ୍ୱ ପ୍ରତିଷ୍ଠା ପାଇଁ ଏହି କବିତା ପ୍ରେରଣା ପ୍ରଦାନ କରିଛି ।

ଓଡ଼ିଆ କବିତାରେ ପ୍ରଗତିବାଦର ଏହିସବୁ ଲକ୍ଷ୍ୟ, ସ୍ୱରୂପକୁ ଅବଲୋକନ କରାଯାଇଥାଏ । କିନ୍ତୁ ସ୍ୱାଧୀନତା ପୂର୍ବବର୍ତ୍ତୀ ସମୟରେ ଏହାର ଏକ ଭିନ୍ନ ରୂପ ଦେଖିବାକୁ ମିଳେ । ଫକୀର ମୋହନ ସେନାପତି, ମଧୁସୂଦନ ରାଓ, ନନ୍ଦକିଶୋର ବଳ, ଗୋପବଂଧୁ ଦାସ, ଗୋଦାବରୀଶ ମଶ୍ର ପ୍ରମୁଖଙ୍କ କବିତାରେ ପ୍ରଗତିବାଦର ଏକ ସମ୍ବେଦନଶୀଳ ରୂପ ଦେଖିବାକୁ ପାଇଥାଉ, ଯାହା 'ମାନବବାଦ' ପ୍ରସଂଗରେ ଆଲୋଚିତ । କହିବାକୁ ଗଲେ ସେଥିରେ ବିପ୍ଳବର ସଂକେତ ଥିଲା; କିନ୍ତୁ ତାହା ପ୍ରକୃତରେ ବିପ୍ଳବୀ କବିତା ନଥିଲା । ଏହି ପ୍ରଗତିବାଦୀ ବିପ୍ଳବୀ ଚେତନା ବିଂଶ ଶତାବ୍ଦୀର ଚତୁର୍ଥ ଦଶନ୍ଧିରୁ ବଳିଷ୍ଠ ହୋଇ ଉଠିଛି । ଏହି ଚିନ୍ତାଧାରା ଗାନ୍ଧୀବାଦ ଦ୍ୱାରା ଯେତିକି ଅନୁପ୍ରାଣିତ ହୋଇଛି ମାର୍କସ୍‌ବାଦୀ ଚିନ୍ତାଚେତନା ମଧ ଏହାକୁ ସେତିକି ଖୋରାକ୍ ଯୋଗାଇଛି । ଗାନ୍ଧୀବାଦ ଏକ ଭାବବାଦୀ ଦର୍ଶନ ହୋଇଥିବାରୁ ଏଥିରେ ହୃଦୟ ପରିବର୍ତ୍ତନ ଉପରେ ଗୁରୁତ୍ୱ ଦିଆଯାଇଛି । ମାର୍କସ୍‌ବାଦ ଏକ ବାସ୍ତବବାଦୀ ଦର୍ଶନ ହୋଇଥିବାରୁ ଏଥିରେ ଶୋଷକର ବିନାଶ ଓ ଶୋଷଣର କାରଣ ଗୁଡ଼ିକର ନିରୂପଣ ସହିତ ଏହାର ମୂଳୋତ୍ପାଟନ ପାଇଁ ଆହ୍ୱାନ ରହିଛି । ଏହି ଚିନ୍ତାଧାରା ଭଗବତୀ ଚରଣ ପାଣିଗ୍ରାହୀଙ୍କଠାରୁ ହିଁ ଆରମ୍ଭ ହୋଇଥିଲା । ବସ୍ତୁତଃ ଭଗବତୀ ଚରଣ ହିଁ ଥିଲେ ଓଡ଼ିଆ ପ୍ରଗତି ଚିନ୍ତାଧାରାର ଭଗୀରଥ । ତାଙ୍କର ନବଯୁଗ ସାହିତ୍ୟ ସଂସଦ ଓ ଆଧୁନିକ ପତ୍ରିକା ମାର୍କସୀୟ ପ୍ରଗତିବାଦୀ ଚେତନାର ଅଗ୍ରସାରଥୀ ହେଲା ।

ଏହି ସମୟରେ ଅନନ୍ତ ପଟ୍ଟନାୟକ, ସଚ୍ଚି ରାଉତରାୟ, ସୁନନ୍ଦକର, ମନମୋହନ ମିଶ୍ର, ରଘୁନାଥ ଦାସ ପ୍ରମୁଖ ପ୍ରଗତିବାଦୀ କବିତା ରଚନା କଲେ ।

ସ୍ୱାଧୀନତା ପରେ ଗଣତନ୍ତ୍ର ପ୍ରତିଷ୍ଠା ଲାଭ କଲା । ଲୋକ ପ୍ରତିନିଧିମାନେ ଶାସନ କଲେ । ପଞ୍ଚାୟତଠାରୁ ଆରମ୍ଭକରି ଦିଲ୍ଲୀ ଦରବାର ପର୍ଯ୍ୟନ୍ତ ଲୋକ ପ୍ରତିନିଧିମାନେ ବିଚ୍ଛେଦ ହୋଇଗଲେ । ସେମାନଙ୍କୁ ଅବଲମ୍ବନ କରି ଏକ ନୂତନ ଗୋଷ୍ଠୀର ଆବିର୍ଭାବ ଘଟିଲା । ସେହି ଗୋଷ୍ଠୀର ବ୍ୟକ୍ତିବିଶେଷମାନେ ହେଲେ ନ୍ୟସ୍ତ ସ୍ୱାର୍ଥବାଦୀ । ତେଣୁ ଗାଣତନ୍ତ୍ରିକ ରାଜନୀତି ମଣିଷ ବା ରାଷ୍ଟ୍ରର କଲ୍ୟାଣ ପାଇଁ ଅଭିପ୍ରେତ ହେଲା ନାହିଁ । ସେମାନଙ୍କର ଯାବତୀୟ ପରିପୁଷ୍ଟି ଶିଳ୍ପପତି, ବ୍ୟବସାୟୀ, ସରକାରୀ କର୍ମଚାରୀବୃନ୍ଦ ମଧ୍ୟ ନିଜନିଜର ସ୍ୱାର୍ଥ ସାଧନରେ ବ୍ୟସ୍ତ ରହିଲେ । ଫଳରେ ସମାଜର ମଣିଷମାନେ ଅବହେଳିତ ହେଲେ । ସ୍ୱାଧୀନତା ପୂର୍ବବର୍ତ୍ତୀ କାଳରେ ପ୍ରଗତିବାଦର ଯେଉଁ ବଳିଷ୍ଠ ପ୍ରତିଧ୍ୱନି ଓଡ଼ିଆ କବିତାରେ ଶୁଣାଯାଉଥିଲା, ସ୍ୱାଧୀନତା ପରବର୍ତ୍ତୀ କାଳରେ ଏହା କ୍ରମଶଃ ଅସ୍ପଷ୍ଟ ହୋଇଗଲା । ଦୁଇ ଦୁଇଟା ବିଶ୍ୱଯୁଦ୍ଧ, ଶିଳ୍ପ ବିପ୍ଳବ, ହତାଶା, ନୈରାଶ୍ୟ, ମୃତ୍ୟୁର ବୀଭତ୍ସଲୀଳା, ଆତ୍ମକୈନ୍ଦ୍ରିକ ଜୀବନଯାପନ ପ୍ରଣାଳୀ କବିର ହୃଦୟରେ ପ୍ରତିକ୍ରିୟା ସୃଷ୍ଟିକଲା । ମଣିଷର ଏ ପ୍ରକାର ଅବସ୍ଥାର ଚିତ୍ର ପାଶ୍ଚାତ୍ୟ ସାହିତ୍ୟିକ ମାନଙ୍କର ସୃଷ୍ଟିର ମୂଳ ଉପାଦାନ ଥିଲା । ଓଡ଼ିଆ କବିତା ମଧ୍ୟ ଏହାର ପ୍ରଭାବରୁ ବାଦ୍ ପଡ଼ିଲା ନାହିଁ । ବହୁବିଧ ଚିତ୍ରକଳ୍ପ, ପ୍ରତୀକ, ମିଥ୍‌ର ପ୍ଲାବନ ଓଡ଼ିଆ କବିତାକୁ ବୌଦ୍ଧିକତାରେ ବୁଡ଼ାଇ ଦେଲା । ଜନସମାଜର ବାସ୍ତବ ଚିତ୍ର ଏହା ମଧ୍ୟରେ କେଉଁଆଡ଼େ ହଜିଗଲା । କବିତା ପାଲଟିଲା ପରୀକ୍ଷା ନିରୀକ୍ଷାର ଉପାଦାନ । ବାନ୍ଧି ହୋଇଗଲା ପାଠକଗୋଷ୍ଠୀ ମାନଙ୍କର ସୀମିତ ମାନସିକତା ମଧ୍ୟରେ । ଷାଠିଏ ଦଶକରେ ଓଡ଼ିଆ କବିତାକୁ ସମସ୍ତ ଶୃଙ୍ଖଳ ମଧ୍ୟରୁ ମୁକୁଳାଇ ଆଣି ପୁନଶ୍ଚ ଜନଜୀବନର ହୃଦୟର ବ୍ୟଥାର ରାଗିଣୀରେ ପରିଣତ କରିବାକୁ ସକ୍ଷମ ହେଲେ କବି ରବି ସିଂ ଓ କବି ବ୍ରଜନାଥ ରଥ ।

ପ୍ରଗତିବାଦର ଗତି ଏହାପରେ ଆଉ ମନ୍ଥର ହୋଇନାହିଁ । ଏହି ଚେତନାର ବେଗକୁ ପ୍ରଖର କରିବା ପାଇଁ, ଚାରୋଟି ପାଦ (ରବି ସିଂ ଓ ବ୍ରଜନାଥ ରଥ) ସହିତ ପାଦ ମିଳାଇଲେ ଅସଂଖ୍ୟ ପାଦ । କେବଳ ଦୁଇଜଣ ସ୍ରଷ୍ଟାଙ୍କର ଗୁରୁ ଗମ୍ଭୀର ସ୍ୱର ଓଡ଼ିଆ କବିତାର ଚୌହଦୀରେ ଶୁଣାଗଲା ନାହିଁ । ବରଂ ଶୁଣାଗଲା ଶହ ଶହ ସ୍ରଷ୍ଟାଙ୍କର ମିଳିତ କଣ୍ଠ ସ୍ୱର । ଏହି ମାର୍କସ୍‌ବାଦୀ ବିପ୍ଳବୀ ଯୁବ ସଂପ୍ରଦାୟର ପ୍ରମୁଖ ବ୍ୟକ୍ତିତ୍ୱ ମାନେ ହେଲେ କବି ସଦାଶିବ ଦାଶ, କବି ପ୍ରସନ୍ନ ପାଟଶାଣୀ, କବି ନବୀନ ସୁନ୍ଦର ସୁବୁଦ୍ଧି, ଡଃ ଦେବେନ୍ଦ୍ର ମାନସିଂହ ଓ ଅନ୍ୟାନ୍ୟ ଅନେକ । ଏମାନେ

ଗଠନ କଲେ ଅବଧୂତ ଗୋଷ୍ଠୀ । ଏମାନଙ୍କ ଦ୍ୱାରା ପ୍ରଭାବିତ ହୋଇ ବହୁ କବି ସେମାନଙ୍କ କବିତାରେ ପ୍ରଗତିବାଦକୁ ମୁଖ୍ୟ ସ୍ଥାନ ଦେଲେ । ସେମାନଙ୍କ ମଧ୍ୟରୁ କବି ହୋସେନ୍‌ରବି ଗାନ୍ଧୀ, ସମରେନ୍ଦ୍ର ନାୟକ, ପ୍ରସନ୍ନ ମିଶ୍ର, ଆଶୁତୋଷ ପରିଡ଼ା, ବସନ୍ତ ମୁଦୁଲୀ, ବ୍ରହ୍ମାନନ୍ଦ ଦାସ, ପ୍ରମୁଖଙ୍କ ନାମ ଉଲ୍ଲେଖଯୋଗ୍ୟ । ଏଥିରୁ ପ୍ରତୀୟମାନ ହୁଏ ଯେ, ଲିଭି ଆସୁଥିବା ପ୍ରଗତିର ଶିଖାଟି ଏମାନଙ୍କର ମିଳିତ ଉଦ୍ୟମରେ ପୁଣିଥରେ ପ୍ରଜ୍ୱଳିତ ହୋଇପାରିଲା ।

ତେଣୁ ଯେଉଁ ପ୍ରଗତି ସାହିତ୍ୟ ପୃଥିବୀ ପୃଷ୍ଠରୁ ବ୍ୟଥା ବେଦନାରେ ପୂର୍ଣ୍ଣଚ୍ଛେଦ ପକାଇ ସ୍ୱର୍ଗର କଳ୍ପନା କରେ ଯେଉଁ ସ୍ୱର୍ଗରେ ସଦାସର୍ବଦା ଅମୃତ ବରଷୁଥାଏ ଓ ଏଇ ଧୂଳି ଧୂସରିତ ଧରଣୀର ମଣିଷକୁ ଦେବତାର ମାନ୍ୟତା ଦେଇଥାଏ, ବାସ୍ତବିକ୍ ତାହା ହିଁ ଉଚ୍ଚକୋଟୀର ସାହିତ୍ୟର ମାନ୍ୟତା ପାଇଥାଏ । ତେଣୁ ଆଜିର ଓଡ଼ିଆ ସାହିତ୍ୟ ଏହି ଆଦର୍ଶରେ ଅନୁପ୍ରାଣିତ ହୋଇ ଆଗେଇ ଚାଲିଲେ ଜନସାଧାରଣଙ୍କର ପ୍ରଭୂତ କଲ୍ୟାଣ ସାଧିତ ହେବା ସହିତ ଓଡ଼ିଆ ସାହିତ୍ୟର ମଧ ଉନ୍ନତି ହେବ । ଏହି ହେତୁ ପ୍ରଗତି ସାହିତ୍ୟର ଭୂମିକା ସର୍ବାଦୌ ସ୍ୱୀକାର୍ଯ୍ୟ ।



# ସହାୟକ ଗ୍ରନ୍ଥସୂଚି


୧. ଅବଧୂତରୁ ଅଭିଯାତ୍ରୀ - ବାଞ୍ଛାନିଧି ଦାସ- ଜେନିଥ୍ ପବ୍ଲିକେସନ୍ସ ।

୨. ଅରଣ୍ୟର ଅଧିକାର ବନାମ୍ ଆଦିବାସୀ ଉଚ୍ଛେଦ- ସମରେନ୍ଦ୍ର ନାୟକ - ଚିତ୍ରୋତ୍ପଳା ପବ୍ଲିକେସନ୍ସ୍ ।

୩. ଅବଧୂତ କ୍ରାନ୍ତି - ସଦାଶିବ ଦାଶ- ଚିତ୍ରୋତ୍ପଳା ପବ୍ଲିକେସନ୍ସ୍ ।

୪. ଆସନ୍ତାକାଲିର ସାହିତ୍ୟ- ପ୍ରାଣନାଥ ପଟ୍ଟନାୟକ - ନବଯୁଗ ଗ୍ରନ୍ଥାଳୟ ।

୫. ଆଧୁନିକ ସାହିତ୍ୟର କେତେକ ଦିଗ - ସଚ୍ଚି ରାଉତରାୟ - ଦିଗନ୍ତ ପ୍ରକାଶନ ।

୬. ଇତିହାସର ଲୋହିତ ଚକ୍ରବାଳ - ଡଃ ଆଶିଷ୍ ମହାପାତ୍ର - କାହାଣୀ ପ୍ରକାଶନୀ ।

୭. ଉତ୍ତର ଆଧୁନିକ କାବ୍ୟଧାରା : ପ୍ରମୁଖ ସପ୍ତସ୍ୱର - ଡଃ ଦିଲ୍ଲୀପ କୁମାର ସ୍ୱାଇଁ- ଚିତ୍ରୋତ୍ପଳା ପବ୍ଲିକେସନ୍ସ୍ ।

୮. ଓଡ଼ିଆ ସାହିତ୍ୟରେ ପ୍ରଗତିବାଦୀ ଧାରା- ଡଃ ବିଜୟ କୁମାର ଶତପଥୀ - ଓଡ଼ିଶା ବୁକ୍‌ଷ୍ଟୋର ।

୯. ଓଡ଼ିଆ ସାହିତ୍ୟ ଯୁଗେ ଯୁଗେ- ଡଃ ବୈଷ୍ଣବ ଚରଣ ସାମଲ୍ ।

୧୦. କାବ୍ୟ ଆଳାପ - ଭିକାରୀ ଧଳ ।

୧୧. କାର୍ଲମାର୍କସ୍ ଜୀବନୀ (ଅନୁବାଦ) ଆଶିଷ୍ ମହାପାତ୍ର - ନବଯୁଗ ଗ୍ରନ୍ଥାଳୟ ।

୧୨. କିଛି ଆଲୋଚନା କିଛି ସମାଲୋଚନା- ବନମାଳୀ ପାଣିଗ୍ରାହୀ- ପ୍ରକାଶକ ବିଭୁଦତ୍ତ ପାଣିଗ୍ରାହୀ - ବୌଦ ।

୧୩. କବିତାର କଥା - ଡଃ ଗିରିବାଳା ମହାନ୍ତି - ବିଦ୍ୟାପୁରୀ ।

୧୪. କବିତାରେ କଳା- ଡଃ ପ୍ରତିଭା ଶତପଥୀ - ବିଦ୍ୟାପୁରୀ ।

୧୫. ଗଣିକା ଗଣତନ୍ତ୍ର- ବିବେକାନନ୍ଦ ନାୟକ - ଚିତ୍ରୋତ୍ପଳା ପବ୍ଲିକେସନ୍ସ୍ ।

୧୬. ଚିହ୍ନାମାଟି ଅଚିହ୍ନା ଆକାଶ - ଦାଶରଥି ଦାସ ।

୧୭. ଧୂଳିର ଫୁଲ ମହକ - ଡଃ ସୀତାକାନ୍ତ ମହାପାତ୍ର ।

୧୮. ନିର୍ବାଚିତ ନିବଂଧ - କବି ରବି ସିଂ- କାହାଣୀ ପ୍ରକାଶନୀ ।

୧୯. ନିଃସଂଗ ପଦାତିକ- କବି ରବି ସିଂ- କଟକ ଟ୍ରେଡିଂ କଂପାନୀ ।

୨୦. ପୁନଶ୍ଚ - ରଘୁନାଥ ଦାସ ।
୨୧. ବସନ୍ତ ବର୍ଣ୍ଣମାଳା - ରଜନୀକାନ୍ତ ମହାନ୍ତି, ପବିତ୍ର ପାଣିଗ୍ରାହୀ - ୧୯୯୧ - ବସନ୍ତ ମୁଦୁଲୀ ସ୍ମୃତି ସଂସଦ ।
୨୨. ବସନ୍ତାଲେଖ୍ୟ - ବସନ୍ତ ମୁଦୁଲୀ ସ୍ମୃତି ସଂସଦ- କୃଷ୍ଣ କୁମାର ମହାନ୍ତି ।
୨୩. ବସନ୍ତାଲେଖ୍ୟ - ବସନ୍ତ ମୁଦୁଲୀ ସ୍ମୃତି ସଂସଦ- ପ୍ରଶାନ୍ତ କୁମାର ପ୍ରଧାନ ।
୨୪. ଭେଟଭାରତୀ- ହୃଷୀକେଶ ମଲ୍ଲିକ - ଚିତ୍ରୋତ୍ପଳା ପବ୍ଲିକେସନ୍ସ ।
୨୫. ଭି.ଆଇ.ଲେନିନ୍, ସଂକଳିତ ରଚନାବଳୀ- ୨୯ଶ ଖଣ୍ଡ- ପ୍ରଗତି ପ୍ରକାଶନ ।
୨୬. ଭଗବତୀ ଚରଣ ପାଣିଗ୍ରାହୀ- ଲକ୍ଷ୍ମୀନାରାୟଣ ରାୟସିଂହ - ଓଡ଼ିଶା ସାହିତ୍ୟ ଏକାଡେ଼ମୀ ।
୨୭. ଭଗବତୀ ଚରଣ ପାଣିଗ୍ରାହୀ ବିଶେଷାଙ୍କ- ଲକ୍ଷ୍ମୀନାରାୟଣ ରାୟସିଂହ - ଓଡ଼ିଶା ସାହିତ୍ୟ ଏକାଡେ଼ମୀ ।
୨୮. ମୋ ଦୃଷ୍ଟିରେ ସାଂପ୍ରତିକ ସାହିତ୍ୟ - ପରୀକ୍ଷିତ ନନ୍ଦ ।
୨୯. ରଘୁନାଥ ଦାସ ରଚନା ସମଗ୍ର - ଚିତ୍ରୋତ୍ପଳା ପବ୍ଲିକେସନ୍ସ୍ ।
୩୦. ରଘୁନାଥ ଦାସ ପରିକ୍ରମା - ବ୍ରଜନାଥ ରଥ, ଗଣମୁକ୍ତି ପ୍ରକାଶନୀ ।
୩୧. ସାହିତ୍ୟର ଆତ୍ମା ଓ ଅନ୍ୟାନ୍ୟ ନିବଂଧ - ଆଶିଷ୍ ମହାପାତ୍ର - କାହାଣୀ ପ୍ରକାଶନୀ ।
୩୨. ସବୁଜରୁ ସାଂପ୍ରତିକ - ଡଃ ନିତ୍ୟାନନ୍ଦ ଶତପଥୀ - ଗ୍ରନ୍ଥମନ୍ଦିର ।
୩୩. ସବୁଜ ଅକ୍ଷର - ଅନ୍ନଦା ଶଂକର ରାୟ ।
୩୪. ସ୍ନିଗ୍ଧ ପ୍ରତିଶ୍ରୁତି ବିମୁଗ୍ଧ ବିଭୂତି - ଡଃ ଦେବୀ ପ୍ରସନ୍ନ ପଟ୍ଟନାୟକ - ଏଥେନା ବୁକ୍ସ୍ ।
୩୫. ସାହିତ୍ୟ ଓ ସମାଜବାଦ - ଡଃ ବାସୁଦେବ ସାହୁ- ଶତନେତ୍ର ପ୍ରକାଶନୀ

## ENGLISH

1. A Dictionary of Modern critical terms - edited by Roger Fowler, Rout ledge, Kegan Paw.
2. History of Oriya Literature - Mayadhar Mansingh.
3. J.V. Stalin - on the opposition - Peking Edition.
4. Lenin on Art and Literature - A.V. Lunchansky - oriental Publishing House.
5. Lenin in India - Anand Gupta - New literature.
6. Mao-Tse- Tung -Selected works- Vol-I, 1927 Report on an Investligation of the peasant Movement in Human - March 1927

7. Mao-Tse-Tung - Selected works.
8. Manifesto of the Communist Party - Marx, Engels, Progress Publishers.
9. Mao-Tse-Tung - Art & Literature - National Book Agency.
10. Marxim Gorky literature and life : Hutchin Son International Authors Limited.
11. Mass line - Vol - II No-6, 1970.
12. Naxalbari and Indian Revolution- Pramod Das Gupta. - Research Indian Publications, Calcutta.
13. Note by engels - Manifesto of the communist Party - Eng. Edition - 1988.
14. Sedition Committee Report - 1918 - Suptd. Govt. Printing India, Calcutta.
15. The Fundamentals of Marxist Leninist Philosophy - Progress Publishers.
16. The Ava - Vol -III Nov 1976.

## ସହାୟକ ପତ୍ରିକା

୧. ଅଞ୍ଜଳି - ୧ମ ବର୍ଷ ୧ମ ସଂଖ୍ୟା - ନବବର୍ଷ ବିଶେଷାଙ୍କ ।
୨. ଅନୁରୂପା - ୨ୟ ବର୍ଷ ୬ଷ୍ଠ ସଂଖ୍ୟା - ୨୦୦୦ ।
୩. ଅଗ୍ନିବୀଣା - ଅଗଷ୍ଟ ୧୯୭୩ ।
୪. ଅଭିଯାତ୍ରୀ - ଅକ୍ଟୋବର ଡିସେମ୍ବର ସଂଖ୍ୟା ।
୫. ଅଭିଯାତ୍ରୀ- ବାଲିଆପାଳ ବିଶେଷାଙ୍କ - ୧୯୮୭ ।
୬. ଅଗ୍ନିବୀଣା - ଅକ୍ଟୋବର ୧୯୭୩ ।
୭. ଅଳକାନନ୍ଦା - ୨ୟ ବର୍ଷ ଦ୍ୱାଦଶ ସଂଖ୍ୟା - ଅଗଷ୍ଟ ୧୯୯୧ ।
୮. ଆଧୁନିକ - ପ୍ରଥମ ବର୍ଷ ୬ଷ୍ଠ ସଂଖ୍ୟା - ଅକ୍ଟୋବର ୧୯୩୬ ।
୯. ଆଭା - ତୃତୀୟବର୍ଷ ପ୍ରଥମ ସଂଖ୍ୟା ।
୧୦. ଆଭା - ଦ୍ୱିତୀୟବର୍ଷ ୬ଷ୍ଠ / ୭ମ ସଂଖ୍ୟା ।
୧୧. ଆଧୁନିକ - ପ୍ରଥମ ବର୍ଷ ପ୍ରଥମ ସଂଖ୍ୟା - ଅକ୍ଟୋବର ୧୯୩୬ ।
୧୨. ଆଧୁନିକ - ପ୍ରଥମ ବର୍ଷ ୬ଷ୍ଠ ସଂଖ୍ୟା ।
୧୩. ଆଧୁନିକ - ପ୍ରଥମ ସଂଖ୍ୟା - ମେ' ୧୯୩୬ ।
୧୪. ଇସ୍ତାହାର - ଏପ୍ରିଲ / ଜୁନ୍ - ୧୯୯୨ ।
୧୫. ଇସ୍ତାହାର - ବିଷୁବ ବିଶେଷାଙ୍କ - ୨୦୦୭ ।
୧୬. ଇସ୍ତାହାର - ୮୦ ଜୁନ୍ / ଜୁଲାଇ ୨୦୦୧ ।

୧୭. ଇସ୍ତାହାର - ନଭେମ୍ବର ୧୯୩୪ ।
୧୮. ଇସ୍ତାହାର - ୫୯ / ୬୦ -୨୦୦୦
୧୯. ଉତ୍କଳ ସାହିତ୍ୟ - ୪୧ ଭାଗ / ୧ମ ସଂଖ୍ୟା, ବୈଶାଖ, ୧୩୪୪ ।
୨୦. ଉତ୍କଳ ସାହିତ୍ୟ - ୩୮ ଭାଗ ।
୨୧. ଉତ୍କଳ ସାହିତ୍ୟ ୩୭ ଭାଗ ୪ର୍ଥ ସଂଖ୍ୟା - ଜୁଲାଇ ୧୯୩୩ ।
୨୨. କୃଷକ - ୧୯୩୮ ।
୨୩. କାବ୍ୟ ଲୋକ - ସମୟର ସଂଖ୍ୟନାଦ ୩ୟ ବର୍ଷ ୧ମ ସଂଖ୍ୟା ପୂଜାସଂଖ୍ୟା ୧୯୯୮ ।
୨୪. କୋଣାର୍କ - ୭୦ ତମ ସଂଖ୍ୟା - ୧୯୮୬ ।
୨୫. ଜୀବନ ରଂଗ - ଅକ୍ଟୋବର - ୧୯୬୯ ।
୨୬. ଝଂକାର - ୪୦ ବର୍ଷ - ଦ୍ୱାଦଶ ସଂଖ୍ୟା ମାର୍ଚ୍ଚ ୧୯୯୫ ।
୨୭. ଝଂକାର - ୨୪ଶ ବର୍ଷ - ୧୦ମ ସଂଖ୍ୟା ଜାନୁୟାରୀ ୧୯୭୩ ।
୨୮. ଝଂକାର - ୪୬ଶ ବର୍ଷ - ୫ମ ସଂଖ୍ୟା ଅଗଷ୍ଟ ୧୯୯୫ ।
୨୯. ଝଂକାର ସଂପାଦକୀୟ - ୨୧ଶ ବର୍ଷ - ବିଷୁବ ସଂଖ୍ୟା
୩୦. ନବଭାରତ - କକଡ଼ା ୧୩୪୩ ।
୩୧. ନବଭାରତ - ଧନୁ ୧୩୪୨ ।
୩୨. ନବଭାରତ- ବିଛା ଓ ଧନୁ ସଂଖ୍ୟା ୨ୟ ବର୍ଷ ୬ଷ୍ଠ / ୭ମ ୧୩୪୨ ।
୩୩. ନୂଆଦୁନିଆ - ୩/୧୩ ସଂଖ୍ୟା ୧୯୫୪ ।
୩୪. ନୂଆଦୁନିଆ - ୧୯-୧୧-୫୪
୩୫. ନୂଆଦୁନିଆ - ଭଗବତୀ ବିଶେଷାଙ୍କ ଅକ୍ଟୋବର ୧୯୯୫.
୩୬. ନୂଆଦୁନିଆ - ୪ର୍ଥ ସଂଖ୍ୟା ୨୩/୧୦/୫୩ ।
୩୭. ନିଆଁଖୁଣ୍ଟା ସ୍ମରଣିକା - କାଳିନ୍ଦୀ ଚରଣ ପାଣିଗ୍ରାହୀ ।
୩୮. ପ୍ରତିବେଶୀ - ଶାରଦୀୟ ୨୦୦୪ ।
୩୯. ପ୍ରଭା - ଜାନୁଆରୀ ୧୯୨୧ ।
୪୦. ବେଳା - ୪ର୍ଥ ବର୍ଷ ୧ମ ସଂଖ୍ୟା ।
୪୧. ବେଳା - ୩/୩ ସଂଖ୍ୟା ।
୪୨. ବେଳା - ୩/୨ ସଂଖ୍ୟା ।
୪୩. ବେଳା - ୩ୟବର୍ଷ ୩ୟ ସଂଖ୍ୟା - ୧୯୭୧ ।
୪୩. ବର୍ତ୍ତିକା - ୩ୟ ବର୍ଷ ୨ୟ ସଂଖ୍ୟା ବିଷୁବ ବିଶେଷାଙ୍କ ୧୯୯୯ ।

୪୪. ଶଙ୍ଖ - ୧ମ ବର୍ଷ ୫ମ ସଂଖ୍ୟା - ନଭେମ୍ବର ୧୯୪୫ ।

୪୫. ଶଙ୍ଖ - ୧ମ ବର୍ଷ ୭ମ ସଂଖ୍ୟା - ଜାନୁୟାରୀ ୧୯୪୫ ।

୪୬. ସହକାର - ଶାରଦୀୟ ସଂଖ୍ୟା - ଅକ୍ଟୋବର ୨୦୦୪ ।

୪୭. ସହକାର - ଅଷ୍ଟାଦଶ ବର୍ଷ, ୩ୟ ସଂଖ୍ୟା - ଆଷାଢ଼ ୧୩୪୪, ଜୁଲାଇ ୧୯୩୭ ।

୪୮. ସହକାର - ୨୩/୯ମ ସଂଖ୍ୟା ନଭେମ୍ବର ୧୯୪୭ ।

୪୯. ସହକାର - ୧୮/୧ ସଂଖ୍ୟା ଜାନୁଆରୀ ୧୯୩୭ ।

୫୦. ସମାଜ - ରବିବାର ପୃଷ୍ଠା ୨୩/୪/୨୦୦୬ ।

୫୧. ସମାଜ - ସଂପାଦକୀୟ ୨/୨୧୯୨୪ ।

୫୨. ସମାଜ - ସଂପାଦକୀୟ ୨/୧ ୧୯୨୬ ।





## ଡଃ ବିଜୟଲକ୍ଷ୍ମୀ ଦାଶ

ପିତା-ସଦାଶିବ ଦାଶ
ମାତା-ଅନସୂୟା ଦାଶ
ସ୍ୱାମୀ-ଶ୍ରୀଯୁକ୍ତ ସମର କୁମାର ମିଶ୍ର
ଜନ୍ମସ୍ଥାନ-ବଟେଶ୍ୱର, ସାଲେପୁର, କଟକ

ଉତ୍କଳ ବିଶ୍ୱବିଦ୍ୟାଳୟରୁ ଓଡ଼ିଆ ସମ୍ମାନ ପରୀକ୍ଷାରେ ପ୍ରଥମ ଶ୍ରେଣୀରେ ପ୍ରଥମ, ସ୍ନାତକୋତ୍ତର ଓଡ଼ିଆ ଭାଷା ଓ ସାହିତ୍ୟରେ ରେଭେନ୍ସା କଲେଜ୍‌ରେ ପ୍ରଥମ ଶ୍ରେଣୀରେ ପ୍ରଥମ ଓ ମାଷ୍ଟର ଅଫ୍ ଫିଲୋସଫି ଉପାଧିପ୍ରାପ୍ତ । ୨୦୧୧ ମସିହାରେ ଉତ୍କଳ ବିଶ୍ୱବିଦ୍ୟାଳୟରୁ ପି.ଏଚ୍.ଡି. ଉପାଧିପ୍ରାପ୍ତ ।

ପ୍ରଥମ ଅଧ୍ୟାପନା- ବାଂକି ସ୍ୱୟଂଶାସିତ ମହାବିଦ୍ୟାଳୟ, ତତ୍‌ପରେ ସରକାରୀ (+୨) ବିଦ୍ୟାଳୟ, କୈଳାସପୁର, ରାୟଗଡ଼ାରେ ଅଧ୍ୟାପନା ଏବଂ ସଂପ୍ରତି ସ୍ନାତକୋତ୍ତର ଓଡ଼ିଆ ଭାଷା, ସାହିତ୍ୟ ବିଭାଗ ରେଭେନ୍ସା ବିଶ୍ୱବିଦ୍ୟାଳୟରେ ଅଧ୍ୟାପିକା ଭାବରେ କାର୍ଯ୍ୟରତ। ସାମୟିକ ଓଡ଼ିଆ ପତ୍ରପତ୍ରିକାରେ ବହୁ ପ୍ରବଂଧ ପ୍ରକାଶିତ । ଶିଶୁ ଓ କିଶୋରମାନଂକ ଉପଯୋଗୀ ବହୁ ଅନୁସୃଜନ ପୁସ୍ତିକା ଅଦ୍ୟାବଧି ପ୍ରକାଶିତ ।

ଯଥା:- ୧. ପଞ୍ଚତନ୍ତ୍ର ୧ମ ଓ ୨ୟଭାଗ, ୨. ଜାତକ କଥା, ୩. ଉପନିଷଦ୍ କଥା, ୪. ହିତୋପଦେଶ କଥା, ୫. ତେନାଲିରାମାଙ୍କ ମଉଜିଆ କଥା, ୬. ଯଦୁମଣିଙ୍କ ହସକଥା, ୭. ଆମ ସମସ୍ତଙ୍କ ଜାଣିବା କଥା, ୮. ବିଂଶ ଶତକର ମହାନ୍ ଭାରତୀୟ, ୯. ଓଡ଼ିଶାର ଲୋକ କାହାଣୀ ଇତ୍ୟାଦି ପ୍ରକାଶିତ ।